ପିଲାମାନେ ବଡ଼ ହେବା ପରେ ତମର ଜନ୍ମଦିନ ଏପ୍ରିଲ୍ ୨୦ରେ କରି ଆସୁଥିଲେ । ଏବର୍ଷ କିନ୍ତୁ ଏପ୍ରିଲ୍ ୨୦ରେ ପିଲାଏ ତମ ଫଟୋ ପାଖରେ ଦଣ୍ଡବତ କଲାବେଳେ ତମର ହାତ ଆଉ ବଢ଼ି ଆସିବ ନାହିଁ ଆଶୀର୍ବାଦ କରିବାକୁ । ହେଲେ ତମର ସଦାସର୍ବଦା ସମସ୍ତିଙ୍କ ପାଇଁ ଆଶୀର୍ବାଦ ଆଜି ତମର ଜନ୍ମଦିନରେ 'ସ୍ରୋତସ୍ୱତୀ'ର ପ୍ରକାଶ ଜରିଆରେ ସମସ୍ତଙ୍କ ନିକଟରେ ପହଞ୍ଚିବ ।

ମୁଁ
ତା ୨୦।୪।୯୨

# ସ୍ମୃତି—ବିସ୍ମୃତି

ବାପା,

ଅଗଷ୍ଟ ୨୦, ୧୯୯୧ ତାରିଖଟା ହୁଏତ ଅନ୍ୟମାନଙ୍କ ପାଇଁ ପୁରୁଣା କ୍ୟାଲେଣ୍ଡରର ପୃଷ୍ଠା ପରି କୋଉଠି ଲୁଚିଯିବଣି, ହେଲେ ଆମ ପାଇଁ ସେ ଚିର ସତେଜ ଓ ଅବିସ୍ମରଣୀୟ । ଭାବିଲେ ଚାଉଁକିନା ଲାଗେ, ତା'ର ମୋଟେ ଦଶଟି ଦିନ ଆଗରୁ ଅଗଷ୍ଟ ଦଶ ତାରିଖରେ ପନ୍ଦର ହଜାର କିଲୋମିଟର ଦୂର କାଲିଫର୍ଣିଆର ସାନ୍‌ହୋଜେ ସହରରୁ ଟେଲିଫୋନ୍‌ରେ ତୁମ ସ୍ୱରରେ ଦୁଃଖ କିମ୍ବା ବିଷାଦର ଆଭାସ ପାଇ ନ ଥିଲି— ପାଇଥିଲି ନିଜ ପାଇଁ ପ୍ରଚୁର ପ୍ରେରଣା, ସାହସ ଓ ପରବର୍ତ୍ତୀ ଦୁଇ ତିନିବର୍ଷ ପାଇଁ ତୁମ ସୁଚିନ୍ତିତ କାର୍ଯ୍ୟସୂଚୀର ସୂଚନା । ତା ସହିତ ତୁମ କାମପାଇଁ ଅନେକ ଜିନିଷ ଆମେରିକା ପଠେଇ ଦେବାପାଇଁ ବରାଦ କରିଥିଲ । ସେ ସବୁ ପୁଣି କାଗଜରେ ଟିପିନେବା ପାଇଁ ନିର୍ଦ୍ଦେଶ ଥିଲା । ପେନ୍‌ସିଲ୍ ଲେଖା ଟିପାଟି ସେମିତି ରହିଛି ମୋ ପାଖରେ ସ୍ମୃତିଟିଏ ହୋଇ ।

ତୁମେ କହିଥିଲ— ''ମୋ ପାଇଁ ୧୯୪୭ ପରର ଡାଏରୀ ସବୁ ଆଣିବୁ । ଡାଏରୀ ଉପର ମହଲାରେ ମୋ ଆଲମାରିରେ ସଜାହୋଇ ଥୁଆ ହୋଇଛି । ମୋ ଆତ୍ମଜୀବନୀ 'ସ୍ରୋତସ୍ୱତୀ' ୧୯୪୭ ଯାଏ ବୋଧହୁଏ ଲେଖିଛି । ଏ ଡାଏରୀ ପାଇଗଲେ ବାକି ଲେଖା ଆରମ୍ଭ କରିଦେବି, ଆଉ ଆଣିବୁ ମୋର ଗୋଟାଏ ଲମ୍ବା କନ୍ଧ ବଇଁଶୀ । ଦାଣ୍ଡଘରେ ଟଙ୍ଗା ହୋଇଛି । ବହୁଦିନୁ ବଜେଇନି, ପାଇଲେ ବଜାନ୍ତି । ଯା ଛଡ଼ା ଗୋଟିଏ ଉପନ୍ୟାସର ପାଣ୍ଡୁଲିପି ଛାଡ଼ି ଆସିଛି ମୋ ଆଲମାରିରେ— ତାକୁ ଆଣିବୁ । ତା ଉପରେ କିଛି କାମ କରିପାରେ ।''

ଶେଷଦିନ ପର୍ଯ୍ୟନ୍ତ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ଉପଭୋଗ କରିବାର ବାଗ ତୁମେ ସ୍ୱୟଂ ଦେବୀ ସରସ୍ୱତୀଙ୍କଠୁଁ ନିଶ୍ଚୟ ପାଇଥିଲ, ହାସଲ କରିଥିଲ ଅସମ୍ଭବ ମାନସିକ ଶକ୍ତି, ଯେଉଁଥିପାଇଁ ମସ୍ତିଷ୍କରେ ରକ୍ତସ୍ରାବ ଭଳି ବିପଦରୁ ସଂପୂର୍ଣ୍ଣ ଆରୋଗ୍ୟ ହେବା ପୂର୍ବରୁ ପୁଣି ନୂତନ ଉତ୍ସାହ ଓ ଆତ୍ମବିଶ୍ୱାସ ସହିତ ପ୍ରସ୍ତୁତ ହେଉଥିଲ ଜୀବନର ମାଧୁର୍ଯ୍ୟ ଆହରଣ କରିବାକୁ; ସମସ୍ତଙ୍କର ବାରଣ ସତ୍ତ୍ୱେ ଗାଡ଼ିରେ ବସି ଷାଠିଏ ମାଇଲ ବାଟ ଧାଇଁ ଯାଇଥିଲ ଭାରତରୁ ଆସି ପହଞ୍ଚିଥିବା ନାତି ଟୋକାକୁ କୁଣ୍ଢେଇ ଧରି ପାଛୋଟି ଆଣିବା ପାଇଁ ସେଇ ଅଗଷ୍ଟ ଦଶ ତାରିଖ ଦିନ, ପୁଣି ତା ପରଦିନ ଚାରି ଘଣ୍ଟାରୁ ଊର୍ଦ୍ଧ୍ୱ ଗପ କରିଥିଲ ଚାରିବର୍ଷର

କୁନି ନାତି ସାଙ୍ଗେ । କଥା ଲହରରେ ତାକୁ ବୁଝେଇବାକୁ ଚେଷ୍ଟା କରିଥିଲ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଉତ୍କର୍ଷ ଓ ନିଜ ଜୀବନ ଦର୍ଶନ ସମ୍ପର୍କରେ । ସେ ସବୁତ ତୁମ ଜୀବନୀର ଅନେକ ପୃଷ୍ଠାର କାହାଣୀ । କିନ୍ତୁ ୧୯୪୭ର ପରର ଘଟଣାକୁ ଆତ୍ମଜୀବନୀରେ ଆଉ ଲେଖିବାର ସୁଯୋଗ ଭଗବାନ ତୁମକୁ ଦେଲେ ନାହିଁ । ତା ଆଗର ଯାହା ପାଣ୍ଡୁଲିପି ଥିଲା ସ୍ରୋତସ୍ୱତୀର, ସେ ତ ତୁମ ଜ୍ଞାତସାରରେ ମାସିକ ପତ୍ରିକା 'ନବଲିପି'ର ସ୍ତମ୍ଭରେ ପ୍ରକାଶ ଆରମ୍ଭ ହୋଇଥିଲା । ଏବେ ବହି ଆକାରରେ ଆତ୍ମପ୍ରକାଶ କରିବାକୁ ଯାଉଛି ।

ଆଜିକି ପଚିଶ ବର୍ଷ ତଳେ ତୁମକୁ ତେପନ ବର୍ଷ ପାଞ୍ଚମାସ ସେତେବେଳେ– ସେପ୍ଟେମ୍ବର ୨୫ ତାରିଖ ୧୯୬୭ ମସିହା ବୁଧବାର ଦିନ ତୁମେ ଆତ୍ମଜୀବନୀ ଲେଖିବା ଆରମ୍ଭ କଲ, ଦିନ ୩ଟା ୨୦ ମିନିଟ୍ ସେତେବେଳକୁ– ଏ ସବୁ ନିଜେ ଟିପି ଯାଇଛ । କାହିଁକି ହଠାତ୍ ସେଇଦିନ ସେଇ ମୁହୂର୍ତ୍ତରେ ତୁମ କଲମରୁ ଏ ଝରଟି ବୋହିବା ଆରମ୍ଭ କଲା ଜାଣିବା କଷ୍ଟ । ମନେପଡୁଛି ତୁମ ଲେଖା ଟେବୁଲର ସାମ୍ନା ଝରକାରେ ବାହାରକୁ ଅନେଇଲେ ତୁମ ହାତଲଗା ଗଙ୍ଗଶିଉଳି ଗଛ– ସବୁଦିନେ ତୁମର ଅତିପ୍ରିୟ । ଉଙ୍କ ଧରିଥାନ୍ତି ସେ ଗଛକୁ । କିମ୍ବା ତା'ର ଦେଢ଼ବର୍ଷ ପରେ ୧୯୬୯ରେ ଓଡ଼ିଶା ସରକାରଙ୍କ ନୂଆ ନିଷ୍ପତ୍ତି ଅନୁସାରେ ପଞ୍ଚାବନ ବର୍ଷରେ ସରକାରୀ ଚାକିରିରୁ ଅବ୍ୟାହତି ନେବା ପାଇଁ ପ୍ରସ୍ତୁତିର ଚିନ୍ତା ତୁମକୁ ଟିକେ ଚହଲେଇ ଦେଇଥିବ ଓ ଅତୀତ ଆଡ଼କୁ ଟାଣି ନେଇଥିବ । ସେ ଯାହାହେଉ, ଆତ୍ମଜୀବନୀ 'ସ୍ରୋତସ୍ୱତୀ'ର ସ୍ରୋତକୁ ତ୍ୱରାନ୍ୱିତ କରିବା ପାଇଁ ତୁମେ କେବେ ବିଶେଷ ତତ୍ପର ହୋଇ ନ ଥିଲ । ଅନେକଥର ସେ ସମ୍ପର୍କରେ ତୁମେ କହିଛ.... ଆତ୍ମଜୀବନୀ ସମ୍ପୂର୍ଣ୍ଣ ହୋଇ ନ ପାରିଲେ ଦୁଃଖ ନାହିଁ, ମୋର ସବୁ ଉପନ୍ୟାସର ଚରିତ୍ରମାନଙ୍କ ମାଧ୍ୟମରେ ତ ମୋ ଜୀବନୀ ମୁଁ ଲେଖି ସାରିଛି ।

ହେଲେ ଆଜି ଲାଗୁଛି ତୁମ ପାଖରେ ବସି କହିଥାନ୍ତି କି ୧୯୪୭ ପରର ଅଜସ୍ର ଘଟଣା– ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ଓ ଭାରତର, ତୁମ ଡାଏରୀ ଓ ଟୁର୍ ରିପୋର୍ଟରୁ ଶୀଘ୍ର ଶୀଘ୍ର ଡାକିଯାଅ, ମୁଁ ବା ଆଉ କିଏ ଲେଖିଯିବ ଅବିରତ ଭାବେ ତୁମ ଅନୁଭୂତି ଓ ଅଭିଜ୍ଞତା ନିଃସୃତ କାହାଣୀକୁ । କେତେ ଚିତ୍ର ମନ ଭିତରେ ଉଙ୍କି ମାରୁଛି । ୧୯୬୯ ମଇ ମାସରେ ସରକାରୀ ଚାକିରିରୁ ଅବ୍ୟାହତି ନେବା ଦିନ– ଆମେ ସବୁ ପିଲାମାନେ ତୁମ ପାଖରେ ପହଞ୍ଚିଥାଉ ସରକାରୀ ଶୃଙ୍ଖଳରୁ ତୁମ ମୁକ୍ତିକୁ ଆନୁଷ୍ଠାନିକ ଭାବେ ମନେଇବା ପାଇଁ । ତା ପରଦିନ ସକାଳୁ ତୁମର ଅତି ପ୍ରିୟ ଧଉଳିପାହାଡ଼ ପାଖ କୌଶଲ୍ୟାଗଙ୍ଗରୁ ମାଛ

ଧରିବା ପାଇଁ ଧୋବ ଫରଫର ପଞ୍ଜାବି ସାଙ୍ଗରେ ଧୋବଲୁଗା, ଓଠରେ ପାଇପ୍, ହାତରେ ନୂଆ ଫିଆଟ୍ ଗାଡ଼ିର ଷ୍ଟିଅରିଂ । ଗାଡ଼ି ଭିତରେ ଆମେ ସବୁ ପିଲାମାନେ । ତୁମ ମୁହଁରୁ ଝରି ପଡୁଥିଲା ପରମ ଆନନ୍ଦ, ତୃପ୍ତି ଓ ଶାନ୍ତିର ଧାରା । ସେ ଦିନର ସେ ଦୃଶ୍ୟ ଏବେବି ସଂଜ୍ଜୀବିତ ।

ତୁମ ଡାଏରୀ କେବେ ମୁକ୍ତ ହୋଇ ତୁମର ଅଗଣିତ ପାଠକଙ୍କ ସାମ୍ନାରେ ତାଙ୍କ କାହାଣୀ ବର୍ଣ୍ଣନା କରିବେ– ଜାଣିନାହିଁ । କିନ୍ତୁ ଶୀଘ୍ର ସେ ଚେଷ୍ଟା କରିବୁ । ଏବେ ସ୍ରୋତସ୍ୱତୀର ପ୍ରଥମ ଭାଗ ପ୍ରକାଶ ପାଉଛି । ସେଥିପାଇଁ ପୀତାମ୍ବର ବାବୁଙ୍କୁ ଆମ ସମସ୍ତଙ୍କ ପକ୍ଷରୁ ଧନ୍ୟବାଦ ଜଣାଉଛୁ । ଆଶା କରୁଛୁ, ଅନ୍ୟ ଭାଗଗୁଡ଼ିକ ଯଥାଶୀଘ୍ର ପ୍ରକାଶ ପାଇବ ।

ବାବୁଲି

# ସ୍ରୋତସ୍ୱତୀ

ଅନୁମାନ କରିପାରୁଛି, ମୁଁ ବି ଦିନେ ଜନ୍ମ ହୋଇଥିଲି ।

ସେ ତ କାହିଁ ତେପନ ବର୍ଷ ଚାରିମାସ ତଳେ, (ଏ ଆତ୍ମଜୀବନୀ ଲେଖା ଆରମ୍ଭ ୨୫-୯-୧୯୬୭ ଅପରାହ୍ଣ ୩ଟା ୨୦ ମିନିଟ୍) ହେ–ଇ ସେଠି । ଆମ ଗାଁ ନଈବନ୍ଧିର ଦି'କୂଳଖିଆ ଅଣନିଶ୍ୱାସୀ ପ୍ରବାହ ପରି ସେ ଯେଉଁ ସମୟର ସୁଅ ସମୁଦ୍ରମୁହାଁ ଧାଇଁଚାଲିଛି ତାହାରି କେଉଁ ବିନ୍ଦୁରେ ପରା, ଠାସୁକୁ ମାରି କହିପାରିବି । ବାରିପାରିବି ନାହିଁ ।

କେବେ କେବେ ଗାରେଇଥିବା ଘଟନାର ଡାଏରି ଖୋଜିଲେ ପାଇପାରିବି । କେତେ କେତେ ପଛକୁ ତିରିଶି ବର୍ଷଯାକେ, ହଠାତ୍ ତା ଉଭାରୁ ଆଉ ସାତ ବର୍ଷ ତଳର ଟିପା ଖାତାଟିଏ, ୧୯୩୦ର ନୂଆ ଆଖି ପାଇ ବୁଲୁଥିବା କୈଶୋରର । ତା ଆଗରୁ ଏଠୁ ସେଠୁ ଖୋଜୁ ଖୋଜୁ କେଉଁ ଛିଣ୍ଡା ପାଠ୍ୟପୁସ୍ତକ ଉପରେ କ୍ଲାସ୍ ୬ କି କ୍ଲାସ୍ ୭ର ଗୋଟିଏ ପିଲାର ନାଁ, ଇଂରେଜି କି ଓଡ଼ିଆରେ ଲେଖା ଦସ୍ତଖତ୍, ଆଉ କେଉଁ ବହି ଉପରେ ପୁରସ୍କାର ମିଳିଥିବା ମାନପତ୍ର, କେବେ ହାବୁଡ଼େ କେବେ ପୁଣି ହଜିଯାଏ । କିନ୍ତୁ ସେସବୁ ତ ତେପନ ବର୍ଷ ତଳର ନୁହେଁ !

ଆପଣା ସ୍ମରଣକୁ ମଛିଲେ ବହୁଦୂର ତଳକୁ ତଳକୁ ବାଟ ଫିଟିଯାଏ, ଭାବିଲେ ଅସମ୍ଭବ ଲାଗେ କେମିତି ତା ମନେ ରହିଛି– ଚାରିବର୍ଷ ଚାରିମାସ ଚାରିଦିନ ଦିନ କାନଫୋଡ଼ା ( ଆଜି ତାର ଚିହ୍ନବର୍ଣ୍ଣ ନାହିଁ) ଦିନର ଅନୁଭୂତି । କିନ୍ତୁ ତା ଆଗରୁ ?

ଭିତ୍ତିସମ୍ବଳିତ ଅନୁମାନ ହିଁ ପୁରୁଣା ତାଳପତ୍ରରେ ଖଣ୍ଡେ ଜନ୍ମ-ଜାତକ, ତା ସହିତ କେତେ ଶୁଣାକଥା ।

ବେଳେ ବେଳେ ଲାଗେ ମୋର ଆଦ୍ୟ ମୁଁ ଦେଖିପାରେ । ଟିକିଏ ଲମ୍ବା, ସରୁ, ନାଳି ହୋଇ ଗୋଟିଏ ଉଜାଣି ପିଲା, ହେଁସ ଉପରେ ପରା ହୋଇଥିବା

କନା କତରା ଉପରେ ପଡ଼ି ପାଟି କରୁଛି ସେହି ଅବୋଧ୍ୟ ସେ-ପୁରର ଭାଷାରେ, ସେ କାନ୍ଦଣା କି ଉଲ୍ଲାସ, ଉଦ୍ଦେଶ୍ୟହୀନ କି ଉଦ୍ଦେଶ୍ୟପୂର୍ଣ୍ଣ ତା କିଏ ଜାଣେ ! ମୋ ବୋଉର ମୁହଁ ମନେ ପଡୁଛି, ଗୋଲ ଆଉ ବଡ଼ ଆଉ ପୂରିଲା ପୂରିଲା, ଭୁବନେଶ୍ୱରର ଭୁବନେଶ୍ୱରୀ ଦେବୀମୂର୍ତ୍ତି ପରି ଗଢ଼ଣ, ସେମିତି ବଳିଲା ବଳିଲା ଦେହ, ମନେ ପଡୁଛି ତା ଓଠ, ନାକ, ଆଖି, କପାଳ, ତା ନୋଥ ତା ଦଣ୍ଡୀ, ତା ନାଁ ବି ଦୁର୍ଗା– ଦୁର୍ଗାବତୀ । ବାପାଙ୍କ ମୁହଁରୁ କେତେବେଳେ କେଉଁ ଠାର ମନେ ପଡ଼ିଲା ପରି ବିଶ୍ୱାସ ହୁଏ, ମତେ ବାରବର୍ଷ ହୋଇଥିଲା ସେ ଗଲେ । ତାଙ୍କ ନାଁ ସୂର୍ଯ୍ୟମଣି । ମନେପଡ଼େ, ବହୁତ ମୁହଁ, କେଉଁ ମୁହଁରୁ କେତେ ଅଂଶ, ଘରଯାକ ଖୁନ୍ଦାଖୁନ୍ଦି, ଗୋବର ଲିପା ମାଟି ଘରର କାନ୍ଥ ଆଉ ତଳି, ଯେମିତି ସେ ବି ଗୋଟିଏ ମା'ର କୋଳ, ନଡ଼ା ବାଉଁଶର ଚାଳ, ମିଟିମିଟି ଡିବି ଆଲୁଅରେ ହଲୁଥିବା ଅନ୍ଧାର, ତା' ପରେ ଫାଇଁ ଫାଇଁ ଅନ୍ତୁଡ଼ି ନିଆଁ, ଉଦୁମୁଦା ଧୂଆଁ ।

ସବୁ ଅନୁମାନ ପରା ।

ଇଂରେଜୀ ସାଲ ଗଣତିରେ ଉଣେଇଶ ଶହ ଚଉଦ ସାଲ ଅପ୍ରେଲ ମାସ କୋଡ଼ିଏ ତାରିଖ, ରାତି ସାଢ଼େ ନଅ ହେବ । ବୈଶାଖର କୃଷ୍ଣ ଏକାଦଶୀ ।

ମୁଁ ଜନ୍ମ ହେଲି ।

୨୦–୪–୧୯୧୪, ଏଫିମିରିସ୍ ପ୍ରକାରେ ସେଦିନ ସୂର୍ଯ୍ୟୋଦୟ ୫ ଘ. ୧୨ ମି. ୪୩ ସେକେଣ୍ଡ ବେଳେ ଓ ସୂର୍ଯ୍ୟାସ୍ତ ୬ ଘ. ୧୬ ମି. ୪୫ ସେକେଣ୍ଡ ବେଳେ ।

ଜାତକ କହେ– ମେଷମାସ ୮ ଦିନ ସୋମବାର ବୈଶାଖ କୃଷ୍ଣ ଏକାଦଶୀ ସୂର୍ଯ୍ୟୋଦୟାଦି ଜନ୍ମକାଳ ଘଟିକା ୪୧ ଦଣ୍ଡ ୫୯ ଲିତା ସମୟେ ଶତଭିଷା ନକ୍ଷତ୍ର ତୃତୀୟ ଚରଣେ କୁମ୍ଭଚନ୍ଦ୍ର ବ୍ରହ୍ମଯୋଗେ ବାଳବକରଣେ ଦିନାର୍ଦ୍ଧ ୧୫/୪୨ ଦିନମାନ ୩୧/୨୪ ରାତ୍ରମାନ ନିଶାର୍ଦ୍ଧ ୧୪/୧୮ ରାତ୍ର ୨୮/୩୬ ଜନ୍ମକାଳକୁ ରାହୁ ମହାଦଶା ଗର୍ଭଭୁକ୍ତି ୧୨ ବର୍ଷ ୬ ମାସ ୧୮ ଦିନ ୨୦ ଦଣ୍ଡ ଋକ୍ଷସ୍ଥିତ ୬୦/୨୬ ଋକ୍ଷଭୋଗ ୪୧/୫୯ ଋକ୍ଷଶେଷ ୧୮/୨୩, ୫/୩୮ ଧନୁ ଲଗ୍ନରେ ୦/୩୭ ଭୋଗ ହୋଇଛି ୪/୫୧ ଧନୁର୍ଲଗ୍ନ ଦ ୭୪/୫୧ ଲିତା ଶେଷ ଅଛି । ଧନୁର୍ଲଗ୍ନ ପ୍ରଥମ କେନ୍ଦ୍ରାଂଶରେ ଜନ୍ମ ଜାତକ ନାମ ଗୋବିନ୍ଦ ସାଧୁଚରଣ, ଶ୍ରଦ୍ଧା ନାମ ଗୋପୀନାଥ–

ଗ୍ରାମ ନାଗବାଲି, କଟକରୁ ବାହାରି କାଠଯୋଡ଼ି ନଈ ପୋଲ ଟପି ନଈ ବନ୍ଧେ ବନ୍ଧେ ବାଁ'ହାତି ଅର୍ଥାତ୍ ପୂର୍ବକୁ ୭ ମାଇଲ ଗଲେ ବନ୍ଧ କୂଳରେ ସେ ଗାଁ, ଉରାଳି ଯିବ, ଢ଼ରିପଡ଼ା ଯିବ, ଖଣ୍ଡାଏତା ଯିବ, ତା'ପରେ ନାଗବାଲି । ସେଠି କାଠଯୋଡ଼ିର ନାଁ ସିକୁଆ ନଈ, ଆଉ ତଳକୁ ସେ ଦେବୀ ନଦୀ । ପ୍ରବଳ ନଈବଢ଼ିରେ ୧୯୩୫ରେ ଖଣ୍ଡାଏତା ବନ୍ଧ ଭାଙ୍ଗିଲା ପରେ ପରେ ସେ ଅଞ୍ଚଳର ଭୂଗୋଳ ବଦଳିଛି, ଖଣ୍ଡାଏତା ଗାଁ ବହୁତ ପଛକୁ ଘୁଞ୍ଚିଯାଇଛି, ବନ୍ଧ ବହୁତ ଉଚ୍ଚ ହୋଇଛି, ସେତେବେଳେ ଘରପାଖ ବାରିରେ ଠିଆହେଲେ ନଈ କଣ୍ଡିଆ ଦିଶୁଥିଲା । ଘରଡିହ ଆଖପାଖ ଗାଁମାନଙ୍କ ଘରଡିହଠୁଁ ବହୁତ ଉଚ୍ଚ ଥିଲା । ଡିହରେ ଥିଲା ପ୍ରକାଣ୍ଡ ଖଞ୍ଜା, ବହୁତ ଘର, ପାଚେରି, ଏବେ ଡିହ ଖାଲି ଖାଲି, ଆମ ଘରର ସଙ୍କେତ କଦଳୀଗଛ, ଖାଲି ବାରି, ବଡ଼ଭାଇ ଗିରିଧାରୀ ସେଠୁ ଉଠିଯାଇ ଦକ୍ଷିଣରେ ଗାଁ ମୁଣ୍ଡରେ ନାଳ କୂଳରେ ଘର କରିଛନ୍ତି, ତାଙ୍କ ପିଲାଏ କଟକରେ ଓଗରପଡ଼ାରେ ତାଙ୍କ ଘରେ ରହନ୍ତି । ତାଙ୍କ ତଳ ଯଦୁନାଥ ଜଗତ୍‌ସିଂହପୁର ପାଖ ଗ୍ରାମେଶ୍ୱର-ଦେଉଳି ବସ୍ତିରେ ଘର କରିଛନ୍ତି । ତାଙ୍କ ତଳ କାହ୍ନୁଚରଣ କଟକ ରଙ୍ଗାବଗିଚାରେ । ମୁଁ ଭୁବନେଶ୍ୱରରେ । ଦାଦା ଜଗବନ୍ଧୁଙ୍କ ପୁଅ ଆର୍ତ୍ତବନ୍ଧୁ କଟକରେ ଓ ମଇଧରପଡ଼ା ପାଖେ ଘର କରିଛି । ଦାଦା ଦିବ୍ୟସିଂହଙ୍କ ନାତି ଗୁରୁପ୍ରସାଦର ଡିହରେ ଘର ଅଛି ସତ, ତା ପରିବାର ଗାଁରେ ନ ଥାନ୍ତି । ବଡ଼ ବାପା ନୀଳମଣିଙ୍କ ନାତି ଦିହେଁ ଗଞ୍ଜାମ ଖଲ୍ଲିକୋଟରେ ଘର କରିଛନ୍ତି । ଗାଁ ଡିହରେ ରହନ୍ତି ଆଉ ଜଣେ ଦାଦି । ତାଙ୍କ ପୁଅ ନାରଣଭାଇ ଓ ତାଙ୍କ ସ୍ତ୍ରୀ, ଆଉ ଜଣେ ବଡ଼ବାପାଙ୍କ ନାତି ବନବିହାରୀ ସେ ବିପତ୍ନୀକ, ତା ପୁଅ କଟକରେ ଥାଏ, ତା ଭାଇ ବ୍ରହ୍ମଚାରୀ ସପରିବାର ଡିହରେ ଥାଏ, ବେଳେ ବେଳେ ଥାଆନ୍ତି ଗୁରୁପ୍ରସାଦର ବୋଉ, ଏତିକି ।

ଖାଲି ଏତିକିରୁ ବୁଝିହେବ । ୫୦ ବର୍ଷ ତଳେ ଗୋଟିଏ ଜମିଦାର ଚାଷୀ ପରିବାରର ଚଳଣି ଅନୁଯାୟୀ ଗାଁ ବସ୍ତି ପରବର୍ତ୍ତୀ ଘଟନା ସୂଅରେ କିପରି ବଦଳି ଯାଇଛି ।

ନଈବନ୍ଧ ଆଡୁ ଦିଶିବ ବହୁତ ତଳେ କିଛି ଅରମା ଭିତରେ ଫାଙ୍କା ଫାଙ୍କା ହୋଇ ଅଳ୍ପ ଚାଳ ଘର କେତୋଟି, ଭଲ ଅବସ୍ଥାରେ ନାହିଁ । କେତେଗୁଡ଼ିଏ ପୁରୁଣା ନଡ଼ିଆଗଛ, ବଙ୍କା, ସିଧା, ଅଳ୍ପଫଳନ୍ତି, ଅଫଳନ୍ତି, ଆଗକାଳର ପରିଚୟ ସେଠୁ ମିଳିବ ନାହିଁ ।

ସେଇଟା ବସ୍ତିର ପିଠିପଟ ।

ପରିଚୟ ମିଳିପାରେ ସାମ୍ନାପଟୁ । ଦକ୍ଷିଣ ଆଡୁ । ଖସି ପଡୁ ପଡୁ ଅଟକି ରହିଥିବା ଉଚ୍ଚ ପାହାଚ ଥାକ ଥାକ ହୋଇ ପିଣ୍ଡାକୁ ଉଠିଛି । ଧାଡ଼ିଏ 'ଧୂଳିଆଘର' ତାର ରୁଅ, ଶେଣି ସବୁ କାଠର, ସେ କାଠର ପ୍ରତ୍ୟେକ ଇଞ୍ଚରେ ଅଦ୍ଭୁତ ଖୋଳେଇ କାରୁକାର୍ଯ୍ୟ । ସେ ଚାଳ ଭାଙ୍ଗି ଭାଙ୍ଗି ଆସୁଛି, କେତେଠି ଭାଙ୍ଗିଲାଣି ।

ପୁରୁଣା ଆଭିଜାତ୍ୟ ।

କାନ୍ଥରେ ସାନ ସାନ 'ଗବାକ୍ଷ' ଝରକା, କାଠର କାରୁକାର୍ଯ୍ୟମୟ, ଗଲାଣି କେବେଠୁଁ ।

ବଦଳି ଯାଇଛି ।

ଲାଗେ ମୁଁ ଗିଫ୍ଟ୍ୟଛି । ଭୁବନେଶ୍ୱରରୁ କଟକ ଗଲାବେଳେ ଗାଁ ବାଟ ହେଲେ ଦଣ୍ଡବତ କରେ ।

ଅତୀତ ଅତିକ୍ରାନ୍ତ ।

ସେତେବେଳକୁ ବି ଅତୀତ ଅତିକ୍ରାନ୍ତ ବହୁ ପରିମାଣରେ, ଯେତେବେଳେ ମୁଁ ଜନ୍ମ ହେଲି । ବାପା ବିରକ୍ତ ହୋଇ ଇସ୍ତଫା ଦେଇ ଆସିଥିଲେ ସୋନପୁରରୁ ତାଙ୍କ ଓଭରସିଅର ଚାକିରିରୁ । ଅନେକ ଜମିଦାରି ଚାଲିଯାଇଥାଏ ମୋ ଜନ୍ମ ହେଲା ଆଗରୁ । ଥାଏ ଖାଲି ତେଲେଙ୍ଗାପେଣ୍ଠ ଜମିଦାରି, ଆଉ ଅଳ୍ପ କେଉଁଠି କେଉଁଠି । ଅଳ୍ପ କିଛି ଜମି ଏଠି ସେଠି । ସବୁ ଇଜ୍‌ମାଇଲି । ତଥାପି ଆପଣା ଆପଣା ଭିତରେ ଅଲେଖା ବୁଝାମଣାରେ ପୂର୍ବରୁ ଚଳି ଆସୁଥିବା ରୀତି ଅନୁସାରେ କେଉଁ ଚକରେ କେଉଁ କିଆରିଟି କାହାର 'ଅଂଶ' । ତାକୁ ସେ ଭୋଗ ଦଖଲ କରିବ । ସେମାନେ ଜମିକୁ ଭାଗ ଲଗାନ୍ତି । ସେଥିରୁ ଯାହା ମିଳେ ତହିଁରେ ବର୍ଷ ଭିତରୁ ପାଞ୍ଚ ଛ'ମାସ ଚଳିବା ବି କଷ୍ଟ, ଅନ୍ୟ ସମୟରେ କିଣିଖିଆ, ତେଣୁ ଟାଣଟୁଣ । ବଡ଼ ଭାଇଙ୍କି ବାଇଶି ବର୍ଷ, ସେ ବିହାରରେ ପାଟନା ସେକ୍ରେଟେରିଏଟ୍‌ରେ ସେତେବେଳେ କିରାନି, ବେଳେ ବେଳେ ମନିଅର୍ଡ଼ର ଆସେ । ଆମ ଗାଁରୁ ଚାରି ମାଇଲ୍ ଦୂର ମହୀଧରପଡ଼ା ମୌଜାର ଅରଡ଼ିଆପଦା ଗାଁରେ ୩ ବର୍ଷ ହେବ ମୋ ଅପା ନିଶାମଣିର ବିଭାଘର ସରିଥାଏ । ସେ ବଡ଼ ଭାଇଙ୍କ ତଳ, ଆମର ଏକମାତ୍ର ଭଉଣୀ । ମୁଁ ଜନ୍ମ ହେବାର ଦେଢ଼ ମାସ ଆଗରୁ ତା ପୁଅ ସୁରେଶ ଜନ୍ମ ହୋଇଥାଏ । ବିନା ରୋଜଗାରରେ ୩/୪ ବର୍ଷ ଝିଅ ବିଭାଘରର ଖର୍ଚ୍ଚ, ତା' ପରେ ସାମାଜିକ ଭାରଥୋର ଆଦିରେ ଖର୍ଚ୍ଚ, ବାପାଙ୍କ ଆର୍ଥିକ ଅବସ୍ଥା ଭଲ ନ ଥାଏ । ବଡ଼ ଭାଇଙ୍କ ତଳେ ଦୁଇବର୍ଷର ପୁଅଟିଏ ଗୋପାଳ, ଅପା ତଳେ

ବର୍ଷକର ପୁଅ ବଂଶୀ ଓ ଆଉ ଯୋଡ଼ିଏ ପୁଅ, ଗୋଟିକ ନାଁ ସତ୍ୟପିର,– ଏହିପରି ଚାରୋଟି ଭାଇ ମୋର ମରିଥିଲେ । ତେଣୁ ତାଙ୍କ ତଳେ ଯଦୁନାଥ, ବୋଉ ତାଙ୍କ ପାଇଁ ଧୂଳି ସାଉଣ୍ଟି ସାଉଣ୍ଟି ମାନସିକ କରିଥିଲା ବୋଲି ତାଙ୍କ ଡାକ ନାଁ 'ଧୂଳ' । ମୋ ଜନ୍ମବେଳକୁ ତାଙ୍କୁ ଦଶବର୍ଷ ଚାଲିଥାଏ । ଠିକ୍ ତାଙ୍କ ତଳେ ଭାଇ କାହ୍ନୁଚରଣ, ସେତେବେଳକୁ ତାଙ୍କୁ ଆଠ ବର୍ଷ ପୂରିବା ଉପରେ । ଜନ୍ମାଷ୍ଟମୀ ଦିନ ସେ ଜନ୍ମ, ସୋନପୁରରେ ବାପା ବୋଉ ଯେଉଁ ବସାରେ ଥାନ୍ତି ବାହାର ପିଣ୍ଡାରେ ଧୁନି ଜାଳି ବସିଥାନ୍ତି ବାପାଙ୍କ ବ୍ରହ୍ମଜ୍ଞାନୀ ଗୁରୁଦେବ, ସିଦ୍ଧପୁରୁଷ । ହଠାତ୍ ସେ ଡାକିଲେ "ଆରେ, କହ୍ନା ଜନ୍ମ ହେଲାରେ, ଯାଅ ଭିତରେ ଦେଖ" । ସତକୁ ସତ । ସେମାନେ ନିଶ୍ଚୟ ବହୁ ଆକାଙ୍‌କ୍ଷିତ ସନ୍ତାନ ।

କିନ୍ତୁ ମୁଁ– "ସାମନ୍ତ ଶ୍ରୀ ସୂର୍ଯ୍ୟମଣି ମହାନ୍ତିଙ୍କ ସ୍ୱପତ୍ନୀ ଉଦରେ ନବମ ଗର୍ଭକୁ କୁଳୋଦିତ ପୁତ୍ର ଜନ୍ମ" । –ବାପାଙ୍କୁ ପଚାଶ ପୂରି ଆସୁଥାଏ, ଏକଦା ପହିଲ୍‌ମାନ୍ ଦେହ ପରି ଚେହେରା ସରୁ ଓ ଦୁର୍ବଳ ହୋଇ ଆସୁଥାଏ, ସେ ବ୍ରହ୍ମଜ୍ଞାନ ସାଧନା ପଥରେ ଅତି ଚଞ୍ଚଳ ଅଗ୍ରସର ହେଉଥାନ୍ତି, ଯୋଗାସନରେ ବସୁଥାନ୍ତି ବହୁତ ବହୁତ ଘଣ୍ଟା, ବୋଉକୁ ଚୌରାଳିଶି, ସେ ଆଠଟି ସନ୍ତାନଙ୍କୁ ସଂସାରକୁ ଆଣି ସାରିଥାଏ, ଏକଦା ଐଶ୍ୱର୍ଯ୍ୟ ଭୋଗ କରୁଥିବା ପରିବାରଟି ଗରିବ ହୋଇଥାଏ, ପୁଣି ସେ ସଂସାରର ଜଞ୍ଜାଳ ବଢ଼ାଇ ମୁଁ ଜନ୍ମ ହୁଏ ବୋଲି କେହି ଠାକୁରଙ୍କୁ ଗୁହାରି କରିଥିବେ ମତେ ଲାଗୁ ନାହିଁ । କିନ୍ତୁ ସେମାନେ ମତେ ଜୀବନ ଦେଇ ଭଲ ପାଉଥିଲେ, ଭାଉଜମାନେ ଥଟ୍ଟାରେ କହନ୍ତି "କୋଡ଼ପୋଛା ପୁଅ ପରା ।"

ଶୁଣିଥିଲା ନଈବାଲିଆଡୁ ଝାଞ୍ଜିର ବତାସବୁହା ବୈଶାଖ ମାସର ନିର୍ଜଳା ନିଷ୍ଫଳା ଏକାଦଶୀ, ତହିଁରେ କୃଷ୍ଣପକ୍ଷ, କଜାକିଟିକିଟି ଅନ୍ଧାର ରାତି । ଡକାଏତ୍ ମାତିଥାନ୍ତି, ଗାଁ ଲୋକଙ୍କୁ ଡରେଇବାକୁ ନଈକଣ୍ଠିଆ ଆଡୁ ଟେକାମାଡ଼ ବୃଷ୍ଟି କରୁଥାନ୍ତି ଅନ୍ଧାରେ ଅନ୍ଧାରେ, ଆମ ଘରଠୁଁ ନଈଆଡ଼କୁ ଶହେଗଜ ନ ହେଉଣୁ କଣ୍ଠିଆରେ ଗୋଟାଏ ପ୍ରକାଣ୍ଡ ଲୋଟଣି କୋଚିଳାଗଛ ଏକ ଏକର ଜମି ମାଡ଼ି ବସିଛି, ତାହାରି ଅନ୍ଧାର ଭିତରେ ସେମାନଙ୍କ 'ଘାଟି' । ଗାଁ କୁକୁରମାନେ, ସେହି ଚଉବନ ବର୍ଷ ତଳର ଭାଲୁଆ, ଟିପୁ, କାଳିଆ, ବୁଧିଆ ଆଦି ଓଳିତଳେ ଆପଣା ଆପଣା ନିରାପତ୍ତା ଜଗି ସମବେତ ସ୍ୱରସଂଗୀତ ଅବ୍ୟାହତ ରଖିଥିଲେ । ହଠାତ୍ ସବୁ ବିଲୁଆ ପଦ୍‌ରିକିଆ ବୋବେଇଲେ, ବନ୍ଧ ସେପାଖରୁ ନଈଆଡୁ, ମଶାଣି ସେହି ପାଖରେ, ପୂର୍ବରୁ, ପଶ୍ଚିମରୁ, ଦକ୍ଷିଣରୁ, କୁକୁରମାନେ ଧରିଲେ

'ଭୋ' ଗୀତ, ଯେପରିକି ବେଦଧ୍ୱନି ଓ କଲମାଧ୍ୱନି ଓ ଗିର୍ଜାଧ୍ୱନି ସବୁ ଧ୍ୱନି ଏକାଠି ହେଲା ।

ମୁହୂର୍ତ୍ତ ଆସିଗଲା ।

ମୁଁ ଜନ୍ମ ହେଲି ।

୧୯୧୪ ଅପ୍ରେଲ୍ ୨୦ । ସମଗ୍ର ପୃଥିବୀର ଇତିହାସରେ ଗୁରୁତ୍ୱପୂର୍ଣ୍ଣ ସମୟ ଆସିଗଲା, କେବେ ନାହିଁ ନ ହୋଇଥିବା ସମଗ୍ର ପୃଥିବୀବ୍ୟାପୀ ପ୍ରଥମ ମହାଯୁଦ୍ଧର ବେଳ । ସେହି ଯେଉଁଥିରେ ଏକା ଯୁଦ୍ଧଭୂଇଁରେ ଶୋଇଲେ ପ୍ରାୟ କୋଟିଏ ମୁର୍ଦ୍ଦାର, କେତେ ଖଣ୍ଡିଆ ଦଣ୍ଡିଆ ହେଲେ, କେତେ ଛଟପଟ ହୋଇ ମଲେ ଯୁଦ୍ଧର ତାଉ ବାଜି ତାର ଲେଖା ନାହିଁ । କେତେ କ'ଣ ଧ୍ୱଂସ ହେଲା– ପଦାର୍ଥ କି ମଣିଷର ବିଶ୍ୱାସ, ତା'ର ଦେଖିବା ଭାବିବା ଚଳିବାର ଯୁଗ ଯୁଗର ବାଗ ତା'ର କଳନା ନାହିଁ, ଆସି ପହଞ୍ଚିଗଲା ବେଗ, ଉଦ୍‌ବେଗ, ବିପ୍ଳବ, ପରିବର୍ତ୍ତନ ଓ ନୂଆ ନୂଆ ସୃଷ୍ଟିର ନୂଆ ଯୁଗ ।

ମୁଁ ଜନ୍ମ ହେବାର ସତଷଠି ଦିନ ପରେ ସେ ଯୁଗର ଆବାହନୀ ଶୁଭିଲା ୟୁରୋପରେ ସାରା ଜେଭେ ସହରରେ ଜୁନ୍ ୨୮ରେ ବୋମା ଫୁଟିବା ଶବ୍ଦରେ ଯେତେବେଳେ ପ୍ରବଳ ପରାକ୍ରମୀ ଜର୍ମାନୀର ମିତ୍ରରାଜ୍ୟ ଯେ ଅଷ୍ଟ୍ରିୟା-ହଙ୍ଗେରୀ ତାର ଭାବୀସମ୍ରାଟ୍ ଆର୍ଚିଡିଉକ୍ ଫ୍ରାନ୍‌ଜ ଫର୍ଡ଼ିନାଣ୍ଡ ଓ ତାଙ୍କ ସ୍ତ୍ରୀଙ୍କୁ ଦେଶପ୍ରେମୀ ବସ୍ନିଆ ରାଜ୍ୟର ଗୁପ୍ତ ବିପ୍ଳବୀମାନେ ସର୍ବିଆ ରାଜ୍ୟର ପ୍ରଚ୍ଛନ୍ନ ସହାୟତାରେ ହତ୍ୟା କଲେ । ମହାଯୁଦ୍ଧ ଆରମ୍ଭ ହେଲା ୧୯୧୪ ଜୁଲାଇ ୨୮ରେ ଯେତେବେଳେ ଅଷ୍ଟ୍ରିଆ ଦେଶ ସର୍ବିଆ ବିରୋଧରେ ସୈନ୍ୟ ଚଳାଇଲା । ଜୁଲାଇ ୨୯ରେ ରୁଷ୍ ଦେଶ ସର୍ବିଆକୁ ସାହାଯ୍ୟ କରିବାକୁ ଥାଟ ଚଳାଇଲା । ଅଗଷ୍ଟ ପହିଲାରେ ଜର୍ମାନୀ ରୁଷ୍ ବିରୋଧରେ ସୈନ୍ୟ ଚଳାଇଲା ଓ ଫ୍ରାନ୍‌ସକୁ ଧମକାଇବାରୁ ଫ୍ରାନ୍‌ସ ସୈନ୍ୟ ଚଳାଇଲା । ଅଗଷ୍ଟ ୩ରେ ଫ୍ରାନ୍‌ସ ବିରୋଧରେ ଜର୍ମାନୀ ଯୁଦ୍ଧ ଘୋଷଣା କଲା ଓ ୪ ତାରିଖରେ ବେଲ୍‌ଜିୟମ୍‌ରେ ପଶିଲା । ସଙ୍ଗେ ସଙ୍ଗେ ପୃଥିବୀବ୍ୟାପୀ ସମଗ୍ର ବ୍ରିଟିଶ୍ ସାମ୍ରାଜ୍ୟ ସମେତ ବ୍ରିଟେନ୍ ଜର୍ମାନୀ ବିରୋଧରେ ଯୁଦ୍ଧ ଘୋଷଣା କଲା । ଏ ପକ୍ଷ କି ସେ ପକ୍ଷର ସହାୟକ ହୋଇ ସେହି ମହାଯୁଦ୍ଧରେ ପଶିଲେ ପୃଥିବୀର ସବୁ ଦେଶ । ଯୁଦ୍ଧର ନିଆଁ ହୁ ହୁ ଜଳିଲା, ଆକାଶରେ, ପୃଥିବୀର ସ୍ଥଳଭାଗରେ ସବୁଠି । ନିଭୁ ନିଭୁ ଲାଗିଗଲା ପାଞ୍ଚ ବର୍ଷ । ୧୯୧୮ ନଭେମ୍ବର ୧୧ ତାରିଖରେ ସନ୍ଧି ହେଲା । ସତେ ଯେମିତି ୧୯୩୯ରେ ଆହୁରି ଥରେ ଆହୁରି ଭୟଙ୍କର ଦ୍ୱିତୀୟ ମହାଯୁଦ୍ଧ ଲାଗିବ ବୋଲି ।

ପୃଥିବୀବ୍ୟାପୀ ଗୋଟାଏ ମହାଯୁଦ୍ଧ ବେଳେ ମୋର ଜନ୍ମ । ଦ୍ୱିତୀୟ ମହାଯୁଦ୍ଧ ବେଳେ ମୁଁ ସଂସାରରେ ପଶିଲି । ଯେଉଁ ଅବଧାନେ ମୋର କୋଷ୍ଠୀ ତିଆରି କଲେ ସେ କ'ଣ ଦେଖିଥିଲେ ଯେ ସଙ୍କେତ ? ସେ କ'ଣ ଜାଣିଥିଲେ ଯେ ଏ 'ଜାତକ'ର ଗୋଟିଏ ଗୋଟିଏ ବର୍ଷରେ ପୃଥିବୀରେ ଯେତେ ଯେତେ ପରିବର୍ତ୍ତନ ଅତୀତର ଯୁଗ ଗୋଟି ଗୋଟିକେ ବି ତା କ୍ୱଚିତ୍ ଦେଖାଯାଇଛି ?

କେବେ ପଞ୍ଜାବର ରଣଜିତ୍ ସିଂ କହିଥିଲେ "ସବ୍ ଲାଲ୍ ହୋ ଜାଏଗା", ସେ ଲାଲ୍ ଥିଲା ମାନଚିତ୍ରରେ ପୃଥିବୀବ୍ୟାପୀ ବ୍ରିଟିଶ୍ ସାମ୍ରାଜ୍ୟର ସଙ୍କେତ । ଆସିଲା ନୂଆ ବେଳ, 'ଲାଲ୍'ର ଅର୍ଥ ଓଲଟିଗଲା, ମୁଁ ଜନ୍ମ ହେବାର ପ୍ରାୟ ଦେଢ଼ବର୍ଷ ପରେ, ନଭେମ୍ବର ୭, ୧୯୧୭, ପ୍ରଥମ ମହାଯୁଦ୍ଧ ଚାଲୁ ରହିଥିବା ଭିତରେ, ଏ ପୃଥିବୀରେ ପ୍ରତିଷ୍ଠିତ ହେଲା ପ୍ରଥମ 'ଲାଲ୍' ସରକାର । ରୁଷ୍ ଦେଶରେ କେରେନ୍‌ସିଙ୍କ ଅଧ୍ୟକ୍ଷତାରେ ଚାଲୁଥିବା ସରକାରର ପତନ ହୋଇ ଲେନିନ୍‌ଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହେଲା ବଲ୍‌ସେଭିକ୍ ସମାଜବାଦୀ ସରକାର, ପୃଥିବୀର ଅନ୍ଦିସନ୍ଧିରେ ନୂଆ ଡାକ ଶୁଭିଲା—

"ଜଣ ନୁହେଁ, ଗଣ, ଜ-ନ-ତା, ଦେଶର ମାଲିକ ସିଏ", ଶୁଭିଲା "ଚାଷୀ ଭାଇ", "ଶ୍ରମିକ ଭାଇ" ।

ଆଉ ପ୍ରାଣ ଅସ୍ଥିର କଲା ନୂଆ ଉଦ୍‌ବୋଧନ, ନୂଆ ମନ୍ତ୍ର ।

"ଉଠ୍ ଜାଗ୍ ଭୂଖ୍ ବନ୍ଦୀ
ଅବ୍ ଖିଁଚୋ ଲାଲ୍ ତଲ୍‌ୱାର୍
କବ୍‌ତକ୍ ସହୋଗେ ଭାଇ
ଜାଲିମ୍ କେ ଯେ ଅତ୍ୟାଚାର !"

ସେହି ଲାଲ୍ ଡକରାର ଘୋ ଘା ଭିତରେ କେତେଠି କେତେ ରକ୍ତନଦୀ ବୋହିଲା, କେତେଠି କେତେ ସ୍ୱପ୍ନ ତେଜି ଉଠୁ ଉଠୁ ମଉଳିଗଲା, କେତେ ନୂଆ ଫୁଲ ଫୁଟିଲା, କେତେ ନୂଆ ହାବେଳି ଛୁଟିଲା, ଦୁନିଆଁର ଛବି ବଦଳିଗଲା ।

'ନାଲି' ଆସିଗଲା ଯୁଗ ସ୍ୱୀକୃତି ପାଇ ରହିବାକୁ, ନାଲି ରୁଷ୍ ପଛକୁ ୟୁରୋପ୍‌ରେ ନାନା ସ୍ଥାନରେ ନାଲି ଦେଶ, ନାନା ପ୍ରକାରର ନାଲି ପନ୍ଥେ,— ନାଲି ଚୀନ୍ ।

ଭାରତରେ ବିପୁଳ ପରିବର୍ତ୍ତନ । ମୋ ଜନ୍ମ ବେଳେ— ଧାରଣା ଚଳୁଥିଲା "ବ୍ରିଟିଶ୍ ସାମ୍ରାଜ୍ୟରେ ସୂର୍ଯ୍ୟ କେବେ ଅସ୍ତ ହୁଏ ନାହିଁ । ଇଂରେଜ୍ ଏ

ପୃଥିବୀରେ ସବୁଠୁ ବଡ଼ ଶକ୍ତି ।'' ପୁଣି ମୋ'ରି ଦେଖନ୍ତରେ ବ୍ରିଟିଶ୍ ଶକ୍ତି ମ୍ଳାନ ହୋଇଗଲା, ବଡ଼ ଶକ୍ତି ହେଲେ ଆମେରିକା, ରୁଷ୍, ତା' ପଛକୁ କେତେ ନବାଗତ !

ମୁଁ ପାଞ୍ଚ ବର୍ଷର ହୋଇଥାଏଁ, ୧୯୧୯ରେ ଜାଲିଆନୱାଲାବାଗ୍ ଅତ୍ୟାଚାର, ୧୯୨୦ରେ ମହାତ୍ମାଜୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ଆସିଲା ମହାଭାରତୀୟ ମୁକ୍ତି ସଂଗ୍ରାମର ବେଳ, ଦେଶରେ ନାହିଁ ନ ଥିବା ଆଶା ଉତ୍ସାହ ଉନ୍ମାଦନା, ୧୯୨୧ । ମହାତ୍ମା ଗାନ୍ଧୀଙ୍କ ମହାନ୍ ବ୍ୟକ୍ତିତ୍ୱ ଦେଶର ନୂଆ ସ୍ୱପ୍ନର ପ୍ରତୀକ ହେଲା । କେତେ ବରେଣ୍ୟ ନେତା ଠିଆ ହେଲେ । ମାଳିକା ଗାଇଲେ । ଚାହୁଁ ଚାହୁଁ ବିପ୍ଳବର ନୂଆ ନୂଆ ପନ୍ଥା ଆରମ୍ଭ ହେଲା, ନୂଆ ସଂଘର୍ଷ ନୂଆ ସମସ୍ୟା ବି ଆସିଲା । ପୁଣି ଘମାଘୋଟ ଦ୍ୱିତୀୟ ମହାଯୁଦ୍ଧ, ୧୯୩୯ରୁ ୧୯୪୬ । ତା'ପରେ ନୂଆ ଯୁଗ, ଭାରତ ପାକିସ୍ତାନ୍ ଭାଗ ଭାଗ, ଅଗଷ୍ଟ ୧୫, ୧୯୪୭ରେ ଭାରତର ସ୍ୱାଧୀନତା, ଇଂରେଜ୍ ଗଲେ । ତା'ପରେ କେଡ଼େ ଶୀଘ୍ର ଗାନ୍ଧିନୀତି ଗାନ୍ଧି ମାର୍ଗ ପୁରାଣ ହୋଇ ରହିଗଲା । ଭିନ୍ନ ମାର୍ଗରେ ଉନ୍ନତି ଚେଷ୍ଟା କରି ଚାଲିଲା କଂଗ୍ରେସ୍ ଶାସନ ଅମଳ । ତା' ଭିତରେ ବି ବେଳକୁ ବେଳ କେତେ ପରିବର୍ତ୍ତନ । କେତେ ବ୍ୟକ୍ତିତ୍ୱ ଅଚିହ୍ନା ହୋଇ ବଦଳିଗଲା, ବଦଳିଗଲା କେତେ ଶବ୍ଦର ସଂଜ୍ଞା, ତା' ସଙ୍ଗେ ସଙ୍ଗେ ଦେଶ ଗୋଟାକ । ୧୯୬୭ ଆସିଲା, ଭାରତର ଅଧିକାଂଶ ରାଜ୍ୟରେ କଂଗ୍ରେସ୍ ଶାସନ କ୍ଷମତାରୁ ଚାଲିଗଲା । କେତେ ନୂଆ ଦଳ କେତେ ମିଶାମିଶି ଦଳ ଶାସନ ଗଢ଼ିଲେ । ଗାଁର ଗଢ଼ଣ, ଲୋକଙ୍କ ଧରଣ, ଆଚାର ରୀତିନୀତିରେ ବଳି ବଳି ପରିବର୍ତ୍ତନ ଚାଲିଲା ଓ ଚାଲିଛି । ଦେଶର ଚେହେରା ଓ ମନରେ ମୂଲ୍ୟବୋଧ ଓ ରୁଚିରେ ଅଦ୍ଭୁତ ପରିବର୍ତ୍ତନ ଘଟି ଚାଲିଛି, ଶାସନ ସମାଜ । ପରିବାର, ବ୍ୟକ୍ତି ବଦଳି ବଦଳି କେଉଁଆଡ଼େ ମୋଡ଼ିହିଁଛନ୍ତି ଧାରଣା କରି ହେଉନାହିଁ, ସତେ ଯେମିତି ଦିନକୁଦିନ ମାସକୁମାସ ବର୍ଷକୁବର୍ଷ ଭିନ୍ନେ ସବୁ । ଭାଷା, ସାହିତ୍ୟ, ଅନ୍ୟାନ୍ୟ କଳା, ଧର୍ମବିଶ୍ୱାସ, ଅନ୍ୟାନ୍ୟ ବିଶ୍ୱାସ ଓ ସଂସ୍କାର, ଦର୍ଶନ, ସବୁଠି ଯେ ବାରମ୍ବାର ପରିବର୍ତ୍ତନର ଛାପା, କାଲିକା ଛାଞ୍ଚ ଆଜିକି ନାହିଁ । ସବୁ ମୁଣ୍ଡଘୂରା ପରିବର୍ତ୍ତନ ଆଖିଦୁରୁଶିଆ ହୋଇ ଘଟିଲାଗିଛି ସେହି ୧୯୧୪ରୁ ଏଯାକେ, ଆଗରୁ ଏଭଳି କେବେ ଘଟିନାହିଁ । ଜଣାନାହିଁ କ'ଣ ରହିବ କ'ଣ ଯିବ, ସମୟ ହିଁ କହିପାରିବ ।

ରାସ୍ତା, କୋଠା, ମଟରଗାଡ଼ି ଆଦିର ଅସମ୍ଭବ ପ୍ରକାରେ ବଢ଼ତି ଘଟିଛି,

ଶିଳ୍ପ ଓ ଶିଳ୍ପାଞ୍ଚଳ ବଢ଼ିଛି, ସହରମାନଙ୍କ ସଂଖ୍ୟା ଓ ଆକାର ବଢ଼ି ବଢ଼ି ଚାଲିଛି, ନିଦୁଆ ନିଦୁଆ ଯୁଗ ଯୁଗର ଏକାଠାଆକେ ରହି ତୁନିତାନି ଜୀବନ ନେବା କୃଷିକାଳୀ ସମାଜର ଯୁଗ ଯୁଗର ଚିହ୍ନା ସ୍ୱଭାବ ବିଚାର ଓ ଆଚାର ପରିବର୍ତ୍ତେ ବାରି ହେଉଛି ସ୍ଥାନେ ସ୍ଥାନେ ଶିଳ୍ପ ଉପରେ ନିର୍ଭର କରୁଥିବା କଳକାରଖାନା, ଆମଦାନି, ଗଡ଼େଇ, କାରବାର ସମେତ ତରବର ଅସ୍ଥିର ବେଗ ସଂକୁଳିତ ନୂଆ ପ୍ରକାର ଚଳଣି, ନୂଆ ଅଭାବ, ନୂଆ ପ୍ରକାର ନେତୃତ୍ୱ ପରିବର୍ତ୍ତନଶୀଳ ରାଜନୀତିରେ ବ୍ୟସ୍ତ ରହୁଥିବା ସାଧାରଣ ମଣିଷ । ଆଉ ନାହିଁ ଗୁରୁଜନଙ୍କ ପ୍ରତି ପୁରୁଣା ଯୁଗର ସମ୍ଭ୍ରମ ଓ ଦବକ, ପୂଜ୍ୟ ପୂଜକଙ୍କ ପୁରୁଣା ସମ୍ପର୍କ, ତୁଣ୍ଡ ମୁଣ୍ଡ ନ କରି ଗୋଟାଏ ନିର୍ଦ୍ଧାରିତ ବ୍ୟବସ୍ଥା ମାନିନେଇ ଚଳିବାର ବାଗ, ଆଇନ୍‌କୁ ଡର, ଆଗକାଳର ନୀତିନିୟମକୁ ସମ୍ମାନ, ତା ପରିବର୍ତ୍ତେ ସମସ୍ତେ ଆପଣା ଆପଣା ଅଭିଯୋଗ ଓ ଦାବି ପ୍ରକାଶ କରିବାରେ ମୁଖର ଓ ସକ୍ରିୟ । ସମସ୍ତେ ଆପଣା ଆପଣା ଅବସ୍ଥା ବଦଳାଇବାକୁ ନିଜ ନିଜ ବାଗରେ ସକ୍ରିୟ, ବିକ୍ଷୋଭ କଥାକଥାକେ, ଜନସଂଖ୍ୟା ବଢ଼ିଚାଲିଛି ଅତି ଚଞ୍ଚଳ, ଆର୍ଥିକ ଅଭାବ ବଢ଼ିଛି, ଅଶାନ୍ତି ବଢ଼ିଛି । ଯେକୌଣସି ଉପାୟରେ ନିଜର ଧନ ବଢ଼ାଇବାକୁ ଉଦ୍ୟମ ଅନେକଙ୍କୁ ଆକୃଷ୍ଟ କରେ । ଜୀବନର ନାନା କ୍ଷେତ୍ରରେ ତା'ର ବିଚିତ୍ର ପରିଣତି ଦେଖାଦେଉଛି । ନାନାମତେ ବଢ଼ିଚାଲିଛି ନିଜର ଧନ ପ୍ରତିପତ୍ତି କ୍ଷମତା ବଢ଼ାଇବାକୁ ନୂଆ ନୂଆ କୌଶଳ, ତା ଭିତରେ ସାମୟିକ ମେଣ୍ଟ ଗଢ଼ା, ଦଳାଦଳି, ସୁବିଧାବାଦ, ଦଳଗତ ରାଜନୀତି, ଫଟାଫଟି, କଟାକଟି ପାଇଁ ନାନା ବାଟ । ନାନା ଫିକର, ଦଶଜଣଙ୍କ ଆଦର୍ଶ ସେ ଯେ ଏ କାର୍ଯ୍ୟରେ ଯେତେବେଳେ ଜିତୁଥାଏ । ଦୁର୍ନୀତି, ମିଛ, ଶଠତା, ସ୍ୱାର୍ଥପରତା, ନିଷ୍ଠୁରତା ବ୍ୟାପୀ ଯାଉଛି ତଳୁ ଉପରଯାକେ, ଅନ୍ଧିସନ୍ଧି ଭିତରକୁ, ସମସ୍ତେ ହାଉଯାଉ, ବାରମ୍ବାର ଯେତେ ଆଶା ଯେତେ ସ୍ୱପ୍ନ ତେଜିଥିଲା ତାଠୁଁ ବଳି ବାରମ୍ବାର ଆସୁଛି ନିରାଶା ।

ପଚାଶ ବର୍ଷ ତଳେ ଏଠି ଅନିଶ୍ଚିତତାର ଯେଉଁ ଧାରଣା ଲୋକଙ୍କ ମନରେ ଥିଲା ତା'ର ଭିତ୍ତି ଥିଲା ସ୍ୱାଭାବିକ ମୃତ୍ୟୁର ଚେତନା, —ପାଣିଫୋଟକା ପରି ମଣିଷ ଜୀବନ, କିଏ କେତେବେଳେ କେଉଁ ରୋଗରେ କାଳେ ମରିଯିବ, ନତୁବା କେଉଁ ଅଜଣା ଦୈବଦୁର୍ବିପାକ ଆସିବ, ବଢ଼ି, ମରୁଡ଼ି, ଘରପୋଡ଼ି, ମଡ଼କ । ଭାଗ୍ୟବାଦ ସଙ୍ଗେ ସେ ଧାରଣା ଖପିଯାଉଥିଲା, ଆଶଙ୍କା ଆତଙ୍କ ଉପୁଜାଉ ନ ଥିଲା,—ଆସିବ ଆସୁ ସେ ଯେତେବେଳେ । ଏବର ମଣିଷ

ମନରେ ଅନିଶ୍ଚିତତାର ଧାରଣା କେବଳ ସେତିକି ଯୋଗୁଁ ନୁହେଁ, ତା'ର କାରଣମାନଙ୍କ ଭିତରେ ବେଶୀ ଅଂଶ ମଣିଷ ହାତତିଆରି । କେତେବେଳେ କେଉଁଠି ସଡ଼କ ବନ୍ଦ ହୋଇପାରେ, ରେଳ ବନ୍ଦ ହୋଇପାରେ, କେତେବେଳେ ଘୋଟିପାରେ ଜନବିକ୍ଷୋଭ, ହାଣକାଟ, ସଡ଼କରେ ଅପମୃତ୍ୟୁ, ମଣିଷର କପାଳରେ କ'ଣ କେତେବେଳେ ଘଟିବ ଜଣା ନାହିଁ । ଦେଶର ଆଶଙ୍କା ଯୁଦ୍ଧକୁ, କେତେବେଳେ କେଉଁ ଶତ୍ରୁ ଦେଶ ଆକ୍ରମଣ କରିବ ଜଣା ନାହିଁ, ଜଣା ନାହିଁ କେତେବେଳେ ଘୋଟିଯିବ ମହାପ୍ରଳୟଙ୍କର ପୃଥିବୀବ୍ୟାପୀ ତୃତୀୟ ମହାଯୁଦ୍ଧ । ଆଣବିକ ବୋମା ମାଡ଼ରେ ମଣିଷ ଜାତି ନିଶ୍ଚିହ୍ନ ହୋଇପାରେ ।

ମନୁ ମାନ୍ଧାତା ପଚାଶ ବର୍ଷର ତଳର ଦୁନିଆଁକୁ ଚିହ୍ନିପାରିଥାନ୍ତେ, କିନ୍ତୁ ଏ ଦୁନିଆଁ ତାଙ୍କୁ ଅଚିହ୍ନା ଦିଶିବ, ଲାଗିବ ଯେ ଆଉ କେଉଁ ଉପଗ୍ରହ ।

ଯେ ପଚାଶ ବର୍ଷର ପରିବର୍ତ୍ତନ ଯୁଗ ଯୁଗର ପରିବର୍ତ୍ତନ । ବିଜ୍ଞାନର ଆଶ୍ଚର୍ଯ୍ୟ ଅଗ୍ରଗତି ଘଟିଛି, ମଣିଷ ଚନ୍ଦ୍ରଗ୍ରହକୁ ଯାନ ପଠାଇ ପାରୁଛି, ଆକାଶ ସେପାରି କେତେ ଅକଳନ ଦୂରତା ଭିତରେ ମହାଶୂନ୍ୟରେ ବୁଲିପାରୁଛି, ଏଭଳି ଶକ୍ତିଶାଳୀ ମାରଣାସ୍ତ୍ର ଗଢ଼ିପାରିଛି ଯାହା ଆଗରେ ଇନ୍ଦ୍ରଙ୍କ ବଜ୍ର ନିଷ୍ପ୍ରଭ, ଶକ୍ତିହୀନ, ସେ ଭୂଗୋଳ ବଦଳାଇ ଦେଇପାରୁଛି, ମରୁଭୂମିକୁ ଶସ୍ୟଶ୍ୟାମଳା କରିପାରୁଛି, ପାହାଡ଼କୁ ସମତଳ କରିପାରୁଛି, ପ୍ରବଳ ଶକ୍ତିଶାଳୀ ନଈକୁ ବାନ୍ଧି ନିଜ କାମରେ ଲଗାଇ ପାରୁଛି, ଆଶ୍ଚର୍ଯ୍ୟ ତା'ର କାର୍ଯ୍ୟକାରୀ ଶକ୍ତିର କରାମତି । ଏଡ଼େ ସହଜ ଉପାୟରେ ଏତେ ଚଞ୍ଚଳ ଗୋଟାଏ ଦେଶରୁ ଅନ୍ୟ ଦେଶକୁ ଯାଇ ହେଉଛି ଯେ ପୃଥିବୀରେ କେଉଁଠି କି ପରିବର୍ତ୍ତନ ହେଲେ ସମଗ୍ର ପୃଥିବୀରେ ସମସ୍ତେ ତା'ର ପ୍ରଭାବ ଅନୁଭବ କରୁଛନ୍ତି, ପୃଥିବୀ ସତେ କି ସାନ ହୋଇଯାଇଛି, ମନକଲେ ଚେଷ୍ଟା କଲେ ସମସ୍ତେ ସବୁଠିଁ, ଦୂରତା ଆଉ ଦୂରତା ହିଁ ନୁହେଁ । ଲୋକଙ୍କ ବୃତ୍ତି ତାଙ୍କୁ ଘରଠୁଁ ବହୁତ ଦୂରକୁ ଦୂରକୁ ନେଇଯାଉଛି, ସେଥିପାଇଁ କାହାରି କ୍ଷୋଭ ନାହିଁ ।

ଗାଁଗହଳିରେ କେଉଁଠି କେଉଁଠି ଆଖିରେ ପଡୁଛି ନାଳ, ବିଜୁଳି ଖୁଣ୍ଟ, ଜିପ୍ ଗାଡ଼ି, କାହା ଘରେ ବାଜୁଛି ଟ୍ରାନ୍‌ଜିସ୍‌ଟର, ଗଉଡ଼ ସାଇକେଲ ଚଢ଼ି ସହରକୁ ଦୁଧ ନେଇ ଯାଉଛନ୍ତି, ଚାଷୀ କ୍ଷେତକୁ ଯାଉଛି କେଉଁଠି ଟର୍ଚ୍ଚ ଧରି । ବିଧବା ଏକାଦଶୀ ପାଳି ସୁଦ୍ଧା ପରମ ଆଗ୍ରହରେ ହାଡ଼ଗୁଣ୍ଡ ସାରର ବସ୍ତା ଭଣ୍ଡାର ଘରେ ସାଇତି ରଖୁଛି ଆଳୁ କ୍ଷେତରେ ଦେବ ବୋଲି, ଉଚ୍ଚ ଜାତି ଲୋକର ଚଉରା ଉପରେ ଚଢ଼ି ଗଞ୍ଜା କୁକୁଡ଼ା ଡାକୁଛି, ସେ କୁକୁଡ଼ା

ରଖୁଛି, ଡିମ୍ବ ଖାଏ ମାଂସ ଖାଏ । ନାନା ଜାତି, ନାନା ଧର୍ମ, ନାନା ଭାଷାର ଲୋକଙ୍କ ଭିତରେ ବିବାହ, ନିଜ ନିଜ ରାଜିରେ ବିବାହ, –ଅନେକ ଘଟୁଛି, ଜାତିପ୍ରଥା ଭାଙ୍ଗି ଆସୁଛି । ଝିଅମାନେ ପୁଅମାନଙ୍କ ପରି ପଦାରେ ସବୁ ପାଠ ପଢୁଛନ୍ତି ସବୁ ବୃତ୍ତି କରୁଛନ୍ତି । ଆଉ ଉଦୁଆଳ ପ୍ରଥା ନାହିଁ । ଜମିଦାରୀ ଉଠିଯାଇଛି, ରାଜାଙ୍କ ରାଜୁତି ଉଠିଯାଇଛି, ବେଠି ବେଗାଡ଼ି ବନ୍ଦ, ଛୁଆଁ ଅଛୁଆଁ ବାରିଲେ ଆଇନ୍ ଅନୁସାରେ ଦଣ୍ଡ ହେବ, ମୋଚି, ହାଡ଼ି, ପାଣ, ବାଉରି, କଣ୍ଡରା ବି ଶାସନ କ୍ଷେତ୍ରରେ ଉଚ୍ଚତମ କ୍ଷମତାର ଅଧିକାରୀ ହୋଇ ପାରୁଛନ୍ତି । ସରକାର ଦେଶର ସାଧାରଣ ଜନତାଙ୍କ ବହୁମତରେ ହିଁ ଗଢ଼ା ହୁଏ କି ଭାଙ୍ଗେ, ସେହିମାନେ ହିଁ ଦେଶର ମାଲିକ । ଭାରତ ହୋଇଛି ଧର୍ମନିରପେକ୍ଷ ରାଷ୍ଟ୍ର, ଭାରତୀୟ ସମ୍ବିଧାନ, ଜାତି, ଧର୍ମ, ଶ୍ରେଣୀ ନିର୍ବିଶେଷରେ ସମସ୍ତଙ୍କୁ ଦେଇଛି ନାନା ବିଷୟରେ ମୌଳିକ ଅଧିକାର, ସମ୍ବିଧାନର ଆଖିରେ କେହି ସାନ ନୁହେଁ କେହି ବଡ଼ ନୁହେଁ । ସାମନ୍ତବାଦୀ ଯୁଗର ଅବସାନ ଘଟିଛି, ନିଜର ମନ ନ ହେଲେ କେହି କାହାକୁ ଖଟିବାକୁ ବାଧ ନୁହେଁ, କାହାରି ଅଧିକାର ନାହିଁ ଅନ୍ୟ କାହାକୁ ଦଣ୍ଡିବ । ଯୁଗେ ଯୁଗେ ଯାହାଙ୍କୁ ମଳିମୁଣ୍ଡିଆ କୁହାଯାଉଥିଲା ସେମାନେ ଆଉ ମଳିମୁଣ୍ଡିଆ ନୁହନ୍ତି, ସେମାନେ ଏ ଦେଶର ସମ୍ମାନିତ ନାଗରିକ, ତାଙ୍କ ବଳ ବଢ଼ିଛି, ମର୍ଯ୍ୟାଦା ବଢ଼ିଛି, ପାଟି ଫିଟିଛି, ଅସନ୍ତୁଷ୍ଟ ହେଲେ ସେମାନେ ବିକ୍ଷୋଭ କରୁଛନ୍ତି, ଡରୁ ନାହାନ୍ତି । ଟିପଚିହ୍ନ କମିଛି, ପାଠପଢ଼ା ବହୁତ ବଢ଼ିଛି । ଗଣ୍ଡ ମଫସଲମାନଙ୍କରେ ବି ଗଣ୍ଡା ଗଣ୍ଡା ଇସ୍କୁଲ, ନାନା ଶିକ୍ଷା-ଅନୁଷ୍ଠାନ, ନାନା ପ୍ରକାରର ଉନ୍ନୟନକାରୀ ଅନୁଷ୍ଠାନ, କିନ୍ତୁ ଦେଶର ଯେଉଁ ବାରଅଣା ଭାଗ ଲୋକେ ଅବହେଳାରେ ଅନ୍ଧାରରେ ପଡ଼ି ରହିଥିଲେ ଭାଗ୍ୟକୁ ଦ୍ୱାହି ଦେଇ, କେବେ ଆପତ୍ତି କରୁ ନ ଥିଲେ, ତାଙ୍କର ଆଉ କ'ଣ ଭଲ ଅବସ୍ଥା ହୋଇପାରେ ବୋଲି କଳ୍ପନା କରିପାରୁ ନ ଥିଲେ, ପେଟପୂରା ଖାଇବାକୁ, ଭଲ ଖାଇବାକୁ, ଭଲରେ ରହିବାକୁ ଚଳିବାକୁ ତାଙ୍କର ବି ଅଧିକାର ଅଛି ବୋଲି ସେମାନେ ଅନୁଭବ କରିପାରିଛନ୍ତି, ଆପଣା ଅଭାବ ବିଷୟରେ ସଚେତ ହୋଇଛନ୍ତି । ତେଣୁ ତାଙ୍କର ତର ସହୁ ନାହିଁ । ସେମାନେ ଲୋଡୁଛନ୍ତି ଅତି ଦ୍ରୁତ ପରିବର୍ତ୍ତନ । ଚାହୁଁ ଚାହୁଁ ଇତିହାସ ବଦଳୁଛି ।

ସେତେବେଳେ ସବୁ ଭିନ୍ନେ ଥିଲା । ଏଭଳି ଅସ୍ଥିରତା ନ ଥିଲା, କିନ୍ତୁ ଯେଉଁ ସ୍ଥିରତା ଥିଲା ସେ ଏକ ପ୍ରକାର ଜଡ଼ ପିଣ୍ଡର । ତାଠିଁ ଅଭାବର ଚେତନା ବି ନୈରାଶ୍ୟରେ ପଡ଼ି ପ୍ରାୟ ଲୋପ ହୋଇଯାଇଥିଲା । ସେ ଚେତନା

ମରି ନ ଥିଲା, ଅଛ ଚେଇଁ ଉଠି ଟିକିଏ ଟିକିଏ ଖୁଚୁବୁଚୁ ହେଉଥିଲା । ମଣିଷ ଦରିଦ୍ର ରହି ଶାନ୍ତି ଖୋଜୁଥିଲା, ଆଉ କିଛି ଖୋଜିଲା ଭଳି ତାର ସୀମିତ, ସଙ୍କୁଚିତ ପେଷିତ ପରିସର ଭିତରେ ବି ନ ଥିଲା । ତା ବାହାରେ ଡର, ଭୟ, ଅକ୍ଷମତା । ଉପରେ ଢାଙ୍କୁଣି, ମଣିଷ ଭାବୁଥିଲା ସେ ଅପରିବର୍ତ୍ତନୀୟ । ଚାରିକଡ଼େ ପାଚିରି, ମଣିଷ ଭାବୁଥିଲା ତା' ଅଲଂଘ୍ୟ । ଚଳଣି ଧରାବନ୍ଧା, ମୂଲ୍ୟବୋଧ ବି ସେଇଆ, ଚଳି ଆସିଥିଲା, ଚଳିବ, ବିଚାର ଏତିକି ।

ସେତେବେଳେ ଓଡ଼ିଶା ଖାଲି ବଢ଼ି ମଡ଼କର ଦେଶ, କଟକ ପ୍ରସିଦ୍ଧ ଭଙ୍ଗା ବାରବାଟିର ସ୍ମୃତି ପାଇଁ । ବଢ଼ି, ବାଡ଼ି, କେବେ ଦୁର୍ଭିକ୍ଷ କି ମରୁଡ଼ି, ମ୍ୟାଲେରିଆ, ବାତଜ୍ୱର, ଗୋଦର, ଗଡ଼ଜାତର ଅନ୍ଧାର, ସମତଳର ଦାରିଦ୍ର୍ୟ ଓ ଶୋଷଣ ସବୁଥିରେ ଅବହେଳିତ ହୋଇ ପଛରେ ପଡ଼ିଥିବା ଅବସ୍ଥା, ତାହାରି ଭିତରେ କି ଉପାୟରେ ଅଳ୍ପ କେତେ ଜଣ ଭାଗ୍ୟବାନ । ସବୁ ଏକାଠି ମିଶିଲେ ଓଡ଼ିଶାର ଧାରଣା କରି ହେଉଥିଲା ।

କଟକ ନାଗଅଇରି ବଣ, ଜଙ୍ଗଲ ଭିତରେ ଅଳ୍ପ କେତୋଟି ଚାଳଘର ବସ୍ତି, ସଢ଼ା ପୋଖରୀର ଜାଳ ସନ୍ଧିରେ । ଗଛଯାକ ବାଦୁଡ଼ି, ମାଙ୍କଡ଼ । ସଡ଼କ ବୋଲନ୍ତେ ନାଳି ଧୂଳି । ଏକବଳଦିଆ ଗାଡ଼ି । ସେଠି କେତୋଟି ପୁରୁଣା କୋଠା, କେତୋଟି ଅନୁଷ୍ଠାନ । କାଠଯୋଡ଼ି ମହାନଦୀ ସେ ସହରକୁ ଗାଁ ଗହଳିଠୁଁ ଅଲଗା କରି ରଖେ । ନଈପାରି କାଠିକର ପାଠ । ଆରପାରି ଗାଁ ସୁଦ୍ଧା ଅପହଞ୍ଚ ଗଣ୍ଡ ମଫସଲ, ତାର ଚଳଣି ହୋଇଥିଲା । ସେହି ସମ୍ବାଦ କଟକରେ କହିବା ପାଇଁ ବଳି ଅବଧାନ କଟକ ଧାଇଁଥିଲେ । ମୁସଲମାନ୍ ଜଗୁଆଳି ରେଳପୋଲ ମୁହଁରେ ଅଟକାଇଲା । ତାର ସବୁ ପ୍ରଶ୍ନର ଉତ୍ତରରେ ଅବଧାନେ ଉତ୍ତେଜିତ ହୋଇ ହିନ୍ଦୀରେ କହୁଛନ୍ତି ଭାବି ବାରମ୍ବାର ରଡ଼ିଲେ ।

"ହାମ୍ କାଳାଘାଇ ! ହାମ୍ କାଳାଘାଇ !"

ସେ କ'ଣ ବୁଝିଲା ସେ ଜାଣେ, ବାଟ ଛାଡ଼ିଦେଲା । କଟକ ଯାଇ ଲେଉଟି ଆସି ସେ ଗାଁରେ ନିଜର କୀର୍ତ୍ତି ବଖାଣିଲେ ।

ତାଙ୍କର ଦ୍ୱିତୀୟ ନାଁ ରହିଗଲା—"ହାମ୍ କାଳାଘାଇ !" ଖୁବ୍ ଡେଙ୍ଗା ବଳୁଆ ବଳି ଅବଧାନ, ସେ ମୋ ଦୁଇ ଉପରଭାଇଙ୍କ ଆଦ୍ୟଗୁରୁ, ହାତରେ ଖଡ଼ି ଦେଇଥିଲେ ।

ଗୋଟି ଗୋଟି ମୁହଁ, କେତେ ଆଉ ନାହିଁ । ପ୍ରତି ମୁହଁ ସଙ୍ଗରେ ମନେପଡ଼େ ମୋ ତାର ଆଚାର ବିଚାର ଶିକ୍ଷା ସଭ୍ୟତା ଉପରେ କଟକର

ଧାସ ସତେ ଯେମିତି ଶହେ ମାଇଲ୍ ଦୂରରୁ ପଡ଼େ, ଦୀପତଳ କିଟି କିଟି ଅନ୍ଧାର ।

ସେମିତି ଗାଁ'ଟିଏ ସେ—ନାଗବାଲି । ସେ ଅଞ୍ଚଳରେ ଡାକ୍ତରଖାନା ନାହିଁ, ଡାକଘର ସେଠୁ ଗହିରେ ଗହିରେ ଦକ୍ଷିଣକୁ ପାଞ୍ଚ ମାଇଲ୍, ମାଇନର ସ୍କୁଲ୍ ବି ନ ଥାଏ । ଅଥଚ କଟକ ସେଠୁ ଛ' ସାତ ମାଇଲ ବାଟ । ଖରାଦିନେ କାଠଯୋଡ଼ି ଭିତରେ ପଶି ଯାଇହୁଏ । ବର୍ଷାଦିନେ ନଈପାରି ଜଗୁଆଳ ନ ଅଟକାଇଲେ ରେଳପୋଲ ଉପରେ ବି ଯାଇହୁଏ ।

କିନ୍ତୁ ଜଗୁଆଳି ବେଳେ ବେଳେ ଆଗୁଳେ । ମନେପଡ଼େ ଆମ ଗାଁ ବଳି ଅବଧାନଙ୍କ କଥା । ମୋ ଜନ୍ମ ବର୍ଷ ହବ ପରା, ଆମ ଗାଁ ପାଖ ସିତୁଆ ନଈବନ୍ଧ ବଢ଼ିରେ ଭାଙ୍ଗିଥିଲା, ଚାରିଆଡ଼ ଜଳାର୍ଣ୍ଣବ, ନିଜ ଜୀବନର କେଉଁ ଅଂଶ, କେଉଁ ଦିଗ । ଯେମିତି ପୁଣି ମୁଁ ସେହି ଜୀବନ ଅନୁଭବ କରୁଛି, ଦେଖୁଛି ସେତିକିବେଳର ଦୃଶ୍ୟ, ସେହି ସେହି ଶବ୍ଦ ଶୁଣୁଛି, ସେହି ସମୟର ପବନରେ ନିଶ୍ୱାସ ମାରୁଛି, ମୋ ଦେହର ଚମ ଉପରେ ସେତିକି ବେଳର ଖରା, କାକର । ସେହି ଅନୁଭୂତିରେ ଗୁଛା ହାର ବେକରେ ପକାଇଦେଲେ ମୁଁ ଅଦୃଶ୍ୟ ହୋଇଯାଏଁ, ଏ ଦେହ-ଖୋଳ ନାହିଁ, ଏ ପରିବେଷ୍ଟନୀ ନାହିଁ, ମୁଁ ନିଜେ ହୋଇଛି ଅତୀତର ସେହି ପାଶୋରା ଜୀବନ ସୁଅରେ ଲହଡ଼ିଟିଏ, ମନ ସୁଖରେ ଖେଳି ବୁଲୁଛି ।

ସାଲ, ତାରିଖ ଆଉ ନିଦା ଘଟନାର ତାଲିକା ମୋ ଆଗରେ ଲମ୍ବି ରହେ ଗୋଟାଏ ଲୁହା ଜଞ୍ଜିର ପରି, କୁଆଡ଼ୁ ଆସିଲା, କାହିଁକି । ପଡ଼ିଛି କି ସମ୍ପର୍କ ତା'ର ମୋ ସଙ୍ଗରେ ମୁଁ ଅନୁଭବ କରିପାରେ ନାହିଁ । ହୁଏତ ସେ ଶିଂକୁଳିଗୁଡ଼ିକ ତାତ୍ପର୍ଯ୍ୟପୂର୍ଣ୍ଣ, ମୁଁ ଜାଣେ ନାହିଁ ।

କିନ୍ତୁ ସେ ମୁହଁଗୁଡ଼ିକ ନୁହନ୍ତି ଖବରକାଗଜର ଘଟନା 'ସ୍ତମ୍ଭ', ସେମାନେ ଜୀଅନ୍ତା ଜୀବନରୁ କିଛି, ତାଙ୍କ ନିଜର ଆଉ ମୋର ।

ଉଣେଇଶ ଶହ ଚଉଦରୁ ଆରମ୍ଭ କରି ପୃଥିବୀ ଇତିହାସର ଯେଉଁ ବଡ଼ ବଡ଼ ମୁଣ୍ଡଘୂରା ଘଟନା ଓ 'ପ୍ରଭାବ' ନାନା କ୍ଷେତ୍ରରେ ଏତେ ବ୍ୟାପକ ଓ ଗଭୀର ପରିବର୍ତ୍ତନ ଭିଆଇଲା, ସେସବୁ ଅନ୍ୟମାନଙ୍କ ପରି ମୁଁ ବହିରୁ ହିଁ ପଢ଼ିଛି, ମୋର ଆଦ୍ୟ ଜୀବନ ଗଢ଼ିବାରେ ତା'ର କେଉଁ ଭୂମିକା ମୋ ଚେତନା ତା ବୁଝେ ନାହିଁ ।

ସେମିତି ଅନେକ ଘଟନା ମୁଁ ଶୁଣିଛି ମୋ ପିଲାଦିନୁଁ, ''ବୁଢ଼ୀମା

କାହାଣୀ''ମାନଙ୍କରେ ଯେଉଁ ଘଟନା ସବୁ ପଢ଼େ, ଆଉ ତା ସହିତ ଆମ ବଂଶର ଇତିହାସ ବିଷୟରେ କିମ୍ବଦନ୍ତୀ ।

ଆଖିବୁଜି ଅତୀତକୁ ଚାହିଁଦେଲେ ଯେତେ ଅନୁଭୂତି ବାରିହୁଏ ତହିଁରୁ କେତେ କେତେ ଅଛି ଦୁର୍ଦ୍ଦିନ ସହିତ ଯୁଦ୍ଧ କରିବାର । ଦୁର୍ଦ୍ଦିନ ଦୁଃଖ କଷ୍ଟ ଦିଏ, ତାକୁ ବଳି ଉଲ୍ଲାସ ଆସେ ମୁଣ୍ଡ ଉଞ୍ଚ ରଖି ତା ସଙ୍ଗେ ଲଢ଼େଇ କରିବାରେ ।

ଲାଗି ରହିଛି ଝଡ଼ି ବରଷା, ଗଳ ଗଳ ପାଣି । ଚାରିଆଡ଼ ଅନ୍ଧାର । ଚଡ଼ଚଡ଼ି ଡାକ ଦେଲା । ବୋଉ ଡାକୁଛି "ଅଗସ୍ତି ପୌଲସ୍ତି" । ଦୁଲ୍‌ଦାଲ୍ ଶୁଭୁଛି ପାଖ ଘରେ କାହା କାନ୍ଥ ପଡ଼ିବା ଶବ୍ଦ । ବୋଉ ଏକର ସେକର ଧାଉଁଛି, ଆମ କାନ୍ଥର ଅବସ୍ଥା ଦେଖୁଛି । ଚାଳ ଛୁଆଣି ହୋଇପାରି ନାହିଁ । ଏଠି ସେଠି ଟପ ଟପ ପାଣି ପଡୁଛି । ବୋଉ ଆମକୁ କାମରେ ଲଗାଉଛି, ପ୍ରତି କଣା ତଳେ ହାଣ୍ଡି କି କଂସା କି ଯାହା କିଛି ରଖିବାକୁ ପଡ଼ିବ, ନ ହେଲେ ଭୂଇଁ ଓଦା ହୋଇଯିବ । ନଈକୂଳିଆ ଘର, ପବନର ବେଗ ବହୁତ । ତୋଫାନ ହି ହି ହସିଲାଣି । ଦିଶୁଛି, ନଡ଼ିଆ ଗଛ, ଆମ୍ବ ଗଛ ସତେକି ଶୂନ୍ୟରେ ଛାଟିପିଟି ହେଉଛି । ହେଇ, ଆସିଲା ହଲପା, ଦୁର୍ବଳ ଚାଳକୁ ଏକାଠି ଧରି ଓଟାରି ନେଇଯିବାକୁ ଚାହେ । ଆଉ ଅନାଇଁ ରହିଲେ ଚଳିବ ନାହିଁ । କ'ଣ କରିବାକୁ ହେବ ବୋଉ ତା ବତେଇ ଦେଲା । ସମସ୍ତେ ଚାଳକୁ ଧରି ଶୂନ୍ୟେ ଶୂନ୍ୟେ ଓହଳି ପଡ଼ିଲୁଁ । ପବନ ଉଠାଉଛି ପକାଉଛି, ଉଡ଼ାଇ ନେଇପାରୁ ନାହିଁ । ପବନର ବଳ ହଟି ଆସିଲା । ଆମେ ଜିତିଗଲୁଁ । ଆଉ ଓହଳିବା ଦରକାର ନାହିଁ ।

ଆଉ କେବେ ଦିନେ—ପଖାଳରେ ଲଗାଇ ଖାଇବାକୁ ନାହିଁ କିଛି । ଚିନ୍ତା ନାହିଁ, ବୋଉ ସଙ୍ଗେ ସଙ୍ଗେ କରିଦେଲା "ଚିଜ" । ପୋଷେ ଭାତରେ ଅଳ୍ପ ସୋରିଷତେଲ ପକାଇ ଟିକିଏ ଚୁନି ଚୁନି ପିଆଜ ମିଶାଇ ଦେଲା । ତା'ର ବି ଏକପ୍ରକାର ସ୍ୱାଦ ଅଛି, ସବୁ ଖାଦ୍ୟର ଥାଏ । ତରକାରିର କାମ ସେ ଚଳାଇଲା ।

ମୁଢ଼ି ଥିଲେ ଜଳଖିଆ ଅଭାବ ନାହିଁ । ଘରେ ଭାଜି ହୁଏ । ସେମିତି ଖଇ, ହୁଡୁମ । ମୁଢ଼ିରୁ ଯେ ଆରିସାକାକରା ଯାକେ, ଯେଉଁଦିନ ଯାହା, ସବୁ ଉପାଦେୟ ।

କଣ୍ଡିଆରେ ଆମର ହୁଏ କୋଳଥ । ଡାଲିର କାମ ଅନେକ ସମୟରେ

ସେ କରେ । ଭଜା କୋଳଥର ବାସ୍ନା, ଆମ୍ବୁଲ ପଡ଼ିଥିବା କୋଳଥ ଡାଲି, ଖୁବ୍ ସୁଆଦ ଲାଗେ ।

ମୋର ମନେଅଛି, ଚାଉଳ ନିଅଣ୍ଟ ହୋଇଥିଲା, ରାତିଓଳି ଥାଳିଏ ଲେଖାଁ କୋଳଥ 'ପଇତି' ବହୁତ ଦିନ ଚଳିଥିଲା । ଆଉ ମନେଅଛି, ଆମ ଭାଗ ଦେଇଥିବା ଜମିରେ ବିଲାତି ଆଳୁ ଫଳିଥିଲା । ଚାଉଳ ଅଭାବ ହେଲା । ବାପା ନିର୍ଦ୍ଦେଶ ଦେଲେ ଚାଉଳ ବଦଳରେ ସିଝା ଆଳୁ ହିଁ ଖାଦ୍ୟ ହେବ, କେତେବେଳେ ଓଳିଏ କେବେ ବା ଦି'ଓଳି । କୌଣସି ଅସୁବିଧା ହୋଇନାହିଁ ।

ନାଲି ନାଲି ବଡ଼ ବଡ଼ ଭାତ, କେମିତି ବେଣାଚେର ପରି ବାସ୍ନା ହୁଏ । ମୁଗଡାଲି । କେବେ ଘିଅ, ବାସ୍ନା ଗୁଆଘିଅ ଶରଦୀ ମା' ଗଉଡୁଣୀ ଦିଏ । କେବେ ଦୁଧ । ଆମ ନଣ୍ଡର ମାଛ, ବାସ୍ନା ପାଇଁ ତା'ର ନାଁ ଅଛି । ନାନା ଜାତି ଶାଗ । ଏମିତି ମଝିରେ ମଝିରେ ପରିପୂର୍ଣ୍ଣ ଭୋଜନ । ଆଉ କେବେ କୋଳଥ ପଇତି ।

ଶୀତଦିନେ ହେଂସ ଘୋରିହେଲା, ବେଶୀ ଶୀତ ହେଲେ ମୋଟା ହେଂସ ବହୁତ ଗରମ । ଅନ୍ୟ ସମୟରେ ଯୋଡ଼ି ଚାଦର, 'ମାଠ', ଗରମ 'ଆଲୁଆନ୍' ବି ମନେ ଅଛି । କିନ୍ତୁ ବେଶୀ କାମରେ ଲାଗେ ଉହ୍ଲେଇଁ ନତୁବା କେତେବେଳେ ନଡ଼ିଆ ପତ୍ର ଛାଳି ନିଆଁ ।

ଖରାଦିନେ ସପ ବିଛଣା, କିନ୍ତୁ ତାଠୁଁ ବଳି ଆରାମ୍ ଲିପା ହୋଇଥିବା ମାଟି ପିଣ୍ଡା ଉପରେ ଲୁଗା ଖଣ୍ଡେ ବିଛେଇ ଦେଇ ଶୋଇ ପଡ଼ିବା ।

ସେତେବେଳେ ବି ମଶାପଲ ଥିଲେ ନିଶ୍ଚୟ । କିନ୍ତୁ ମଶାରି ପଡ଼ିବା ମନେ ନାହିଁ, ମଶାରି ନ ଥିଲା ବୋଲି ନିଦରେ ବ୍ୟାଘାତ ହେବା ବି ମନେ ନାହିଁ । ବୋଧହୁଏ ଉପାୟ ଥିଲା ସହଜ,—

ମଶକାୟ ଧୂମଃ ।

ମନେପଡୁଛି ବାପା ବୋଉ କେବେ କେବେ ଆମ ପାଇଁ ଆକ୍ଷେପ କରୁଥିଲେ ତାଙ୍କ ଅତୀତର କେଉଁ ଭୋଗ ଭାଗ୍ୟର ଜୀବନ କଥା ମନେ ପକାଇ, କିନ୍ତୁ ମୋ ମନରେ କୌଣସି ପ୍ରକାର ଦାରିଦ୍ର୍ୟ ଅନୁଭୂତି କେବେ ହୋଇଥିବାର ମୋର ମନେ ନାହିଁ । ସେ ଆକ୍ଷେପର କାରଣ ମୁଁ ଆଦୌ ବୁଝିପାରେ ନାହିଁ । ମୋର କିଛି ଅଭାବ ନ ଥିଲା । ଗାଳି ନ ଖାଇଲେ ମୋର ସବୁଦିନେ ଆନନ୍ଦ । ମାଡ଼ କ୍ୱଚିତ୍ ଖାଇଚି । ବୋଉ ମାରେ ନାହିଁ ।

କେବେ ଦି'ଥର ଥରେ ଖୁନ୍ଦା ମାରିବା ଭଙ୍ଗୀରେ ହାତ ମୁଠେଇ ସେ ଆସ୍ତେ ମୋ ଗାଲରେ ଗେବି ଦେଇଥିବ । ତା'ର ପ୍ରତିଫଳ ପାଇଥିବ ସଙ୍ଗେ ସଙ୍ଗେ । ବାପା ଅତି ରାଗିଲେ ବୁଢ଼ାଆଙ୍ଗୁଠି ଓ ବିଶିଆଙ୍ଗୁଠି ସନ୍ଧିରେ କାନକୁ ଚିପି ଧରନ୍ତି । ସେଥିପାଇଁ ବି କାରଣ ମିଳେ କ୍ୱଚିତ୍ ।

ବୋଉ ବାପାଙ୍କ ପାଇଁ ଦୁଃଖ କରେ । ସେ ହାତରେ ପଦା କାମ କରିବାର ମୁଁ କେବେ କେବେ ଦେଖିଛି । ଥରେ କାଠ ଫଡ଼ା କରୁଥିଲେ, ଛେଲାଏ ଖସି ଆସି ତାଙ୍କ କପାଳରେ ବାଜିଲା, ରକ୍ତ ବୋହିଲା । ''ଆହା, ଦଇବରେ—'' କହି ବୋଉ କାନ୍ଦିଲା । କ'ଣ କିଛି ଭୟଙ୍କର ଘଟିଗଲା ବୋଲି ମୁଁ ବି ଚିର୍ଚ୍ଚିରେଇ କାନ୍ଦିଲି । ବାପା ରକ୍ତ ପୋଛି ଆମକୁ ସାନ୍ତ୍ୱନା ଦେଲେ ।

ବୋଉ ପାଇଁ ବାପା ଦୁଃଖ କରିବାର ଶୁଣିଛି । ଥରେ ବାପା, ବୋଉ, ମୁଁ କଟକରୁ ଜହ୍ନ ରାତିରେ ଚାଲି ଚାଲି ଗାଁ'କୁ ଆସିଲୁ । ସେହି ଥରକ ବୋଉ ପଦାରେ ଦୂରରୁ ଚାଲି ଚାଲି ଆସିବାର ମୁଁ ଜାଣେ । ଆବଶ୍ୟକ ପଡ଼ିଥିଲା । ସେ ଥକି ଯାଉଥାଏ । ବାପା ଦୁଃଖ କରି କହୁଥାନ୍ତି ''ଏଇ ପାଦ ପୁଣି ନଇବନ୍ଧରେ ଚାଲିବା ଯୋଗ ଥିଲା !''

ନିଜକୁ ଦୁଃଖ ଅଭାବ ସହିବାକୁ ପଡ଼ିଛି ବୋଲି କେବେ ସେମାନେ ଦୁଃଖିତ କି କାତର ହୋଇ ନାହାନ୍ତି, ସହିଛନ୍ତି, କାମ କରିଛନ୍ତି, ବୀର ପରି । କାହା ଆଗରେ ଦୀନତା ପ୍ରକାଶ କରି ନାହାନ୍ତି, କାହା ଆଗରେ ମୁଣ୍ଡ ନୁଆଇଁ ନାହାନ୍ତି । କାହା ଉପରେ ନିର୍ଭର କରିନାହାନ୍ତି । କାହାର କିଛି ଧାରୁଆ ହୋଇ ରହିବାକୁ ତାଙ୍କୁ ଘୃଣା ଲାଗୁଥିଲା । ସେମାନେ ବିଚାରରେ ସ୍ୱାଧୀନ, ନିର୍ଭୀକ ।

କିନ୍ତୁ ସେମାନେ ଦାରିଦ୍ର୍ୟ ସହିଥିଲେ ମୁଁ ଜନ୍ମ ହେବାବେଳ ଆଡ଼କୁ, ତା' ଆଗରୁ ସୁଖ ଐଶ୍ୱର୍ଯ୍ୟରେ ବଢ଼ିଥିଲେ । ତାଙ୍କ ଅତୀତ ଜୀବନ ଓ ବଂଶ ପରମ୍ପରାର ସ୍ମୃତି ବୋଧହୁଏ ମଶା-ଡାଆଁଶ ପରି ବେଳେ ବେଳେ ତାଙ୍କୁ ଚେତେଇ ଦେଉଥିଲା ।

କିନ୍ତୁ ସେ ସବୁ ମୋ ଶୁଣାକଥା ।

ନବୀନ୍ ମହାନ୍ତିଙ୍କ ଘର ।

ସିତୂଆ ନଈକୂଳରେ ବନ୍ଧ ତଳେ ଯେଉଁ ସାହି, ଅର୍ଥାତ୍ ''ଆମ ସାହି'' ସେ ସେହି ନାଁରେ ପରିଚିତ । ଗାଁର ଦକ୍ଷିଣ ମୁଣ୍ଡରେ ଆଉ ଗୋଟିଏ କରଣ ବସ୍ତି, ସେ ''ତାଙ୍କ ସାହି'' । ଏଠି ସେଠି ହୋଇ ଅନ୍ୟାନ୍ୟ ଜାତିର ଲୋକେ, କିଛି ମାଟିବଂଶ ନାହାକ, କିଛି ବଢ଼େଇ, କିଛି କୁମ୍ଭାର, ଅଳ୍ପ କେତେଘର ବ୍ରାହ୍ମଣ, ଘରେ ଗୁଡ଼ିଆ, ଦି'ଘର ଚଷା, ତା'ପରେ ଗାଁ ପୂର୍ବକୁ ବଡ଼ କେଉଟ ସାହି, ବଡ଼ ଗଉଡ଼ ସାହି । ସେ ସାହି ଯୋଡ଼ିକ ସାନ ସାନ ପଲ୍ଲୀ ପରି, ତାକୁ ଛାଡ଼ିଦେଲେ ନାଗବାଲିର ସମୁଦାୟ ପରିବାର ତିରିଶି ଘରରୁ ବେଶୀ ନୁହେଁ । ତାକ ନାଁ ନାଗବାଲି ହେଲେ ବି ମୌଜା ଲେଖାରେ ସେଥିରୁ ବଡ଼ ଭାଗକ ଯାଏ ଚାଷୀପ୍ରଧାନ ଖଣ୍ଡାଏତା ମଉଜା ତଳେ, ସେ ନାଗବାଲିର ଠିକ୍ ପଶ୍ଚିମରେ, ଆଉ ସାନ ଭାଗକ ଯାଏ ପୂର୍ବରେ ଥିବା ଧାନଘରପଡ଼ା ମଉଜାରେ, ସେଠି ମୁସଲମାନ ହିଁ ବେଶୀ ।

ନାଗବାଲି ନାଁର ଅର୍ଥ ଜଣାପଡ଼େ ନାହିଁ । କିଏ କହିପାରେ ଏଠି ଯେତେବେଳେ ଗାଁ ନ ଥିଲା ଏ ସ୍ଥାନ ଖାଲି ବାଲିପଟା ହୋଇ ପଡ଼ିଥିଲା, ବନ୍ଧକୂଳ ବାଟରେ ଗଲାବେଳେ ସେଇଠି ହାବୁଡୁଥିଲେ ନାଗ ସାପ । ଆଉ କିଏ କହିପାରେ, ନାଗବାଲି ଅର୍ଥାତ୍ ପାନ ହେଉଥିଲା ଏଠି, ନଈକୂଳ ବୋଲି, ତା'ପରେ ଗାଁ ବସିଲା ।

ନାଗବାଲିରେ ଦେଉଳ ନାହିଁ, ପୁରୁଣା ପଥରକଟା ବାମ୍ଫି କି ପୋଖରୀ ନାହିଁ, ପୁରୁଣା ତାଳପତ୍ର ବଂଶାବଳୀ (ଭଉଁରିଆ) କି ପୋଥିଗାଦି ନାହିଁ । ନଈ କଣ୍ଡିଆର ଓସ୍ତଗଛ, କୋଚିଲା ଗଛକୁ ଛାଡ଼ିଦେଲେ ଅତି ପୁରୁଣା ଗଛ ବି ନାହିଁ । ସେଠି କରଣମାନଙ୍କ ପୁରୋହିତ ବ୍ରାହ୍ମଣ ବି ସେ ଗାଁର ନୁହନ୍ତି, ଧାନଘରପଡ଼ା ଆରପାଖେ ଥିବା ପୁରୁଣା ବ୍ରାହ୍ମଣ ଶାସନ 'ଶଙ୍ଖଦ୍ରାସ' ଗାଁର ସେମାନେ । ସବୁଠୁ ପାଖ ଦେଉଳ ଖଣ୍ଡାଏତା ମଉଜାର ନୀଳକଣ୍ଠେଶ୍ୱର ।

ଯୋଡ଼ିଏ ପୁରୁଣା ସ୍ମୃତିଚିହ୍ନ ସେଠି, ନଈ କଣ୍ଡିଆରେ ବନ୍ଧ କରରେ 'ସତୀ ଗାଡ଼ିଆ' । ନବୀନଙ୍କ ଆଈ ସତୀ ଯାଇଥିଲେ, ଦକ୍ଷିଣରେ ଗାଁ ସେମୁଣ୍ଡରେ ନଙ୍ଗୁଳି ଗୋସେଇଁଙ୍କ ସମାଧି, ସେ ସିଦ୍ଧ ପୁରୁଷ ଥିଲେ, ନବୀନଙ୍କ ଅଜାଙ୍କ ଅମଳର । ଗାଁଦାଣ୍ଡରେ ଯେଉଁ ହନୁମାନ ମୂର୍ତ୍ତି କଦମ୍ବ ଗଛମୂଳେ ପୂଜା ପାଆନ୍ତି ସେ ଆଉ କେଉଁଠୁ ଅଣା ହୋଇଥିବା ଅସମ୍ଭବ ନୁହେଁ । ଆମ ପରିବାରର

ଇଷ୍ଟଦେବତା ଶ୍ରୀ ରାଧାଶ୍ୟାମ ଠାକୁରଙ୍କ ପିତଳ ବିଗ୍ରହ ଓ ଅନ୍ୟାନ୍ୟ ବିଗ୍ରହଙ୍କୁ ନବୀନ ବାରାଣସୀରୁ ଆଣିଥିଲେ ଶୁଣାଯାଏ ।

ପୁରୁଣା ତୋଟାରେ ଜାତିଜାତିକା ବଡ଼ ବଡ଼ ଆମ୍ବ ଫଳେ, ସେ ଗଛ କାଶୀ ପ୍ରଭୃତି ନାନା ତୀର୍ଥରୁ ଆଣି ଲଗାଇଥିଲେ ନବୀନ । ଧୂଳିଆ ଘରତକ ନବୀନ ହିଁ ତୋଳାଇଥିଲେ । ନଅଙ୍କ ବେଳେ ଅନ୍ନଛତ୍ର ନବୀନ ଦେଇଥିଲେ । ନଈବନ୍ଧେ କଟକଆଡ଼ୁ ଓଟ, ଘୋଡ଼ା ଘେନି ନାଗା ଜମାଏତ୍‌ମାନେ ଯେ ବାରମ୍ବାର ନାଗବାଲି ଆସୁଥିଲେ, ଆସୁଥିଲେ କେତେ ଅତିଥି ଅଭ୍ୟାଗତ, ସେମାନେ ନବୀନ ମହାନ୍ତିଙ୍କ ଜୟଗାନ କରୁଥିଲେ । ପୁରୁଣା କାଳର ଜଣେ ନିଃସ୍ୱାର୍ଥପର, ଧାର୍ମିକ, ଦାନଶୀଳ, ପରୋପକାରୀ ନ୍ୟାୟନିଷ୍ଠ ବ୍ୟକ୍ତିଙ୍କ ଗୁଣର ମହକ ଏବେବି କିମ୍ବଦନ୍ତୀ ହୋଇ ସେ ଅଞ୍ଚଳରେ ଖେଳି ବୁଲେ, ସେ ବ୍ୟକ୍ତି ନବୀନ ।

ନବୀନ ମୋ ବାପାଙ୍କ ଜନ୍ମକଲା ବାପ । ତାଙ୍କର କିଛି ପୈତୃକ ଜମି ଓ ଜମିଦାରୀ ଥିଲା, ତାକୁ ସେ ଆହୁରି ବଢ଼ାଇଥିଲେ । କଟକ ସହରର ଦକ୍ଷିଣ-ପୂର୍ବ ଭାଗ ଅର୍ଥାତ୍ ତଳ ତେଲେଙ୍ଗା ବଜାର, ରଜାବଗିଚା ଆଦି ତାଙ୍କ ଜମିଦାରୀର ଅନ୍ତର୍ଭୁକ୍ତ ଥିଲା, ସେହିପରି ତେଲେଙ୍ଗାପେଣ୍ଠ । ତାଙ୍କ ସମୟରେ ନରାଜ ଆନିକଟ ଓ ଯୋବ୍ରା ଆନିକଟ ତିଆରି ହୋଇଥିଲା । ସେ ନରାଜ ଆନିକଟ ତିଆରି କାର୍ଯ୍ୟରେ ଦାରୋଗା ହୋଇଥିଲେ ଓ ତାଙ୍କ ଶ୍ୟାଳକ ବେଲକାରର ସଦେଇ ମହାନ୍ତି ଯୋବ୍ରା ଆନିକଟର ଦାରୋଗା ହୋଇଥିଲେ ।

କିମ୍ବଦନ୍ତୀ ଅଛି—ଭୁବନେଶ୍ୱରଠୁଁ ୫ ମାଇଲ୍ ପଶ୍ଚିମକୁ ପଡ଼େ ଅନ୍ଧାରୁଆ ଗାଁ, ପୂର୍ବନାମ ଅନ୍ଧାରିଗଡ଼, ନବୀନଙ୍କ ପୂର୍ବପୁରୁଷମାନେ ଅନ୍ଧାରିଗଡ଼ର ମାଲିକ ଥିଲେ । ଖୋର୍ଦ୍ଧା ରଜାଙ୍କ ସଙ୍ଗେ କଳି ଲାଗିବାରୁ ରଜା ସାଭୋଇ ଖଣ୍ଡାଏତଙ୍କ ମାର୍ଫତ୍‌ରେ ଅନ୍ଧାରିଗଡ଼କୁ ସୈନ୍ୟ ପଠାଇଥିଲେ । 'ରାମପାଳ ମୁଣ୍ଡିଆ' ପାହାଡ଼ ଉପରେ ଥିବା ଗଡ଼ ଧ୍ୱଂସ ହେଲା, ନବୀନଙ୍କ ଅଜା ଧର୍ମୁ ଉଠିଗଲେ ନାଗବାଲିକୁ । ଅନ୍ଧାରୁଆରେ ତାଙ୍କର କେହି ରହିଲେ ନାହିଁ ।

ଜାତିରେ ସେମାନେ ଯେଉଁ ଶ୍ରେଣୀର କରଣ ତା' ନାଁ 'ଅଢ଼େଇ-ଘରିଆ' । 'ଅଢ଼େଇ-ଘରିଆ'ର ତାତ୍ପର୍ଯ୍ୟ ବିଷୟରେ ପଞ୍ଜାବରେ ଗୋଟିଏ କିମ୍ବଦନ୍ତୀ ଅଛି । ସେଠି କେବେ କେଉଁ ଗାଁର କାୟସ୍ଥମାନେ ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଜୀବନମୂର୍ଚ୍ଛା ଯୁଦ୍ଧ କରିଥିଲେ । ଶତ୍ରୁ ହଟିଗଲେ, କିନ୍ତୁ ଲଢ଼ି ଲଢ଼ି ମରିଥିଲେ ସମସ୍ତେ, ଯୁଦ୍ଧ ସରିଲା ବେଳକୁ ବି ଲଢୁଥିଲେ ଦୁଇଘରର ମଣିଷ ଅନ୍ୟ

ଗୋଟିଏ ଘରର ବିଧବା କି ଅଧେ ଭାଗ ମଣିଷ । ସେ'ଦିନୁଁ ସେମାନେ ଅଢ଼େଇ-ଘରିଆ ବୋଲାଇଲେ । ପଛେ ତାଙ୍କରି ବଂଶର ଗୋଟିଏ ପରିବାର ଶ୍ରୀ ଜଗନ୍ନାଥ ଦର୍ଶନରେ ପୁରୀ ଆସି ହଇଜାରେ ପଡ଼ି ଓଡ଼ିଶାରେ ରହିଗଲେ । ପଞ୍ଜାବରେ ସେମାନଙ୍କ ସଂଜ୍ଞା ଖାନ୍ନା, କପୁର୍, ମେହେର, ମାଲହୋତ୍ରା ଆଦି । ଓଡ଼ିଶାରେ ସେମାନେ କିଏ ତା' ସେମାନେ ଜାଣନ୍ତି ନାହିଁ ।

ମଣିଷର କିମ୍ବଦନ୍ତୀ ।

ମଧ୍ୟଏସିଆରୁ କି ଆଉ କେଉଁଠୁ ବାହାରି ଓଡ଼ିଶାଯାକେ କି ସିଂହଳଯାକେ ସ୍ଥାନେ ସ୍ଥାନେ ଘର କରି କରି ଆସିଥିବେ ଅନେକ ମଣିଷ, ଯୁଗ ପାହିଥିବ, କେଉଁ ସମୟରେ ସେମାନଙ୍କର କେଉଁ ଭାଷା କେଉଁ 'ସ୍ୱଦେଶ' । ସେ ଭାଷା ସେ ଦେଶ ବଦଳିଥିବ ବାରମ୍ବାର, ଜାତିର ରକ୍ତର ପବିତ୍ରତା ଓ ଉତ୍କର୍ଷତାରେ ଗର୍ବ ଅନୁଭବ କରୁ କରୁ ତାଙ୍କ ବଂଶର 'ପବିତ୍ର ରକ୍ତ'ରେ ମିଶିଥିବ ଅନେକ 'ପବିତ୍ର ରକ୍ତ' । ଆର୍ଯ୍ୟ ବସୁଦେବ ଓ ଦ୍ରାବିଡ଼ ଦେବକୀଙ୍କ ସନ୍ତାନ ହୋଇ ଜନ୍ମ ହୋଇଥିବେ ଶ୍ରୀକୃଷ୍ଣ ।

ଅନ୍ଧାରୁଆ ଗ୍ରାମ ସହିତ ନାଗବାଳିର ଏ ପରିବାରର କୌଣସି ସମ୍ପର୍କ ରହିନାହିଁ । ଅନ୍ଧାରିଗଡ଼ର ଧ୍ୱଂସ କୁଡ଼ ଉପରେ ଜଙ୍ଗଲ ମାଡ଼ିଛି । ପାହାଡ଼ ତଳେ ବସିଛି ଗୋଟିଏ ହାଡ଼ଗୁଣ୍ଡା ଜଳ ।

ସହୋଦର ଭାଇ ତିନୋଟି, —ନବୀନ, ବାସୁ, ଅଭିନ । ତାଙ୍କ ସହିତ ତାଙ୍କ ଦାଦିପୁଅ ଭାଇମାନେ, ବଡ଼ବାପା ପୁଅ ଭାଇମାନେ । ବାପ, ଦାଦି, ବଡ଼ବାପା ସମସ୍ତେ ଏକାଠି, ଶହେ ପ୍ରାଣୀ କୁଟୁମ୍ବ, ଏକାଠି ରୋଷେଇ ହୁଏ । ନବୀନ ଓ ତାଙ୍କ ସ୍ତ୍ରୀ ସାଧବୀ ଖାଆନ୍ତି ସବାଶେଷରେ । ଦୁଇଓଳି ଖାଇବା ପୂର୍ବରୁ ନବୀନ ପଚାରି ବୁଝନ୍ତି, ଗାଁ ଭିତରେ କେହି ଅଖିଆ ରହିଛି କି ?

ମୋର ତୋର ନାହିଁ, ଯାହା ହେବ ତା' ପରିବାରର ସମଷ୍ଟିଙ୍କ ପାଇଁ, ଚଳଣିର ପ୍ରକାର ଥିଲା ଏହିପରି । ପୁଅ ପୁତୁରା ଝିଅ ଝିଆରୀଙ୍କ ପ୍ରତି ସମାନ ଦୃଷ୍ଟି । ଗୋଟିଏ ଭାଇର ପୁଅକୁ ଆଉ ଗୋଟିଏ ଭାଇ 'ପୁଅ କରେ', କେବେ କେବେ ନିଜର ପୁଅ ଥାଉଣୁ ବି । ସମ୍ଭବତଃ ସ୍ନେହ ବଢ଼ାଇବା ପାଇଁ ଯେ ବି ଗୋଟିଏ ବ୍ୟବସ୍ଥା ।

ଜିନିଷ ଶସ୍ତା । ଜମିରୁ ଜମିଦାରୀରୁ ଆବଶ୍ୟକ ଦ୍ରବ୍ୟ ଆସୁଥାଏ । ଗୁହାଳ, ଭଣ୍ଡାର, ଅମାର, ସବୁ ଭର୍ତ୍ତି । ଯେତେ ଖର୍ଚ୍ଚ କରି ଦେଇ ଦେଇ ବାଣ୍ଟି ବାଣ୍ଟି ତଥାପି ଭର୍ତ୍ତି । ଏକା ସେ ପରିବାର ନୁହେଁ, ଗାଁର ଅନେକ

ଅନେକ ପ୍ରକାରେ ସେଇଥିରେ ଚଳିଯାଆନ୍ତି । 'ଖାଇଥିଲେ ପାଇ ।' ତେଣୁ ସେ ପରିବାରର ନାଁ ଡାକ୍ ହୁଏ ।

ନରାଜ୍ ଆନିକଟ ତିଆରିରେ ଦାୟିତ୍ୱ ନେଇ ନବୀନ ପଦାକୁ ଯାଇଥିଲେ, ସେ ବୋଧହୁଏ ବୁଝିଥିଲେ ଯେ ପିଲାଙ୍କୁ କିଛି ଇଂରେଜି ପଢ଼ାଇବା ଭଲ । ତାଙ୍କ ବଡ଼ପୁଅ ଭାଗବତ କଟକରେ ଏଣ୍ଟ୍ରାନ୍ସ ପଢ଼ିଲେ । ସେକେଣ୍ଡ୍ କ୍ଲାସ୍‌ରେ ପଢ଼ିଲାବେଳେ ଗାଁରୁ କଟକକୁ ଘୋଡ଼ାରେ ଚଢ଼ି ଯାଉ ଯାଉ ଥରେ ଘୋଡ଼ା ଝୁଣ୍ଟିଲା । ସେ ପଡ଼ିଗଲେ, ପେଟ ଉପରେ ଘୋଡ଼ା ପାଦ ପକାଇଦେଲା । ଚଉଦ ବର୍ଷ ବୟସ ହୋଇଥାଏ, ସେ ମରିଗଲେ ।

ଭାଗବତଙ୍କ ପରେ ନବୀନ ନିଜର ଭାଇଙ୍କ ପୁଅ ନୀଳମଣିକୁ ପୁଅ କଲେ । ତା'ପରେ ଜନ୍ମ ହେଲେ ବାପା, —ସୂର୍ଯ୍ୟମଣି, ତା'ପରେ ଦିବ୍ୟସିଂହ, ତା'ପରେ ଦୟାନିଧି, ମଝିରେ ଝିଅମାନେ । ବାପାଙ୍କୁ ପୁଅ କରିନେଲେ ନବୀନଙ୍କ ଭାଇ ବାସୁ, ତା'ପରେ ତାଙ୍କର ପୁଅ ଜନ୍ମ ହେଲେ ଜଗବନ୍ଧୁ । ନବୀନଙ୍କ ଶ୍ୟାଳକ ସଦେଇ ମହାନ୍ତିଙ୍କର ଇଞ୍ଜିନିୟରିଂ ବିଦ୍ୟା ପ୍ରତି ବହୁତ ଝୁଙ୍କ ଥିଲା, ଘରେ ଘରେ କିଛି ପଢ଼ିଥିଲେ । ସେକାଳର ସମାଜରେ ଭଣଜାମାନଙ୍କର ଅନେକ ସମୟ ମାମୁଁଘରେ କଟୁଥିଲା ।

ନୀଳମଣି, ସୂର୍ଯ୍ୟମଣି କଟକର ସର୍ଭେ ସ୍କୁଲ୍‌ରୁ ପାଶ୍ କଲେ, ଓଡ଼ିଶାରେ ସେତିକି ଇଞ୍ଜିନିୟରିଂ ପଢ଼ା ପାଇଁ ବନ୍ଦୋବସ୍ତ ଥିଲା । ଶୁଣିଛି ବାପା ମେଧାବୀ ଛାତ୍ର ଥିଲେ ଓ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଦିବ୍ୟସିଂହ ଆଗ ହାଇସ୍କୁଲ୍‌ରେ ପଢ଼ି ତା'ପରେ ସର୍ଭେ ପାଶ୍ କଲେ । ଜଗବନ୍ଧୁ ଓ ଦୟାନିଧି ଭାଇମାନଙ୍କ ପାଖରେ ରହି ତାଲିମ୍ ପାଇ ଇଞ୍ଜିନିୟରିଂ ବିଦ୍ୟାରେ କିଛି ଜ୍ଞାନ ଅର୍ଜିଲେ ।

ତା'ପରେ ହଠାତ୍ ପରିବାରର ସ୍ୱରୂପ ବଦଳିଗଲା, ସେମାନେ ହେଲେ ଚାକିରିଆ ପ୍ରବାସୀ । ବାପା, ବଡ଼ବାପା, ଜଗୁ ଦାଦି, ଛଇ ଦାଦି, ସମସ୍ତେ ହେଲେ ଓଭରସିଅର୍ ବା ସେହି ଶ୍ରେଣୀର ନାନା ସ୍ଥାନରେ । ଗଡ଼ଜାତ ରାଜ୍ୟମାନଙ୍କରେ । ଦୁବ ଦାଦି (ଦିବ୍ୟସିଂହ) ସରକାରୀ ଚାକିରି କରୁଥିଲେ, ମଲେ ଭାଗଲପୁରରେ ଇଞ୍ଜିନିୟର ହୋଇଥିବା ଅବସ୍ଥାରେ । ଅନୁଗୁଳ-ଫୁଲବାଣୀ ରାସ୍ତା; ଢେଙ୍କାନାଳର କପିଳାସ ଉପରକୁ ରାସ୍ତା ଏସବୁ କାର୍ଯ୍ୟ କୁଆଡ଼େ ସେ ତୁଳାଇଥିଲେ । ପଛେ ତାଙ୍କ ପୁଅ ଶ୍ରୀରାମ ମୟୂରଭଞ୍ଜରେ ପୁଣି ମାଲକାନ୍‌ଗିରିରେ ଓଭରସିଅର ଓ ରାୟଗଡ଼ାରେ ସବ୍ ଓଭରସିଅର୍ ଥିଲେ ।

ବାପା ଦିନାକେତେ ଢେଙ୍କାନାଳରେ ଓ ଦର୍ପଣିରେ କୋର୍ଟଅଫ୍-ଓ୍ୱାର୍ଡ୍‌ସ ବେଳେ ରହି ସୋନପୁରରେ ଓଭରସିଅର୍ ରହିଲେ । ମନକୁ ନ ପାଇଲେ ଇସ୍ତଫା ଦେଇ ଘରକୁ ଆସନ୍ତି । ଦିନାକେତେ ପରେ ପୁଣି ଡକରା ଆସେ ଯାଆନ୍ତି । ସେଠି ସମୁଦାୟ ବିତିଲା ୨୬ ବର୍ଷ । ଓଭରସିଅର୍ ହିସାବରେ ସୋନପୁରରେ ମହାନଦୀର ପଥରବନ୍ଧ ସେ କରାଇଥିଲେ, ତେଲନଦୀର ପଥରବନ୍ଧ ଆରମ୍ଭ କରାଇଥିଲେ, ଅନେକ ଜଳସେଚନ ଯୋଜନା କରାଇଥିଲେ, ସେଗୁଡ଼ିକ ଏବେ ବି ବଞ୍ଚିଛି, ତାହାଛଡ଼ା ପୋଲ, କୋଠାବାଡ଼ି, ସଡ଼କ ଆଦି । ସେ ମଲେ ୧୯୨୬ ଜୁଲାଇ ପହିଲାରେ ପାଟନାରେ । ତାଙ୍କ ପୁଅମାନଙ୍କ ଭିତରୁ ଇଞ୍ଜିନିୟରିଂ ବିଦ୍ୟା ଧରିଲେ ଯଦୁନାଥ, ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ହୋଇ ପେନ୍‌ସନ୍ ନେଲେ । ଜଗୁ ଦାଦି ଆଜୀବନ ଢେଙ୍କାନାଳରେ ଡ୍ରାଫ୍‌ଟସ୍‌ମ୍ୟାନ୍ ରହିଲେ, ତାଙ୍କର ଏକମାତ୍ର ପୁଅ ଆର୍ତ୍ତବନ୍ଧୁ ଜାତୀୟ ରାଜପଥ ବିଭାଗର ଅତିରିକ୍ତ ଚିଫ୍ ଇଞ୍ଜିନିୟର୍ ହୋଇଛି । ଜଇ ଦାଦି ଓ ନୀଳ ବଡ଼ବାପା ଅନେକ ସମୟରେ ଗାଁରେ ରହୁଥିଲେ । ଜଇ ଦାଦି ପୁରୀରେ ସବ୍‌ଓଭରସିଅର୍ ହୋଇଥିଲେ, ଶେଷ ଆଡ଼କୁ ବହୁ ବର୍ଷ ବାରିପଦାରେ ସବ୍‌ଓଭରସିଅର୍ ହୋଇଥିଲେ । ବଡ଼ବାପା କେତେ ବର୍ଷ ଚିକିଟିରେ ସବ୍‌ଓଭରସିଅର୍ ହୋଇଥିଲେ । ତାଙ୍କ ବଡ଼ପୁଅ ପଦ୍ମଚରଣ ଆଗ ଦୁମ୍‌କା (ବିହାର)ରେ ସବ୍‌ଓଭରସିଅର୍ ଥିଲେ, ପଛେ ଖଲିକୋଟ୍‌ରେ ସବ୍‌ଓଭରସିଅର୍ ହୋଇ ରହିଗଲେ ।

ଗାଁ ବାସିନ୍ଦା ହୋଇ ରହିଲା ପରେ ଏକା ପୁରୁଷକେ ବିଦେଶୀ ଚାକିରିଆ ହୋଇ ରହିବା ଅବସ୍ଥା । ତାଙ୍କ ବାପା, ଦାଦି ବଞ୍ଚିଥିଲା ବେଳେ ସେମାନେ ପରିବାରକୁ ଘରେ ଛାଡ଼ି ଏକୁଟିଆ ଚାକିରି ଗାଁକୁ ଯାଉଥିଲେ, ଖର୍ଚ୍ଚ ଯାଇ ଯାହା ବଳୁଥିଲା ତାକୁ ଘରର ମୁରବୀଙ୍କ ପାଖକୁ ପଠାଇ ଦେଉଥିଲେ । ପଛେ ସେମାନେ ଆପଣା ଆପଣା ପରିବାରଙ୍କୁ ସଙ୍ଗରେ ଘେନିଗଲେ। ମୋ ଜନ୍ମବେଳେ କିଏ କେତେବେଳେ ଘରେ, କିଏ ବାହାରେ ।

ଘର ଖାଲି ପଡ଼ିଗଲା । ସମ୍ପତ୍ତି ଉଜୁଡ଼ିଗଲା । ଯେଉଁମାନେ ଗାଁରେ ରହିଲେ ସେମାନେ ନିଘା ଦେଇ ପାରିଲେ ନାହିଁ, ତୁଲାଇ ପାରିଲେ ନାହିଁ, ଭାବୁଥିଲେ ବୋଧହୁଏ, —ଏମିତି ପଦାରୁ ଆସୁଥିବ, ମନଇଚ୍ଛା ଖର୍ଚ୍ଚ ହେଉଥିବ । ଘର ଭାଙ୍ଗି ଭାଙ୍ଗି ଗଲା, ଚାଳ ଦବି ଆସିଲା, କାନ୍ଥରୁ ମାଟି ଖସି ଖସି ପଡ଼ିଲା ।

ସେମିତି ରହିଥିଲା କିଛି ଦିନ । ତା'ପରେ ଆଉ ପୁରୁଷ, ଉଣା ଅଧିକେ

ସମସ୍ତେ ଚାକିରିଆ ଓ ବିଦେଶୀ ହେଲେ । ନିଜ ନିଜ ରୋଜଗାରରେ ଅଲଗା ଅଲଗା ରହିବାକୁ ସୁଖ ଲାଗିଲା, ସେହି ହେଲା ଜୀବନର ଚଳଣି ।

ଓଡ଼ିଶାର ନାନା ପରିବାରଙ୍କ ସାଧାରଣ ସାମାଜିକ ଅବସ୍ଥାର କ୍ରମ ଏହିପରି ।

ଗାଁ ଖାଲି ପଡ଼ି ନାହିଁ, ଅନ୍ୟମାନେ ଅଛନ୍ତି । ଚାଷ କରନ୍ତି, ଅନ୍ୟାନ୍ୟ ବୃତ୍ତି ବେଉସା କରନ୍ତି, ତାଙ୍କ ପିଲାଏ ବି ପାଠ ପଢୁଛନ୍ତି ।

ଗାଁ–ଛାଡ଼ିବା ପାଠ ।

ସେମାନେ ବି ଉଡ଼ିଯିବେ ।

ସହର ବଢୁଛି, ବଢ଼ିବ–

ହୁଏତ ସମୟ ଆସୁଛି ଯେତେବେଳେ ଗାଁରେ ରହିବେ କେବଳ କୃଷିଜୀବୀମାନେ ଓ କୃଷି ସହିତ ସମ୍ପୃକ୍ତ ଥିବା ଅନ୍ୟ କେତେଜଣ, ଯାହାର ଯେଉଁ ଭୂମିକା ।

ନବୀନଙ୍କ ଯୁଗ ବି କାମନା କରିଥିଲା ପରମ୍ପରା ଅତୁଟ ରହୁ, ଘର ରହିଥାଉ ଭର୍ତ୍ତିହୋଇ, ସମସ୍ତେ ଏଇଠି ଥାଆନ୍ତୁ ଛାଇତଳେ ସୁଖରେ । କେବେ ଦାରିଦ୍ର୍ୟ କି ଅଭାବ ନ ଘୋଟୁ ।

ବୋଉ ।

ଯେ ମତେ ତା ଆପଣା ଭିତରୁ ଗଢ଼ି ଏ ସଂସାରକୁ ଆଣିଥିଲା, ନିଜେ ଏ ସଂସାରରୁ ଚାଲିଯିବା ଯାକେ କୋଡ଼ରେ ପୂରେଇ ଜଗି ରହିଥିଲା ତା'ର ପ୍ରାଣ ଦେଇ, ତା'ର ସୂକ୍ଷ୍ମତମ ଚେତନା ଦେଇ, ସେ ମୋର କ'ଣ, ମୋ ଆଖିରେ ସେ କିଏ, କେମିତି, ତାକୁ ତୁଣ୍ଡରେ କହିବାକୁ ଭାଷା ନାହିଁ, ବୋଧହୁଏ କୌଣସି ସନ୍ତାନର ନ ଥାଏ । ସେ ସମ୍ପର୍କ କଳିବାକୁ ମାପିବାକୁ ମୂଲ୍ୟବୋଧର ପ୍ରଶ୍ନ ହିଁ ଉଠିନାହିଁ । ମୋ ବୋଉ ମୋ ଭିତରେ, ବାହାରେ, ମୋ ରକ୍ତରେ, ମୋ ନିଶ୍ୱାସରେ–ଯଦି ସମ୍ଭବ ହୁଅନ୍ତା ମୋଠୁଁ ଅଲଗା କରି ସାମ୍ନାରେ କି ଦୂରରେ ଥୋଇବାକୁ ତେବେ ଇନ୍ଦ୍ରିୟ ମାର୍ଗରେ ଅନୁଭବ କରି ବର୍ଣ୍ଣନା କରି ହୁଅନ୍ତା, ଯେମିତି ଆମେ ଆଉ ସବୁ ମଣିଷ କି ଜିନିଷକୁ ବର୍ଣ୍ଣନା କରିବାକୁ ଚେଷ୍ଟା କରୁ, ଭଦ୍ରତା ଅଭଦ୍ରତା ସମ୍ମାନ ଅସମ୍ମାନ ଇତ୍ୟାଦିର କଣ୍ଟ ପ୍ରୟୋଗ କରି ।

ସବୁ ଅନୁଭୂତି ପ୍ରକାଶ ପାଏ ଖାଲି 'ବୋଉ' ବୋଲି ସ୍ମରଣ କଲେ,

ତାରି ଭିତରେ ସବୁ କଥା ରହିଗଲା । ଆଖିରେ ଦେଖିଲା ଭଳି ଅନ୍ୟ କେହି ଜାଣିଲା ଭଳି କିଛି ନାହିଁ ।

ତା ବିଷୟରେ ଯଦି କିଛି କହିହେବ ସେସବୁ ଖାଲି ଘଟନା ।

ବୋଉ ଖାଲି ମୋର ଜନ୍ମଦାତ୍ରୀ ନୁହେଁ, ସେ ହୋଇଥିଲା ମୋର ପ୍ରାଣରସ ଆହରଣ କରିବାର କ୍ଷେତ୍ର, ମୋର ଘର, ମୋର ଆଶ୍ରୟସ୍ଥଳ । ମୁଁ ଯେଉଁ ଭାଷାରେ ଭାବେ, କହେ, ଲେଖେଁ, ସେ ଭାଷା ବି ତାରିଠୁଁ । ସେ ଗଢ଼ିଥିଲା ମୋର ମନକୁ, ମତେ ଅକ୍ଷର ଚିହ୍ନେଇଥିଲା, ଭଲ ମନ୍ଦ ବୁଝେଇଥିଲା ।

ଅତି ସାନ ହୋଇଥିଲା ବେଳେ 'ବିଚିତ୍ର ରାମାୟଣ'ର ପ୍ରତି ଛାନ୍ଦର 'ଧିସା' ଶିଖେଇଥିଲା, ମୋ ତୁଣ୍ଡରେ ବୋଲେଇଥିଲା, ବୁଝେଇଥିଲା ।

କେତେ କାହାଣୀ କହି କେତେ ଉପଲକ୍ଷ ଦେଇ ମୋ ମନକୁ ଗଢ଼ିଥିଲା । କେତେ ଯତ୍ନରେ କେତେ ପ୍ରତିକୂଳ ଅବସ୍ଥା ଭିତରେ ମୋର ଏ ଶରୀରକୁ ସାଇତିଥିଲା, ବଢ଼େଇଥିଲା । କେତେ ପ୍ରେରଣା ଦେଉଥିଲା, ବଳ ଦେଉଥିଲା । ମୁଁ ମାନେ କି ନ ମାନେ, ବୁଦ୍ଧି ବତୋଉଥିଲା । ବଡ଼ ଦିନେ ରାତିରୁ ଉଠି ପଢ଼େ ବୋଲି ନିଜେ ଚେଇଁ ଉଠି ଜଗୁଥିଲା ।

ରାତି ଚାରିଟାବେଳୁ ସେ ଉଠିପଡ଼େ, ଠାକୁରଙ୍କୁ ସ୍ମରଣ କରେ, ନିତ୍ୟକର୍ମ ଛିଣ୍ଡାଏ, ଘର ଲିପାପୋଛା, ଦୁଆର ଓଳିଆ, ବାସି କାମ ସାରେ । ପାହାନ୍ତା ପହରକୁ ଗାଁର ଅନ୍ୟମାନଙ୍କ ସଙ୍ଗେ ନଈକୁ ଯାଏ, ନଈପାଣି ସେଠୁ ଅଧମାଇଲିଏରୁ ବେଶି ଦୂର । ଗାଧେଇ ଆସି ଚୁଲି ଲଗାଏ, ଆମକୁ କିଛି ଖାଇବାକୁ ଦିଏ, ରାତିରୁ କରି ରଖିଥାଏ ଗଇଁଠା, ଚକୁଳି, କି ପୋଡ଼ପିଠା କି କିଛି । ନିଜେ ଶାଗ ପଖାଳ ଖାଏ । ଦିନଯାକ ଲାଗିଥାଏ କାମରେ, ତା ଆଖିରେ ବହୁତ କାମ ପଡ଼େ, ଆମ ଆଖିରେ କାମ ନ ଥାଉ । ଦିନରେ ସେ ଖାଉ ଖାଉ ଦିନ ଦେଢ଼ଟାରୁ ଅଢ଼େଇଟା । ସମସ୍ତେ ଖାଇ ସାରିଥିବେ । ସମସ୍ତଙ୍କୁ ସବୁ ସୁଆଦିଆତକ ଅଡ଼ାଡ଼ି ଦେଇ ନିଜେ ବସି ବସି ଖୁଆଇବ, ସେଇ ତା'ର ଆନନ୍ଦ, ତା'ପରେ ଯାହା ବଳିଲା, ଯାହା ଆଉ କାହାର ଦରକାର ନାହିଁ, ସେହି ତା'ର ଖାଦ୍ୟ । ତା'ର ପରିଶ୍ରମ କରିବା ଶକ୍ତି ଅଦ୍ଭୁତ । ବରାଦ କରିବା, ବହୁତ ଲୋକଙ୍କୁ ଚଳେଇବା, ଏସବୁ ବିଷୟରେ ଦକ୍ଷତା ଅପରିସୀମ । ତା'ର ସେବା ଆଉ କିଏ କରୁ ତାକୁ ଆଦୌ ରୁଚେ ନାହିଁ, ସେ ସମସ୍ତିଙ୍କର ସେବା କରିବ । ନିଜେ କେବେ ଭଲ ଖାଇବ

ପିନ୍ଧିବ କୌଣସି ଅଏସ୍ କରିବ ସେ କୌଣସି ଦିନ ମନ କରିନାହିଁ । ଶରୀର ଶ୍ରମ, ତ୍ୟାଗ ଓ ସେବା ତାକୁ ପରମ ଆନନ୍ଦ ଦିଏ । ତା'ଠି ଅଳସ ନ ଥିଲା । ଶରୀର ବି ଥିଲା ଡଉଲଡାଉଲ, ତା ଗଢ଼ଣ ବଳିଷ୍ଠ । ସେ ନିଜେ ଖୁବ୍ ପରିଷ୍କାର ପରିଚ୍ଛନ୍ନ, ତା ଘର ଓ ଘରକରଣା ଚିକ୍‌ଚିକ୍ ଥାଏ ।

ସେ ନିଠେଇ ନିଠେଇ କାମ କରେ, ନିକୁଟି ନିକୁଟି, ନିଜ ଦେହରେ କି ଆମ ଦେହରେ ତେଲ ଲଗାଇ ଦେବା, ଗାଧେଇଲା ବେଳେ ରଗଡ଼ି ରଗଡ଼ି ଦେହକୁ ସଫା କରିବା, ହାଣ୍ଡି ଧୋଇବା କି ଘର ଓଳେଇବା କି ବାସନ ମାଜିବା ସେ ଯେତେବେଳେ ଯାହା କରେ ତହିଁରୁ ତା ବାରି ହୋଇପଡ଼େ ।

ପିଠାପଣା କରିବା କାର୍ଯ୍ୟରେ ତା' ପ୍ରଶଂସା ସମସ୍ତେ ଗାଆନ୍ତି । ତା' ପରି ଆରିସା ପିଠା କେହି କରିପାରନ୍ତି ନାହିଁ । ସେମିତି ବିଶିଷ୍ଟ ଉତ୍କର୍ଷତା ଥିବ ତା' ହାତର ଶାଗ ଖରଡ଼ାର, ସଜନାଶାଗ ତରକାରିର, ମାଛ ମୋହରର ଓ କାଞ୍ଜିପାଣିର । ତା' ରୋଷେଇର ସୁଆଦ ବାରି ହୋଇପଡ଼େ । କାହାରିକୁ ଖୁଆଇଲେ ସେ ଲୋଡ଼େ ପ୍ରାଚୁର୍ଯ୍ୟ । ସବୁଦିନେ ତା'ର ବଡ଼ ଆଖି ।

ବୋଉକୁ ମନେ ପକାଇଲେ ସହଜରେ ମନେପଡ଼େ ନିତିଦିନର କେତୋଟି ଚିହ୍ନା ଦୃଶ୍ୟ । ପ୍ରଥମେ, —ତା'ର ପୁରାଣ ପଢ଼ା ଓ ବହିପଢ଼ା । ତା'ର ଦ୍ୱିପ୍ରହର ବେଳର ଅବସର ସେଇଥିରେ କଟେ, ସେ ପଢୁଥାଏ, ଅନ୍ୟମାନେ ଶୁଣୁଥାନ୍ତି, ମଝିରେ ମଝିରେ ସାଧାରଣ ଜୀବନ ସହିତ ଘଟନା ମିଳେଇ ମିଳେଇ ଆଲୋଚନା କରେ। ଓଡ଼ିଆରେ ଛପା ହୋଇଥିବା ସବୁ ପୁରାଣ ସେ ଅନେକଥର ପଢ଼ିସାରିଥିଲା । କିଏ କାହାର କ'ଣ ଅଥବା କାହା ସମ୍ପର୍କରେ କେଉଁ ଘଟନା ସେ ବିଷୟରେ କାହାର କୌଣସି ସନ୍ଦେହ ହେଲେ ତାକୁ ପଚାରି ଦେଲେ ଉତ୍ତର ମିଳିଯାଏ । ଓଡ଼ିଆ ପୁରାଣ ଛଡ଼ା ଓଡ଼ିଆ ଉପନ୍ୟାସ, ଗଳ୍ପ, ସାଧାରଣ ଜ୍ଞାନ ବିଷୟରେ ବହି ଯେତେ ଯାହା ଘରକୁ ଆସେ, ତାକୁ ସେ ଅତି ଆଗ୍ରହରେ ପଢ଼େ, ସେ ବିଷୟରେ ତା'ର ମତବ୍ୟକ୍ତ କରେ । ସେ ଅସାଧାରଣ ପ୍ରକାରେ ପଢ଼ୁଆ ଥିଲା, ୧୯୪୮ ଯାକେ କାହ୍ନୁ ଭାଇଙ୍କର ଓ ମୋର ଯେତେ ବହି, ଯେତେ ଲେଖା ବାହାରିଥିଲା ସବୁ ସେ ପଢ଼ିଥିଲା । ନିକୁଟି ନିକୁଟି ପଢ଼େ, ସେଥିରୁ ଆନନ୍ଦ ପାଏ । ମନେରଖେ ।

ଦ୍ୱିତୀୟରେ, ବାସ୍ନା ଫୁଲ ପ୍ରତି ତା'ର ଶ୍ରଦ୍ଧା । ସେ ଫୁଲ ତୋଳି ଆଣି ଆମକୁ ଦିଏ, ନିଜେ ଗୋଟିଏ ଦୋଓଟି ରଖେ, ତା ତକିଆ କତିରେ ଫୁଲଟିଏ ଥୁଆ ହୋଇଥାଏ । ସେ ଫୁଲଗଛର ଗଚ୍ଛିତ ଯତ୍ନ ନିଏ । ଗଛ

ଲଗେଇବାକୁ ତା'ର ସଉକ ।

ତୃତୀୟରେ, ତା'ର କରୁଣା । କାହାରି ଦୁଃଖ ଦେଖିଲେ ସେ ଅଭିଭୂତ ହୋଇପଡ଼େ, ନିଜ ସାଧ୍ୟ ଅନୁସାରେ ସାହାଯ୍ୟ କରେ । ପରର ଦୁଃଖରେ—ସେ ମଣିଷ ହେଉ କି ପଶୁପକ୍ଷୀ ହେଉ,—ବୋଉ ତୁଣ୍ଡରେ ସବୁବେଳେ ଥାଏ 'ଆହା' ପଦ । ଚିହ୍ନା ହେଉ କି ଅଚିହ୍ନା ହେଉ କେହି ବରଷାରେ ତିନ୍ତୁଥିଲେ କି ଖରାରେ ଛଟପଟ ହେଉଥିଲେ ଦେଖିଲେ ସେ ନିଜେ ଛଟପଟ ହୋଇଯାଏ । ନିଜେ କ'ଣ କରିପାରିବ ସେଥିପାଇଁ ଧନ୍ଦି ହୁଏ । କେଉଁ ଅଚିହ୍ନା ପିଲାଏ ପଡ଼ିଆରେ ଖେଳୁଥିଲା ବେଳେ ଝରକା ପାଖେ ଠିଆ ହୋଇ ସେ ସେମାନଙ୍କ ଉଦ୍ଦେଶ୍ୟରେ ଅଯାଚିତ ଆଶୀର୍ବାଦ ଅଜାଡ଼ି ଦେବାର ମୁଁ କେତେଥର ଦେଖିଛି । ଆଉ ଦେଖିଛି, ଦୁଃଖୀର ଦୁଃଖରେ ସେ ଝରଝର କାନ୍ଦିବା, ସେତେବେଳେ କାହା ଦୋଷ ତା ଆଖିରେ ପଡ଼େ ନାହିଁ ।

ସେମିତି, ନିଷ୍ଠୁରତା ଓ ଅନ୍ୟାୟ ବିଷୟ ଶୁଣିଲେ କି ପଢ଼ିଲେ ତା'ର ତୀବ୍ର ନିନ୍ଦାବାଦ, ଅଭିସମ୍ପାତ । ସେତେବେଳର ଖବରକାଗଜ ପଢ଼ିବା ବେଳ ତା' ପକ୍ଷରେ ଗୋଟାଏ ଯନ୍ତ୍ରଣା ଭୋଗ । ସେ ଜାଣିଥିଲା ମହାତ୍ମା ଗାନ୍ଧୀ ସାକ୍ଷାତ୍ ମହାତ୍ମା । ସେହି କଥା କହେ । ଶେଷରେ ଧର୍ମର ବିଜୟ ନିଃସନ୍ଦେହ ବୋଲି ବିଶ୍ୱାସ ରଖେ ।

ଆଉ ମନେପଡ଼େ, ବୋଉର ପାନ ଛେଚିବା ଶବ୍ଦ, ଛନ୍ଦାୟମାନ ଠକ୍-ଠକ୍-ଠକ୍ । ସେ ଚାଲିଯିବାର ଉଣେଇଶି ବର୍ଷ ପୂରିବା ଉପରେ, ଏବେ ବି ଲାଗେ ସେ ଶବ୍ଦ ଶୁଭି ଶୁଭି ଯାଉଛି, ତା' ସଙ୍ଗେ ସଙ୍ଗେ ଶୂନ୍ୟରୁ ଗଢ଼ି ହୋଇ ଉଠେ ଦିନ ଦିନକର ସେ ।

ସ୍ୱଭାବତଃ ସେ ନିଡ଼ରୁଆ, ସାହସରେ ପୂର୍ଣ୍ଣ । ବଡ଼ ପାଟିରେ ସ୍ପଷ୍ଟ କଥା କହେ, ତା'ଠିଁ ଗୁଁ ପୁଁ ନ ଥିଲା, ଥଙ୍ଗେଇ ଥଙ୍ଗେଇ ହେବା ନ ଥିଲା, କପଟ କରି କଥା ଲୁଚେଇ ରଖିବା ନ ଥିଲା । ସବୁ କହେ ମୁହାଁମୁହିଁ । କୌଣସି ପରିସ୍ଥିତିରେ ଭୀରୁତା ତା' ଆଖିରେ ଅକ୍ଷମଣୀୟ ଦୁର୍ବଳତା । ବେଆଡ଼ା ଦେଖିଲେ ଅନ୍ୟାୟ କି ଔଦ୍ଧତ୍ୟ ଦେଖିଲେ ସେ ତୁନି ହୋଇ ପଡ଼େ ନାହିଁ, ଟାଣକରି ତା' ନିଜ ମତ ଦିଏ କୌଣସି ଅବସ୍ଥାରେ ସେ ଦବେନାହିଁ, ନିରାଶ ହୁଏନାହିଁ, ସବୁବେଳେ ପ୍ରଫୁଲ୍ଲ । ଖାଲି, ଆମେ କେହି ବେମାର ପଡ଼ିଲେ କି କଷ୍ଟ ପାଇଲେ ସେ ଧୈର୍ଯ୍ୟ ହରାଏ, ଝାଉଁଳି ପଡ଼େ, ନିଜେ ଲାଗିଥାଏ ପାରୁପର୍ଯ୍ୟନ୍ତ, କତିଏ କତିଏ ଛାଇ ପରି ଥାଏ ।

ସେ ପଟ ନିଏ ଦୁର୍ବଳ ପକ୍ଷର ।

କାହାକୁ ଖୁସାମତ କରିବା, ମନ ଢଗି କଥା କହିବା, କାହାର ସ୍ନେହଭାଜନ ହେବାକୁ ଉଦ୍ଦେଶ୍ୟ ରଖି କୌଣସି କାର୍ଯ୍ୟ କରିବା—ଏସବୁ ତା'ର ରୁଚିବିରୋଧୀ ।

ସେ ବୁଝେ ନିଜ କର୍ତ୍ତବ୍ୟ କରିବା, ନିଜ ପାରିଲାଯାକେ କାର୍ଯ୍ୟ କରିଯିବା, କେବେ ବାହାଦୁରି ଶୁଣିବାକୁ କାନ ଡେରି ନାହିଁ ।

ନିଜେ ଠିକ୍ ତ ଦୁନିଆଁ ଠିକ୍, ସତ୍ ରହ, କାମ କର, ଭଗବାନଠିଁ ଅଟଳ ବିଶ୍ୱାସ ରଖ, କିନ୍ତୁ ନିଜ ହାତ ଗୋଡ଼ ଖେଳାଅ ବୁଦ୍ଧି ଖେଳାଅ, ନାଠି ହୋଇ ବସିଲେ ମାଟି ହୋଇଯିବ, ଯାହା ଆସୁ ଦବି ଯାଅନା, ଦବିଗଲେ ଘା' ପଶିଯିବ, ଅଣ୍ଟା ଭାଙ୍ଗିଯିବ, ଯେଡ଼େ ଅନ୍ଧାର ଥାଉ ସେ ପୁଣି କଟିଯିବ, ଏଇଆ ତା'ର ବାଣୀ ଓ ଆପଣାର ଆଦର୍ଶ ।

ବୋଉ ଖୁବ୍ ଛୋଟ ବେତ ପେଡ଼ିଟିଏ ରଖିଥିଲା, ତା' ଭିତରେ ଥିଲା ତା'ର କୋଥଳି, ନିର୍ମାଲ୍ୟ, ଟିକି ଆରିସି, ଚନ୍ଦନ କାଠ ଓ ଟିକି ଚନ୍ଦନପେଡ଼ି, ପୂଜା ସରଞ୍ଜାମ, ତିଳକ, କେତେ ପାଦୁକ । ଆନୁଷ୍ଠାନିକ ଭାବରେ ସେ ସବୁଦିନେ ଗାଧୋଇ ସାରି ତା' ପେଡ଼ି ଖୋଲେ, ଠାକୁରଙ୍କ ନାଁ ନିଏ, ଦଣ୍ଡବତ ହୁଏ । ତା'ପରେ ସଞ୍ଜବେଳେ ଟିକିଏ କେତେବେଳେ ଏକୁଟିଆ ବସି ଠାକୁରଙ୍କୁ ଧ୍ୟାନ କରେ । ବଡ଼ି ପାହାନ୍ତାରୁ ଉଠିଲାବେଳେ ଓ ରାତିରେ ବିଛଣା ଧରିଲା ଆଗରୁ ସେ ମୁଣ୍ଡିଆ ମାରେ । ପୁଣି ଗାଧୋଇ ସାରି ଚଉରାମୂଳେ ଦଣ୍ଡବତ ହୁଏ ଓ ସଞ୍ଜରେ ଚଉରାମୂଳେ ଦୀପ ଥୋଇଲା ବେଳେ । ଏତିକି ତା'ର ଠାକୁର ପୂଜା, କେତେବେଳେ ତୁନିତାନିରେ ସେ ହୋଇଯାଏ । ତା' ଜୀବନଯାପନରେ ଯେଉଁ ଦୈନନ୍ଦିନ ନିର୍ଘଣ୍ଟର ଧାରା ସ୍ୱାଭାବିକ ହୋଇ ଯାଇଥିଲା ତାହାରି ଭିତରେ ଆପେ ଆପେ ଖାପିଯାଏ ତା'ର ନିରାଡ଼ମ୍ବର ଠାକୁର ପୂଜା ।

ଯେତେ ପୂଜା, ଓଷା, ବ୍ରତ ଗାଁ ଗହଳିରେ ଘରେ ଘରେ ହୁଏ ସମସ୍ତଙ୍କ ଭଳି ତା' ଘରେ ବି ସେସବୁ ହୁଏ । ସେଗୁଡ଼ିକ ମୋ ପକ୍ଷରେ ଆକାଙ୍‌କ୍ଷିତ ଦିନଗୁଡ଼ିଏ, କାରଣ ସେତେବେଳେ ବୋଉ ନିଶ୍ଚୟ ପିଠା କରିଥିବ ।

ସେ ସବୁ ଠାକୁରଙ୍କୁ ଦଣ୍ଡବତ ହୁଏ, ତର୍କ କରେ ନାହିଁ, ସେ ବିଷୟରେ ଆଲୋଚନା କରେ ନାହିଁ । ତତ୍ତ୍ୱ ଖୋଜିବା, କି ଜ୍ଞାନମାର୍ଗରେ ମୁଣ୍ଡ ଖେଳାଇବା ତା'ଠିଁ ନ ଥିଲା । ସେ ବିଷୟରେ ଯେ ଯାହା କହେ ସେ ଶୁଣେ । କହେ "ଆମେ କିବା ଲୋକ, ବୁଦ୍ଧି କେତେ ଯେ ସେସବୁ ବୁଝିବା, ସେଥିରେ ପଶିବା । କାମ କରିବା ଆଉ ଠାକୁରଙ୍କୁ ସ୍ମରଣ କରୁଥିବା ଏତିକି ଆମ

କାମ ।''

ଭୋର ପାହାନ୍ତିଆ । ପଦାରେ ଶୀତ କାକର । ଉଷୁମ ନିଦରେ ମୁଁ ଶୋଇଥିବି ବୋଉ କତିରେ । ସେହି ଘର ଭିତରେ ଅଚେତ ଭାଙ୍ଗିବା ସଙ୍ଗୀତ ପରି ବାପାଙ୍କ କଣ୍ଠରୁ ଆଗ ଶୁଭିବ ଭଜନ ।

''ଉଠ ଉଠ ହୋ, କାହ୍ନୁ କେଶବ ହରି ।''

ଗୋଟିକ ପରେ ଗୋଟିଏ ହୋଇ ଓଡ଼ିଆ ଭଜନ କେତୋଟି, ତା'ପରେ ସଂସ୍କୃତରେ ସ୍ତୋତ୍ର କେତୋଟି ।

ଘୋରିପୂରି ହୋଇ ଚେକାମହୁଲି ପକାଇ ବାପା ଖଟ ଉପରେ ବସିଥିବେ । ଅନେକଥର ବହୁତ ଆଗରୁ ତାଙ୍କର ବାହାର କାମ ସରିଯାଇଥାଏ, ସେହି ସଙ୍କେତ, ରାତି ପାହିଲା ।

ମୁହଁରେ ପ୍ରଶାନ୍ତ ଆତ୍ମନିବେଦନ, କଣ୍ଠରେ ଆଶା, ଆନନ୍ଦ, ତୁଣ୍ଡରେ ପଦେ କଥା—''ଭଗବାନ ଅଛନ୍ତି । ସେ ଯାହା କରିବେ । ଆମେ କିଏ ? ଆମେ ସତ୍‌ରେ ଥିବା, ସତ୍‌ରେ ଚାଲିବା, ସବୁବେଳେ କାମ କରୁଥିବା ।''

କେତେବେଳେ ଟିକିଏ ଗେଲ କି ଆଉଁସା, ପଦେ କଅଁଳ କଥା, ସେତିକି । ବେଶୀ ଆଦର ସେ ଦେଖାଇ ହୁଅନ୍ତି ନାହିଁ । ବ୍ୟବହାର ଅତି କୋମଳ । କିନ୍ତୁ ନୀତି ବିଷୟରେ ଭାରି କଡ଼ା ।

ମନେପଡ଼େ ବାପାଙ୍କ 'ଧ୍ୟାନ', ସକାଳେ ଘଣ୍ଟାଏ, ସଞ୍ଜରେ ଘଣ୍ଟାଏ । ନିଶ୍ଚଳ ହୋଇ ସେ 'ଆସନ'ରେ ବସିଥାନ୍ତି । ଆଖି ବୁଜିଥାନ୍ତି । ଦିଶୁଥାଏ, ତାଙ୍କ ଦେହ ଭିତରେ କ'ଣ ସବୁ ଘଟିଯାଉଛି, 'ପବନ ସାଧନା' । ଆଖି ଖୋଲନ୍ତି, ଆଖି ନାଲି ପଡ଼ିଥାଏ । ଶୁଣି ଆସିଛୁଁ ସେ 'ଜ୍ୟୋତି ଦର୍ଶନ' କରନ୍ତି । ଆଶ୍ଚର୍ଯ୍ୟ ଲାଗେ, ଯେ ଏତେ ସାଧାରଣ, ଏତେ ଆପଣାର ସେତେବେଳେ ସେ ଦୂରେଇ ଯାଆନ୍ତି । ଦିଶିଯାଏ ତାଙ୍କର ପୋଥିପଢ଼ା ବହିପଢ଼ା । କାଠର ବ୍ୟାସାସନ ଉପରେ ପୋଥି କି ବହି ଥାଏ । ଏକାଦଶ ସ୍କନ୍ଧ, ସମୁଦାୟ ଭାଗବତ, ସମୁଦାୟ ନୃସିଂହ ପୁରାଣ, ଦାର୍ଢ୍ୟତାଭକ୍ତି, ସୁଧାସାର ଗୀତା, ଏଇସବୁ ବୋଲନ୍ତି, ଦିନରେ ଗାଧୋଇସାରି, ପୁଣି ରାତିରେ । ଅନେକ ସମୟରେ ଇଚ୍ଛା ହେଲେ କେତେବେଳେ ସେ ହସକୌତୁକ କରନ୍ତି, କିନ୍ତୁ ବେଶୀ ତାଙ୍କ ମୁହଁ ଦିଶେ ଗମ୍ଭୀର । ସେ ମୁହଁ ମୁଳହୁଁ ମୁରବୀ-ମୁହଁ, ଦାୟିତ୍ୱରେ ଓଜନ, ଯଦିଚ କର୍ତ୍ତୃତ୍ୱରେ ଗର୍ବିତ ନୁହେଁ । ତାଙ୍କ ଚାହାଣିର ଅସ୍ୱାଭାବିକ ତେଜ ବାରି

ହୋଇ ପଡ଼େ, କାହାରିକି ଅନାଇଁଦେଲେ ତାଙ୍କ ଦୃଷ୍ଟି କେତେ ଭିତରକୁ ଭେଦିଯାଏ । ଯେପରିକି ଅନ୍ୟର ମନର ତଳିତଳାନ୍ତ ବି ସେ ଦେଖିପାରୁଛନ୍ତି ।

ତାଙ୍କ ସଙ୍ଗେ ଥଟ୍ଟା ନକଲ ହେବାର କାହାକୁ ମୁଁ ଦେଖି ନାହିଁ । ତାଙ୍କ ଆଗରେ ସମସ୍ତେ କେମିତି ସାନ ଜଣାପଡ଼ନ୍ତି । ସେ ମୁହଁରେ ସବୁବେଳେ ଥାଏ ନିହିତ ମର୍ଯ୍ୟାଦା, ଯେତେବେଳେ ସେ ଯେଉଁ ଅବସ୍ଥାରେ ଥାଉନ୍ତୁ ପଛେ ।

ତାଙ୍କ ବ୍ୟବହାର ଅତି ଭଦ୍ର, କୋମଳ, ସଂଯତ ଓ ସାବଲୀଳ । ସେଥିରେ ଭୟ, ଉଦ୍‌ବେଗ, ଖୁସାମତ ଆଦିର ଲେଶମାତ୍ର ନ ଥିଲା, ଔଦ୍ଧତ୍ୟର ଛାଇ ବି ପଡ଼ି ନ ଥିଲା । ନିଜର ବଡ଼େଇ ସେ ବଖାଣନ୍ତି ନାହିଁ, ସେ ଅତିମାତ୍ରାରେ ସ୍ପଷ୍ଟବାଦୀ ଥିଲେ, ପଚାରିଲେ ନିଜ ମତବ୍ୟକ୍ତ କରୁଥିଲେ । କପଟ, ମିଥ୍ୟା, ଶଠାଚାର, ପ୍ରତାରଣାକୁ ଘୃଣା କରୁଥିଲେ । ନିଷ୍ଠୁରତାକୁ ନିନ୍ଦା କରୁଥିଲେ । ଆପେ ଥିଲେ ଅତି ଦୟାଶୀଳ, କ୍ଷମାଶୀଳ, ପରର ଅକ୍ଷମତାକୁ ବୁଝିପାରୁଥିଲେ । ନିଜ ଲୋକଙ୍କର କର୍ତ୍ତବ୍ୟପାଳନ, ନିତିମିତ୍ତା ଆଚାର ଓ ବ୍ୟବହାରରେ ଟିକିଏ ବିଚ୍ୟୁତି ଘଟିଲେ ସେ ସାବଧାନ କରିଦେଉଥିଲେ, ସଂଶୋଧନର ମାର୍ଗ ବତାଉଥିଲେ ।

ଆପେ ଭାବି ବିଚାରି ମତ ଠିକଣା କରୁଥିଲେ, ସେଥିରେ ମଧ୍ୟ ହେଳା କି ଟାଳଟୁଳ ନ ଥିଲା, ଯାହା ସହିବାକୁ ପଡୁ ନିଜ ମତରୁ ଟଳୁ ନ ଥିଲେ । ତେଣୁ ଚାକିରି ଜୀବନରେ ଘରସଂସାରର ଦାୟିତ୍ୱ ମୁଣ୍ଡେଇ ସୁଦ୍ଧା ସେ ଚାରିଥର ଇସ୍ତଫା ଦେଇ ଚାଲି ଆସିଥିଲେ, ଅଭାବରେ ଦିନ ବିତାଇଥିଲେ, ପୁଣି ଯାଇଥିଲେ ଡକରା ପାଇ, ଖୁସାମତ କରି ନୁହେଁ ।

ଅଭାବ କଷ୍ଟ ବେଳେ ନିଜ ଦୁଃଖ ସେ ତୁନତାନ ହୋଇ ସହୁଥିଲେ ଓ ପାରୁପର୍ଯ୍ୟନ୍ତ ପରିଶ୍ରମ କରୁଥିଲେ, ପରର ଦୟା ଖୋଜିବାକୁ ମୁଣ୍ଡ ପାତିବା ତାଙ୍କ ପକ୍ଷରେ ଥିଲା ଅତି ଘୃଣ୍ୟ, ଲଜ୍ଜାକର ।

ତାଙ୍କର କର୍ତ୍ତବ୍ୟବୋଧ ସୁବିଦିତ ଥିଲା । କେହି କେବେ ସ୍ମରଣ କରାଇଦେବା ଦରକାର ପଡ଼ିନାହିଁ । ଦେହ ଅସୁସ୍ଥ ଥାଏ, ତଥାପି ସେ ନିୟମିତ ଭାବେ କାର୍ଯ୍ୟ କରନ୍ତି, ଗସ୍ତରେ ବୁଲନ୍ତି, ପଚାରିଲେ ହସିଦେଇ କହନ୍ତି, "ଜଗୁଆଳ ମଣିଷର ନିଜର ବିବେକ, ଯେଉଁ ବେତନ ପାଉଛି ସେଥିପାଇଁ କାମ ନ କରି ତା ହଜମ ହେବ କେମିତି ?" ଭଙ୍ଗା ସ୍ୱାସ୍ଥ୍ୟ ଘେନି ଘୋଡ଼ରେ ଚଢ଼ି ଗସ୍ତ କରୁଥିଲେ, ପାହାଡ଼ରେ ଚାଲି ଚାଲି ବୁଲୁଥିଲେ, ଖରାରେ ବର୍ଷାରେ ବୁଲି କଠିନ କାର୍ଯ୍ୟ କରୁଥିଲେ, ମରିବାର ୨୧ ଦିନ ପୂର୍ବରୁ ପର୍ବତ ଉପରେ

ସର୍ଭେ କରୁଥିଲେ, ଏବେବି ସେ ଡାଇରିରେ ତାଙ୍କ ହାତଲେଖା ବିବରଣୀ ଓ ଚିତ୍ର ମୋ ପାଖେ ଅଛି ।

ଠିକ୍ ଲୋକ, ଟାଣୁଆ, ସବୁ ସଦ୍‌ଗୁଣର ଆଧାର, ସାଧୁ ପୁରୁଷ, ସନ୍ଥ, —ଆମ ଅଞ୍ଚଳରେ ଓ ତାଙ୍କ କାର୍ଯ୍ୟ ପରିସରର ଅଞ୍ଚଳରେ ଏଇଆ ଥିଲା ତାଙ୍କ ପରିଚୟ ।

ଜୀବନରେ ତାଙ୍କର ପ୍ରଧାନ ଆସକ୍ତି ଥିଲା ଆଧ୍ୟାତ୍ମ ମାର୍ଗ ପ୍ରତି । ତାଙ୍କ ଦୃଷ୍ଟିଭଙ୍ଗୀ ଆଧ୍ୟାତ୍ମିକ । ସିଦ୍ଧ ଜଗନ୍ନାଥ ଦାସଙ୍କ ଏକାଦଶ ସ୍କନ୍ଧ ଭାଗବତକୁ ସେ ଅଭ୍ୟାସ କରୁଥିଲେ, ତାଙ୍କ ବିଚାର ପାଇଁ ପଥପ୍ରଦର୍ଶକ ତାହାରି ଶିକ୍ଷା । ଆଉ ସେ ଅଭ୍ୟାସ କରୁଥିଲେ, ଲୟଯୋଗ, ଶିଶୁବେଦ, ପିଲାଦିନୁଁ ଏହି ଯୋଡ଼ିଏ ନାଁ ମୁଁ ବାରମ୍ବାର ଶୁଣିଛି । ଓଡ଼ିଆ 'ସୁଧାସାରଗୀତା' ସେ ବୁଝୁଥିଲେ, ସେଥିରେ କୁଆଡ଼େ ଯୋଗସାଧନାର ମାର୍ଗ ଓ ତା'ର ବିଭିନ୍ନ ଅବସ୍ଥା ବର୍ଣ୍ଣିତ ଅଛି, ବହୁତ ଭିତରେ ଅଛି ତା ଅର୍ଥ, ସାଧାରଣ ଶବ୍ଦାର୍ଥ ନୁହେଁ । ପ୍ରାୟ ପ୍ରତିଦିନ ସେଥିରୁ ସେ ଆବଶ୍ୟକ ଅଂଶ ପଢ଼ନ୍ତି । ପ୍ରତିଦିନ ଆସନ କରନ୍ତି । ସେ କବାଟ ବନ୍ଦ କରି ଆସନରେ ବସୁଥିଲେ । ତାହାଛଡ଼ା ଅନ୍ୟ ସମୟରେ ଆମ ଦେଖନ୍ତରେ ବି ଆସନରେ ବସୁଥିଲେ । ଏ ଦୁଇ ପ୍ରକାର ଆସନ ଭିନ୍ନେ । ସେ ଆସନରେ ବସିଥିଲାବେଳେ ଆଗ ଦିଶେ ତାଙ୍କ ଶରୀର ଭିତରେ କ'ଣ ଟଣାଓଟରା ଲାଗିଛି, ପରେ ସବୁ ନିଶ୍ଚଳ ହୁଏ, ଆଖିବୁଜି ପଦ୍ମାସନରେ ସେ ନିଶ୍ଚଳ ହୋଇ ବସି ରହନ୍ତି । ବହୁତ ବେଳ । ନିଶ୍ୱାସ ଯାଉଛି କି ନା ଦେଖିଲେ ବାରି ହୁଏ ନାହିଁ ।

ତାଙ୍କର ଏ ଯୋଗସାଧନା ସହିତ ଘରେ ସମସ୍ତେ ପରିଚିତ ଥିଲେ । ତେଣୁ ଖୁଡ଼୍‌ଖାଡ଼୍ ବି ହୁଏ ନାହିଁ । ଆମେ ଶୁଣିଥିଲୁ ସେତେବେଳେ ବିଘ୍ନ ଘଟାଇବା ମହାପାପ, ତହିଁରେ ତାଙ୍କର ବି ଅପୂରଣୀୟ କ୍ଷତି ହେବ, ଏପରି ବି ହୋଇପାରେ ଯେ ତାଙ୍କର ଧ୍ୟାନ ଆଉ ଭାଙ୍ଗିବ ନାହିଁ । ତେଣୁ ଆମେ ହୁସିଆର ଥିଲୁଁ । ତାଙ୍କର ଯୋଗସାଧନା ବେଳକୁ ଘରେ ସମସ୍ତେ ଗୁରୁତ୍ୱ ଦେଉଥିଲେ ।

ଏ ସାଧନା ସେ ଆରମ୍ଭ କରିଥିଲେ ବୋଧହୁଏ ତାଙ୍କର ବତିଶି ବର୍ଷ ବେଳୁ, ରହିଥିଲା ଶେଷଯାକେ । ସେ ଜାଣିଶୁଣି କହିପୋଛି 'ଶିଶୁ ଆସନ'ରେ ବସି ଦେହ ଛାଡ଼ିଥିଲେ ।

ଆସନ ଛଡ଼ା ଅନେକ ସମୟରେ ସେ ନିଶ୍ଚଳ ହୋଇ ଆଖିବୁଜି

ବସନ୍ତି, ଅନେକ ସମୟରେ ରାତିରେ ଶୂନ୍ୟକୁ ଆକାଶକୁ ଚାହିଁ ଏକୁଟିଆ ବସିଥାନ୍ତି । ତା'ପରେ ସେ ପେନ୍‌ସିଲ୍‌ରେ କେତେ ଛବି ଆଙ୍କନ୍ତି, ମଝିରେ ଅସଂଖ୍ୟ ଗୋଲ ଗୋଲ ଶୂନ, ଏକାଠି ହୋଇ କ'ଣ ଗୋଟିଏ 'ରୂପ', ମନୁଷ୍ୟ କି ଜନ୍ତୁ କି ଦେବତା କି ଗଛବୁରୁଛର ନୁହେଁ, କ'ଣ ନୂଆ ସୃଷ୍ଟି, ବୋହି ଯାଉଥିବା କ'ଣ କିଛି । କ'ଣ ସେ, ସେ ବୁଝାନ୍ତି ନାହିଁ । କହନ୍ତି, "ତୁମେ ସବୁ ବୁଝିପାରିବ ନାହିଁ ।"

ସେ ତାଙ୍କ ଯୋଗ ସାଧନା ବଖାଣନ୍ତି ନାହିଁ, କହନ୍ତି "ହାଟରେ ମଧ୍ୟେ ବ୍ରହ୍ମଜ୍ଞାନ ମନା," କେବେ କ୍ୱଚିତ୍ ସେହି ମାର୍ଗର ଆଉ କାହା ସଙ୍ଗେ କ'ଣ ଆଲୋଚନା କରନ୍ତି, ସଂଶୟ ଫେଡ଼ନ୍ତି ଓ ମାର୍ଗ ବତାନ୍ତି, ଅତି ଅଳ୍ପ ଲୋକଙ୍କୁ ।

ସେ କହନ୍ତି 'ଲୟ'ରେ ହିଁ ଆନନ୍ଦ ଅଛି, ମହାଶୂନ୍ୟ ସହିତ ଏକ ହେବାରେ, ଜ୍ୟୋତି ଦେଖିବାରେ, ବ୍ରହ୍ମକୁ ବ୍ରହ୍ମରେ ସଂଯୋଗ କରିବାରେ ।

ବଡ଼ ଆଶ୍ଚର୍ଯ୍ୟ କଥା, ଗଛ, ଚଢ଼େଇ, ଜୀବଜନ୍ତୁ ସମସ୍ତଙ୍କ ସଙ୍ଗେ ସେ ବେଳେ ବେଳେ ଏପରି ବ୍ୟବହାର କରନ୍ତି ଯେପରି ସେ ବି ମଣିଷ, ସେ ବି ବୁଝେ ।

ସେ ଔଷଧ ଖାଉ ନ ଥିଲେ । ବେମାର ପଡ଼ିଲେ ଆସନ କରି କରି ଭଲ ହୁଅନ୍ତି । ସର୍ଦ୍ଦି ହେଲେ ବସାଦହି ପଖାଳ ଖାଆନ୍ତି ।

ମରିବାର ପ୍ରାୟ ଦେଢ଼ବର୍ଷ ପୂର୍ବରୁ ସେ କିଛି କବିରାଜି ଔଷଧ ବ୍ୟବହାର କରୁଥିଲେ ।

ଥରେ ତାଙ୍କର ୪୦ ବର୍ଷ ବୟସରେ ହେବ ପରା, ତାଙ୍କୁ ଗୋଟାଏ ସାପ କାମୁଡ଼ିଲା । ବହୁତ ଯନ୍ତ୍ରଣା ହେଲା । ସେ କୌଣସି ଔଷଧ ବ୍ୟବହାର କଲେ ନାହିଁ । ତାଙ୍କ ଦେହର ଫାଳେ କଳା ପଡ଼ିଗଲା, ତାଳୁରୁ ତଳିପାଯାକେ ଦୁଇବର୍ଣ୍ଣ । ସେ ସେହି ଆସନ ହିଁ କରୁଥାନ୍ତି । ତା'ପରେ ମାସକ ଭିତରେ ଥରେ କଳା ପଡ଼ିଥିବା ଫାଳକରେ ଗୋଟାଏ ଦାନ୍ତ ମୂଳରୁ ଘା' ହେଲା, ବହୁତ ଗୁଡ଼ାଏ ହଳଦିଆ ନାଳୁଆ ପଦାର୍ଥ ଦେହରୁ ବାହାରିଗଲା, ଦେହର ସେ ଫାଳକରେ ପୁଣି ସ୍ୱାଭାବିକ ବର୍ଣ୍ଣ ଫେରି ଆସିଲା, ସେ ବିଷ-ମୁକ୍ତ ହେଲେ ।

ସେ ନାକପୁଡ଼ାରେ ପବନ ବାରି ଖାଦ୍ୟ ଖାଆନ୍ତି, ବେଳା ଜଗନ୍ତି, ଅବେଳା ହେଲେ ବରଂ ଉପାସ କରନ୍ତି ।

ସମସ୍ତେ ଜାଣିଥିଲେ, ତାଙ୍କଠି ଆଶ୍ଚର୍ଯ୍ୟ ପ୍ରକାରେ ଯୋଗ-ବିଭୂତି ପ୍ରକାଶ ପାଇଥିଲା । ସେ ଟିକିଏ ଆଖି ବୁଜିଲେ ଯାହା ପାରି ତା' ବିଷୟରେ ବର୍ତ୍ତମାନ ଓ ଭବିଷ୍ୟତ୍‌ର ଘଟଣା ଦେଖିପାରନ୍ତି, ଯେତେବେଳେ ଯାହା କହନ୍ତି ତା ଠିକ୍ ହୁଏ । କିନ୍ତୁ ଭବିଷ୍ୟତ୍ ବକ୍ତା ପରି ସେ ନାନା କଥା କହିବୁଲନ୍ତି ନାହିଁ, କେହି ମନଦୁଃଖରେ ଥିଲେ ତା'ର ଦୁଃଖ ଉପଶମ କରିବା ସମ୍ଭବ ହେଲେ ସେ ତା' ସମ୍ପର୍କରେ ଆଖିବୁଜି ଦେଖନ୍ତି ଓ କହନ୍ତି । ଗାଁ ଲୋକେ ପଚାରିବାକୁ ଆସନ୍ତି ।

''ଦୁଇମାସ ହେଲା ପୁଅ କାଳିମାଟି ଗଲାଣି ଭାଷା ଟିକିଏ ନାହିଁ, କେଉଁଠି କେମିତି ରହିଲା ଜାଣିପାରିଲି ନାହିଁ, କହିବେ ନାହିଁ ଟିକିଏ ?''

ପୁଅ କେଉଁଠି କି ଅବସ୍ଥାରେ ଅଛି ଆଖିରେ ଦେଖିଲା ପରି ସେ କହିଯାଆନ୍ତି । କେବେ ଚିଠି ଆସିବ କହନ୍ତି, କାହିଁକି ଆସିନାହିଁ କହନ୍ତି । ଠିକ୍ ସେତିକିବେଳକୁ ଚିଠି ଆସେ, ଅବିକଳ ସେହିକଥା ଲେଖାଥାଏ ।

ଏମିତି କେତେ ଘଟନା ।

ସୋନପୁରରେ ଥିଲାବେଳେ ଦିନେ ସେ ତାଙ୍କ ଅଭ୍ୟସ୍ତ ସମୟରେ ଦିନ ଗୋଟାଏ ବେଳେ ତାଙ୍କ କର୍ମକ୍ଷେତ୍ରରୁ ଘରକୁ ଫେରୁଥାଆନ୍ତି । ହଠାତ୍ ବାଟରେ ଥକ୍କା ହୋଇ ଠିଆ ହୋଇ ପଡ଼ିଲେ, ଆଖିରୁ ଲୁହ ଧାର ଛୁଟିଲା । କାନ୍ଦି କାନ୍ଦି ଘରକୁ ଫେରିଲେ । ବୋଉ ସେଦିନ ବଡ଼ ମାଛ ରାନ୍ଧିଥାଏ, ଖେଷେଇ ସାରି ଅପେକ୍ଷା କରିଥାଏ । ବାପାଙ୍କ କାନ୍ଦଣା ଦେଖି କାତର ହୋଇ ପଚାରିଲା, ''କ'ଣ ହେଲା ?''

''ଦୁବ ଚାଲିଗଲା । ଆଉ କାହୁଁ ପାଇବି ?''

''ଏଁ !. ଦୁବ ଚାଲିଗଲେ ! ସେ ତ ଭାଗଲପୁରରେ ଅଛନ୍ତି । କେତେ ମାସ ହୋଇଗଲା, ଚିଠି ନାହିଁ । କିଏ ଚିଠି ଲେଖିଚି ? କିଏ ତାର କରିଚି ?''

''ଚିଠି ଆଉ ତାର କେମିତି ଆସିବ ? ସେ ତ ଅଧଘଣ୍ଟାଏ ହେବ ମରିଗଲା । ମୋରି ଆଖି ଆଗରେ ! ଗଲା !''

''ଏ କି ପାଗଳ କଥା କହୁଚ ? ସେ କାହିଁ ତେମେ କାହିଁ । ବଞ୍ଚିଥାନ୍ତୁ ବିଚରା ଶହେ ବର୍ଷ, ଏଡ଼େ ଅଶୁଭ କଥା କାହିଁକି ଫାନ୍ଦୁଚ ?''

କହିଲା, ''ମିଛରେ ପିଲାଏ ଛାନିଆଁ ହେବେ ।''ସେ କହିଲେ, ''ମିଛ ନୁହେଁ, ସତ । ଛାନିଆଁ ବା କାହିଁକି ହେବେ । ବେଳ ଆସିଲେ ସମସ୍ତେ

ଯାଆନ୍ତି ।"

ବଡ଼ ଭାଉଜ ତାଙ୍କୁ ଆଡ଼ ହୁଅନ୍ତି । ବାପା କହିଲେ, "ବୋଉକୁ ଡାକ, ମୋର ଯିବାବେଳେ ଆଉ ଆଡ଼ ଉଡ଼ୁଆଳ କ'ଣ ? ଆଗରେ ହେବ ନାହିଁ କାହିଁକି ?"

ବଡ଼ ଭାଉଜ କୁହାଇଲେ, "ବାପାଙ୍କୁ ପଚାର, କ'ଣ ଦାନ ଦେବେ ?"

ବାପା କହିଲେ, "କି ଦାନ ! ମୋର କ'ଣ ଅଛି ?" ବୋଲିଲେ—

"ତୋମାୟ କି ଦିଏ ପୂଜିବ ହରି,
ଯା ଦିଏଛ ସବ୍‌ଇ ତ ତୋମାରି—"

ଦାନ ଦେବା କଥା ହସରେ ଉଡ଼ାଇ ଦେଲେ ।

ତାଙ୍କ ନିର୍ଦ୍ଦେଶ ଅନୁସାରେ ଧୂଳିଭାଇ ଏକାଦଶ ସ୍କନ୍ଧରୁ ପଢ଼ିଲେ, ତା'ପରେ ସୁଧାସାର ଗୀତାରୁ । ତା'ପରେ ଚାଲିଲା ଅନ୍ତିମ ଉପଦେଶ, କେବଳ ନୀତି କଥା, ସଂସାରି ଚଳଣି କଥା ନୁହେଁ । ତାଙ୍କ ଧରଣ ଦେଖି ବୋଉ ପ୍ରମାଦ ଗଣିଲା । କାନ୍ଦି କାନ୍ଦି ପଚାରିଲା "ତୁମେ ସତେ ଚାଲିଯିବ କହୁଚ ? ମତେ ନବ ନାହିଁ ?"

"ତୁମର ତ ଆହୁରି ବହୁତ ବହୁତ ବର୍ଷ ଅଛି, ଯିବ କୁଆଡ଼େ ?"

"ମୋ ପାଇଁ ଏ ପିଲାଙ୍କ ପାଇଁ କ'ଣ ରଖିଯାଉଚ ?"

ସେ ଉପରକୁ ଅନାଇଁ ହାତ ଯୋଡ଼ିଲେ, କହିଲେ, "ସେ ଅଛନ୍ତି, ସେ ବୁଝିବେ, ମୁଁ କ'ଣ ରଖିଯାଆନ୍ତି ?"

ନିର୍ଦ୍ଦେଶ ଭିତରେ ଥିଲା, ସତ୍‌ରେ ଚଳିବ, ପରସ୍ପର ଭିତରେ ସ୍ନେହ ସହାନୁଭୂତି ଏକତା ଅତୁଟ ରଖିବ, ଭଗବାନଙ୍କଠି ବିଶ୍ୱାସ ରଖିଥିବ ।

ବୋଉ କାନ୍ଦି କାନ୍ଦି କହିଲା, "ପିଲାଗୁଡ଼ାକ ଗୁଡ଼ିରି ଗାଡ଼ିରି, ଦେଖିଲ ଟିକିଏ !"

"ଆଉ ଥାଏ ?` ଆଖିରେ ଦେଖିଲି ପରା ! ସେଇ ଭାଗଲପୁରରେ ଗଙ୍ଗା କୂଳେ । ଆହା ହା—ଭାଇ ମୋର !"

ସେହି ମୁହୂର୍ତ୍ତରୁ ସେ ଅଶୌଚ ପାଳିଲେ । ତାଙ୍କ ଦେଖାଦେଖି ଘରେ ସମସ୍ତେ । ଭାଗଲପୁରରୁ ଟେଲିଗ୍ରାମ ଆସିଲା ସମ୍ବଲପୁରକୁ । ସେଠୁ ଡଙ୍ଗାରେ ସାଧାରଣ ଡାକ ହିସାବରେ ଆଉ ଦୁଇ ଦିନରେ ଆସି ପହଞ୍ଚିଲା ସୋନପୁରରେ ।

ବାପା ଠିକ୍ ଦେଖିଥିଲେ ।

ତାଙ୍କ ନିଜର ମୃତ୍ୟୁ ବି ଚାରି ମାସ ଆଗରୁ ସେ ଜାଣିପାରିଥିଲେ । ପାଞ୍ଜିରେ ଯେଉଁଠି ଥାଏ ଜୁଲାଇ ପହିଲା ସେଠି ନାଲି ଚିହ୍ନ ଦେଇଥିଲେ ଓ ନାଲି ପେନ୍‌ସିଲ୍‌ରେ ଲେଖି ଦେଇଥିଲେ "ସମୟ ୬ଟା ୩୦" । ସେହି ୩/୪ ମାସ ଆଗରୁ ବଡ଼ ଭାଇଙ୍କି ଚିଠି ଲେଖିଲେ, "ଆମର ସମୟ ପାଖ ହେଲା, ଗଙ୍ଗାକୂଳରେ ଯିବାକୁ ଚାହୁଁ, ଆସି ନେଇଯାଅ, ସବୁ ବ୍ୟବସ୍ଥା କର ।" ବାରମ୍ବାର ଲେଖିଲେ । ଶେଷରେ ଭାଇ ଆସି ଆମକୁ ନେଇଗଲେ । ନିଜର ଅନ୍ତିମ ସମୟ ପାଖ ହେଲା ଜାଣି ବାପା ବୋଉକୁ ଓ ଧୃଜଭାଇଙ୍କୁ ବି ଡକାଇ ଆଣିଥିଲେ ।

ତାଙ୍କ ମରିବା ଘଟନା ବି ଅତି ଅଦ୍ଭୁତ । ସେ ସୋନପୁରରୁ ଅସୁସ୍ଥ ହୋଇ ପାଟନା ଯାଇଥିଲେ । ଡାକ୍ତରି ଚିକିତ୍ସା ହେଲା । ଦିନେ ସକାଳେ ଡାକ୍ତର ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଆସି କହିଦେଇ ଗଲେ ଯେ, ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲେ । ଦିନଟି ଭଲରେ କଟିଲା । ରାତିରେ ବି କୌଣସି ଅସୁବିଧା ନ ଥିଲା । ରାତି ୪ଟା ବେଳକୁ ବାପା ନିଦରୁ ଉଠିଲେ, ଡାକ ଛାଡ଼ିଲେ "ଆରେ ଉଠରେ ଉଠରେ, ବିଦା ହେବା, ଆମର ଯିବା ସମୟ ହେଲା ପରା ।" ସମସ୍ତେ ଉଠି ପଡ଼ିଲେ । ସେ ସମ୍ପୂର୍ଣ୍ଣ ସୁସ୍ଥ ଦିଶୁଥାନ୍ତି । କହିଲେ "କଥାଭାଷା ହେବା, ମୋର ଯିବା ବେଳ ହେଲା ।" ବୋଉ ପ୍ରତିବାଦ କଲା ।

ସେ କହିଲେ, "ସେମାନେ ମଣିଷ ହେବେ ।"

ମତେ ବଡ଼ ଭାଉଜବୋଉଙ୍କ ମାର୍ଫତ୍ କରି ହାତ ଦେଖାଇ ଦେଲେ ।

କଥାଭାଷା ହେଉ ହେଉ ସକାଳ ହେଲା । ପଚାରିଲେ, "ସୂର୍ଯ୍ୟ ଉଇଁଲେ କି ?"

କିଏ ଦେଖି ଆସି ହଁ କଲା । ଅତିଶୀଘ୍ର ପୁଣି ସମସ୍ତିଙ୍କି ଉପଦେଶ ଦେଇ କହିଲେ, "ଏଥର ମୋ ବେଳ ହୋଇଗଲା, ଯିବି ।" ସେ ତାଙ୍କ ଅଭ୍ୟସ୍ତ 'ଶିଶୁ-ଆସନ'ରେ ବସିପଡ଼ି ଆଖିବୁଜି ତୁନି ହେଲେ । ଦୁଇ ମିନିଟ୍ ପରେ ପଛଆଡ଼କୁ ଟଳି ପଡ଼ିଲେ । ସମସ୍ତେ ଡାକିଲୁଁ "ବାପା ! ବାପା !" ସେ ଆଉ ଇହଧାମରେ ନ ଥାନ୍ତି ।

ଏଇ ଯାହା ମୋ ଆଖିରେ ଦେଖିଛି ଏପରି ଆଉ ଏ ଜୀବନରେ

ଦେଖିନାହିଁ ।

ନିଜ ବିଷୟରେ ସେ ତା ଆଗରୁ କହୁଥିଲେ—ସାଧକ ବହୁ ଜନ୍ମ ଲାଗି ଲାଗି ସାଧନା କରୁଥାଏ । ମଲେ ପୁଣି ଜନ୍ମହୁଏ, ଯେଉଁଠି ଛାଡ଼ିଥିଲା ସେଇଠୁ ଆରମ୍ଭ କରେ । ଯଦି କୌଣସି ଜନ୍ମରେ ଅପକର୍ମ କରେ ତେବେ ପଛେଇଯାଏ, ନ ହେଲେ ନାହିଁ । ତା'ପରେ ତା କର୍ମ ସମ୍ପୂର୍ଣ୍ଣ ହେଲେ ସେ ଯେ ଚାଲିଯାଏ ଆଉ ଜନ୍ମ ହୁଏ ନାହିଁ ।

ବିପତ୍ତି, ସମ୍ପତ୍ତି ଆଦି ବିଷୟରେ ତାଙ୍କର ବିଚିତ୍ର ପ୍ରକାରେ ବଳିଷ୍ଠ ଧାରଣା । କହନ୍ତି ''ଯୋଗମାୟା ମତେ ଏଇଆ ଦେଖାଇ ଭୁଲୋଉଚି, ପରଖୁଚି, ଏ ପରୀକ୍ଷାରେ ପାଶ୍ କରିବାକୁ ପଡ଼ିବ ।''

କିଛି ଅଭାବ ବଢ଼ିଲେ ତାଙ୍କର ଆନନ୍ଦ ବଢ଼େ, କହନ୍ତି, ''ହରି ଦୟା କଲେ ସବୁ ହରଣ କରି ନିଅନ୍ତି, ଯେମିତି ତାଙ୍କ ଭକ୍ତଙ୍କୁ ବାନ୍ଧି ରଖିବାକୁ କି ଭୁଲାଇବାକୁ ଆଉ କିଛି ନ ଥିବ । ଦୟା ନ କଲେ ବିଷୟ ଓ ବାସନା ବଢ଼ାନ୍ତି, କହନ୍ତି ଏଇଆକୁ ଧରି ଯେ ପଡ଼ିଥାଉ, ମତେ ନ ଖୋଜୁ ।''

ଅନ୍ୟାୟ ଉପାୟରେ କେହି ଧନ ବଢ଼ାଇଲେ ସେ କହନ୍ତି ''ଏ ସବୁଦିନେ ରହିବ ନାହିଁ, ଅଧର୍ମ ବିତ୍ତ, ଫଳେ ବହୁତ, ଗଲାବେଳେ ଯାଏ ମୂଳ ସହିତ ।'' ଯେଉଁ ସ୍ଥାନ କି ମଣିଷ ବିଷୟରେ ସେ ଯାହା କହିଥିଲେ ପଛେ ସବୁ ସତ ହେଲା ।

କାହାରିକି ଦଣ୍ଡଦେବା ବିଷୟରେ ସେ କହନ୍ତି, ''ଗୋଡ଼େଇଥିବ, ଧରିବ ନାହିଁ, ଉଞ୍ଚେଇଥିବ, ମାରିବ ନାହିଁ ।''

ପ୍ରତିଶୋଧ ନେବା ବିଷୟରେ ସେ କହନ୍ତି,
''ତତେ ଯେ ମାରୁଛି ତୁ ତାକୁ ନ ମାର
ତାକୁ ମାରୁଥିବ ଆନ,
ଦେଖୁଥିବ ତୋର ବେନି ନୟନ
ଶୁଣୁଥିବ ତୋର କାନ ।''

କେହି ତାଙ୍କର ଶତ୍ରୁତା କଲେ ସେ ତା ପାଇଁ ଦୁଃଖିତ ହୁଅନ୍ତି, କହନ୍ତି, ''ମୁଁ ସିନା ତା'ର କିଛି କରିବି ନାହିଁ, ମୋ ପାଖରେ ଯେଉଁ ଅଦୃଶ୍ୟ ଜଗୁଆଳଗୁଡ଼ାକ ସବୁବେଳେ ଅଛନ୍ତି ସେମାନେ ମୋ କଥା ମାନିବେ ନାହିଁ ଯେ ।'' ନିଜ ବିଷୟରେ ତାଙ୍କର ଭାରି ଡର, କାଳେ ସେ କାହା ଉପରେ

କେତେବେଳେ ରାଗିଯିବେ । ସେ ଭାବନ୍ତି ସେ କାହାର ଅଶୁଭ ମନାସିଲେ ତା ନିଶ୍ଚୟ ଘଟିଯିବ, ତେଣୁ ସେ ସାବଧାନ ଥାଆନ୍ତି ।

ସେ କହୁଥିଲେ, —''ଆଖିକି ଯାହା ଦିଶୁଛି ସେସବୁ ସତ ନୁହେଁ, ତା ତଳେ ଆହୁରି ଅଛି, ଜଡ଼ ଉହାଡ଼ରେ ସୂକ୍ଷ୍ମ ଅଛି, ସେଇ ସତ । ସେ ସତ ଆଖି ଆଗେ ଆଗେ ଅଛି, ଚର୍ମ ଚକ୍ଷୁକୁ ଦିଶିବ ନାହିଁ, ଜ୍ଞାନଚକ୍ଷୁକୁ ସହଜରେ ଦିଶିବ, ଇନ୍ଦ୍ରିୟ ଦ୍ୱାରା ବାରି ହେବ ନାହିଁ, ଆତ୍ମା ଦ୍ୱାରା ସବୁଠି ଆତ୍ମାକୁ ଚିହ୍ନି ହେବ ।'' ଆକାଶ, ଜଙ୍ଗଲ, ପ୍ରକୃତି ସୃଷ୍ଟି, ଯାହା ଦେଖିଲେ ତା ଉହାଡ଼ରେ ସେ ସେହି ସତ୍ୟକୁ ଦେଖୁଥିଲେ, ଆଖିବାଟେ ନୁହେଁ, ଲୟ ଲଗାଇ ।

ସେ କହୁଥିଲେ, ''ଆତ୍ମାର କଥାକୁ ଆତ୍ମା ବୁଝିପାରିବ, ଚଢ଼େଇ, ଜନ୍ତୁ, ଗଛ, ଯାହାକୁ ମଣିଷ ସେପରି କଥା କହିପାରିବ ସେ ବୁଝିବ, ମାନିବ ।

ଗଛ କଥା କହେ । ମୁଁ ନିଜେ ଦେଖିଛି । ଫୁଲନଖରା ଡାକଘର ଆମ ଘରଠୁ ୪/୫ ମାଇଲ ହେବ । ପାଟନାରୁ ଭାଇ ଟଙ୍କା ପଠାଇଥାନ୍ତି, ବାପା ଓ ମୁଁ ଆଣିବାକୁ ଯାଇଥାଉଁ । ଜ୍ୟେଷ୍ଠର ଶେଷ । ମୁଣ୍ଡଫଟା ଖରା । ଉଦୁଉଦିଆ ବେଳ । ଆମେ ଫେରୁଥାଉଁ । ଆମ ଗାଁ ପାଖ ହେଲା । ଗୋଟିଏ ଝଙ୍କା ଆମ୍ବଗଛ ତଳେ ଆମେ ଦିହେଁ ଛାଇରେ ବସିଥାଉଁ । କିଛି ସମୟ ପରେ ବାପା ମତେ କହିଲେ, ''ଏତିକିବେଳେ ତତେ ପାଚିଲା ଆମ୍ବଟିଏ ମିଳିଲେ କେଡ଼େ ଖୁସି ହୁଅନ୍ତୁ !'' ଗଛରେ ଆମ୍ବ ଥିବାର ଦିଶୁ ନ ଥାଏ । ଆମ୍ବ ବେଳ ସରିଥାଏ । ବାପା ସେ ଗଛକୁ କଥା କହିଲେ, ''ଦେଖ, ଗଛ, ଏ ପିଲାଟି କେଡ଼େ ଖରାରେ ଆସିଛି ! କେମିତି ଛଟଛଟ ହୋଇଯାଉଛି ! ତୁମେ ତାକୁ ଗୋଟିଏ ପାଚିଲାଆମ୍ବ ଦେଲେ ସେ କେଡ଼େ ଖୁସି ହୁଅନ୍ତା ! ଦବ ?''

ଦି' ଚାରି ମିନିଟ୍ ପରେ ଠିକ୍ ଆମ କତିରେ ଯୋଡ଼ିଏ ସୁନ୍ଦର ପାଚିଲା ଆମ୍ବ ଝଡ଼ି ପଡ଼ିଲା । କାଉଟିଏ ଉଡ଼ିଗଲା । ବାପା କହିଲେ ''ଦେଖିଲୁ, ଗଛର କେଡ଼େ ଦୟା, କେଡ଼େ ବିଚାର ! କେମିତି କଥା ଶୁଣିଲା । ନେ ଖାଇଦେ ପେଟପୂରା ।'' ବୋଧହୁଏ କଖାରୁଆ ଆମ୍ବ ।

ଘଟନାର ତାତ୍ପର୍ଯ୍ୟ ବିଷୟ ସେତେବେଳେ ମୁଁ ବୁଝିପାରିଲି ନାହିଁ । ଏବେ ଯେ ବୁଝିଛି ତା ବି ନୁହେଁ । ସାଧାରଣ ଦୃଷ୍ଟିରୁ କାକ-ତାଳୀୟ ପରି ଯେ ଯେପରିକି କାକ-ଆମ୍ର୍ୟ । ଆମ୍ବଗଛ ମଣିଷର କଥା ବୁଝିବ, ମାନିବ ।

ବିଶୁଦ୍ଧ ଓଡ଼ିଆ କଥା ।

କିନ୍ତୁ ତାଙ୍କ ବିଷୟରେ ଅନ୍ୟାନ୍ୟ ଯେତେ ଯାହା ଘଟନା, ତା ସହିତ ଯେ ଘଟନା ବି ସହଜରେ ଖାପିଯାଏ । ମୋ ଜୀବନରେ ମୁଁ କେବେ ଗଛକୁ କଥା କହି ମନାଇ ପାରିନାହିଁ ସତ, କିନ୍ତୁ ଅନ୍ୟାନ୍ୟ ବିଚିତ୍ର ଅନୁଭୂତି ମୁଁ ଅନୁଭବ କରିଛି, କାହିଁକି ଏପରି ହୁଏ, କେମିତି ସମ୍ଭବ ହୁଏ, ବୁଦ୍ଧି ବିଚାରରେ ତା କେବେ ନିଜେ ବୁଝିପାରି ନାହିଁ, ଅନ୍ୟକୁ ବୁଝାଇବା ଦୂରେ ଥାଉ ।

ମୁଁ ଦେଖିଛି, କେତେବେଳେ ଚଢ଼େଇମାନେ ତାଙ୍କ ପାଖକୁ ଆସନ୍ତି । ମୁଁ ପଚାରେ ମୋ ପାଖକୁ କାହିଁକି ଆସୁନାହାନ୍ତି । ସେ କହନ୍ତି "ତୋ ଗୁଣରୁ । ସେମାନେ ଜାଣନ୍ତି, ତୁ ମନେ ମନେ ଭାବୁଛୁ ତୋ ପାଖକୁ ଆଇଲେ ତୁ ଧରିପକାନ୍ତୁ । ଯେଉଁ ଜନ୍ତୁଜୀବଙ୍କ ତୁଣ୍ଡରେ ଭାଷା ଶୁଭେ ନାହିଁ ସେମାନେ ତୁମ ମନ ଭିତର ଭାଷା ବୁଝି ପାରନ୍ତି, ଆଗରୁ ଡରକନ୍ତି । ତୁମେ ହିଂସା ନ ଛାଡ଼ିଲେ କେହି ତମକୁ ବିଶ୍ୱାସ କରିବେ ନାହିଁ ।"

ସେ ଖାଇ ବସିଥିଲାବେଳେ ଦେଖିଛି, ବିଲେଇମାନେ ବେଢ଼ିଥିବେ, କଡିରେ ଚଢ଼େଇମାନେ ବସୁଥିବେ, ସମସ୍ତେ ଖାଉଥିବେ, ବିଲେଇ ଚଢ଼େଇକି ଖାଇ ଗୋଡ଼ାଏ ନାହିଁ, ଚଢ଼େଇ ଡରେ ନାହିଁ ।

ମୁଁ ଶୁଣିଛି ତାଙ୍କର ଓ ଘରଚଟିଆଙ୍କ ସମ୍ବନ୍ଧରେ ଗୋଟିଏ କୌତୁକପୂର୍ଣ୍ଣ ଘଟନା । ସୋନପୁର । ଧୂଳ ଭାଇ କାହ୍ନୁ ଭାଇ ପିଲା ହୋଇଥିଲେ । ଧୂଳ ଭାଇ କହିଲେ "ବାପା, ଦେଖ ଯେ ଘରଚଟିଆମାନେ ଆମ ଘରକୁ ବାରମ୍ବାର ଅସନା କରୁଛନ୍ତି, ଏମାନଙ୍କର ଭାରି ମଜା, ଆମେ ସିନା ଘର ଭଡ଼ା ଦେଉଛୁଁ ଏମାନେ ତ ଦେଉନାହାନ୍ତି ।" ଘରଚଟିଆମାନେ ଉଡୁଥିଲେ । ବାପା କହିଲେ "ଶୁଣିଲ ତ ଘରଚଟିଆମାନେ, ଯେ ତମକୁ ଘରଭଡ଼ା ମାଗିଲେଣି । ତୁମେ ଦେବା ବି ଉଚିତ୍, ବହୁଦିନୁଁ ରହିଲଣି, ଦେଇ ତ ନା କେବେ ।" ତହିଁ ଆରଦିନ ସେତିକିବେଳେ ସେମାନେ ସେଇଠି ବସିଥାନ୍ତି । ଧୂଳଭାଇଙ୍କ ମୁଣ୍ଡ ଉପରେ ଘରଚଟିଆଟିଏ ଉଡ଼ିଲା । ଠନ୍ କରି ଉପରୁ କ'ଣଟାଏ ତଳେ ଖସି ପଡ଼ିଲା । ଦେଖିଲେ, ଗୋଟାଏ ତମ୍ବା ଦୋ-ପଇସି । ବାପା ହସିଲେ, କହିଲେ "ଦେଖିଲୁ ? ଘରଚଟିଆ କେମିତି ଘରଭଡ଼ା ଦେଲା । କହିଲୁ ବୋଲି ଛଳ କଲା, ଆଣି ଦେଲା ।" ସେମାନେ ଏ ଘଟନାଟି ଏବେ ବି ମନେ ରଖିଛନ୍ତି ।

ଆଉ ଥରେ ସେହି ସୋନପୁରରେ ଥିଲାବେଳେ ରାତି ୩ଟା ବାଜିଥାଏ,

ତାଙ୍କ ବସାରେ ଗୋଟିଏ ଘରେ ସେ ଧ୍ୟାନରେ ବସିଥାନ୍ତି । ଆରପଟେ ଅନ୍ୟ ଗୋଟିଏ ବଖରାରେ ଗୋଟିଏ ଚୋର ପଶି ଲୁଚିଥାଏ । ବଡ଼ ବସା, ବହୁତ ଗୁଡ଼ିଏ ବଖୁରି । ଧ୍ୟାନ ଭାଙ୍ଗିଲା, ନିଜେ ବସିଥିବା ବଖରା ଭିତରୁ ସେ ଚୋରର ନାଁ ଧରି ଡାକିଲେ, "ଆରେ ବାବା, ତୁ ଆସିଛୁ ମୁଁ ଜାଣିଛି । ଏଠିକି ଆ, କ'ଣ ଦରକାର ମତେ କହ, ଏମିତି ଲୁଚି ଲୁଚି କେତେବେଳଯାକେ ରହିବୁ ! ଲୋକେ ଉଠିବେ, ଧରିବେ, ମାରିବେ, ପୁଲିସ୍‌ରେ ଦେବେ । ଆ, ଡର୍ ନାଇଁ, ତୋର କିଛି କରିବି ନାହିଁ ।" ଅନ୍ୟମାନେ ଉଠିପଡ଼ିଲେ । ଚୋରଟି ଡରରେ ତାଙ୍କ ପାଖକୁ ଆସି ଗୋଡ଼ତଳେ ପଡ଼ିଗଲା । ତାକୁ କିଛି ଖାଇବାକୁ ଦେଇ ବିଦା କଲେ ।

ଏ ଘଟନା ମୋ ଜନ୍ମ ପୂର୍ବରୁ ଘଟିଥିଲା ମୁଁ ଶୁଣିଛି । କିନ୍ତୁ ମୁଁ ସୋନପୁରରେ ଥିଲାବେଳେ ଆଉ ଥରେ ଚୋର ପଶି ରନ୍ଧାଘରୁ ପଖାଳ ଖାଇ ଯାଇଥିଲା, ଆମ ଦୁହିଁଙ୍କୁ ପଦାରୁ ଶିକୁଳି ଲଗାଇ ବନ୍ଦ କରିଥିଲା, ଡକାଡକି ଶୁଣି ଅନ୍ୟ ଜଣେ ଆସି ଖୋଲିଦେଲେ । ସେଥର ସେ ଆଗରୁ ଜାଣିପାରି ନ ଥିଲେ ତ !

କିପରି ଅବସ୍ଥା ହେଲେ ମଣିଷ ସବୁ ଜାଣିପାରେ ପୁଣି କିପରି ଅବସ୍ଥାରେ ସେ ଜାଣିପାରେ ନାହିଁ ସେକଥା ମତେ ଜଣାନାହିଁ । ସେହି ବ୍ରହ୍ମଜ୍ଞାନୀ ଆଦର୍ଶବାଦୀ ଯୋଗସାଧକ—ସାଧାରଣ ଲୋକ ପରି କଷ୍ଟ ଜଞ୍ଜାଳ ଭୋଗ କରିବାର ମୁଁ ତାଙ୍କୁ ଦେଖିଛି, ରୋଗରେ କଷ୍ଟ ପାଇବାର ଦେଖିଛି ।

ସେ କହନ୍ତି, "ଦେବତା ସୁଦ୍ଧା ମନୁଷ୍ୟ ହୋଇ ଜନ୍ମ ହେଲେ ମନୁଷ୍ୟ ପରି ସୁଖ ଦୁଃଖ ଭୋଗ କରିବାକୁ ଓ ଶେଷରେ ଶରୀର ଛାଡ଼ିବାକୁ ବାଧ୍ୟ, ସେ ଦୈବର ଅଧୀନ ହେବେ, କାଳକର୍ମର ଫଳ ଭୋଗିବେ । ଦୈବକୁ ରୋକି ହେବ କେବଳ ସାଧନା ବଳରେ, ତେବେ—ସାଧନା ସେତେ ଉପରକୁ ଉଠିପାରିଲେ ମଣିଷ ହୋଇବି କିଏ ମୂଳରୁ ଜନ୍ମ ହେବ କାହିଁକି, ଆଉ, ଯଦି ନା ଜନ୍ମ ହେଲା, ଆପଣା ଭାଗ୍ୟ ବଦଳାଇବାକୁ ତା'ର ଇଚ୍ଛା ବି ହେବ କାହିଁକି ? ସେ ତ ଲୟ ଲଗାଇ ପରମ ଆନନ୍ଦ ପାଉଥିବ, ତା ଦେହରେ ଉଈ ହୁଙ୍କା ହେଲା କି ତା'ର ଆଉ କ'ଣ ହେଲା କି ନ ହେଲା ସେଥିକି ତା'ର ମନ କି ନିଘା ଯିବ କାହିଁକି ?"

ସେ ଅସାଧାରଣ ଥିଲେ । କିନ୍ତୁ ସବୁ ଦିନେ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ବିନୀତ ଶିଖାଳିର । ଯୋଗ-ବିଭୂତି ବିଷୟରେ ତାଙ୍କର ଧାରଣା ଥିଲା "ଏଗୁଡ଼ାକ ବଡ଼ କଥା ନୁହେଁ, ଆପେ ଆସେ, ଏ କିଛି ନୁହେଁ, ମାୟା

ଆଗରେ କେଉଁ କିମିଆଁ କେଉଁ ବିଭୂତି ବଡ଼ ? ଯେ ଏ ମାୟାର ସ୍ରଷ୍ଟା ତା ଶକ୍ତି ଆଗରେ କେଉଁ ମାୟା ବଡ଼ ? ଥୋଡ଼ାଏ ହଟଚମକରେ ମାତନ୍ତି, ସେଗୁଡ଼ିକ ସେଇଠି ଅଟକି ଗଡୁଥାନ୍ତି ।''

ଲୋକେ ତାଙ୍କ ସାଧନାର ବଳ ଓ ଉତ୍କର୍ଷ ବିଷୟରେ ତାଙ୍କ ଆଗରେ ବଖାଣି ବସିଲେ ସେ ନିରସ୍ତ କରନ୍ତି । ତାଙ୍କ ନିଜର ଧାରଣା ଯେ ''ସାଧନା ଏଇ ଜନ୍ମରେ ସରିବ ନାହିଁ ।''

ଦୀକ୍ଷାଗୁରୁ ବିଷୟରେ ତାଙ୍କର ମତ, ''ଗୁରୁଙ୍କୁ ତୁମେ ଖୋଜି ଯିବ ନାହିଁ, କେହି ଯାଚିହେଲେ ଗୋଡ଼େଇବ ନାହିଁ, ତୁମେ ଯଦି ନିଜ କାମ କରୁଥିବ ତୁମେ ପ୍ରସ୍ତୁତ ହେଲେ ଓ ତୁମର ବେଳ ଆସିଲେ ତୁମ ଗୁରୁ ତୁମ ପାଖକୁ ଆସିବେ । ତୁମେ ଜାଣିପାରିବ 'ଗୁରୁ ଆସିଲେ' ।''

କିଏ ବ୍ରହ୍ମଜ୍ଞାନ ମାଗି ଶିଖିବାକୁ ଆସିଲେ ଅନେକ ସମୟରେ ସେ କହିଥାନ୍ତି ''ତୁମେ ତୁମ ନିଜ କାମ କର, ଏଥିରେ ପଶ ନାହିଁ, ନିଜକୁ ଠିକଣା ନ କରି ଏ ବାଟକୁ ମନ ଦେଲେ ସବୁ ଗୋଳମାଳିଆ ହୋଇଯିବ । ବିଶ୍ୱାସ, ଈଶ୍ୱର ଭକ୍ତି, ସତ୍ ବିଚାର, ସତ୍ ଆଚାର, ଏତିକି ଅଭ୍ୟାସ କଲେ ତୁମ ପାଇଁ ଯଥେଷ୍ଟ, ଯେ କ'ଣ କମ୍ ବଡ଼ ସାଧନା ? ଚେଷ୍ଟା କର, ଯେତିକି ହେଉଛି । ମନ ଚଞ୍ଚଳ, ଅମାନିଆଁ, ଅମଣିଆଁ ବଳଦ । ଅନ୍ୟ ଇନ୍ଦ୍ରିୟମାନେ ଓଲିଆ, ଟାଉକା । ତାଙ୍କୁ ସମସ୍ତିଙ୍କି ଅକ୍ତିଆର କରି ଶିଖ, ବଡ଼ କଷ୍ଟ । ଆଗ ସେତିକି, ତେଣିକି ଆଉ ଯାହା ।''

ସେ କ'ଣ ଦୃଶ୍ୟ ଦେଖୁଥିଲେ, କ'ଣ 'ଅନାହତ ଧ୍ୱନି' ଶୁଣୁଥିଲେ । ବ୍ରାହ୍ମମୁହୂର୍ତ୍ତରେ ମତେ ନିଦରୁ ଉଠାଇ ଦେଉଥିଲେ । କହନ୍ତି ''ଏମାନେ ଯେଉଁମାନେ ଶୋଇଛନ୍ତି ସେମାନେ ଅଚେତ, ମରିଛନ୍ତି କହିଲେ ଚଳେ । ତାଙ୍କ ମନ ଏ ଶରୀରରେ ନାହିଁ, ଆଉ କୁଆଡ଼େ କୁଆଡ଼େ ଯାଇ ବୁଲୁଛି । ଏଇ ବ୍ରାହ୍ମମୁହୂର୍ତ୍ତ, କାନା, ଶୁଣିପାରୁଛୁ କିଛି ଶବ୍ଦ ? ତୁ ବି ଧ୍ୱନି ଶୁଣିବୁ ।''

ଅନେକ ଥର କାନେଇଛି, ନିଶା ଝାଇଁ ଝାଇଁ ଶବ୍ଦ ଶୁଣିଛି, ତା ଭିତରେ ଏକ ପ୍ରକାର ସଂଗୀତର ଛନ୍ଦ ପାଇଛି । ସେ ମୋ ଭିତରର କି ବାହାରର କି ସେ ସେହି ''ଅନାହତ ଧ୍ୱନି'' ମୁଁ ଜାଣେ ନାହିଁ ।

ବାପାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ମୋର ଚରିତ୍ର ଉପରେ ଓ ଭବିଷ୍ୟତ୍ ଜୀବନ ଉପରେ ବହୁତ ପଡ଼ିଲା, କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଛି, କେତେ ଅଳ୍ପଦିନ ଭିତରେ ମୋ ଉପରେ ସେ ଛାପା ମାରିଦେଲା ! ୧୯୧୪ ଅପ୍ରେଲ୍‌ରେ ମୋର ଜନ୍ମ । ସେହି ବର୍ଷ କି ତା ଆର ବର୍ଷ ସେ ପୁଣି ସୋନପୁର

ଯାଇଥିବେ । ୧୯୧୮ ପୂର୍ବର ସ୍ମୃତି ମୋର ପରିଷ୍କାର ମନେ ନାହିଁ । ୧୯୧୮ ସେପ୍‌ଟେମ୍ବରରେ ମୋର ବିଦ୍ୟାରମ୍ଭ, ମନେ ଅଛି । ସେହି ବର୍ଷ ତା ଆଗରୁ ବଡ଼ଭାଇଙ୍କ ବିବାହ । ସେହି ବର୍ଷ ୧୯୧୮ ମେ' ମାସରେ ବାପା ସୋନପୁରରୁ ଚାକିରି ଛାଡ଼ି ଘରକୁ ଆସିଥାନ୍ତି । ତାଙ୍କ ସଙ୍ଗେ ଆସିଥାନ୍ତି ମୋ ଉପର ଭାଇ ଦିହେଁ, ଧୂଳ ଭାଇ ଓ କାହ୍ନୁ ଭାଇ । ସେମାନେ ସୋନପୁର ହାଇସ୍କୁଲ୍‌ରୁ ଆଜିକାଲିକା ଷଷ୍ଠ ଶ୍ରେଣୀକୁ (ମାଇନର୍) ସେକେଣ୍ଡ୍ କ୍ଲାସ୍‌ରୁ ଉଠି ଆସିଥାନ୍ତି, ଅଗଷ୍ଟ ସରିକି ସେ ଦିହେଁ ଭାଇଙ୍କ ପାଖେ ରହି ପଢ଼ିବେ ବୋଲି ଆଗ ରାଞ୍ଚି ଗଲେ, ପଛେ ପାଟ୍‌ନା, ପାଟ୍‌ନାରେ ପୂଜା ପରେ ଷଷ୍ଠ ଶ୍ରେଣୀରେ ନାଁ ଲେଖାଇଲେ । ୧୯୨୦ରେ ମତେ ଛଅ ବର୍ଷ ପୂରିଲା ବେଳକୁ ମୁଁ ପାଟ୍‌ନା ଗଲି । ୧୯୨୧ ମଝି ସରିକି ଗାଁକୁ ଫେରିଲି । ୧୯୨୧ ଅକ୍ଟୋବରରୁ ୧୯୨୩ ମେ' ମାସଯାକେ ମୁଁ ବାପାଙ୍କ ପାଖେ ଗାଁରେ ଥିଲି । ୧୯୨୩ ଜୁନ୍‌ରୁ ୨ ମାସ ତାଙ୍କ ସଙ୍ଗେ ଦର୍ପଣିରେ ବୁଲିଲି, ୧୯୨୩ ସେପ୍‌ଟେମ୍ବରରୁ ତାଙ୍କ ସଙ୍ଗେ କଲିକତା ବାଟଦେଇ ସୋନପୁର ଗଲି ଓ ତାଙ୍କ ସଙ୍ଗେ ସେଠି ଥିଲି ୧୯୨୩ ଜୁନ୍ ଯାକେ, ପାଟ୍‌ନାରେ ତାଙ୍କ ସଙ୍ଗେ ଜୁଲାଇ ପହିଲା ଯାକେ । ସ୍ମରଣ ଥିଲାଭଳି ପିଲାଦିନେ ବାପାଙ୍କ ସଙ୍ଗରେ ଏକାଠି ୭ ବର୍ଷରୁ ବି କମ୍, ତା'ପରେ ସେ ଚାଲିଗଲେ । ସେହି ୭ ବର୍ଷର ପ୍ରଭାବ ରହିଗଲା ମୋର ସମଗ୍ର ଚେତନା କି ଚେହେରା ସ୍ପଷ୍ଟ ହୋଇ ମନେ ନାହିଁ ।

ଗାଁ—ସେ ଦୃଶ୍ୟ, ସେ ମୁହଁଗୁଡ଼ିକ, ସେ ଜୀବନ, ଶୁଣି ଶୁଣି ଭାବି ଭାବି ଅଭ୍ୟାସ କରିଥିବା ଜୀବନ ଦେଖିବା ବାଗ, ପିଲାଦିନର ନାନା ଧ୍ୟାନ, ଆପଣା ଚରିତ୍ରରେ ନାନା ମୋଡ଼, ନାନା ରୁଚି ଅରୁଚି, ପ୍ରବଣତା—ମୋ ନିଜ ଲେଖା ଭିତରେ ମୁଁ ବାରମ୍ବାର ଦେଖିପାରେ ସେହି ଛଅଟି ବର୍ଷର ବହୁଳ ପ୍ରଭାବ ସେ ସମ୍ପର୍କରେ । ଅଥଚ ଜନ୍ମଦିନଠୁଁ ଆରମ୍ଭ କରି ସେହି ଗାଁରେ ମୁଁ ରହିଥିବି ଆଠବର୍ଷରୁ ବି କମ୍ ।

କଞ୍ଚା ମାଟି ଉପରେ ଚାପର ଦାଗ, —ରହିଗଲା ।

ପାଞ୍ଚ ବର୍ଷ ବୟସରୁ ବାର ତେର ବର୍ଷ ପର୍ଯ୍ୟନ୍ତ ମଣିଷ ଜୀବନରେ ଯେଉଁ ସମୟ, ସମୁଦାୟ ଦୀର୍ଘ ଜୀବନ ଭିତରେ ସେତିକି ବେଳର ଗୁରୁତ୍ୱ ଏଇଥିରୁ ବୁଝିହୁଏ ।

ବାରମ୍ବାର ଲେଉଟି ଆସି ନୂଆ ନୂଆ ରଙ୍ଗ ବୋଳି ହୋଇ ସେ କାଗଜରେ ଦେଖାଦିଏ, ଭିନେ ଭିନେ ରୂପରେ ଆଖିକି ଦିଶେ, ଭିତରର ଦୀପଟି ଯେପରିକି ସେହି ।

ନାଗବାଲି । ନଈ ବନ୍ଧ । ନଈ ବାଲି । ବନ୍ଧ ଉପରେ ଡେଙ୍ଗା ଦେବଦାରୁ ଗଛ ଯୋଡ଼ିଏ । ଝଙ୍କା କୋଚିଲା ଗଛ । ଅତି ପ୍ରାଚୀନ ଓସ୍ତ ଗଛ । ନଡ଼ିଆ ଗଛଗୁଡ଼ିକ । ଗାଁର ଗୋହିରି, ଘର, ନାନା ଜନ୍ତୁ ଓ ଚଢ଼େଇ, ପୋକଯୋକ, ଚାଳରୁ ଧୂଆଁ, ପୋଖରୀରେ କଇଁ, ବର୍ଷଯାକର ପୂଜା ପାର୍ବଣ, ଯାତ୍ରା, ସଂକୀର୍ତ୍ତନ, ଗାଁ ଲୋକେ, ଗାଁ ସମାଜ, ଅତୀତର ହାଡ଼ ପାଉଁଶ ଓ ନୂଆଦିନର ଘାସ କି ଗଜା, ଦାରିଦ୍ର୍ୟ ବିରୁଦ୍ଧରେ ଅବିରତ ସଂଗ୍ରାମ, ବଳିଷ୍ଠ ଆଶାବାଦ, ମଣିଷର ଅତୁଟ ଆଶା ସ୍ୱପ୍ନ ଯେ ଦିନେ ଅନ୍ଧାର ଅବଶ୍ୟ କଟିବ, ସ୍ନେହ ଶତ୍ରୁତା, କେତେ କ'ଣ ମୁହୂର୍ତ୍ତ ମୁହୂର୍ତ୍ତର ଅନୁଭୂତି—

ବଢ଼ନ୍ତା ଚାରାରୁ ମଞ୍ଜି ଦିଫାଳ ପୂରି ସେ ଲାଖି ରହିଲା, କିନ୍ତୁ ସେ ଖୋଳପା ପୁଣି ଜୀଅନ୍ତା ହୋଇଉଠେ, ଛାଇ ପରି ଲାଖି ରହି ବି ସେ ବାରମ୍ବାର କାୟା ହୁଏ ।

ସେମାନେ ମତେ ସ୍ନେହ ଆଦରରେ ମଣିଷ କରିଥିଲେ । ବୋଉ, ବଡ଼ ମା', ଖୁଡ଼ୀମାନେ, ଆଉ ସ୍ଥାନୀୟା ସାନ ମା', ଭଉଣୀମାନେ, ଭାଉଜମାନେ । କିଏ କୋଡ଼ରେ ଶୁଆଇଛି; କିଏ କଟିରେ, କିଏ କାଖେଇଛନ୍ତି, କିଏ କେତେ କ'ଣ ବୁଲେଇ ବୁଲେଇ ଦେଖାଇଛନ୍ତି, କିଏ ଖୁଆଇ ପିଆଇ ଦେଇଛନ୍ତି ହିପାଜତ କରିଛନ୍ତି । ସମସ୍ତେ କେତେ ଗେହ୍ଲା ଆଦର କରିଛନ୍ତି, କେତେ ମିଠା କଥା କହିଛନ୍ତି, ଶରଧା କରିଛନ୍ତି । ସମସ୍ତିଙ୍କ ହୃଦଉଚ୍ଛୁଳା ସ୍ନେହ ଆଦର ପିଇ ପିଇ ମୁଁ ମଣିଷ ହୋଇଛି, ସବୁ ମୋ ନିଃଶ୍ୱାସ ପାଇଁ ପବନ, ମୋର ଅଭିବୃଦ୍ଧି ପାଇଁ ପଞ୍ଚଭୂତ । ଘର ଭିତରେ ଖଞ୍ଜା ଭିତରେ ମୁଁ ବୋଧହୁଏ ସେତେବେଳେ ଗୋଟିଏ ବୋଲି ସାନ ପିଲା ।

ବଡ଼ ମା'ଙ୍କ ଚେହେରା ବି ମନେପଡ଼େ ନାହିଁ, ଭାବିଲେ ଦିଶିଯାଏ ରୋଷେଇ ଘରେ ଧୂଆଁ ଭିତରେ ଝିଲକାଏ ସରୁ ବିଜୁଳି ପରି କେହି ଜଣେ । ସେ ଅପରୂପ ସୁନ୍ଦରୀ । 'ସୁନା ଖଡ଼ିକା ପରି ଦେହ' । କଟକର ବଳରାମ ଡିପୋଟିଙ୍କ ଝିଅ, ସେତେବେଳର ବଡ଼ଘରର । ତାଙ୍କ ଅନ୍ତେ ତାଙ୍କର ଯାହା କିଛି ରହିଯାଇଛି ସେ ତାଙ୍କର ପ୍ରଶଂସା । ବଡ଼ବାପା ନୀଳମଣି ମୋ ବାପାଙ୍କ ଦାଦିପୁଅ ଭାଇ, କିନ୍ତୁ ନବୀନ ତାଙ୍କୁ ପୁଅ କରିଥିଲେ, ସେ ବାପାଙ୍କଠୁଁ ଦୁଇବର୍ଷ ବଡ଼ । ବଡ଼ ସେତେବେଳକୁ ଗାଁରେ ଥା'ନ୍ତି ।

ବଡ଼ ମା' ଦିନ ଭିତରେ ଅନେକ ସମୟ ମତେ ତାଙ୍କ କଟିରେ ରଖୁଥିଲେ, କାଖୋଉଥିଲେ, ଖେଳୋଉଥିଲେ, ଗପ କହୁଥିଲେ । ସଞ୍ଜରେ କାଖେଇ ଆଣି ଯା'ଙ୍କୁ ଥଟ୍ଟାକରି ଡାକି କହନ୍ତି "ଇଲୋ ନେ ତୋ କଳାକନା

ଖଣ୍ଡ ନେ ।'' ମୁଁ ତାଙ୍କୁ ଭଲ ପାଏଁ, କିନ୍ତୁ ଯେତେ ପଚାରନ୍ତି, ''କହିଲୁ କିଏ ସୁନ୍ଦର, ମୁଁ ନା ତୋ ବୋଉ ?'' ମୁଁ ବାରମ୍ବାର କହେଁ, ''ମୋ ବୋଉ ।'' ଏଇ ପ୍ରଶ୍ନ ଓ ଏଇ ଉତ୍ତର ଶୁଣିବା ପାଇଁ ଖଞ୍ଜାରେ ଅନେକେ ମତେ ବେଢ଼ିବସି ପଚାରନ୍ତି ।

ଶୁଣିଛି ବଡ଼ ମା' ଖୁବ୍ ଭଲ ରାନ୍ଧନ୍ତି, ତାଙ୍କ କାମ ଖୁବ୍ ସଫଣା । ଖୁବ୍ ଶାନ୍ତ ସ୍ୱଭାବ, ସ୍ନେହୀ ଥିଲେ ବଡ଼ ମା' । କିନ୍ତୁ କଥା ସହି ପାରନ୍ତି ନାହିଁ । ବୋଧହୁଏ ନାନା କାରଣରୁ ତାଙ୍କ ମନ ବି ପିତା ପଡ଼ି ଯାଇଥିଲା । ବଡ଼ ବାପା ଘରେ ବସିପଡ଼ି ଟିକିଏ ଚିଡ଼ୋକ ହୋଇ ଯାଇଥିଲେ । ତାଙ୍କର ଦୁଇପୁଅ, ଦିହେଁ ଗିରିଧାରୀଙ୍କ ବଡ଼ ପୁଅ, ପଦନ ସବ୍ ଓଭରସିଅର୍ ଚାକିରିଟିଏ ପାଇ ବିହାରର ଦୁମ୍‌କାରେ ରହିଲେ ଯେ, ବହୁତ ଦିନ ବିତି ଯାଉଥାଏ ଚିଠି ନାହିଁ ପତ୍ର ନାହିଁ । ଆଉ ପୁଅ ମଦନ ବିଗିଡ଼ି ଯାଇ କଲିକତାରେ କୁଆଡ଼େ ନିଖୋଜ ହୋଇଥାନ୍ତି । ଆଉ କେହି ନାହିଁ । ବଡ଼ ମା'ଙ୍କ ମୁହଁଟି ସବୁବେଳେ ହସିଲା ପରି । କିନ୍ତୁ ବର୍ତ୍ତମାନ ଭାବିପାରୁଛି ମନ ଭିତରେ କ'ଣ ହେଉଥିବ ।

ଦିନେ ବଡ଼ ବାପାଙ୍କ ଉପରେ ଅଭିମାନ କରି ବଡ଼ ମା' ଗୁଡ଼-କନିଅର ମଞ୍ଜି ବାଟି ପିଇଦେଲେ ।

ଖଞ୍ଜାରେ ବହୁତ ଲୋକ ରୁଣ୍ଡ ହେଲେ । ବଡ଼ ମା'ଙ୍କୁ ଆଣି ଶୁଆଇଥାନ୍ତି । ସେମାନେ ଅନେଇଁଥାନ୍ତି, କାନ୍ଦୁଥାନ୍ତି ।

ବଡ଼ ମା'ଙ୍କୁ ସେମାନେ ବୋହିନେଲେ ସତୀଗାଡ଼ିଆକୁ ।

ସତୀଗାଡ଼ିଆ ପାଖେ ବଡ଼ ନିଆଁଟାଏ ଜଳିଲା, ବଡ଼ ମା' ପୋଡ଼ାହେଲେ ।

ପୁଣି ଯେ ମତେ ସବୁଠୁ ବଳି ଭଲ ପାଉଥିଲେ ତାଙ୍କରି ଭିତରୁ ଜଣକର ।

ବୋଧହୁଏ ପାଞ୍ଚଦିନ ପରେ ପଦନ ଭାଇ ଆସିଲେ । ଆଉ ୪/୫ ଦିନେ ଆସିଲେ ମଦନ ଭାଇ । ଗାଁ ମୁଣ୍ଡରୁ ସତୀଗାଡ଼ିଆ କୂଳରେ ଅଙ୍ଗାର ଦେଖି ସେ କଇଁ କଇଁ ହୋଇ କାନ୍ଦିଲେ, ବାଡ଼େଇ କଚାଡ଼ି ହେଲେ, ତା'ପରେ କାନ୍ଦି କାନ୍ଦି ଘରକୁ ଆସିଲେ । ମୁଁ ତାଙ୍କୁ ଆଗରୁ କେବେ ଦେଖି ନ ଥିଲି । ସେ ବଡ଼ ମା'ଙ୍କ ପରି, ସେମିତି ଗୋରା ଓ ସୁନ୍ଦର । ଦୁଇ ଭାଇ ଡେଙ୍ଗା । ଶୁଣିଥିଲି ସେ କଲିକତାରେ ଥିଲେ । ତାଙ୍କର ବିଚକ୍ଷଣ ବୁଦ୍ଧି ଥିଲା, ସାହେବ ପରି ଇଂରେଜି କହିପାରୁଥିଲେ । ନାନା ବିଷୟରେ ପ୍ରତିଭା ଥିଲା, କିନ୍ତୁ ତାଙ୍କର ଜୀବନ ଧାରଣର ଉପାୟ ବିଷୟରେ କେହି

କିଛି ଜାଣନ୍ତି ନାହିଁ, ସେ ନିଖୋଜ ହୋଇ ରହିଗଲେ, ଏବେ ଜୀବିତ କି ମୃତ କେହି କହିପାରିବେ ନାହିଁ, ବଞ୍ଚିଥିଲେ ହୋଇଥିବ ସତସ୍ତରି ବର୍ଷ ।

ସେହି ଥରକ ସେ ଘରକୁ ଆସିଥିଲେ । ଦୁଇ ଭାଇ କୁଣ୍ଢାକୁଣ୍ଢି ହୋଇ କାନ୍ଦିବାର ଦୃଶ୍ୟ ମୁଁ ଦେଖିଥିଲି, ଏଭଳି ଦୃଶ୍ୟ ମୁଁ କେବେ ଦେଖି ନାହିଁ ।

''ଭାଇ, ବୋଉ ?''

''ଆଉ ବୋଉକୁ କାହୁଁ ପାଇବାରେ !''

ବୋଧହୁଏ ସେହିଦିନ ସଞ୍ଜବୁଡ଼େ ସେ ଲେଉଟିଗଲେ, ଯେ ଯେତେ ଅଟକାଇଲେ ସେ ରହିଲେ ନାହିଁ । କହିଲେ ''ଯାହା ପାଇଁ ଆସିଥିଲି ସେ ତ ନାହିଁ !''

ବୋଧହୁଏ ଭାବିଥିବେ, ତାଙ୍କ ବୋଉ ତାଙ୍କରି ପାଇଁ ମଲେ ।

ବେଳେ ବେଳେ ଲାଗେ ଭାରି ସାନ ଥିଲି ସେତେବେଳେ, କିନ୍ତୁ ସେତେବେଳେ ମତେ ଛଅ ବର୍ଷ, ଆଖି ଫିଟିଲାଣି ।

ମତେ ପାଞ୍ଚବର୍ଷ ଚାଲିବା ପୂର୍ବରୁ ବାପା ସୋନପୁରରେ ରହୁଥିଲେ । ସେ, କାହ୍ନୁଭାଇ ଓ ଧ୍ରୁବଭାଇ ୧୯୧୮ ବୈଶାଖ ସରିକି ଗାଁକୁ ଆସିଲେ । ସେ ଦିନଟି ବି ପରିଷ୍କାର ହୋଇ ଦିଶିଯାଉଛି । ନାହା ଆସିଥାଏ, ସୋନପୁରରୁ ସେମାନେ ନାହାରେ ଯା' ଆସ କରୁଥିଲେ । ଦୁଇ ଭାଇଙ୍କର ବହି, ଖାତା, ପେନ୍‌ସିଲ୍, ରବର୍ ଖେଳାଖେଳି କରି ମୁଁ ଦେଖୁଥାଏଁ । କାହ୍ନୁଭାଇ ତାଙ୍କ ଖାତାରେ ରଙ୍ଗ ରଙ୍ଗର ଛବି ଆଙ୍କିଥାନ୍ତି ଓ କଥା କଥାକେ 'ଔଷଧ' ତିଆରି କରି ଖାଇବାକୁ ଦିଅନ୍ତି, କହନ୍ତି, ଏଇଟା ଖାଇଲେ ଯା ହେବ । ଦୁଇ ଭାଇ ସୋନପୁରର ଗପ କହୁଥାନ୍ତି ଓ ସେମାନଙ୍କ ବୋଲି ଶୁଣିବାକୁ ବିଚିତ୍ର ଲାଗୁଥାଏ, ସେମାନେ ସମ୍ବଲପୁରୀ ଭାଷାରେ କଥା କହୁଥାନ୍ତି । ହଠାତ୍ ମୋର ଗର୍ବ ଓ ଆନନ୍ଦ ବଢ଼ିଯାଇଥାଏ । ଘର ଭର୍ତ୍ତି ।

ତା' ଆଗରୁ ବାପା ବର୍ଷକୁ ଥରେ ଦି'ଥର ଲେଖାଁ ଆସୁଥିବେ, ମନେନାହିଁ।

ମୁଁ ଆରେଇ ଯାଇଥିଲି ବଡ଼ବାପାଙ୍କୁ । ତାଙ୍କ ସଙ୍ଗରେ ଏକାଠି ଖାଇ ବସୁଥିଲି ବହୁତ ଦିନଯାକେ, ତାଙ୍କ କତିରେ ରହୁଥିଲି ଓ ବୁଲୁଥିଲି ।

ଯେଉଁ ବଡ଼ବାପାଙ୍କୁ ଲୋକେ ଭାବନ୍ତି ରାଗି ଓ ଚିଡ଼ାଲୋକ ବୋଲି, ତାଙ୍କ ମତରୁ କି ରୁଚିରୁ ଟିକିଏ ଅମେଳ ଦେଖିଲେ ଯେ ଖେଙ୍କି ଉଠନ୍ତି, ସେ ପିଲାଙ୍କୁ ଭଲପାଆନ୍ତି, ବଗିଚା ଭଲପାଆନ୍ତି, ନିଜେ ପୂଜା କରିବା ଓ ଯାତ୍ରା କରାଇବାକୁ ଭଲପାଆନ୍ତି । ବୟସରେ ବୁଢ଼ା ଓ ମୁରବିମାନଙ୍କ ସଙ୍ଗେ ବ୍ୟବହାର କଲାବେଳେ କଡ଼ା ଓ କଟକଣା ଜଗିଲାବାଲା ହେଲେ ବି ସାନ

ପିଲା ଓ ଗାଁର ଟୋକା ଦଳଙ୍କର ସଙ୍ଗେ ସେ ଖୁବ୍ ମିଶୁଥିଲେ, ସେମାନଙ୍କୁ ଭେଳେଇ ପାରୁଥିଲେ ଓ ସତ୍‌ପରାମର୍ଶ ଦେଇ ତାଙ୍କ ଦ୍ୱାରା ଗାଁର କେତେ କୋଠକାମ କରାଉଥିଲେ, ଯଥା ଗାଁ ଦାଣ୍ଡ ସଫା କରାଇବା, ଗାଁରେ ପର୍ବ କରାଇବା ଇତ୍ୟାଦି ।

ଖଞ୍ଜାଠୁ ଟିକିଏ ଛାଡ଼ି ବଡ଼ବାପାଙ୍କର ଗୋଟିଏ ବଗିଚା ଥିଲା, ସେଠି କଦଳୀବଣ, ପନିପରିବା, ତା'ଛଡ଼ା ନାନା ଜାତିର ବହୁତ ଫୁଲଗଛ ଓ ବଖରାଏ ଅଧେ ଖାଲି ଘର ଥିଲା । ସେ ଫୁଲଗଛକୁ ଭାରି ଭଲ ପାଉଥିଲେ । ବଡ଼ବାପାଙ୍କ ଫୁଲ ବଗିଚା ମୋ ପାଇଁ ହୋଇଥିଲା ଗୋଟିଏ ନନ୍ଦନକାନନ । ମୁଁ ସେଠି ନିଜକୁ ହଜାଇ ଦେଉଥିଲି, ମନଇଚ୍ଛା ବୁଲୁଥିଲି, ମନକୁ ମନ କେତେ କଥା ଫାନ୍ଦୁଥିଲି ଓ ବିଡ଼ିରି ବିଡ଼ିରି ହୋଇ ନିଜକୁ ନିଜେ କାହାଣୀ କହିହେଉଥିଲି, ସେଠୁ ଫୁଲ ତୋଳି ଆଣୁଥିଲି, ତୁନିତାନି ହୋଇ ବୁଲି ବୁଲି କେତେବେଳେ ଅବା ବସିରହି ଚଢ଼େଇ, ପ୍ରଜାପତି, ନାନା ଜନ୍ତୁଙ୍କ ଗତିବିଧି ଦେଖି ଦେଖି ଉପଭୋଗ କରୁଥିଲି ।

ଗାଁରେ ଯାତ୍ରା କରାଇବା ପାଇଁ ବଡ଼ବାପା ବହୁତ ପୋଷାକ, ବେଶ, ମୁଖା ଆଦି ସଂଗ୍ରହ କରି ରଖିଥିଲେ, ମୁଖାଗୁଡ଼ିକ ବଗିଚା ବାହାରେ ଗୋଟିଏ ଟୁଙ୍ଗିର କାନ୍ଥରେ ମରା ହୋଇ ରହିଥିଲା ।

ବଡ଼ବାପା ଗାଧୋଇ ସାରି ବସି ଦେହଯାକ ଚନ୍ଦନ ତିଳକ ମାରି ହେଉଥିଲେ, ତା' ବି ଉପଭୋଗ୍ୟ ହୋଇଥିଲା । ତା'ଠୁ ବେଶି ଉପଭୋଗ୍ୟ ହୋଇଥିଲା ତାଙ୍କର ଠାକୁର ପୂଜା ବେଳ, ସେତେବେଳେ ସେ ଘଣ୍ଟିଟିଏ ବଜାନ୍ତି, ଆମେ ଯେ ଯେଉଁଠି ଥାଉ ଦଉଡ଼ୁ, କାରଣ ପୂଜାଶେଷରେ ସେ ଭୋଗ ବାଣ୍ଟିବେ, କେଉଁଦିନ ପାଚିଲା କଦଳୀ, କେଉଁଦିନ ବଗିଚାରୁ ତୋଳା ହୋଇ ଆସିଥିବା ପିଜୁଳି କି କାକୁଡ଼ି କି ଆଉ କ'ଣ । ମଝିରେ ମଝିରେ ଖଇ ଉଖୁଡ଼ା କିଣି ସେ ସବୁ ପିଲାଙ୍କୁ ବାଣ୍ଟନ୍ତି ।

ମଝିରେ ମଝିରେ ଗାଁରେ ଢୋଲ ମହୁରି ବାଜଣା, ଠାକୁରାଣୀ ମାଜଣା, କେତେବେଳେ କେଉଁ ପୂଜା ।

ଘରେ ପୂଜାର ଧୁମ୍‌ଧାମ୍ ଲାଗି ରହିଥାଏ । ନାନା ବ୍ରତ, ଉପାସ, ଓଷା, ମାସକେ ପାଞ୍ଚ ସାତ ଥରରୁ କମ୍ ନୁହେଁ । ଖଞ୍ଜାଯାକ ଘର ଲିପା ହୁଏ । ଘର ବାହାର ପରିଷ୍କାର ଢିକ୍‌ଢିକ୍ । ଫୁଲ ତୋଳା ହୋଇ ଗଦା ହୁଏ । ନାନା 'ସାଂମଗ୍ରୀ' ସଂଗ୍ରହ କରିବାରେ ସମସ୍ତେ ବ୍ୟସ୍ତ ରହନ୍ତି । ଘରେ

ଘରେ ପିଠାପଣାର ଚେଁ ଚାଁ, ପବନରେ ତା'ର ବାସ୍ନା । ତା'ପରେ ପୁରୋହିତ ଆସନ୍ତି, ପୂଜା ସଜା ହୁଏ, ରଙ୍ଗ ରଙ୍ଗର ମୁରୁଜ, ଗୁଣ୍ଡ, ନାନା ପଦାର୍ଥ ଦୀପ ଜଳେ । ମନ୍ତ୍ରପଢ଼ା, ପୋଥିବୋଲା । ଥାକି ଥାକି 'ଭୋଗ' । ଘଣ୍ଟ ପିଟା, ଶଙ୍ଖ, ହୁଳହୁଳି, ଭାରି ମଉଜ । ପୂଜା ସରେ । ତା'ପରେ ବ୍ରାହ୍ମଣ ଭୋଜନ, ଆଉ ଆମର ଓଷାବାର ଛଡ଼ା ପ୍ରତିଦିନ ଘରେ ଘରେ ପୂଜା, ପୁରାଣ ପଢ଼ା, ବାପାଙ୍କ ନିଶ୍ଚଳ 'ଧ୍ୟାନ' ।

ଗାଁ ମଣିଷଙ୍କ ଜୀବନର କେନ୍ଦ୍ର ହୋଇଥାଏ ଈଶ୍ୱର-ଭକ୍ତି ।

ଗାଁ ମଝିରେ ପ୍ରସିଦ୍ଧ କଦମ୍ବ ଦାଣ୍ଡ, ସେଠି ବହୁତ ପୁରୁଣା କଦମ୍ବ ଗଛଟିଏ ଥାଏ । ସମୁଦାୟ ଦାଣ୍ଡଟିକୁ ଢାଙ୍କି ଛାଇ ଘୋଡ଼ାଇ ରଖିଥାଏ । ଦାଣ୍ଡକୁ ଯେତେଥର ଓଳେଇଲେ ବି ପତ୍ର ଗଦା ହୁଏ । ଫୁଲ ଦିନେ ବହୁତ ଫୁଲ ଝଡ଼େ, ପାଚିଲା ଫଳ ଝଡ଼େ । କଦମ୍ବ ଗଛ ମୂଳେ ସିନ୍ଦୂର ବୋଳା ହୋଇ 'ମହାବୀର' ମୂର୍ତ୍ତି ଓ ମୂର୍ତ୍ତି ଚାରିକରେ ପୁରୁଣା ଚାନ୍ଦିନିଟିଏ । ଗାଁର ନିଶାପ ସେଇଠି ବସେ, ଗାଁଯାକ ଲୋକ ରୁଣ୍ଡ ହୁଅନ୍ତି । ସେହି କତିରେ ଗାଁର 'ଆଖଡ଼ା ଘର' ।

ଆଖଡ଼ା ଘରେ ଦି'ପହରେ ପଶା ଖେଳ ଜମେ । ଖେଳ ଦେଖିବାକୁ ଓ ଉପଦେଶ ଦେବାକୁ ଅନେକେ ଆସନ୍ତି । ''କଚେ ପୁଅ ବାର'' ଆଦି ଉତ୍ତେଜିତ ଚିତ୍କାର ବହୁତ ଦୂରକୁ ଶୁଭେ । ସେଥିରୁ ମୁଁ କିଛି ବୁଝି ପାରେ ନାହିଁ, କିନ୍ତୁ ଲୋକଙ୍କ ହାବଭାବ ଉପଭୋଗ୍ୟ ହୁଏ । କେତେବେଳେ ଦେଖିଲେ ଡରମାଡ଼େ ।

କିନ୍ତୁ ସେଇ ଆଖଡ଼ା ଘରେ ଚାଲେ ମୃଦଙ୍ଗ ବଜା, ସଂକୀର୍ତ୍ତନ ଅଭ୍ୟାସ, ଛାନ୍ଦ ବୋଲିବା ଅଭ୍ୟାସ । ଆମ ଖଞ୍ଜାର ଅନେକେ ଥିଲେ ସେ ବିଦ୍ୟାରେ ପ୍ରବୀଣ । ଆମ ଗାଁର କେତେଜଣ ସେ ଅଞ୍ଚଳରେ ସେ ବିଷୟରେ ପ୍ରସିଦ୍ଧ ଓ ଖ୍ୟାତିସମ୍ପନ୍ନ ଥିଲେ, ତାଙ୍କ ଭିତରେ ପ୍ରଧାନ ଥିଲେ ଆର ସାହିର କଣ୍ଡଭାଇ, ଅଞ୍ଚଳଯାକର ଗୁରୁ । ସେମାନେ 'ଓଡ଼ିଶୀ' ଓ 'ନଦିଆ' ଉଭୟ ଶୈଳୀରେ ପ୍ରସିଦ୍ଧ ଥିଲେ । ସଂକୀର୍ତ୍ତନ ଦେଖିବା ମୋର ପିଲାଦିନର ବଡ଼ ମଉଜ ଥିଲା ।

ସେହି କଦମ୍ବ ଦାଣ୍ଡରେ ହୁଏ ଗାଁର 'ଝୁଲଣ', 'ରାସ', 'ଭାରତ ଲୀଳା' ଓ 'ରାମଲୀଳା' । ବଡ଼ବାପା ହିଁ ତାର ପ୍ରଧାନ ଉଦ୍ୟୋକ୍ତା । ବାପାଙ୍କ ସାନ ଭାଇ ଦଇଦାଦି ଗାଁର କବି, ତାଙ୍କର ରଚନାରୁ ମନେ ପଡ଼ିଯାଏ,

"ଅଜ୍ଞ ବୁଦ୍ଧି ଦୟାନିଧି ଯୋଡ଼ି ବେନି ପାଣି
ଆହେ ରାମ ହେ—"

ସେ ରଚନା କରିଥିଲେ 'ମହୀରାବଣ ବଧ' ଓ ଆଉ କେତେ ଲୀଳା । ଗାଁ ଦାଣ୍ଡରେ କେବେ କେବେ ହୋଇଥିଲା ।

ନିଜ ଦାଦି, ସେ ବଡ଼ବାପାଙ୍କ ଡକାଭାଇ, ସେ ବୋଲୁଥିଲେ ସଂସ୍କୃତ ମହାନାଟକ ।

ଏତେ 'ଲୀଳା' ଓ 'ଯାତ୍ରା'ର କବି ସବୁ କିଏ ତା ମୁଁ ଜାଣେ ନାହିଁ, ଆମ ଗାଁର କବିମାନେ ତାର 'ନାଟିକା' ଓ 'ଦୃଶ୍ୟ' ଆଦି ଲେଖନ୍ତି, ଛାନ୍ଦ, ଗୀତଗୁଡ଼ିକ ନାନା ପ୍ରସିଦ୍ଧ ପୋଥିରୁ ଅଣା ହୋଇ ଛନ୍ଦା ହୋଇଥାଏ, ମଝିରେ ମଝିରେ ଥାଏ ଗାଁ କବିଙ୍କ ଗୀତ । ସମସ୍ତେ ଏକାଠି ଆଲୋଚନା କରି ସବୁ ଠିକଣା କରନ୍ତି । ଲୋକ ବଛା ହୁଅନ୍ତି, କିଏ କ'ଣ ହେବ, ବୁଢ଼ା, ଟୋକା, ନାନା ଶ୍ରେଣୀ, ନାନା ଜାତିର । ତାଲିମ୍ ଚାଲେ, ଦ୍ୱିପ୍ରହରେ ଓ ରାତିରେ । ଯାତ୍ରା ପାଇଁ 'ସଜ' କରାଯାଏ ।

'ରାମଲୀଳା'ର ସାଜସଜାରୁ କିଛି କିଛି ମନେପଡ଼େ । କଦମ୍ବ ଦାଣ୍ଡରେ କରିକିଆ ହୋଇ ଉଚ ଖୁଣ୍ଟ ପୋତା ହୋଇ 'ରାବଣେଶ୍ୱର ଭାଡ଼ି' ତିଆରି ହୁଏ, ସେଠିକି ଯିବାକୁ ସିଡ଼ି ଖଞ୍ଜା ହୁଏ । ଆମ ଗାଁର ସବୁଠୁ ଡେଙ୍ଗା ଓ ଓସାର ଛାତି ମଣିଷ ନେତ ସୋଇଁ ପ୍ରତିବର୍ଷ ରାବଣ ହୁଅନ୍ତି, ଛ' ଫୁଟ୍ ଓସାରରେ ନଅଟା ମୁଣ୍ଡ ଯୋଖି ହୋଇ ମୁକୁଟ ଓ ରାଜପୋଷାକ ପିନ୍ଧି ହତିଆର ଖଞ୍ଜିହୋଇ ସେ ତାଙ୍କ ଜଗତୀ ଉପରେ ଠିଆ ହୁଅନ୍ତି, ମଝିରେ ମଝିରେ ରଡ଼ି ଛାଡ଼ନ୍ତି । ତଳୁ ଦୂତ ଜଣାଣ କରେ,

"ଭୋ ଦେବ ରାବଣେଶ୍ୱର ବୀରାଧିବୀରବର ପ୍ରତାପୀ ଲଙ୍କେଶ୍ୱର (ଆଉ କେତେ କଣ) ଶୁଣିବାକୁ ସାବଧାନ୍ ମଣିମା—"

ଉପରୁ ସେ ରଡ଼ନ୍ତି, "ତ୍ୱଂ କିମର୍ଥଂ ହଇ ହଇ—"

ତଳେ ଦାଣ୍ଡରେ ଦେଖିବା ଲୋକ ଥାଟପଟାଳି, କୁଆଡୁ କୁଆଡୁ ଦୂର ଦୂର ଗାଁରୁ ଆସି ଖୁନ୍ଦି ହୋଇ ଯାଇଥାନ୍ତି ।

ମୁଖା ପିନ୍ଧି କେଉଟ ସାହିର ହୃଷ୍ଟପୁଷ୍ଟ ଲୋକଙ୍କ ଭିତରୁ କେହି କେହି ହୋଇଥାନ୍ତି ରାମଙ୍କ ବାନରସେନା ବା ଅସୁରବଳ ।

ଗୋଟାଏ ପାଖେ ବସିଥାନ୍ତି ଗାୟକମାନେ ଓ ପଖୋଉଜ ଓ ମୃଦଙ୍ଗବାଦକମାନେ । ଆରପାଖେ ଢୋଲ ମହୁରୀ ବାଦକମାନେ । ଆଉ ଗୋଟିଏ

ପଟେ ଆଖଡ଼ା ଘରେ ନିର୍ଦ୍ଦେଶକମାନେ, ସେହି ଘର ଭିତରେ ଓ ତା ପଛଆଡ଼େ 'ବେଶ' କରାଯାଏ, ଅଭିନେତାମାନେ ଥାଆନ୍ତି । କିଏ କେତେବେଳେ 'ବାହାରିବ' ତା'ର ସଂକେତ ଦିଏ ପଖୋଉଜ, ସେମାନେ ବେଶହୋଇ ଆଖଡ଼ା ଘରୁ ନାଚି ନାଚି ଦାଣ୍ଡ ମଝିକି ଯାଆନ୍ତି । ଛାନ୍ଦ ବୋଲନ୍ତି, କେତେବେଳେ ଉତ୍ତରକୁ ପ୍ରତ୍ୟୁତ୍ତର ଦିଅନ୍ତି, ଦାଣ୍ଡଯାକ ଲାଗିଯାଏ 'ଯୁଦ୍ଧ' ।

ରାମାୟଣ ସରୁ ସରୁ ମାସେ ଯାଏ, ରାତି ରାତି ଯାତ୍ରା, କେଉଁ ରାତିରେ କ'ଣ ହେବ ତା ସମସ୍ତେ ଜାଣନ୍ତି ।

ଯେଉଁଦିନ ରାବଣ ବଧ କି ଇନ୍ଦ୍ରଜିତ ବଧ ହୁଏ ସେଦିନ ଗାଁର ଏମୁଣ୍ଡୁ ସେମୁଣ୍ଡ ପାଲଟିଯାଏ ରଣାଙ୍ଗନ, ଶଗଡ଼ରେ ବୁହାହୋଇ ଅସୁରବଳ ଓ ଦେବତାବଳ ଯାଆନ୍ତି, ମଝିରେ ମଝିରେ ଭିନ୍ନ ଭିନ୍ନ ସାହିଦାଣ୍ଡରେ ଭେଟାଭେଟି ହୁଅନ୍ତି ଓ ଯୁଦ୍ଧ କରନ୍ତି ।

ସେତେବେଳେ ରାତି ରାତି ଯାତ୍ରା ଦେଖୁଥିଲି, ଦେଖୁ ଦେଖୁ ଶୋଇପଡ଼େ, କିଏ କେତେବେଳେ ମତେ ଉଠାଇ ନେଇଯାଏ ବିଛଣାକୁ ।

ପ୍ରତିବର୍ଷ ପଞ୍ଚୁଦୋଳ ଭିତରେ ଦିନେ ଆମ ଦାଣ୍ଡରେ ମେଳଣ, ଠିକ୍ ଆମ ଘର ପିଣ୍ଡାତଳେ, ଆଖପାଖ ବହୁତ ଗାଁରୁ ବିମାନ ଆସନ୍ତି, ଗାଁ ଦାଣ୍ଡରେ ବସିଯାଏ ବହୁ ପସରା, ଗାଁରେ ବହୁତ ଗହଳି, ରାତିରେ ବହୁତ ବାଜା ବହୁତ ରୋଶ୍ନି ।

ତା'ଠୁଁ ଆହୁରି ପ୍ରସିଦ୍ଧ 'ଅରିଲୋ' ଗାଁରେ ମେଳଣ, ଓଡ଼ିଶାରେ ନାଁ ତାକ, ମୋ ଅପାର ଶଶୁର ଘର ଗାଁ କତିରେ । ପ୍ରତିବର୍ଷ ମୁଁ ଯାଏଁ ।

ଦଶହରାକୁ ଗାଁରେ 'ଦପ୍ତର' ବସେ, ପୋଥି, ଲେଖନ, ଅସ୍ତ୍ର । ପୋଥିଗାଦି କତିରେ ହତିଆର ଗାଦି । ଘରୁ ଘରୁ କେତେ କାଳର କେତେ ପୁରୁଣା ଖଣ୍ଡା, ଫାର୍ସା, ବର୍ଚ୍ଛା ଆଦି ବାହାରେ, ମୁରୁଚା ସଫାହୋଇ ଜିକିଜିକି ଦିଶେ, ଘିଅ, ସିନ୍ଦୂର ଲଗାହୋଇ ଥୁଆ ହୁଏ ।

ଦଶରାଦିନ ଗୋଟିଏ ଖଣ୍ଡାରେ କଦଳୀ ଗଛଟିଏ ହଣା ହୁଏ । ନୂଆ ତାଳପତ୍ରରେ ନୂଆ ଲେଖନରେ ଲେଖାହୁଏ ।

ପିଲାଦିନୁଁ ପଦାରେ ମୋ ପାଇଁ ବଡ଼ ଆକର୍ଷଣ ଆମ ଗାଁର ନଈ । ବନ୍ଧ ତଳୁ ଲାଗିଛି ଉଚ୍ଚ କଣ୍ଡିଆ, ସେଠି ନାନା ଫସଲ ହୁଏ । ଠିକ୍ ତା' ତଳକୁ ନଈବାଲି, ମରୁଭୂମି ପରି ବିଛେଇ ହୋଇ ରହିଛି ନାନା ପତନରେ

ପ୍ରାୟ ତିନି ଫର୍ଲଂ, ତା'ପରେ ମରୁବାଲି, ସ୍ଥାନେ ସ୍ଥାନେ ଗୋଡ଼ି ବାଲିଗରଡ଼ା ଗଦା, ତା'ପରେ ସ୍ୱଚ୍ଛ ନଈପାଣି, ଅଳ୍ପ ଓସାର, ଧୀରେ ଧୀରେ ଗହୀର ହୋଇଛି । ଆରପାଖେ ଅତଡ଼ାର କାନ୍ଥ, ତା ଉପରକୁ ଧୂଳିସର ଗାଁର ବନ୍ଧ ଓ ତୋଟା । ସିଧା ଓହ୍ଲେଇ ଗଲେ ବାଟ ପଡ଼ିଛି ବେଣ୍ଟକାରକୁ ।

ଖରାଦିନରେ ନଈ ଭିତରେ ପଶି ଯାଇହୁଏ । ଅନ୍ୟଦିନେ ନାହା ଥାଏ । ବର୍ଷାଦିନେ ବଢ଼ିପାଣି ନଈବାଲି ବୁଡ଼ାଇ ଅତଡ଼ା ବୁଡ଼ାଇ ଲାଗେ ଆମ ବନ୍ଧରେ, ଆରପାଖକୁ ଅନାଇଁଲେ ସମୁଦ୍ର ପରି ଦିଶେ ।

ପାହାନ୍ତିଆରୁ ଉଠି ଭୋର୍ ସକାଳୁ ବୋଉ ହେରିକାଙ୍କ ସଙ୍ଗରେ ନଈକୁ ଗାଧୋଇଯିବା ନିତି ଦିନର କାମ । କେବେ ଆଉ କାହା ସଙ୍ଗରେ । ନଈ ବାଲିରେ ଖୁବ୍ ଦୌଡ଼ାଦୌଡ଼ି, ପାଣିରେ ଖୁବ୍ ବୁଡ଼ି ବୁଡ଼ି ଗାଧୁଆ । ଫେରିଲାବେଳେ ଓଦା ଲୁଗାକୁ ପାଲଟି ଏକାଠି ବାନ୍ଧି ଦୁଇମୁଣ୍ଡରୁ ଧରି ପାଲ ଉଡ଼େଇ ଆସିଲେ ପହଞ୍ଚିଲା ବେଳକୁ ଲୁଗା ଶୁଖିଯାଇଥାଏ । ନଈକୂଳରେ ଗଡ଼ିଆ ତୋଳା, ଘର ତୋଳା, ରଙ୍ଗ ରଙ୍ଗର ଗୋଡ଼ି ଓ ଶାମୁକା ଗୋଟେଇବା ଖେଳ, କେତେବେଳେ ମାଛ ଧରା ।

କେତେବେଳେ ନଈରେ କିମ୍ଭୀର ପଡ଼ିଥାନ୍ତି । କିନ୍ତୁ ସବୁଠୁ ବଳି ପ୍ରଧାନ ପ୍ରଭାବ ପଡ଼େ ମନ ଉପରେ ନିଛାଟିଆ ନଈକୂଳର, ନଈର ଦୃଶ୍ୟର । ଅତଡ଼ା ତଳକୁ ଓହ୍ଲାଇ ପଡ଼ିଲେ ସତେ ଯେମିତି ଯେ ଆଉ ଗୋଟିଏ ଦୁନିଆଁ, ଏଠି ଚିନ୍ତା ବଦଳିଯାଏ, ସ୍ୱପ୍ନ ଭିନେ ହୁଏ । ଉପରେ ଓ ତଳେ ବିରାଟ ବ୍ୟାପ୍ତି, ସବୁ ଶୂନ୍‌ଶାନ୍ । ମଣିଷ ନିଜେ ନିଜ ଭିତରୁ ବାହାରି ଚାରିଆଡ଼େ ସ୍ୱଚ୍ଛନ୍ଦରେ ବିଛେଇ ହୋଇ ପଡ଼େ । କଣ ଅଜଣାକୁ ଖୋଜି ହୁଏ ।

ସକାଳେ ଦି'ପହରେ ସଞ୍ଜରେ ସେ ଦୃଶ୍ୟ ଭିନେ, ସବୁବେଳେ ସୁନ୍ଦର । ଛାଡ଼ି ଚାଲିଯିବାକୁ ମନ ହୁଏ ନାହିଁ ।

ନାନା ଋତୁରେ ତାର ନାନା ରୂପ ।

ସେ ଖେଳେ, ଖେଳାଏ, କଥା କହେ ।

ଖଞ୍ଜାରେ ମଣିଷ ଥିଲେ, ଆମ ଘରେ ମୁଁ ଆଉ ବୋଉ ଥିଲୁଁ ଏକୁଟିଆ, ୧୯୧୮ ମେ' ମାସରେ ବାପା ଓ ମୋ ଉପର ଭାଇ ଦିହେଁ ସୋନପୁରରୁ ଆସିବା ପର୍ଯ୍ୟନ୍ତ । ବଡ଼ଭାଇ ସଞ୍ଜବୁଡ଼େ କେବେ ଗାଁକୁ ଆସିବା ମନେଅଛି, ମତେ ଖୁବ୍ ଗେଲ ଆଦର କରିଥିଲେ, ମୋ ପାଇଁ ଆଣି ଦେଇଥିଲେ

ଗୋଟିଏ ଖେଳଣା କୁକୁର, ତା ପେଟକୁ ଚିପିଲେ ସେ କେଁ କେଁ ହୁଏ । ସେ ଚାଲିଗଲା ପରେ ମତେ କିଏ ମତେଇ ଦେଲା ତା ଭିତରେ କଣ ଅଛି ଆବିଷ୍କାର କରିବାକୁ, କାଟି ପକାଇ ଦେଖିଥିଲି, ଗୁଡ଼ାଏ କରତଗୁଣ୍ଡି ବାହାରିଲା । ତା'ପରେ ଆଉ ତା ପେଟ ଚିପିଲେ ସେ କେଁ କେଁ ହେଲାନାହିଁ । ଜୀବନରେ ପ୍ରଥମ ଗବେଷଣା ଆଣିଥିଲା ନୈରାଶ୍ୟ । ମନେପଡ଼େ ମୋର ମୁଁ ଏକୁଟିଆରେ ଏକୁଟିଆରେ ବହୁତ ପ୍ରଚେଷ୍ଟା କରୁଥିଲି, ମଲା ପ୍ରଜାପତିଟିକୁ ବାଲି ଘୋଡ଼େଇ ବଞ୍ଚେଇବା ଚେଷ୍ଟା, ବଡ଼ବାପାଙ୍କ ବଗିଚାରୁ ନାନା ଫୁଲଗଛର ଡାଳ ଆଣି ପୋତି ଗଛ କରିବା ଚେଷ୍ଟା, ଇଚ୍ଛା ଶକ୍ତି ପ୍ରୟୋଗ କରି ଠାକୁରଙ୍କୁ ଡାକି ଇଚ୍ଛା ପୂରଣ ହେବ ବୋଲି ଚେଷ୍ଟା । କିଛି ଫଳେ ନାହିଁ । ତଥାପି ମୁଁ ଆଶା ଛାଡ଼େ ନାହିଁ । ଦିନେ ମୋର ପ୍ରିୟ କୁକୁରଟି ମରିଗଲା, ଆଉ ଦିନେ ମୋ ପୋଷା ବିଲେଇଟି । ଦି'ପହରେ ବନ୍ଧ ଉପରକୁ ଯାଇ ମନେ ମନେ ବହୁତ ଇଚ୍ଛା କରିଛି ସେ ବଞ୍ଚି ଉଠିଆସନ୍ତୁ । ତାଙ୍କ ଶବକୁ ଶାଗୁଣା ଖାଇବା ହିଁ ଦେଖିଛି । ଥରେ ମତେ କିଏ ମତେଇ ଦେବାରୁ ଗୋଟିଏ ଛୁରୀର ଦାଢ଼କୁ ନିଜ ଆଣ୍ଠୁରେ ପରୀକ୍ଷା କଲି, ବହୁତ ଦିନଯାକେ ଚିହ୍ନ ରହିଲା । ଆଉ ଦିନେ ଜଣେ ମତେ ଟେକିନେଇ ଧୂଳିଆ ଜନ୍ଦା ମନ୍ଦା ଉପରେ ଥୋଇ ଦେଇଥିଲେ । ସେ ଅନୁଭୂତି ବି ମନେ ରହିଗଲା ।

ବୁଲି ବୁଲି ଦେଖିବା ଛଡ଼ା ସେତେବେଳର ବଡ଼ ଆନନ୍ଦ ହୋଇଥିଲା ସଞ୍ଜବୁଡ଼େ ଯମୁନା ଅପାଠୁଁ କାହାଣୀ ଶୁଣିବା । ସେ ମୋର ପିଉସୀଟିଏ, ବୁଢ଼ୀ ହୋଇ ଯାଇଥାଏ, କେତେ କେତେବେଳେ ତା ଶାଶୁ ଘରୁ ଆସି ଆମ ଖଞ୍ଜାରେ ସେ ରହେ, ବଡ଼ବାପାଙ୍କର ଯତ୍ନ ନିଏ, ସାନ ଦାଦିଙ୍କର ଖବର ବୁଝେ । ସବୁବେଳେ କାର୍ଯ୍ୟବ୍ୟସ୍ତ । ସବୁବେଳେ ଫୁର୍ତ୍ତି । ସାନ ଦାଦିଙ୍କ ପାଖରେ ରହି ସେ ବହୁତ ଆଡ଼େ ବୁଲିଛି । ଦୁଆରେ ସପ ଉପରେ ଶୋଇରହି ଆକାଶକୁ ମୁହଁକରି ବଉଦ ଉପରେ ଭାସି ଚାଲିଥିବା ଜହ୍ନର ଖେଳ ଦେଖିବା ଓ ଯମୁନା ଅପାଠୁଁ କି ଆଉ କାହାଠୁଁ କାହାଣୀ ଶୁଣିବା ଭାରି ଭଲ ଲାଗୁଥିଲା ।

ଖେଳ, ଖେଳ, ଖେଳ, ମନ ଇଚ୍ଛା ଖେଳ, ମନା କରିବାକୁ ଅଟକେଇବାକୁ କେହି ନାହିଁ । ସେ ଖେଳର ପ୍ରକାର ଅସରନ୍ତି, ଧରାବନ୍ଧା ଗତ ନାହିଁ, ଆପଣା ମନ ଭିତରୁ ସେ ବାହାରେ । କେତେବେଳେ ବଡ଼ ବଡ଼ମାନଙ୍କୁ ଅନୁକରଣ, କେତେବେଳେ ନିଜ ଭିତରୁ ଉଦ୍ଭାବନ । ସବୁଠୁଁ ବେଶି ଉତ୍ତେଜନା ଓ ଆନନ୍ଦ ଦିଏ ଯେତେବେଳେ ମୁଁ ନିଜର ଭବିଷ୍ୟତକୁ ଆପଣା ଖିଆଲରେ

କେତେବେଳେ କେଉଁ ରୂପ ଦେଇ ସମ୍ଭାବନାକୁ ପରିପୂରଣ କରିବାର ଅଭିନୟ କରେଁ । ସେତେବେଳେ ସାଙ୍ଗସାଥୀ ଲୋଡ଼ା ନାହିଁ, ଏକୁଟିଆ ହିଁ ଭଲ । ସମଗ୍ର ପ୍ରକୃତି ସେଥିରେ ଅଂଶୀଦାର ଓ ପଟଭୂମି, ଅଭିନେତା ଏକା ମୁଁ । ଗାଁଯାକ ବୁଲୁଥାଏଁ । ନଈବନ୍ଧ, ତୋଟା, ଅରମା, ପୋଖରୀକୂଳ, ବିଲମାଳ, ନାନା ସାହି, ଗାଁ ଦାଣ୍ଡ,—ସକାଳ, ଖରାବେଳ, ତରାଫୁଟା ସଞ୍ଜ, ସମୟ ହେଲେ ଡାକ ପଡ଼େ କୁଆଡ଼େ ଗଲା କୁଆଡ଼େ ଗଲା । ଗାଁରେ ରହଣି କାଳ ଏମିତି କଟିଛି । ମୁଁ କ'ଣ ଜାଣିଥିଲି ଯେ ମୁଁ ମୋର ଭବିଷ୍ୟତର ସାହିତ୍ୟ ପାଇଁ ଉପାଦାନ ସଂଗ୍ରହ କରିଛି ଏଇ ନୂଆ ଚିହ୍ନି ଚିହ୍ନି ଭିତର ଦେଇ ? ପାଠ ହିଁ ପଢୁଛି ?

ଅକ୍ଷର ଚିହ୍ନିବା ଆଗରୁ ବୋଉ ମତେ ପାଠ ପଢ଼େଇଥିଲା ତୁଣ୍ଡେ ତୁଣ୍ଡେ । କବାଟ ଆଉଜେଇ ସେ ମତେ ସାନ ସାନ ଗୀତ ଶୁଣାଏ, ମୁଁ ମନେରଖେ, ନିଜେ ଆବୃତ୍ତି କରେ । ଦି ଚାରି ଧାଡ଼ି ହିଁ ମୋ ପାଇଁ ଯଥେଷ୍ଟ । ବେଶି ମନ ଡକିଲା ଗାଁ ଯାତ୍ରାରେ ଛାନ୍ଦ ବୋଲା ଶୁଣି ତାକୁ ଶିଖିବାକୁ । ମୋ ଜାଣିବାରେ ବୋଉ ମୋର ସବୁ ଜାଣେ, ସେ ନ ଜାଣେ ସଂସାରରେ ଏପରି କ'ଣ ଥାଇପାରେ ! ସେ ପରା ମୋ ବୋଉ ! ସତକୁସତ ନିଛାଟିଆ ଦି'ପହରେ କବାଟ ଆଉଜାଇ ସାନ ପାଟିରେ ବୋଉ ମତେ ଶିଖାଇବାକୁ ଆରମ୍ଭ କଲା 'ବିଶି ରାମାୟଣ' (ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ')ର ଗୋଟିକା ଗୋଟି ଛାନ୍ଦ । ମତେ ଏତେ ଭଲ ଲାଗିଲା ଯେ, ମୁଁ ଶିଖିଗଲି, ମୁଖସ୍ଥ କଲି, ନିଜେ ବୋଲିଲି, ବାହାଦୁରି ପାଇଲି । ମନ ଆହୁରି ଲାଗିଗଲା । ୧୯୨୦ରେ ପାଟ୍‌ନା ଯିବା ଆଗରୁ ମୁଁ ଅନେକ ଛାନ୍ଦ ଗାଇ ପାରୁଥିଲି । ୧୯୨୩ରେ ସୋନପୁରରେ ପହଞ୍ଚିଲା ସରିକି ମୁଁ ସେଥିରୁ ସବୁ ଛାନ୍ଦ କଣ୍ଠ ଖୋଲି ଗାଉଥିଲି । ବିଶି ରାମାୟଣ ଛାନ୍ଦ ପ୍ରତି ଅନୁରକ୍ତି ମୋର ଅକ୍ଷର ଚିହ୍ନିବା କାର୍ଯ୍ୟକୁ ସହଜ କଲା, ଉଦ୍ଦେଶ୍ୟ ଥାଇ ଉତ୍ସାହ ଆସିଲା । ଆମ ଘରକୁ ଲାଗି ଦିଲ୍ଲ ଦାଦିଙ୍କ ଘର, ଯାତ୍ରାରେ ସେ ସୁନ୍ଦରଭାବେ ରାମାୟଣର ଛାନ୍ଦ ବୋଲନ୍ତି ଓ ମହାନାଟକ ବୋଲନ୍ତି । ତାଙ୍କର ଗୋଟିଏ ଟିପାଖାତା ଥାଏ । ମୁଁ ତାଙ୍କ କତିରେ ଯାଇ କେତେ କେତେବେଳେ ବସେ, ତାଙ୍କଠୁଁ ଶୁଣିବାକୁ ମନ କରେ ।

ମନେପଡ଼େ ସେହି ପିଲାଦିନେ ଥରେ ଦି'ପହରେ ତାଙ୍କ ପାଖକୁ ଯାଇଥିଲି । ଡାକି ଡାକି କେହି ଶୁଣିଲେ ନାହିଁ । କବାଟକୁ ପେଲିଲି । କବାଟଟାର କ'ଣ

ହୋଇଥିଲା ସେ ଭିତରକୁ ପଡ଼ିଗଲା । କେହି ଆହତ ହୋଇ ନ ଥିଲେ । ମୁଁ ଦୌଡ଼ି ଦୌଡ଼ି ପଳାଇ ଆସିଲି ।

ଚାରିବର୍ଷ ଚାରିମାସ ଚାରିଦିନ ଦିନ ମୋର ଶୁଭ ବିଦ୍ୟାରମ୍ଭ ହେଲା । ସେଦିନ ମୋର ବହୁତ ପ୍ରାଧାନ୍ୟ । ମତେ ଗାଧୋଇ ନୂଆ ଲୁଗା ପିନ୍ଧାଇ ଦେଲେ । ଚନ୍ଦନ ଫୁଲମାଳ ଦେଲେ । କାନ୍ଧରେ ବସାଇ ଆମ ଇଷ୍ଟଦେବତା ରାଧାଶ୍ୟାମଙ୍କ ପାଖକୁ ନେଲେ । ସେ ଥା'ନ୍ତି ପୂଜକ ଦାମ ନନାଙ୍କ ଘରେ ଆମ ଗାଁ ବ୍ରାହ୍ମଣ ସାହିରେ । ସେଠି ଓଳଗି ହେଲି, ପାଦୁକ ପାଇଲି । ସେଇଠି ମତେ ମିଠେଇ ଖାଇବାକୁ ଦିଆଗଲା, ଖାଉଥାଏଁ ମୋର କାନ ଫୋଡ଼ା ହେଲା, ବହୁତ କାନ୍ଦିଲି, କାନରେ କ'ଣ କାଠି ଗେଞ୍ଜା ହେଲା । ସେଠୁ ଆଣିଲେ ଦାଣ୍ଡ ଆଖଡ଼ା ଘରକୁ, ସେଇଟା କି ସେଇ ପାଖରେ ଚାହାଳି ହୋଇଥାଏ । ଧୂଳିସରର ସାଉଣ୍ଟି ଅବଧାନ ମୋ ହାତରେ ଖଡ଼ି ଦେଲେ, ମୁଁ ତିନିଟା ମୁଣ୍ଡୁଳା ବୁଲେଇଲି, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବୋଲି କହି ଗୋଟିଏ ଗୋଟିଏ ନାଁରେ ଗୋଟିଏ ଗୋଟିଏ ଶୂନ । କ'ଣ ଗୋଟିଏ ଅନୁଷ୍ଠାନ ହେଲା, ବାଜା ବାଜୁଥାଏ ଛୋଟ ଭୋଜିଟିଏ ହେଲା ।

ତା'ପରେ ଦିନକୁଦିନ ଭୂଇଁରେ ଖଡ଼ି ଗୋଟାକିରେ ଗାରେଇ ଗାରେଇ ଅକ୍ଷର ଚିହ୍ନା, ମାଟିବଂଶ ଅବଧାନଙ୍କ ଚିରାଚରିତ ପାଠ୍ୟକ୍ରମର ଅନୁସରଣ । ତାଙ୍କ ହାତରେ ଥାଏ ବେତ, ତା'ର ଡାକ ନାଁ 'ଗୌରାଙ୍ଗ', ଅମାନିଆଁ ହେଲେ 'ଗୌରାଙ୍ଗ' ବାଜିବ ।

ଆରମ୍ଭ ହେଲା ବର୍ଣ୍ଣବୋଧ, କ୍ରମେ ପଣିକିଆ, ସଞ୍ଜବୁଡ଼େ ଦିନଯାକ ପଢ଼ିଥିବା ପାଠ ଆବୃତ୍ତି କରିଦେବାକୁ ହୁଏ ।

'ବର୍ଣ୍ଣବୋଧ'ର ଅର୍ଥ ବୁଝିବାକୁ ଚାହିଁଲି । ଲେଖା ଥିଲା "ଆହା ଫୁଲ କିପରି ବାସୁଅଛି !" ବୋଉକୁ ପଚାରିଲି "ଆହା ଫୁଲ କି ଫୁଲ ବୋଉ, ମତେ ଦେଖେଇ ଦେଲୁ ?"

ଆମ ଗାଁରେ ସରକାରୀ ଇସ୍କୁଲ ନ ଥାଏ । ଆମରି ଖଞ୍ଜାରେ କେହି ଜଣେ ଆପଣା ପିଲାକୁ ପଢ଼ାଇବାକୁ ମନ କଲେ ଗୋଟିଏ ମାଟିବଂଶ ଅବଧାନକୁ ଅନ୍ୟ ଗାଁରୁ ଅଣାଇଁ ନିଯୁକ୍ତ କରନ୍ତି, ଅନ୍ୟମାନେ ମଧ୍ୟ ଆପଣା ଆପଣା ପିଲାଙ୍କୁ ପଠାନ୍ତି ଓ ଯେଝା ଯେଝା ଶକ୍ତି ଅନୁସାରେ ଭେଦାରେ ମାଷ୍ଟରଙ୍କୁ କିଛି କିଛି ଦିଅନ୍ତି, କିଏ ବା ସପ୍ତାହରେ କେଉଁ ଓଳି ତାଙ୍କ ପାଇଁ ଖୋରାକି ବରାଦ କରି ଦିଅନ୍ତି, ଯେଉଁ ଜାଗାରେ ପାଠ ପଢ଼ାହୁଏ ତା ନାଁ 'ଚାହାଳି' ।

ମାଷ୍ଟ୍ରେ ଦିନାକେତେ ରହି ଯାଆନ୍ତି, ଅସୁବିଧା ହେଲେ ଚାଲିଯାଆନ୍ତି, ସେତେବେଳେ ଚାହାଳି ଭାଙ୍ଗେ, ଅନ୍ୟ ମାଷ୍ଟର ନିଯୁକ୍ତ ହେବା ପର୍ଯ୍ୟନ୍ତେ ପିଲାଏ ଡିଅଁନ୍ତି ।

ଏହିପରି ଚାହାଳିରେ ମୁଁ ପଢ଼ିଥିଲି ଚାରିବର୍ଷ ଚାରିମାସ। ବୟସରୁ ସାତବର୍ଷ ଯାକେ, ତା'ପରେ ୧୯୨୧ରେ ପାଟ୍‌ନାରୁ ଫେରିବା ପରେ ଅଳ୍ପ କେତେ ମାସ । ତା'ପରେ ବାପା ନିଜେ ଗୋଟିଏ ଦାତବ୍ୟ ଚାହାଳି ଖୋଲି ପିଲାଙ୍କୁ ନିଜେ କିଛିଦିନ ଯାକେ ପାଠ ପଢ଼ାଇ ବସିଲେ, ମୁଁ ସେଥିରେ ଛାତ୍ର ହୋଇ ରହି କେତେବେଳେ ଶିକ୍ଷକତା ବି କରୁଥିଲି ।

ଚାହାଳିରେ ପଢ଼ିଲାବେଳେ ପ୍ରଥା ଅନୁସାରେ ମାଷ୍ଟରଙ୍କ ନିଜ କାମ ବି କିଛି କିଛି କରିଦେବାକୁ ପଡ଼େ, ଯେପରି ଜାଳେଣି କାଠ ସଂଗ୍ରହ କରିବା, ପନିପରିବା ଯୋଗାଡ଼ କରିଦେବା ଇତ୍ୟାଦି । ମାଷ୍ଟ୍ରେ ଆମ ଘରେ ଖାଉଥିବା ଯାକେ ସେ କାର୍ଯ୍ୟ କରିବା ଦରକାର ପଡ଼ି ନ ଥିଲା । କିନ୍ତୁ ଚାହାଳି ଓଳେଇବା, ଲିପିବା ଆଦି କାର୍ଯ୍ୟ ପଡ଼େ । କେବେ କେବେ ମତେ ବି କିଛି କରିବାକୁ ପଡ଼ିଥିବ, ମନେ ନାହିଁ ।

ଏକାଠି ଗୁଡ଼ିଏ ପିଲା ବସି ରଡ଼ି ରଡ଼ି ଯେ ଯାହାର ପାଠ ଘୋଷିବା, ମାଷ୍ଟ୍ରେ ଢୁଳେଇଲେ ଚୁମୁଟାଚୁମୁଟି ହେବା ଓ ସାନ ସାନ ଦୁଷ୍ଟାମି କରିବା, କେତେବେଳେ ନିଜେ ସେଇଠି ଶୋଇପଡ଼ିବା, ପାଠର ଧରଣ ଏହିପରି ।

କିନ୍ତୁ ଆହୁରି ବେଶି ଭଲ କରି ମନେପଡ଼େ, ଚାହାଳି-ଜୀବନରେ ଅନ୍ୟାନ୍ୟ ସାଥୀମାନଙ୍କ ସଙ୍ଗେ ସାଙ୍ଗ ହେବା, ଏକାଠି କେଉଁ ଦିଗ୍‌ବିଜୟରେ ବାହାରିବା, କଣ୍ଢେଇକୋଳି ତୋଳି ଯିବା ଓ ପଢ଼ି ବସିଲାବେଳେ ସବୁଠୁ ପ୍ରୀତିକର—ପଦାକୁ ଅନାଇଁ ଅନାଇଁ କେଉଁଠି କ'ଣ ହେଉଛି, ଦାଣ୍ଡରେ କିଏ ଆସିଲା ଗଲା, ବାହାରର ଦୃଶ୍ୟ କେମିତି ବଦଳୁଛି ସେଇ ସବୁ ଲକ୍ଷ୍ୟ କରିବା, ଆଉ ଶେଷରେ ଅପେକ୍ଷା କରିବା ଡାଆଣିଆ ଖରାବେଳକୁ କି ଗୋରୁ ବାହୁଡ଼ାଣି ବେଳକୁ, ଯେତେବେଳେ ସତ୍‌ସାହସ ଦେଖାଇ କିଏ ଜଣେ ଠିଆ ହୋଇ ପଡ଼ିବ ଆଉ କହିବ—

''ହେଇଟି ରୁମ ଦିଶିଲାଣି ଅବଧାନ, ହେଇଟି ଜହ୍ନିଫୁଲ ଫୁଟିଲାଣି, ଏଥରକ ମେଲାଣି ଦିଅ ।''

ଏବେ ବି ସବୁଦିନେ ସେଇ ବେଳଟି ମୁକ୍ତିର ସଙ୍କେତ ସୂଚାଏ, କୋଠରିରେ କି ଗାଡ଼ିରେ ଆବଦ୍ଧ ପଡ଼ିଥିଲେ ପଦାରୁ ଅନାଇଁଲେ ଦୀର୍ଘଶ୍ୱାସ ଉଠେ ।

ମୁହଁରେ ଖଡ଼ି କି ଧୂଳି ବୋଲି ହୋଇ ବସ୍ତାନି କାଖେଇ ଘରକୁ ଦୌଡ଼ି ଦୌଡ଼ି ଗଲେ ବୋଉ ଆସି କୁଣ୍ଢେଇ ପକାଏ ।

''ଆହା, ମୁହଁ କେଡ଼େ ଶୁଖିଯାଇଚିରେ ପୁଅ, କେତେ ପାଠ ପଢ଼ିଚି ମୋ ପୁଅ, ଆ, କ'ଣ ଖାଇଦେ !''

ଅସଲ ପଢ଼ା ହୁଏ ଘରେ, ତା' ପାଖରେ ।

୧୯୨୦ରେ ପାଟ୍‌ନା ଯିବା ଆଗରୁ ମୁଁ ବର୍ଣ୍ଣବୋଧ ଘୋଷି ସାରିଥିଲି, କଥାବଳୀରୁ କିଛି ପଢ଼ିଥିଲି, ପୁରାଣ ଗାଉଥିଲି । ପଣିକିଆ ପଚିଶି ଖେନ୍ଦା, ସରଳ ମିଶାଣ ଆଦି ଓ କିଛି ମାନସାଙ୍କ ଶିଖିଥିଲି ।

ଉଣେଇଶଶହ ଅଠର, ଏକା ସଙ୍ଗେ ଅନେକ ଘଟଣା । ବଡ଼ଭାଇଙ୍କ ବିଭାଘର ମୋର ମନେ ନାହିଁ । କିନ୍ତୁ ବାପା ଓ ଆଉ ଦୁଇ ଭାଇ ସୋନପୁରରୁ ଆସିବା ମନେ ଅଛି, ଅପା ତା ବଡ଼ପୁଅ ସୁରେଶକୁ ଘେନି ଆସିଥିଲା ମନେ ଅଛି, ଘରେ ବହୁତ ଲୋକ ଥିଲେ ମନେପଡ଼ୁଛି ।

ବଡ଼ ଭାଉଜବୋଉ ଯେତେବେଳେ ନୂଆ ଆସିଥିଲେ ମନେଅଛି । ମୁଁ ଚାରି ବର୍ଷର । ମୋର ସମ୍ପତ୍ତି ବଢ଼ିଲା, ଅଧିକା ହେଲେ ମୋ ଭାଉଜବୋଉ । ତାଙ୍କ ପିଠିରେ ମୁଁ ଦୁମ୍‌କିନା ପଡ଼ୁଥିଲି, ତାଙ୍କ ବେକକୁ ବେଢ଼େଇ ଧରୁଥିଲି, କେବେ କହୁଥିଲି ''ମୋ କଖାରୁ'', ତାଙ୍କ ବୋଲ କରିବାକୁ ଛକି ରହୁଥିଲି, ତାଙ୍କ ସଙ୍ଗେ ଅଳି କରୁଥିଲି, ଆଉ ତାଙ୍କୁ କହୁଥିଲି ''କଥା କହ'' । ତାଙ୍କ ପାଖରେ ବହୁତ ସମୟ ମୁଁ ବିତାଉଥିଲି ।

ମନେପଡ଼ୁଛି, ଦିନେ ମୁଁ ଥିଲାବେଳେ ତାଙ୍କ ରହିବା ବଖରାରେ କୁଆଡ଼ୁ ଆସି ପଶିଗଲା ଗୋଟାଏ ନାଗ ସାପ, ଫଣା ଟେକୁଥିଲା, ମୋ ଭାଉଜ, ମୁଁ, ସୁଦ୍ଧ ଅପା ଓ ଆଉ କିଏ କିଏ ଗୋଟାଏ ପଲଙ୍କ ଉପରେ ଚଢ଼ିଥିଲୁ ।

ମାଟି ଘର, ନଈକୂଳିଆ ଘର । କାନ୍ଥରେ ଚାଳରେ ସାପ ଥା'ନ୍ତି । ବହୁତ ମୂଷା, ସାପ ତାଙ୍କୁ ଖାଇବାକୁ ଆସେ । ପଦାରୁ ଦେଖିଛି କେଉଁ କାନ୍ଥ ଉପରେ ଚଢ଼ିଥିବ ଗୋଧି । ଓଳିରୁ କେତେ କେତେବେଳେ ସାପକାତି ଝୁଲୁଥାଏ ।

ବଡ଼ ଭାଉଜଙ୍କୁ ଆରେଇ ଯାଇଥିଲି ବୋଲି ଆଉ ଦୁଇ ବର୍ଷ ପରେ ବୋଉକୁ ଛାଡ଼ି ତାଙ୍କ ପାଖକୁ ପାଟ୍‌ନା ଯିବାରେ ମୋର ଅସୁବିଧା ହୋଇ ନ ଥିଲା ।

ଆପଣାର ଲୋକେ ପଦାରୁ ଆସନ୍ତି, କିଏ ଆମ ଘରକୁ, କିଏ ଖଞ୍ଜାକୁ, କେଡ଼େ ସ୍ନେହ ଲାଗିଯାଏ । ତା'ପରେ ସେମାନେ ପୁଣି ଚାଲିଯାଆନ୍ତି । ଜୀବନର ଏଇ ସାଧାରଣ ଅନୁଭୂତି ବଡ଼ ତୀବ୍ର ହୋଇ ବାଧୁଥିଲା ସେହି ବୟସରେ । ଖଞ୍ଜାର ଭଉଣୀ କେଇଟି କେତେ କେତେବେଳେ ବିଭା ହୋଇଗଲେ । ବାହାଘର ଧୁମ୍‌ଧାମ୍, ହୋ ହା, ବାଣ ଫୁଟେଇ ବର ଆସିବା, ନାନା ଆଡ଼ର କୁଣିଆ, ତା'ପରେ କାନ୍ଦି କନ୍ଦାଇ ବିଭାହେଲା ଝିଅ ଶାଶୁଘରକୁ ଯାଏ, ଆସିବା ଲୋକ ଚାଲିଯାଆନ୍ତି, ଘର ଖାଁ ଖାଁ ଲାଗେ ।

ଆସିଥିଲେ ଜଗୁ ଦାଦି, ଖୁଡ଼ୀ, ତାଙ୍କ ଝିଅମାନେ, ଟିକି ପୁଅଟି, ବାପାଙ୍କୁ ତାଙ୍କ ବାପା ପୁଅ କରିଥିଲେ ବୋଲି ତାଙ୍କ ଘର ଆମ ଘର ଏକ, ଏକ 'ଅଂଶ'ରେ ସେମାନେ ଦୁଇ ଭାଇ । ଭଉଣୀମାନେ ଖୁବ୍ ସ୍ନେହ କରନ୍ତି । ସମସ୍ତେ ''ମୋ ଭାଇ—ମୋ ଭାଇ ।'' ସେମାନେ ଢେଙ୍କାନାଳରେ ରହୁଥିଲେ । ଗଲେ ବାହାରି । ତା'ପରେ ମୋ ଜୀବଦ୍ଦଶା ଭିତରେ ଅଳ୍ପ କେତେ ଥର ସେମାନେ ଆସିଥିବା ମନେଅଛି । ସେହି ଏକା ଖଞ୍ଜାରେ ଅନ୍ୟ ଘରେ ଥିଲେ ଦଇ ଦାଦି, ଖୁଡ଼ୀ, ତାଙ୍କର ଦୁଇ ଝିଅ, ମୋର ଆଉ ଜଣେ ଦାଦିଙ୍କ ପୁଅ ରାମ ଭାଇ । ସେମାନେ ବୋଧହୁଏ ପୁରୀରେ ରହୁଥିଲେ । ଭଉଣୀ ଦୁହିଁଙ୍କ ଭିତରେ ଗୋଟିଏ ମୋଠୁଁ ସାନ, ଖୁବ୍ ଖେଳେ, କଳି ବି କରେ । ସେମାନେ ବି ଗଲେ ।

ଦିନାକେତେ ଥିଲେ ଧୂଳ ଭାଇ, କାହ୍ନୁ ଭାଇ । ଧୂଳ ଭାଇ ସତେ ଯେମିତି ପରର ଧରମ-ବେଠିଆ, ଖଞ୍ଜାଯାକରୁ କାହାର କି କାମରେ ଆସିବେ ଭାବୁଥାନ୍ତି । କେତେବେଳେ ପାଟିଟାଏ କରି ଧାଇଁଯିବେ । ''ବନୁ ହୋ, ତମ ବ'ଲ୍ (ବଳଦ) ଫିଟିଗଲା,'' ସେ ଭାରି ଫୁର୍ତ୍ତି, ଭାରି ମେଳାପୀ । କାହ୍ନୁ ଭାଇ ଅପେକ୍ଷାକୃତ ଗମ୍ଭୀର, ସେ ତର୍କ କରନ୍ତି । ୧୯୧୮ରେ ବଡ଼ ଭାଉଜ ବୋଉ ପାଟ୍‌ନା ଗଲେ, ଧୂଳ ଭାଇ କାହ୍ନୁ ଭାଇ ବି ।

ଘରେ ବୋଉ, ବାପା, ମୁଁ ।

ସେତେବେଳର ଯୋଡ଼ିଏ ଘଟନା ମନେଅଛି । ଗୋଟିଏ ଧାନଘର ପଡ଼ାର ଘାଇ, ବନ୍ଧ ଭାଙ୍ଗି ନଈପାଣି ଗହୀର ଯାକ ବୁଡ଼ାଇ ଦେଇଥାଏ । ଆମ ଗାଁ ଦାଣ୍ଡରେ ବି ପାଣି । ଧାନଘର ପଡ଼ା ଘାଇ ଆମ ଘରଠୁଁ ମାଇଲିଏ ପାଖ ହେବ, ଦିଶିଯାଉଛି, ଘାଇବାଟେ ପାଣି କୁଦାମାରି ଆଗପାଖକୁ ଯାଉଥାଏ ।

ବୋଧହୁଏ ମୋ ଛଅ ବର୍ଷ ସେହି ବନ୍ଧରେ ଆମ ଗାଁ ତଳକୁ ଠାଏ ବଡ଼ ଘାଇ ହୋଇଥିଲା । ଆମ ଖଞ୍ଜାର ଚାରିଆଡ଼େ ପାଣି ଖେଳୁଥିଲା । ସେ ଘାଇ ନାଁ କାକିଆ ଘାଇ । ତା'ପରେ ୧୯୩୫ରେ ହୋଇଥିଲା ଖଣ୍ଡାଏତା ଘାଇ । ଖଣ୍ଡାଏତା ଗାଁ ନିଶ୍ଚିହ୍ନ ହେଲା, ଆଉ ଥରେ ବସିଲା । ପିଲାଦିନୁଁ ନଈବଢ଼ି ସଙ୍ଗେ ମୋର ପରିଚୟ । ବଡ଼ ଦିନେ ବଢ଼ି କାମରେ ବୁଲିଛି, ଯାଜପୁର ବଢ଼ି ଅଞ୍ଚଳରେ, ପୁରୀ ଜିଲ୍ଲାର ବଢ଼ି ଅଞ୍ଚଳରେ ।

ବନ୍ଧ ନ ଭାଙ୍ଗିଲେ ବି ଆମ ନଈରେ ପ୍ରତିବର୍ଷ ବଢ଼ି ଆସେ । ପ୍ରଥମ କେତେଦିନ ପିଲାଙ୍କ ଖେଳ ଲାଗିଯାଏ । ନଈ ଆସ୍ତେ ଆସ୍ତେ ବାଲି ଉପରେ ମାଡ଼ି ମାଡ଼ି ଆସୁଛି, ଫେଣ ଆସୁଛି, କାଠି ପୋତି ବଢ଼ି ମାପି ହେଉଛି, ଚିହ୍ନା ବନ୍ଧୁ ପରି ସଙ୍କୋଚି ଆସୁଛି ପାଣି । ପଛରୁ ଘେରିଗଲାଣି ଚାଖଣ୍ଡେ ଉଚରେ । ସକାଳକୁ ଦେଖିଲା ବେଳକୁ ଆହୁରି ଆଗକୁ ଆସିଲାଣି । ତା'ପରେ ଆସିଲାଣି ମାଡ଼ି କଣ୍ଡିଆ ଦାଢ଼କୁ ଲାଗି, ଆଉ ଖେଳି ହେବ ନାହିଁ, ଦେଖି ହେବ ସବୁବେଳେ । କେତେ କିମ୍ଭୀର, କେତେ ଗଛ, କେତେ ଡଙ୍ଗା, କେତେ ସୁଅ । ଦେଖୁ ଦେଖୁ ଭୋକ ଶୋଷ ଭୁଲି ହୋଇଯାଏ । ତା'ପରେ ପାଣି କଣ୍ଡିଆ ଉପରେ ଚଢ଼େ, ମଙ୍ଗଳାଙ୍କ ଝଙ୍କା କୋଚିଲା ଗଛ ଅଣ୍ଟା ପାଣି କରେ, ପାଣି ବନ୍ଧକୁ ଲାଗେ, ଆଉ ଆନନ୍ଦ ନ ଥାଏ—ଭୟ । ବନ୍ଧ ତାଳୁ ତଳେ ପାଣି, ଦିଗନ୍ତକୁ ଲାଗିଛି । ତା'ର ନିଷ୍ଠୁର ଆଖି, ହିଂସ୍ରକ । ଆପେ ଆପେ ଗାଁର ସୁସ୍ଥ କଳରବ କମିଯାଏ, ମଝିରେ ମଝିରେ କୋକୁଆ ଭୟ ବ୍ୟାପେ—ହେଇ ଅମୁକଠି ଘଳିଆ ପଡ଼ିଛି । ଅମୁକଠି କୋକି ଗାତରେ ପାଣି ଝରୁଛି । ଆସେ ଶୂନ୍‌ଶାନ୍ ଖାଁ ଖାଁ ରାତି । ରାତିରେ ସେ ମାଇଲିକ ଓସାର ନଈବଢ଼ି ଆହୁରି ଭୟଙ୍କର ଦିଶେ । ପଞ୍ଝା ପଞ୍ଝା ଜୁଳୁଜୁଳିଆ ଅନ୍ଧାରକୁ ଉଜ୍ଜ୍ୱଳ କରି ଉଡ଼ି ବୁଲୁଥାନ୍ତି । ଆସେ ବର୍ଷା, ତୋଫାନ, ତୁହାକୁ ତୁହା ।

ବୋଉକୁ ଯାବୁଡି ଧରେ, କହେ "ବୋଉ,—ବଢ଼ି"

"ଆମର କିଛି କରିବ ନାହିଁ ମ, ଶୋ ତୁ"

ପାଖରେ ବୋଉଥିଲେ ଭୟ କାହାକୁ ?

ବୋଉ କେତେ ସୁନ୍ଦର ତୁନି ତୁନି କରି ଗୀତ ବୋଲି ବୋଲି ଶୁଆଇ ପକାଏ ।

ସେତେବେଳେ ମୋର ଦୁନିଆଁ ସେଇ ଗାଁ । ଆଉ ତା ବାହାରେ ଅନ୍ୟ ପ୍ରକାର କିଛି ଥାଇପାରେ ଏଭଳି ଧାରଣା ନ ଥିଲା । ମୋର ମନେଅଛି, ଗୋଟିଏ ଅପା ଖଣ୍ଡେ ମିଶ୍ରି ଖାଉଥିଲା ଯେ ମୁଁ କାବା ହୋଇ ପଚାରୁଥିଲି ସେ କି ପଦାର୍ଥ । ରସଗୋଲା ନାଁ ମୁଁ ଶୁଣିଥିଲି, ଆମ ଗାଁ କୀର୍ତ୍ତନ ଗୁଡ଼ିଆ ତାକୁ କରେ ନାହିଁ । ଲୁଗା ଏତେ ଆବଶ୍ୟକ ନ ଥିଲା, ମୋର ଖଣ୍ଡେ ଅଧେ ଥିଲା ସତ, କିନ୍ତୁ ଛ'ବର୍ଷ ଯାକେ ମୁଁ ସବୁବେଳେ ତାକୁ ପିନ୍ଧୁ ନ ଥିଲି । ଅବଶ୍ୟ ମୋର ଗୋଟାଏ ସାଜ ଗୋଲାପି ମଖମଲ୍‌ର ପାଇଜାମା, କୁର୍ତ୍ତା, ଜରିଦିଆ ଟୋପି ଥିଲା । ମତେ ଅନ୍ୟ ଗାଁକୁ ବୁଲେଇ ନେଲାବେଳେ ସେଥିରେ ମଣ୍ଡିତ କରା ହେଉଥିଲା । 'ପିପର୍‌ମେଣ୍ଟ୍ ମିଠେଇ' ମୁଁ ଚିହ୍ନିଥିଲି, କିଏ ହେଲେ ଆଣି ଦିଅନ୍ତି । ମୋର ମନେଅଛି ଭାଇ ଯେତେବେଳେ ଦାନ୍ତଘଷା ଚୂର୍ଣ୍ଣ ଅଡାଡ଼ି ଦାନ୍ତ ଘଷିଲେ୍ ମତେ କାବା ଲାଗିଲା ଓ ଜଇଦାଦି ଯେତେବେଳେ ରୁପାର ବୋତାମ କାମିଜ୍‌ରୁ କାଢ଼ିବାର ଦେଖିଲି, ମୁଁ ଆଶ୍ଚର୍ଯ୍ୟ ହେଲି । ଡାକ୍ତର ମୁଁ ଦେଖି ନ ଥିଲି, 'ବଇଦ' ଦେଖିଛି, ମୁଣିରୁ 'ଗଦ' ବାହାର କରନ୍ତି । ପିଲାଦିନେ ଦିଆସିଲିକାଠିର ଅଗରେ ଥିବା ରଙ୍ଗକ ପ୍ରତି ମୋର ବହୁତ ଲୋଭ ହେବାରୁ ମୁଁ ସେଥିରୁ ଗୁଡ଼ିଏ ଖାଇ ଦେଇଥିଲି, ରକ୍ତଝାଡ଼ା ଲାଗି ରହିଲା ମାସେଯାକେ, 'ବଇଦ' ଭଲ କଲେ । ତାହା ମୁଁ ଚିହ୍ନି ନ ଥିଲି । ଅନ୍ୟ ଗାଁରେ ପଠାଣ ସାହିରେ କୁକୁଡ଼ା ଦେଖିଛି, କେବେ ଭାବି ନ ଥିଲି ସେଗୁଡ଼ାକ ମଣିଷର ଖାଦ୍ୟ । ଚିନାବାଦାମ୍ ମୁଁ ଦେଖିଲି ଆହୁରି କେତେ ବର୍ଷ ପରେ, ସେତେବେଳେ କାହ୍ନୁଭାଇ ମତେ ଚୋପାଗୁଡ଼ିଏ ଦେଇ ଚୋବାଇବାକୁ କହିଲେ । ଥୁ ଥୁ କରୁ କରୁ ଧୂଳଭାଇ ସାହାଯ୍ୟ କଲେ । ମଦୁଆ ମୁଁ ଦେଖି ନ ଥିଲି । ସାଇକଲ, ମଟର, ସିନେମା, ଥିଏଟର, ଫୁଟ୍‌ବଲ୍ ଖେଳ—ଏସବୁ ମତେ ଅଜଣା । ମୁଁ ଥିଲି ନିପଟ ମଫସଲିଆ ପିଲା । ଜୋତା ମାଡ଼ିଲି କଲେଜରେ । ପିଲାଦିନେ କଠୋଉ ମାଡୁଥିଲି । କିନ୍ତୁ ମୁଁ ମୋ ଦୁନିଆଁକୁ ଚିହ୍ନିବାକୁ ସୁଯୋଗ ପାଇଥିଲି, ଆଖିରେ, ନାକରେ, କାନରେ, ଚମରେ, ଜିଭରେ ଚାଖିଥିଲି ଗାଁ କ'ଣ, ପଲ୍ଲୀଶ୍ରୀ କ'ଣ, ସେ ସୁଯୋଗ ମୋ ସନ୍ତାନମାନଙ୍କୁ ମୁଁ ଦେଇପାରି ନାହିଁ ।

ସହରର ପିଲା କଳ୍ପନା କରିପାରିବ ନାହିଁ ଯାନ୍ତ୍ରିକ କୋଳାହଳ ବ୍ୟସ୍ତତା ଉତ୍ତେଜନା ଉଦ୍‌ବେଗ ଆଡ଼ମ୍ବର ନିରାପତ୍ତା ଅପସରି ଗଲେ ଦୁନିଆଁ ଦିଶନ୍ତା କେମିତି, ସକାଳ, ଦି'ପହର, ସଞ୍ଜ, ରାତି, ବିନା ଆଲୁଅରେ ରାତି—କେମିତି

ଦିଶନ୍ତା ଲାଗନ୍ତା, ଯେଉଁଠି ବଞ୍ଚିବାର ଏକମାତ୍ର ଉଦ୍ଦେଶ୍ୟ ବଞ୍ଚିବା, ଅନ୍ୟ ଉଦ୍ଦେଶ୍ୟ କି ଦୁରଭିସନ୍ଧି ନାହିଁ, ସେ ଜୀବନ କେମିତି, ସେ ସମାଜ କେମିତି ।

ସେ ସୁଯୋଗ ପାଇବ ନାହିଁ ଜାଣିବାକୁ କଞ୍ଚା ଓଡ଼ିଆ ବୋଲି ଗାଉଁଲି ଲୋକଙ୍କ ତୁଣ୍ଡରେ କିଭଳି ସଙ୍ଗୀତ ସୃଷ୍ଟି କରି ଉଚ୍ଚାରିତ ହୁଏ, କି ବିଶେଷତ୍ୱ ସେ ବୋଲିର ଯେ କେତେ ଅଳ୍ପ କହିଲେ ବି କେତେ ଅର୍ଥ ବୁଝାଏ, କିଛି ନ କହି ବି ଦି'ଜଣ ଗାଁ ଲୋକ ମୁହାଁମୁହିଁ ହୋଇ ତୁନି ରହି କେମିତି ଭାବର ଆଦାନ ପ୍ରଦାନ କରନ୍ତି ।

ସେ ଜାଣିବାକୁ ସୁଯୋଗ ପାଇବ ନାହିଁ ଯେ କୌଣସି ପର୍ବଦିନ ସହରରେ ବୁଲିଯାଇ କାନ ଫଟେଇ ଦେଉଥିବା ମାଇକ୍‌ଗୀତର ରଡ଼ି ଶୁଣିବା ପରିବର୍ତ୍ତେ (ଆମ ଗାଁ ହୋଇଥିଲେ ଗେଧମାନେ ଏ ଗଛରୁ ସେ ଗଛ ଡିଅଁନ୍ତେ ଓ ଗୋରୁ ହୁରୁଡ଼ନ୍ତେ) ନଈ ବନ୍ଧେ ବନ୍ଧେ ଆମ ଗାଁକୁ ଗଲେ ପାଖରୁ ଦୂରରୁ ନଈ ସେପାରିରୁ ନାନା ସ୍ଥାନରୁ ଶଙ୍ଖ ହୁଳହୁଳି ଶବ୍ଦ କେମିତି ଶୁଭେ, କୁଆଁରପୂନେଇଁ ପାଖ ହେଲେ ରାତିରେ ଗାଁ ଗାଁକରୁ ଫୁଲବଉଳବେଣି ଗୀତ କେମିତି ଶୁଭେ ।

କେତେ ଦେଖିଛି, ଶୁଣିଛି—ଶାନ୍ତିପ୍ରଦ ଅବସର ଭିତରେ ଆରାମରେ ମଠେଇ ମଠେଇ ନିଠେଇ ନିଠେଇ । ଉଆଁସ ଅନ୍ଧାର ବରଷା ରାତିକୁ ଶୁଣିଛି, ଶୁଣିଛି ନିଛାଟିଆ ଉଦାସୀ ଜ୍ୟେଷ୍ଠମାସ ଦ୍ୱି'ପ୍ରହରକୁ, ଯୋଗୀ ତୁଣ୍ଡରେ ଗୋବିନ୍ଦଚନ୍ଦ୍ର ଶୁଣିଛି, ଶୁଣିଛି ଦାଣ୍ଡିବୃତ୍ତରେ ସାରୋଳ ମହାଭାରତ ବୋଲା ଯେତେବେଳେ ସମୁଦ୍ରର ଲହଡ଼ି ମାଡ଼ି ଆସେ, ଗଡ଼ିଯାଏ, ଭାଙ୍ଗେ ପୁଣି ଉଠେ, ମାଡ଼ିଆସେ, ଭାଗବତ ଓ ପୁରାଣ ବୋଲା ଓଡ଼ିଆ ଛାନ୍ଦ ବୋଲା ଶୁଣିଛି ଦେଖିଛି ।

ବିଶ୍ୱାସ ଥିଲେ ଧର୍ମର ପ୍ରତ୍ୟେକ ସଙ୍କେତ ଦେହକୁ ମନକୁ କେଡ଼େ ପବିତ୍ର ଲାଗେ, ଶ୍ରଦ୍ଧା ଓ ଭକ୍ତି ଥିଲେ ଗୁରୁଜନଙ୍କ ତୁଣ୍ଡ ଆଶୀର୍ବାଦ କେଡ଼େ ଭରସା ଉତ୍ସାହ ଓ ଆନନ୍ଦ ଦିଏ, ସ୍ନେହ ଥିଲେ ଗାଁର ଚିହ୍ନା ଲୋକଙ୍କ ମୁହଁଟିମାନ ଦେଖିଲେ କେମିତି ଭୂଇଁରେ ପାଦ ପଡ଼େ ନାହିଁ, —ମୁଁ ଅନୁଭବ କରିଛି ସେହି ପିଲାଦିନେ, ଆମ ଗାଁରେ ।

ମୋ ବୋଉର ସାଙ୍ଗ 'ସୁନ୍ଦରୀ ବୋଉ ଖୁଡ଼ୀ' । ଆମେ ତାଙ୍କୁ 'କୁନଖୁଡ଼ୀ', ଆକାରରେ ସାନ, ସବୁବେଳେ କାର୍ଯ୍ୟବ୍ୟସ୍ତ, ଆମ ଘର ପାଖରେ ତାଙ୍କ ଘର, ଦି'ପହରେ ଆସନ୍ତି ବୋଉ ପାଖକୁ । ସେ ନିଜ ହାତରେ ବହୁତ ବଗିଚା କରନ୍ତି । ସେହି ଘରେ ଦିଜ ଦାଦି ଓ ତାଙ୍କ ସ୍ତ୍ରୀ, ପଛେ ଗୋଟିଏ ସନ୍ତାନ ହେଲା, ''ବାଉରାଣୀ'', ମୋଠୁଁ ବହୁତ ସାନ, ମୁଁ ଚିଡ଼ାଏଁ ''ବାଉରାଣ—ତତେ

ମୋ ରାଣ ।'' ସେହି ଘରେ ନାରଣ ଭାଇ, ଭାଉଜ ଆସିଲେ ବିରିବାଟିରୁ ଆହୁରି ବହୁ ବର୍ଷ ପରେ, ତାଙ୍କୁ ଚିଡ଼ାଉଁ ତାଙ୍କ ବାହା ବେଳର ବାହୁନା—''ଆଜି ଏତେବେଳେ ନାକ କୂଳରେ ଲୋ, ହଁ ବୋଉ । କାଲି ଏତେବେଳେ ନଈକୂଳରେ ଲୋ, —ହଁ ବୋଉ ।'' ନାରଣ ଭାଇ ପୁଲିସ୍ କନେଷ୍ଟବଳ ହେଲେ, ହାବିଲ୍‌ଦାର୍ ହେଲେ, ସ୍ୱାଧୀନ ଜୀବନ ଭଲ ଲାଗିଲା, ତେଣୁ ଚାକିରି ଛାଡ଼ି ନିଜେ ଚାଷ କଲେ, ପଛେ ଦୀକ୍ଷା ବି ନେଲେ ଶ୍ରୀଚୈତନ୍ୟ ଭକ୍ତ, ପାହାନ୍ତାରୁ ଉଠି ସଂକୀର୍ତ୍ତନ ଗାଆନ୍ତି । ସେତେବେଳେ ସେ ଘରେ ଥିଲେ ଦୁଇ ଭଉଣୀ । ସେଇଠୁ ଆର ଘର, —ତାଙ୍କ ଘରସାମ୍ନା ଲୋକନାଥ ବଡ଼ବାପାଙ୍କର । ବୋଧହୁଏ ଅଶି ବର୍ଷରେ ମଲେ । ସେ ସେକାଳର ଟରଣି ଥିଲେ,କଚିରି ତାଙ୍କ କର୍ମସ୍ଥଳ, ବୀରବାବୁ ଓକିଲଙ୍କ ସହିତ ଚିହ୍ନାଜଣା, ଯା'ଆସ କରନ୍ତି, ଅଳ୍ପ କହନ୍ତି, ଖୁବ୍ ମିଠାକଥା, କିନ୍ତୁ ଲୋକଙ୍କ ସହିତ ସେତେ ସମ୍ପର୍କ ନ ଥିଲା । ଖୁବ୍ ଡେଙ୍ଗା, ବଡ଼ମୁଣ୍ଡିଆ, ଚନ୍ଦା, କଳା ଲୋକ, ପଦାକୁ ଗଲେ ଗୋଟିଏ କଳା କୋଟ୍, ପାନ ଖାଉ ନ ଥିଲେ, ଗମ୍ଭୀର । ଠିକ୍ ଓଲଟା ତାଙ୍କ ପୁଅ କୁଞ୍ଜଭାଇ, ଗୋରା, ମନଖୋଲା, ଆମ ଗାଁର ଭୀମ, ବନା ପହିଲ୍‌ମାନଙ୍କ ବନ୍ଧୁ, ନିଜେ କୁସ୍ତି, ଠେଙ୍ଗା ଖେଳ ଓ ଖଣ୍ଡା ଖେଳରେ ଖୁବ୍ ପାରଙ୍ଗମ ଥିଲେ । ତାଙ୍କ ସ୍ତ୍ରୀ ଆମର 'ବନୁବୋଉ ଭାଉଜୋଉ' । ମୋ ପିଲାଦିନେ ସେ ବୁଢ଼ୀ, କିନ୍ତୁ ବହୁତ ଆଢ଼ ଉଢୁଆଳ, ଅତି ଧୀର କଥା । ତାଙ୍କର ତିନିପୁଅରୁ ସେତେବେଳେ ଜନ୍ମ ହୋଇଥାଏ ବନୁ, ମୋଠୁ ବାରବର୍ଷ ବଡ଼, କିନ୍ତୁ ମୁଁ ତା'ର ମାନତା, ତେଣୁ ମତେ ମାନ୍ୟ କରେ, ତା' ସ୍ତ୍ରୀ ମୋର ବୋହୂ, ବିଚରା ବୁଢ଼ୀ ହୋଇ ମଲା (ମୋ' ଆଗରେ ହୋଇନାହିଁ) । ବନୁ ତା ଅମଳରେ ଆମ ଗାଁର ଯୁବ-ନେତା, ଆମ ଅଞ୍ଚଳଯାକ ଲୋକଙ୍କ ଭିତରେ ସବୁଠୁ ଜନପ୍ରିୟ ହୋଇଥିଲା, କାରଣ ସେ ସର୍ବସାଧାରଣଙ୍କ ସୁଖଦୁଃଖ ବୁଝୁଥିଲା, ଲୋକଙ୍କୁ ସଙ୍ଗଠନ କାର୍ଯ୍ୟ କରିବାକୁ ଭେଳୋଉଥିଲା, ଉତ୍ସାହ ଦେଉଥିଲା, ଘରକଥା ତା' ବାପା ଓ ଭେଇଙ୍କୁ ଛାଡ଼ି ଦେଇ ସେ ପରର ହାନିଲାଭ ମୁଣ୍ଡେଇ ଖରାଏ ତରାଏ ବୁଲୁଥିଲା । ୧୯୨୧ ଆନ୍ଦୋଳନ ବେଳେ ସ୍ୱଦେଶୀ ପ୍ରଚାର କରିଥିଲା, ସାହି ସାହି ଭିତରେ କଳି ସେ ଭାଙ୍ଗେ, ଅଛୁଆଁ ନିବାରଣ ଆଦି କାର୍ଯ୍ୟ ବି କରେ । ପଛେ ତା'ର ଅଭାବ ବଳେଇଲା, ଚାକିରି କରିଗଲା, ଫେରିଲା, ଦୁଃଖ ଭୋଗିଲା, ରୁଗ୍‌ଣ ଅବହେଳିତ ଅବସ୍ଥାରେ ବହୁତ ହୀନ ଅବସ୍ଥା ଭୋଗିଲା । ଆଉ ସେ ଘରେ ଥିଲେ ତା'ର ଦି' ଭଉଣୀ । ମୋଠୁଁ ବହୁତ ବଡ଼ । ତା' ଡାହାଣ ହାତ ଖଞ୍ଜାରେ ଜଇଦାଦି, ଖୁଡ଼ୀ, ରାମଭାଇ,

ଦାଦିଙ୍କ ଝିଅ ଦିହେଁ । ସେତେବେଳେ ସମସ୍ତିଙ୍କଠୁ ତାଙ୍କ ଆର୍ଥିକ ଅବସ୍ଥା ଭଲ । ମନୁ ଅପା ଆକାରରେ ସାନ, ଖୁବ୍ ଧୀରସ୍ଥିର ଖୁଲୁବୁଲୁ ହୁଏ ନାହିଁ । ବୁଢ଼ୀ ଧାଁ'ଦଉଡ଼କୁ ମାର୍‌ପିଟ୍‌କୁ ବି ପାରଙ୍ଗମ, ମୋ' ସଙ୍ଗେ ଖେଳେ, ମନୁ ଅପା ଗୋଡ଼ ଲମ୍ବେଇ ବସେ, ସଳିତା ବି ବଳିପାରେ, କାହାଣୀ କହେ । ଛଇଦାଦିଙ୍କ ପରିବାରରେ ବିଶିଷ୍ଟତା ଥିଲା । ତାଙ୍କର ପୁଅ ନ ଥିଲେ, ତାଙ୍କ ଉପରଭାଇଙ୍କ ପୁଅ ରାମଭାଇ, ଦୁବଦାଦି ଭାଗଲପୁରରେ ମଲା ପରେ ପିତୃମାତୃହୀନ ରାମଭାଇଙ୍କୁ ସେ ଆଦରି ନେଇଥିଲେ ଆଜୀବନ । ପଛେ ବିଭା କଲେ । ମନୁଅପା ତାଙ୍କ ମୃତା ପ୍ରଥମା ସ୍ତ୍ରୀଙ୍କର ଏକମାତ୍ର ସନ୍ତାନ । ସମସ୍ତିଙ୍କୁ ଏକାଠି ଛାତିରେ ଧରିଥିଲେ ଦାଦି ଓ ଖୁଡ଼ୀ, ବହୁତ ବଡ଼ । ସତେ ଯେମିତି ସେ ତିନୋଟିଯାକ ସନ୍ତାନ ସେହି ଖୁଡ଼ୀଙ୍କର । ଆକାରରେ ବଡ଼, କଥା କହନ୍ତି ଖୁବ୍ ଅଳ୍ପ, ଚୁପ୍‌ଚାପ୍ ମଣିଷ ଖୁଡ଼ୀ । ତା'ପରେ ଆରଘରେ ନୀଳ ବଡ଼ବାପା । ତାଙ୍କ ପୁଅ ପଦନଭାଇ ବିଭାହେଲେ, ମୁଁ ମାରକୁଣ୍ଡି ହୋଇ ଯାଇଥିଲି ଶାଳଗାଁ । ମନେଅଛି ବିରୂପା ନଈରେ ଡାମଚାନ୍ ବୋହି ଗଉଡ଼ମାନେ ଗଲାବେଳେ ଭିତରେ ପାଣି ପଶିଗଲା, ତା'ପରେ ଶାଳଗାଁରେ ଶାଳୀମାନେ ବନ୍ଦାପନାବେଳେ ପଦନ ଭାଇଙ୍କ ପିଠିକୁ ଭିଣିଭିଣା କଲେ, —ସେକାଳର ଥଟ୍ଟା, ଠା' ପିଠା ବେଳେ ଗିଲାସରେ ଘିଅ ବୋଳା ହୋଇଥିଲା ।

ସୁନ୍ଦର ନାଁଟିଏ ସେ ଭାଉଜବୋଉଙ୍କର, —ସୁଲୋଚନା, ସୁନ୍ଦର ସୁନ୍ଦର ଛବି ଆଙ୍କୁଥିଲେ, ମତେ ଦେଖାଉଥିଲେ, କିନ୍ତୁ ଅଳ୍ପଦିନେ ସେ ମରିଗଲେ ।

ତା' ପୂର୍ବରୁ ଆସି ରହିଥିଲେ ଯୁଗଳ ମା' ଓ ଯୁଗଳ । ଘର ବିହାରର ଦୁମ୍‌କା, ଶୁଣିଛି, ପଦନଭାଇ ସେଠି ଚାକିରି କରୁଥିଲେ । ଯୁଗଳ ମା'ର ଭାଷା ଥିଲା ବଙ୍ଗଳା । ତା ବାପା କି ଘୋଷ୍ ।

ସେ' ତ ବିଭା ହେବାକୁ ମନା କରୁଥିଲେ, କିନ୍ତୁ ତାଙ୍କ ବାପା ଜିଦି କଲେ । ଯୁଗଳ ମା'କୁ ଯେଉଁଦିନ ଆମ ଖଞ୍ଜାକୁ ଅଣାଗଲା ତା'ର ସେଦିନର ବାହୁନା ମୋର ମନେଅଛି, ସେ ବୋଧହୁଏ ଭାବିଥିଲା ସେ ଆସୁଛି ରଜାଘର ଉଆସକୁ, କି କେଉଁ ସହରକୁ । ଆମର ଚାଳଘର ତାକୁ ଖାଇ ଗୋଡ଼େଇଲା, ଆମର ମୋଟା ଚାଉଳ ତାକୁ ଡର ମାଡ଼ିଲା । ସେ କାନ୍ଦୁଥିଲା ।

''ଓ ମାଁ ଗୋ ! ଆମି କୋଥାୟ ଏଲେମ୍ ଗୋ ! ଆମି କି ଖେୟେ ବାଁଚ୍‌ବୋ ଗୋ ! ୟାମନ୍ ଚାଲ୍ ଆମାଦେର୍ ଦେଶେ ଘୋଡ଼ାୟ ଖାୟ୍ ଗୋ'' । ବହୁତ ଦିନଯାକେ ସେ ଶୁଦ୍ଧ ଓଡ଼ିଆ କହିପାରିଲା ନାହିଁ । ତା'ପରେ ସେ

ଅସୁବିଧା ନାହିଁ । ଖାଲି ତା ତୁଣ୍ଡରେ 'ଣ' ଟା 'ନ' ହୁଏ, 'ଜ' ଟା 'ଇ' ହୁଏ । ତାକୁ ଥଟ୍ଟା କରୁଁ ''ଅ ଯୁଗଲ ମାଁ ଭାଉଜ, କନ କହୁଚ ?''

ଦୁମ୍‌କାରୁ ନାଗବାଲି, ବହୁତ ଦୂର ।

ତା'ର ଆଉ ସନ୍ତାନ ହୋଇ ନାହାନ୍ତି । ଚାକରାଣୀ ପରି ସେ ଘରେ ସେ ଖାପିଗଲା, ପଛେ ଅନ୍ୟଠି ବି ଶରୀରଶ୍ରମ କଲା, କାହାର ଝିଅ ବିଭା ହେଲେ ଡାକିଲେ ସେ ଯାଏ । ବଡ଼ବାପା ତାକୁ ଓ ତା'ର ପୁଅକୁ ପାଳୁଥିଲେ । ଗାଁରେ ସେହିମାନେ ହିଁ ରହିଥିଲେ ତାଙ୍କ ଟୁଙ୍ଗିରେ । ଯୁଗଳକୁ ପାଠ ପଢ଼ାଇବା ଚେଷ୍ଟା ଫଳିଲା ନାହିଁ ସତ, କିନ୍ତୁ ସେ ଚାକିରି କରି ନିଜକୁ ଓ ନିଜ ପରିବାରକୁ ପୋଷିଲା । ମୋଠୁଁ ତିନି ବର୍ଷ ସାନ ହେବ ।

ଯୁଗଳ ମା' ଆସିବା ଆଗରୁ ଖଞ୍ଜାରେ ଜଣେ ଥିଲା ଯାହାକୁ କୁହାଯାଏ 'ପୋଇଲା' ବା ପୋଇଲୀ ସନ୍ତାନ । ଜଣେ ଡମୀ ବୁଢ଼ୀ, ଡାକ ନାଁ ଡଁ, ମୋ ଦେଖନ୍ତେ ତା' ମୁଣ୍ଡବାଳ ଝୋଟ, ସେ ଲୋକନାଥ ବଡ଼ାପାଙ୍କ ପୋଇଲୀ । ବହୁତ କାମ, ବହୁତ କଳି, ବହୁତ ଅଭିମାନ କରେ ସେ ବୁଢ଼ୀ, କାନ୍ଦିଲେ କି ରାଗିଲେ ତା' ମୁହଁ ବଡ଼ ବିଭତ୍ସ ଦିଶେ । ଜଇଦାଦି କେଉଁଠୁ ପାଳି ଆଣିଥିଲେ ଗୋଟିଏ ଝିଅପିଲା, ତା' ନାଁ ବୁଧି, ସେ ତାଙ୍କ ଘରେ କାମ କରୁଥିଲା, ତାକୁ ବିଭା କରିଦେଲେ ।

ତା' ଏପାଖେ, —ଆମ ଘର ।

ଅପା ତା' ଶାଶୁଘରେ ଥାଏ, କେବେ କେବେ ବୋଉ 'କଣ୍ଟ' ପଠାଏ, ଅପା ଆସେ, ବାପା ବୋଉଙ୍କର ଗୋଟିଏ ବୋଲି ଝିଅ, ତାଙ୍କର ଗେହ୍ଲା ଝିଅ, ଜୀବନଯାକ ତାଙ୍କ୍ ସ୍ନେହ-ରକ୍ଷଣା । ତା' ବଡ଼ପୁଅ ସୁରେଶ ସେତେବେଳେ ବି ହୁମ୍‌ହୁମିଆ, ମୁଁ ତା' ଘରକୁ ଗଲେ ଅପାର ନଣନ୍ଦମାନେ ତାକୁ ଟେହି ଦିଅନ୍ତି ମୋ ସଙ୍ଗେ କୁସ୍ତି ଲଢ଼ିବାକୁ, ଆମେ ଗଡ଼ାଗଡ଼ି ହେଉଥିଲା ବେଳେ ଉତ୍ସାହ ଦେଇ ପାଟି କରନ୍ତି ''ଦେଖିବା କିଏ ପାରିବ, ମାମୁଁ ନା ଭଣଜା ?'' ଅପା ଦାନ୍ତ ରଗଡ଼ି ଦଉଡ଼ି ଆସି ତାକୁ ଦୁମ୍ ଦୁମ୍ ଥୁଏ ।

ପଛେ ସୁରେଶ ସନ୍ତ୍ରାସବାଦୀ ଦଳରେ କଲିକତାରେ ରହିଲା, ଘରକୁ ଫେରିଲା, ତାକୁ ଅଠର ବର୍ଷ ହୋଇଥିବ ସେ ମରିଗଲା ।

ଧୂଜ ଭାଇ କାମର ମଣିଷ, ବିଜୁଳି ପରି କାମ, ବାପା ବୋଉଙ୍କର ଯାହା ଆବଶ୍ୟକ ହେଲେ ଧାଇଁଯାଇ କରିଦେବେ । ତାଙ୍କର ଆପତ୍ତି ନାହିଁ,

ସେ ଆପଣା ପାଇଁ ଭଲମନ୍ଦ ବାରନ୍ତି ନାହିଁ, ପର ଆପଣା ଭେଦ ନ ଥାଏ, ବିକାର ନ ଥାଏ । ସେ ସମସ୍ତିଙ୍କର ହାତବାରିଣି, ସମସ୍ତିଙ୍କର ପ୍ରିୟ । ସେ କାହ୍ନୁଭାଇଙ୍କି ଚିଡ଼ାନ୍ତି, ମାରି ଗୋଡ଼େଇଲେ ମାଡ଼ ଖାଆନ୍ତି, ହସନ୍ତି । ତାଙ୍କର ବହୁତ ଧୈର୍ଯ୍ୟ ଓ ସାହସ, ନିଜ ନିରାପତ୍ତା କଥା ସେ ଭାବନ୍ତି ନାହିଁ । ଖାଇ ବସିଥିବେ ଯଦି ଦେଖିବେ ବନୁଘରର ବଳଦ ଫିଟିଗଲା "ବନୁ ହୋ—ବଲ୍ ଫିଟିଗଲା" କହି ଡିଆଁଟାଏ ମାରି ଧାଇଁଗଲେ ବଳଦ ବାନ୍ଧିବାକୁ । ସେ ଅଳ୍ପ ସମୟ ପାଠ ପଢ଼ନ୍ତି । ଯାହା ଥରେ ପଢ଼ିଲେ ତା' ମନେ ରହିଗଲା, ବସୁ ବସୁ ଶୋଇପଡ଼ନ୍ତି ଓ ଘୁଙ୍ଗୁଡ଼ି ମାରନ୍ତି, ପରୀକ୍ଷାରେ ଅନ୍ୟମାନଙ୍କଠୁଁ ଖୁବ୍ ଭଲ କରନ୍ତି । ବୈଷୟିକ କାର୍ଯ୍ୟରେ ତାଙ୍କର ଅସ୍ୱାଭାବିକ ପାରଦର୍ଶିତା। ମାଛମରା, ଗଛଚଢ଼ା, ନଡ଼ିଆ ପରା, କାଠହଣା, ବାଡ଼ବୁଜା, ଗାଇ ବଳଦ କାମ, ବାରିବଗିଚା କାମ, ରୋଷେଇ, କିଛି କିଛି କ୍ଷେତ କାମ, ସୂତା କଟା, ସିଲେଇ, କିଛି କିଛି ଠୁକୁରୁ ଠାକୁରୁ, ସବୁ ସେ କୁଆଡୁ କୁଆଡୁ ଶିଖି ଅଭ୍ୟାସ କରିଥିଲେ । ସେ ହସନ୍ତି, ହସାନ୍ତି, ଖୁବ୍ ତରତରରେ କଥା କହନ୍ତି, ଭାବନ୍ତି ଓ ଚାଲନ୍ତି । ଯାହା ଭାଙ୍ଗିଗଲେ ମରାମତ କରିବେ ସେ । ପଛେ ସେ ହେଲେ ମାଟ୍ରିକୁଲେସନ୍‌ରେ କୃତୀ ଛାତ୍ର, ଓଭରସିଅର ପଢ଼ି ଶେଷ ପରୀକ୍ଷାରେ ସେ ପ୍ରଦେଶ ଭିତରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ, ସେ କୃତୀ ଇଞ୍ଜିନିୟର ହେଲେ, ଜଗତ୍‌ସିଂହପୁରରେ ଘରବାରି କରି ଆଦର୍ଶ କୃଷକ ହେଲେ, ତାଙ୍କର ସନ୍ତାନମାନେ ବିଦ୍ୱାନ ଓ ଉଚ୍ଚଶିକ୍ଷିତ ।

କାହ୍ନୁଭାଇ ଧୂଳିଭାଇଙ୍କଠୁଁ ସାନ କିନ୍ତୁ ତାଙ୍କର ସହପାଠୀ । ଔପନ୍ୟାସିକ ହୋଇ ଯେ ଓଡ଼ିଶାରେ ପ୍ରସିଦ୍ଧ ହେଲେ ଓ ଦୂରଦୂରାନ୍ତରେ ଗାଁ ଗହଳିରେ ବି ସୁପରିଚିତ ହେଲେ, ତାଙ୍କୁ ସେତେବେଳେ ଦଶ ବାର ବର୍ଷ । ତାଙ୍କ ଚେହେରାରେ ନାନା ପରିବର୍ତ୍ତନ ମୁଁ ଦେଖିଛି । ଉପନ୍ୟାସ ଉପର ଛବିରେ ଯେ ଚନ୍ଦା ମଣିଷ, ଆଂଶଆଂଶିଆ ମୁହଁ, ପ୍ରାୟ ଚାଳିଶି ବର୍ଷ ପର୍ଯ୍ୟନ୍ତ ତାଙ୍କ ମୁଣ୍ଡରେ ବହଳ ବାଳ, ବାହାରୁ ବାହାରୁ କୁଞ୍ଚୁକୁଞ୍ଚିଆ, ମୁଣ୍ଡ ନ କୁଣ୍ଡାଇଲେ ବି ମୁଣ୍ଡଯାକ କଳା ବାଳ ଢେଉ ଖେଳୁଥାଏ । ମୁହଁ ଚେକା, ମାଉଁସିଆ, ଶରୀର ବ୍ୟାୟାମପୁଷ୍ଟ, ମାଂସପେଶୀ ବହୁଳ, ବଡ଼ ମୁଣ୍ଡ, ଦବେଇ ଦେଲା ପରି ଚାହାଣୀ । ପ୍ରୌଢ଼ ଅବସ୍ଥାରେ ଶରୀରଶ୍ରମ କରି ଘରର ପ୍ରତ୍ୟେକ କାମ କରିବାକୁ ତାଙ୍କର ଶରଧା ବଳିଲା, ସେଥିରେ ସେ ଅଭ୍ୟସ୍ତ ହେଲେ, କିନ୍ତୁ ସେତେବେଳେ ସେ ତହିଁରୁ ବିମୁଖ ଥିଲେ, ବେଳ ପାଇଲେ ହିଁ ଯାହା ହେଲେ ପଢୁଥିଲେ, ପାଠକୁ ଗୁରୁଗମ୍ଭୀର ଦୃଷ୍ଟିରେ ଦେଖୁଥିଲେ, 'ବାଜେ ଗପ'

ଭଲ ଲାଗେ ନାହିଁ, କିଛି 'ଆଲୋଚନା' ପଢ଼ିଲେ ତାଙ୍କୁ ଭଲ ଲାଗେ, ନିଜେ ଯୁକ୍ତି କରନ୍ତି, ଯୁକ୍ତିଯୁଦ୍ଧରେ ମତ୍ତ ହୁଅନ୍ତି । ବନ୍ଦୁ ଓ ରାମଭାଇଙ୍କ ସଙ୍ଗେ ତାଙ୍କର ଯୁକ୍ତି ଜମେ । କଥା ଶୁଣିଲେ ସେ ବହୁତ ଛଳ କରନ୍ତି, ଆଗ ନାକ ଫଣ ଫଣ ହୁଏ, ଥରେ, ତା'ପରେ ଦି'ଓଠ ଏକାଠି ଚିପିହୋଇ ଟିକିଏ ବଙ୍କେଇଯାଏ ଓ ଥରେ, ତା'ପରେ ଆଖିରେ ଲୁହ ଟଳଟଳ କରେ । ସେ ଏଭଳି ଭାବପ୍ରବଣ ହୋଇପଡ଼ନ୍ତି ବୋଲି ଧୃଳଭାଇଙ୍କର ଶରବ୍ୟ ହୁଅନ୍ତି, ଧୃଳଭାଇ ତାଙ୍କୁ ଚିଡ଼ାଇବାକୁ ମନ କରି ଓଠ ଗୋଜକରି "ପ୍ତ" ବା "ଉ" ବୋଲି ଗୋଟାଏ ଶବ୍ଦ ଉଚ୍ଚାରଣ କରନ୍ତି ଓ ତାଙ୍କ ଥୋଡ଼ି ପାଖେ ହାତ ଦେଖାଇ ଦଉଡ଼ି ପଳାନ୍ତି ଆଉ ସତେକି ସେତିକିରେ କାହ୍ନୁଭାଇଙ୍କର ଧ୍ୟାନ ଭାଙ୍ଗିଯାଏ, ସେ ଅଗ୍ନିଶର୍ମା ହୋଇ ମାରିବାକୁ ଗୋଡ଼ାନ୍ତି, ଢେଲା ଫୋପାଡ଼ନ୍ତି, ଦିନଯାକର କାମ ଆରମ୍ଭ ହୁଏ । ସେ ତାଙ୍କ ବୟସ ତୁଳନାରେ ଅସ୍ୱାଭାବିକ ପ୍ରକାରେ ସ୍ଥିର-ବୁଦ୍ଧି, ବିଚାର କରନ୍ତି ପାହାଚ ପାହାଚ ମାପି ମାପି, ଚିକିନିଖି କରି ବିଶ୍ଳେଷଣ କରି, ନିକୁଟି ନିକୁଟି, ନିଠେଇ ନିଠେଇ । ଆହାର ଓ ବ୍ୟବହାରରେ ଧୃଳଭାଇ ଯେତିକି ବାଛବିଚାର ଚିନ୍ତାଶୂନ୍ୟ, କାହ୍ନୁଭାଇ ସେତିକି 'ନିକୁଟା' ଓ 'ସୁକୁମାରିଆ' । ସେ ଲୋଡ଼ନ୍ତି ସୁତୁରାବାଗ, ଖଞ୍ଜାଖଞ୍ଜି, ସଜାସଜି, ସଫା, ବାସ୍ନା । ତାଙ୍କୁ ଛବି ଆଙ୍କିବା ଭଲ ଲାଗୁଥିଲା, ଆଉ କବିତା ଲେଖିବା, ଆଉ ଡବଡବ ଆଖିରେ ପଦାକୁ ଅନାଇଁ କେତେ କ'ଣ ଭାବିବା । ସେ କେତୋଟି ଗଳ୍ପ ଲେଖିଥିଲେ, ତାଙ୍କ ଗଳ୍ପ ଓ ପଦ୍ୟ ସେ ଅନ୍ୟମାନଙ୍କୁ ପଢ଼ି ଶୁଣାନ୍ତି । କିନ୍ତୁ ସେତେବେଳେ ବି ସେ ବାରି ହୋଇ ପଡୁଥିଲେ ଗୋଟିଏ ଗୁଣ ଲାଗି,—ସେ ବହୁତ ବନେଇ ଚୁନେଇ କଳ୍ପନାଶକ୍ତି ପ୍ରୟୋଗ କରି ମନରୁ ଫାନ୍ଦି ଗପ କହି ପାରୁଥିଲେ । ତାଙ୍କ ବଡ଼ ଦିନେ ବି ଦେଖିଛି । ଅନେକେ ସେଥିପାଇଁ ତାଙ୍କର ପିଛା ଧରନ୍ତି । ସେତେବେଳେ ବିଚାରରେ ସେ ସଂସ୍କାର ଓ ଚଳନ୍ତି ବିଶ୍ୱାସର ବିରୋଧୀ ଥିଲେ, ମତରେ ଥିଲେ ସ୍ୱାଧୀନ । ସେ ଦ୍ୱିତୀୟ ଥର ପାଟ୍‌ନାରୁ ଆସି କଟକରେ ସେକେଣ୍ଡ କ୍ଲାସ୍‌ରେ ନାଁ ଲେଖା ବେଳକୁ ଖଣ୍ଡିଏ ଉପନ୍ୟାସ ଲେଖି ସାରିଥିଲେ ତା' ନାଁ "ଉତ୍ସବେ ବ୍ୟସନ", ମୋଟା ପାଣ୍ଡୁଲିପି ହଜିଯାଇଛି, ଛାପା ହୋଇନାହିଁ । ପଛେ ଅନେକ ପରିବର୍ତ୍ତନ ଭିତରେ ସେ ଗତି କଲେ । ମାଟ୍ରିକୁଲେସନ ପରେ ବିଜ୍ଞାନ ପଢ଼ିଲେ, ଆଇ.ଏସ୍ ସି. ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କଲେ । ବି.ଏସ୍ ସି. ନ ପଢ଼ି ପଢ଼ିଲେ ଇଞ୍ଜିନିୟରିଂ, ପ୍ରାରମ୍ଭିକ ପରୀକ୍ଷାରେ ଶ୍ରେଣୀରେ କଲେଜ୍‌ରେ ପ୍ରଥମ ହୋଇ ପ୍ରଥମ ବର୍ଷ ସରୁ ସରୁ ଆର୍ଥିକ ଅସୁବିଧା ଲାଗି

ସେ ବାଟ ଛାଡ଼ିଲେ । ପଢ଼ିଲେ ବି.ଏ. ଓ ଆଇନ୍, ଅସୁବିଧାରେ ପଡ଼ି ଆଇନ୍ ପଢ଼ାରୁ ନିବୃତ୍ତ ହେଲେ । ବି.ଏ. ପରେ ଏକାଉଣ୍ଟସ୍ କିରାନି ହୋଇ ଚାକିରି ଆରମ୍ଭ କଲେ, ପ୍ରାୟ ଦଶବର୍ଷ ପରେ ଆସିଲେ ଶାସନ ବିଭାଗକୁ, କ୍ରମେ ପ୍ରଥମ ଶ୍ରେଣୀକୁ ଉଠି ପଛେ ଅବସର ନେଲେ ।

ଜଗୁ ଦାଦି, ଖୁଡ଼ୀ ଓ ତାଙ୍କ ପିଲାଏ ଢେଙ୍କାନାଳର ଗୁଡ଼ିଆନାଳିରେ ରହୁଥିଲେ । ସେମିତି ବିତିଲା ଦାଦାଙ୍କ ଚାକିରି ଜୀବନ । ମଝିରେ ମଝିରେ ଗାଁକୁ ଆସନ୍ତି । ବାପା ଓ ତାଙ୍କ ଭିତରେ ବହୁତ ସ୍ନେହ ଥିଲା, ବୋଉ କହେ, "ମୋ ଲକ୍ଷ୍ମଣ ଦିଅର" । ବାପାଙ୍କ ଆଗରେ ସେ ଠିଆ ହୁଅନ୍ତି ନାହିଁ, ବାପାଙ୍କ କତିରେ ଥିଲାବେଳେ ଛୁଆଙ୍କୁ 'ଗଙ୍କାମାଳି' କରିଥିଲେ । ଡେଙ୍ଗା, ଗୋରା, ଓସାର କାନ୍ଧ, ବଢ଼ିଆଳ ଚେହେରା । ବୋଉ କହେ ସେ ଏଡ଼ଡେ ଦାଢ଼ୀ ଛାଡ଼ିଥିଲେ, ପଞ୍ଜାବୀ ପରି ଦିଶନ୍ତି । ମୁଁ ଦେଖି ନାହିଁ । ସେ ଅତି ସାଧାସିଧା ଶାନ୍ତ ସରଳ ମଣିଷ । ସେ ରାଗନ୍ତି ନାହିଁ, ଚିଡ଼ନ୍ତି ନାହିଁ, ପ୍ରାଧାନ୍ୟ ଖୋଜନ୍ତି ନାହିଁ । ବିନୟୀ ମଣିଷ, ଭାଗ୍ୟବାଦୀ, ଆପଣା ଅବସ୍ଥା ପ୍ରତି ସନ୍ତୁଷ୍ଟ, ତାଙ୍କ ମୁହଁକୁ ଚାହିଁଲେ ସନ୍ତୋଷ ଓ ତୃପ୍ତିର ଆଭା ଦିଶେ । କାହାରି ଉପରେ ତାଙ୍କର ଜୁଲୁମ୍ ନ ଥାଏ, କାହାକୁ ହୁକୁମ୍ ନ ଥାଏ, ଅଡୁଆକୁ ଯାଆନ୍ତି ନାହିଁ, ଆଡ଼େଇ ହୋଇ ରହନ୍ତି । ତାଙ୍କର ଶରଧା—ଶ୍ରୋତା ପାଇଲେ ଆପଣା ଅଭିଜ୍ଞତାରୁ କାହାଣୀ ଗପିବା, ସେସବୁ ଝାଡ଼ଜଙ୍ଗଲ କଥା, ବାଘଭାଲୁଙ୍କ କଥା ଓ ନାନା ବିପଦ ଆପଦ କଥା । ଦାଦା ଲମ୍ବେଇ ଲମ୍ବେଇ ଘଣ୍ଟା ଘଣ୍ଟା ଯାକେ କାହାଣୀ କହନ୍ତି, ନିଦ ମାଡ଼ିଲେ ବି ଶୁଣୋଉଥିବେ, ଖାଲି ମଝିରେ ମଝିରେ ପଦେ "ହୁଁ—" ଦରକାର ।

ମନେ ପଡୁଛି । "ବୁଝିଲ ନା ? ସେଉଠୁ, ରାତି ଅଧ ହୋଇଥିବ, ନିଦ ଭାଙ୍ଗିଗଲା । ନାକରେ କେମିତି ଗୋଟାଏ ଗନ୍ଧ । ଏଁ ! ପାକେଲା ଆମ୍ବ ପରା ଖଟତଳେ ଥୁଆ ହୋଇଚି, ୟେ କି ଗନ୍ଧ ? ମୋ ପାଦରେ କ'ଣ ଗୋଟାଏ ସଲସଲ, କଅଁଳ ରୁମିଆ ରୁମିଆ । ଅନ୍ଧାରରେ କିଛି ଦିଶୁ ନାହିଁ । ଆସ୍ତେ ପାଦ ଓଟାରି ନେଇ ଆଣ୍ଠୁକୁ ପେଟରେ ମାଡ଼ିଦେଲି । ନିଃଶ୍ୱାସ ବନ୍ଦ । ଝାଳ ଫିଟିଗଲା । ସେଇଠୁ ଘରଯାକ "ସଣର ସଣର ଖସର ଖସର" ଶବ୍ଦ । ସେଉଠୁ ଗୋଟାଏ ବିଚିକିଚିଆ ବୋବାଳି, ଦି'ଟା ଜନ୍ତୁ କ'ଣ ଖେଖେ-ଖେଖେ ହୋଇ ତୁନି ପଡ଼ିଲେ । ବୁଝିପାରିଲି, ମୋ ଖଟତଳେ ଭାଲୁ, ପାକେଲା ଆମ୍ବଗୁଡ଼ାକ ଖାଇ ଯାଉଛନ୍ତି । ଏକା ଧ୍ୟାନରେ ଭଗବାନଙ୍କୁ ଡାକୁଥାଏଁ । ଆଖି

ବୁଜିଲେ କ'ଣ ଦିଶୁଚି କହିଲ ? ଖାଲି ବଡ଼ ବଡ଼ ଭାଲୁ । ଗୋଟାଏ ଯଦି ଖଟ ଉପରେ ଅଣ୍ଟାଳି ପକାଇବ, ମୁଁ ମଲି । ଏତିକିବେଳେ କବାଟଟାକୁ ପେଲିଦେଇ ବଡ଼ ବଡ଼ ନିଆଁ ଅଟାମାନ ଧରି ଦେଖେଇଲେ ଛାଟିଆମାନେ, ବାଡ଼ିରେ ବାଡ଼ି ପିଟି ପାଟିକଲେ । ସେମାନେ କେମିତି ଜାଣି ପାରିଥିଲେ । ବଣୁଆ ଲୋକ—ନିର୍ଭୟ । ଭାଲୁ ପଳେଇଲେ ।''

ବଣଜଙ୍ଗଲ ନ ଦେଖୁଣୁ ମୁଁ ବଣଜଙ୍ଗଲ କଥା ବହୁତ ଶୁଣିଛି ବାପା ଓ ଦାଦିମାନଙ୍କଠୁଁ । ମୁଁ ଶୁଣିଛି, ଦୁବଦାଦି ଅନୁଗୁଳ—ଫୁଲବାଣୀ ସଡ଼କ କରି ଫୁଲବାଣୀରେ ଥାଆନ୍ତି ତାଙ୍କ ବାପା ଗଲେ । ଯହୁଁ ଯହୁଁ ମାଳ ଭିତରେ ପଶୁଥାନ୍ତି ତହୁଁ ତହୁଁ ହତାଶ ହେଉଥାନ୍ତି ଏଇଆ କହି—''ଆହା, ମୋ ପୁଅ ଏଇ ରାଇଜରେ ବୁଲୁଛି କାମ କରୁଛି !'' ଗଛ ଉପରେ ଗୁଣ୍ଡା ବରଫ ପଡ଼ିଥିବାର ବି ସେ ଦେଖିଥିଲେ, ଥାଳିକ ପାଣି ବରଫ ପାଲଟିବାର ଦେଖିଥିଲେ, ମୁଁ ଦେଖିଲି ଷାଠିଏ ବର୍ଷ ପରେ ଫୁଲବାଣୀର ବେଲ୍‌ଘର୍ ମାଳରେ । ସେଠୁ ହାହାକାର କରି କରି ଗାଁକୁ ଫେରିଲେ—''ସତେ ମୋ ପୁଅ ଆଉ ଜୀବନ ଘେନି ଗାଁକୁ ଲେଉଟିବ ?'' ଗାଁରେ ପହଞ୍ଚି ମରିଗଲେ ।

ଜଗୁଦାଦି ଢେଙ୍କାନାଳରେ ଡ୍ରାଫଟ୍‌ସମ୍ୟାନ୍ ଥିଲେ । ସଉକ ଥିଲା ସକାଳେ ଗାଧୋଇ ସାରି ମିଶ୍ରି ସର୍ବତ୍ ପିଇବା, ଦି'ପହରେ କେବେ କେବେ ପଶା ଖେଳିବାକୁ ଯିବା । କଲେଜ୍‌ରେ ପଢ଼ିବା ସମୟରେ ମୁଁ ସେଠିକୁ ଯାଉଥିଲି ।

ଖୁଡ଼ୀଙ୍କ ନାଁ ରତ୍ନମଣି । ସେ ବେଣ୍ଟକାର ପାଟଣାର, ତାଙ୍କର ଗୋଟିଏ ଭାଇ ଚୈତନ୍ୟ ସମ୍ପ୍ରଦାୟର ପ୍ରସିଦ୍ଧ ନନ୍ଦ ବାବା, ରାମଦାସ ବାବାଜିଙ୍କ ଆଦ୍ୟ ଚେଲା । ଶୁଣିଛି, ଖୁଡ଼ୀ ନିମ୍ନ ଓ ଉଚ୍ଚ ପ୍ରାଥମିକରେ ବୃତ୍ତି ପାଇଥିଲେ, ସେ ସେକାଳର 'ପାଠପଢ଼ା ବୋହୂ' । ଖୁଡ଼ୀ ଖୁବ୍ ମେଳାପୀ, ହସହସ, ପରିଶ୍ରମୀ ଓ ସୌଜନ୍ୟମୟୀ । ସେ ଓ ବୋଉ ପରସ୍ପରକୁ ଭାରି ପ୍ରଶଂସା କରନ୍ତି । ବୋଉକୁ ତାଙ୍କର ଖୁବ୍ ମାନ୍ୟ ଓ ଖାତିରି । ତା ହାତରୁ କାମ ଛଡ଼େଇ ନେଇ କରନ୍ତି, ତା ଗୋଡ଼ ଘଷି ଦିଅନ୍ତି । କିନ୍ତୁ ଦେଖାହେଲେ ସିନା ! ସେ ତ ଥାଆନ୍ତି ଢେଙ୍କାନାଳରେ ।

ବୋଉ କହେ—''ସୋନପୁର ଗଲି, କୋଠଘର ଥିଲା, ଶହେ ପ୍ରାଣୀ ଏକ ହାଣ୍ଡି । ଏଡ଼େ ଘର ଏକ ମନ । ବର୍ଷ ବର୍ଷ ଗଲା । ସାଆନ୍ତେମାନେ ଚାଲିଗଲେ । ଯେ ଯାହାର ନିଆରା ହେଲେ । ଆମେ ସୋନପୁରରୁ ଆସିଲୁଁ, ଯେ ଚାକିରି ଛାଡ଼ିଦେଇ ଆସିଥାନ୍ତି । ଯେଉଁ ଘର ଯେ ଦଖଲ କରି ରହିଥାନ୍ତି ।

ଆମ ଘର କେଉଁଟା ? ଆମେ କେଉଁଠି ରହିବୁ ? ଦୁଆର ମଝିରେ ମୁଁ ଠିଆ ହୋଇଥାଏଁ, କେହି ଡାକିଲେ ନାହିଁ । ସେଇଠୁ ଖେତିବୋଉ (ଖୁଡ଼ୀ) ଆସିଲା, ଗୋଡ଼ତଳେ ପଡ଼ି ଉଠି ମୋ ହାତକୁ ଧରି ଓଟାରି ନେଇ କହିଲା, ''ଅପା ଦୁଆରଟାରେ କାହିଁକି ଠିଆ ହେଇଚ ଘରକୁ ଆସୁନା ?'' ପଚାରିଲି–'ଘର କାହିଁ ?' କହିଲା ସମସ୍ତେ ସିନା ଭଲ ଭଲତକ ନେଲେ, ବନ୍ଧକୂଳର କୁଦିଆ ଦି'ଖଣ୍ଡ ତ ମୁଁ ଢେଙ୍କାନାଳରୁ ଆସିଲାବେଳେ ଖାଲି ଥିଲା, ସେଇଠି ରହିଚି । ମୁଁ ଯେଉଁଠି ଥିବି ସେ ତ ତମର ଘର, ତେମେ ଯେଉଁଠି ଥିବ ସେ ତ ମୋର ଘର, ଆଉ କେଉଁଠି ଆସ–'

ବୁଢ଼ୀଦିନେ ବି ଅନେକ ଥର ମୋ ବୋଉଠୁଁ ଏକଥା ମୁଁ ଶୁଣିଛି, । ଆୟ ଅଳ୍ପ ହେଲେ ବି ତାହାରି ଭିତରେ କଣ୍ଟିକାଣ୍ଟି ପରିବାରଟିକୁ ସୁରୁଖୁରୁରେ ଚଳେଇବା, ଏଭଳି ଚଳେଇବା ଯେ ସମସ୍ତେ ସନ୍ତୁଷ୍ଟ ହେବେ, ଅତି ଆବଶ୍ୟକ ଜିନିଷ ଅଭାବ ପଡ଼ିବ ନାହିଁ କି ଅତି ଆବଶ୍ୟକ ନ ଥିବା ଜିନିଷ କଟିଗଲେ ବି କେହି ଦୁଃଖିତ ହେବେ ନାହିଁ, ଦାଣ୍ଡ ଛଗାଯିବ, କର୍ତ୍ତବ୍ୟ କରାଯିବ, ଘର ବି ଠିକ୍ ଚାଲିବ, ଘର ଚଳେଇବାର ସେ କିମିଆଁ ଜାଣିଥିଲେ ଖୁଡ଼ୀ, ତାଙ୍କ ଚେହେରା ଯେମିତି ସୁନ୍ଦର ତାଙ୍କ ବୁଦ୍ଧି ସେମିତି ପ୍ରଖର । ଜଗୁଦାଦି ପ୍ରତ୍ୟେକ ବିଷୟରେ ନିଷ୍ପତ୍ତି କରିବା ଭାର ତାଙ୍କୁ ଦିଅନ୍ତି, ତାଙ୍କୁ ନ ପଚାରି କିଛି କରନ୍ତି ନାହିଁ ।

ତାଙ୍କର ସାତ ଝିଅ, ଯୋଡ଼ିଏ ମରିଥିଲେ, ମୋ ଜନ୍ମ ବେଳକୁ ବିଭା ହୋଇଥାଏ ଖେତ ଅପା । ଆଉ ପାଞ୍ଚ ଭଉଣୀ । ତାଙ୍କ ବାପା ବୋଉଙ୍କ ପ୍ରଭାବ ପଡ଼ି ସେମାନେ ସମସ୍ତେ ଶିକ୍ଷିତା, ଓଡ଼ିଆ ଓ ବଙ୍ଗଳାରେ ଛାପା ହୋଇଥିବା ବହୁତ ଗଳ୍ପ ଉପନ୍ୟାସ କାବ୍ୟ କବିତା ସେମାନେ ପଢ଼ିଥିଲେ, ମନେ ରଖିଥିଲେ, ଆଲୋଚନା କରୁଥିଲେ । ତାଙ୍କର ଏକମାତ୍ର ଅଳି ''ଆଉ ବହି ଆଣି ଦିଅ ।'' ସେମାନେ ଖୁବ୍ ଭାଇରଙ୍କୁଣୀ, ମତେ ପାଞ୍ଚବର୍ଷ ହେବାଯାକେ ସେମାନଙ୍କ ତଳେ ଆଉ ଭାଇ ଜନ୍ମ ହୋଇ ନ ଥିଲା, ସେତେବେଳେ ସେମାନେ ଗାଁକୁ ଆସିଲେ ମତେ ଆଉ କେହି ତଳେ ବିଛଣାରେ ଶୁଆଇ ଦିଅନ୍ତି ନାହିଁ । ଭଉଣୀମାନଙ୍କ ଚୁଟି ଓଟାରିବାକୁ ଭଲ ଲାଗୁଥିଲା, ଗେଲର ଆତିଶଯ୍ୟ ଦେଖିଲେ ଆମ୍ପୁଡ଼ିବାକୁ ଓ ମାଡ଼ ମାରିବାକୁ ମଧ୍ୟ । ସେମାନେ ଆହୁରି ଖୁସି ହୁଅନ୍ତି । ବୋଉ କହେ, ମଇନାପା କେଡ଼େ ଖୁସି ହୋଇ କହେ, ''ବଡ଼ ମା', ମୋ ଭାଇ ମତେ ମାଡ଼ ମାରୁଚି ।'' ପିଲାଦିନର ସ୍ମୃତି ମନେପଡ଼େ, ସଫା ସୁତୁରା

ହସ ହସ ସ୍ନେହୀ, ସବୁବେଳେ କାମରେ ଲାଗିଥିବା ସେ ଭଉଣୀ ଚାରୋଟି ମୋର, ଅଳ୍ପଦିନ ରହନ୍ତି, ପୁଣି ଚାଲିଯାଆନ୍ତି ଢେଙ୍କାନାଳ । ତା'ପରେ ଜନ୍ମ ହେଲା ବାବାଜୀ (ଆର୍ତ୍ତବନ୍ଧୁ), ବହୁତ ଗେହ୍ଲାରେ ବଢ଼ିଲା ସେ । କିନ୍ତୁ ପଛେ ସେ ପାଟନା ବିଶ୍ୱବିଦ୍ୟାଳୟରେ ଇଞ୍ଜିନିୟରିଂର ଶେଷ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କଲା, ଆମେରିକା ଗଲା, ସେଠିବି ଏମ୍.ଏସ୍.ରେ କୃତିତ୍ୱ ଅରଜିଲା, ଓଡ଼ିଶାରେ ଜାତୀୟ ରାଜପଥ ନିର୍ମାଣ ଓ ସଂରକ୍ଷଣ ବିଭାଗର ମୁଖ୍ୟ ଇଞ୍ଜିନିୟର ହେଲା । ପିଲାଦିନେ ସେ ମୋଟା, ମାନ୍ଦା, ଅଳିଅଳ, ସୁକୁମାରିଆ ଶାନ୍ତ ପିଲାଟିଏ ।

ଗାଁରେ ଥିଲାବେଳେ ଗାଁ ଛାଡ଼ି ପଦାକୁ ଯାଇଥିଲି ଅତି ଅଳ୍ପ, ଥରେ ଅଧେ କଟକ ଦଶରା ଦେଖି, ସେ ଖୁବ୍ ଆଶ୍ଚର୍ଯ୍ୟ ଲାଗିଥିଲା । ଏତେ ମୂର୍ତ୍ତି ! ଏତେ ବଜାର ! ବେଲୁନ୍ କିଣିବା ଦିନ ସେ ନୁହେଁ, ଆମର ସଉକ 'ତାରା', ସାନ ସାନ ମାଟିଖୋଳ ଉପରେ ପାତଳ ଛାଲ ଛୁଆଣି, ବାଜେ, ଫାଟିଯାଏ । ଆଉ କିଛି କଣ୍ଢେଇ, 'ଚୀନାମାଟି'ର ହୋଇଥିଲେ ଖୁବ୍ ଆନନ୍ଦ, ସେମିତି ବିଲେଇ, କୁକୁର, ପୁଅଝିଅ କେଇଟା ମୋର ଥିଲେ । ସେତେବେଳେ କି ଦି' ତିନି ବର୍ଷ ପରେ ମୁଁ ଥରେ ପରମଂସ ଜାଗର ଦେଖି ଯାଇଥିଲି, ବହୁତ ନେହୁଙ୍କ ବିକ୍ରି ହେଉଥିଲେ ମନେଅଛି, ଆସିଲାବେଳେ ବର୍ଷାରେ ଜୁଡୁବୁଡୁ ହେଲୁଁ । ଆଉ ମନେପଡ଼େ ଅପାଘରକୁ ମଇଧରପଡ଼ା ଯିବା, ଅନେକଥର ଯାଇଛି ।

କିନ୍ତୁ ମତେ ଛ' ବର୍ଷ ପୂରିଥାଏ, ହଠାତ୍ ଦିନେ ବଡ଼ଭାଇ ନେଇଗଲେ ପାଟ୍‌ନା, ଜୀବନରେ ପ୍ରଥମଥର ରେଲ ଚଢ଼ିଲି, ଗଲି ବିହାର ଦେଶ । ଭାଇ ହେରିକା ରହୁଥିଲେ ଗର୍ଦ୍ଦନିବାଗ୍‌ରେ, ଗାଁରେ ତା ନାଁ 'ବାଙ୍କିପୁର ପାଟଣା' ।

ବାପା ବୋଉ ଘରେ ରହିଲେ, ମୁଁ ଗଲି ବିଦେଶ, ତିନି ଦିନର ରେଲ୍ ରାସ୍ତା, ବାଟରେ ରେଲ୍ ବଦଳି, ନୂଆ ଭାଷା । ଖଞ୍ଜାଯାକ ଆଶ୍ଚର୍ଯ୍ୟ ହୋଇ ରୁଣ୍ଡ ହେଲେ । ବୋଉ ଲୁହ ପୋଛୁଥାଏ । ଏ ନୂଆ ଯାତ୍ରାର ଚମକରେ ମତେ ଖୁସି ଲାଗୁଥାଏ । ଯାହା ଦେଖୁଛି ସବୁ ନୂଆ, ପ୍ରତ୍ୟେକ ଜିନିଷ ଜାଣିବାକୁ ଇଚ୍ଛା, ମନରେ ଅଜସ୍ର ପ୍ରଶ୍ନ, ତୁଣ୍ଡରେ ବି କିଛି କିଛି । ଭାଇ ମୋ ମନକୁ କୁଲୋଉଥାନ୍ତି । କହୁଥାନ୍ତି, ପାଟ୍‌ନାରେ ପହଞ୍ଚିଲେ ମତେ ସେ ଗୋଟିଏ ସୁନ୍ଦର ମେଣ୍ଢାଛୁଆ ଦେବେ । ତାଙ୍କୁ ଚାହିଁଦେଲେ ମୋର ଭୟ ନ ଥାଏ, ଦକା ନ ଥାଏ ।

ସେ ବିହାର-ଓଡ଼ିଶା ସେକ୍ରେଟେରିଏଟ୍‌ରେ ଆସିଷ୍ଟାଣ୍ଟ ଓ ଡି.ଏଲ୍.ଆର୍.ଙ୍କ ଷ୍ଟେନୋ । ତାଙ୍କୁ ମିଳିଥାଏ 'ସି' ଟାଇପ୍ ବସାଟିଏ । ଚାରିକଡ଼େ ତାରଦିଆ ହତା ।

ମୋ ଆଖିରେ ମୋ ଭାଇ ସମସ୍ତିଙ୍କଠୁଁ ଅଧିକ, ଆଉ କେହି ଅଛି ସେମିତି ?

ପ୍ରକୃତରେ ତାଙ୍କର ଚେହେରା ଭଲ, ଦେହରେ ବହୁତ ବଳ । ଖାଲି ସେତେବେଳେ ନୁହେଁ, ବହୁତ ବର୍ଷ ପରେ ବି ଦେଖିଛି, ତାଙ୍କର ଚୌରାଳିଶି ବର୍ଷ ବୟସରେ, ସେ ଦି'ଓଳି ବହୁତ ଓଜନ ମୁଦ୍‌ଗର ବୁଲାନ୍ତି, ଦୁଇ ହାତରେ ଯୋଡ଼ାଏ, ସତୁରି ବର୍ଷ ପରେ ତାଙ୍କ ଦେହ ଝଡ଼ିଗଲା, ସେପର୍ଯ୍ୟନ୍ତ ଆଖିଦୁରୁଶିଆ ହୋଇଥିଲା । ସେ ମୋଠୁଁ ବାଇଶି ବର୍ଷ ବଡ଼, ବାପା ବୋଉଙ୍କର ପ୍ରଥମ ସନ୍ତାନ । ମାଟ୍ରିକ୍ୟୁଲେସନ୍‌ରେ ଭଲ କରିଥିଲେ, ଏଫ୍.ଏ.ରେ ଭଲ ଛାତ୍ର ଥିଲେ, ସେ ଏତେ ସଂସ୍କୃତ ଓ ଇଂରେଜି ମନେ ରଖିଥିଲେ ଯେ ମୁଁ ପଢ଼ିଲାବେଳେ ବି ତୁଣ୍ଡେ ତୁଣ୍ଡେ ଗାଇ ଯାଆନ୍ତି, ବହି ପ୍ରତି ଶ୍ରଦ୍ଧା ବହୁତ, ଯାହା ପାଆନ୍ତି ପଢ଼ନ୍ତି ଓ ଘରେ ବହୁତ ବହି ରଖିଥିଲେ । ଏଫ୍.ଏ.ରେ ତାଙ୍କର କେତେଜଣ ବନ୍ଧୁ କର୍ଣ୍ଣପିଶାଚ ସାଧକକୁ ଧରି ଲଜିକ୍‌ର କ'ଣ ସବୁ ପରୀକ୍ଷା ପ୍ରଶ୍ନ ଜାଣିଲେ ବୋଲି ଭାବିଲେ । ଭାଇଙ୍କୁ କହିଦେଲେ । ଲଜିକ୍ ଦିନ ସେମାନେ ସମସ୍ତେ ସେହି ପ୍ରଶ୍ନର ଉତ୍ତର ଘୋଷି ପ୍ରସ୍ତୁତ ହୋଇଗଲେ, ପ୍ରଶ୍ନ କାଗଜ ପାଇସାରି ଦେଖିଲେ ଯେ ସେଥିରୁ ଗୋଟିଏ ବି ପଡ଼ିନାହିଁ । ଭାଇ ଏଭଳି ହତୋତ୍ସାହ ହୋଇଗଲେ ଯେ ଯାହା ଜାଣିଥିଲେ ତା ବି ଲେଖିବାକୁ ଭୁଲିଗଲେ । ଫାଷ୍ଟ ଡିଭିଜନ ଆଶାକରି, ଟେଷ୍ଟରେ ଖୁବ୍ ଭଲ କରି ସେ ଏଫ୍.ଏ. ଫେଲ୍ ହେଲେ । ବାପା ବିରକ୍ତ ହେଲେ, ଆଉ ପଢ଼ିବାକୁ ନିରସ୍ତ କଲେ, ସେତେବେଳେ ସପ୍ଳିମେଣ୍ଟାରୀ ନ ଥିଲା । ତା'ପରେ ଭାଇ ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ହେଲେ, ସେଠୁ ଯାଇ ସମ୍ବଲପୁର ପଲିଟିକେଲ୍ ଏଜେଣ୍ଟ ଅଫିସ୍‌ରେ କିରାନି ହେଲେ, ସେଠୁ ଯାଇ ପାଟ୍‌ନା ସେକ୍ରେଟେରିଏଟ୍‌ରେ ରହିଲେ । ସେତେବେଳର କିରାନି, ପଦୋନ୍ନତି ସୁନିଶ୍ଚିତ ଥିଲା, କିନ୍ତୁ ବଳକା ଦରମା ପାଇଁ ସେ ସର୍ଟହ୍ୟାଣ୍ଡ ଶିଖି ଷ୍ଟେନୋ ହେଲେ, ସେଇଥିରେ ପଡ଼ି ରହିବାକୁ ପଡ଼ିଲା, କାରଣ ତାଙ୍କ ଉପରିସ୍ଥମାନେ, ଯେ ପଛେ କେହି କେହି ଲାଟ୍ ହେଲେ, ତାଙ୍କୁ ବହୁତ ଭଲପାଇ ଅନ୍ୟ କୁଆଡ଼େ ଛାଡ଼ିଲେ ନାହିଁ । ୧୯୩୪ରେ ସେ କଟକ କମିଶନରଙ୍କ ପି.ଏ. ହୋଇ ଆସିଲେ, ରେକର୍ଡ଼କିପର

ହେଲେ, ପେନ୍‌ସନ୍ ନେଲେ ।

ତାଙ୍କ ଜୀବନରେ ପଦେ ପଦେ ସମୃଦ୍ଧିର ପ୍ରବଣତା ଆସି ଆଶା ଦେଖାଇ ଭାଙ୍ଗିଯାଇଛି, କିନ୍ତୁ ତାଙ୍କର ଅପରିସୀମ ଧୈର୍ଯ୍ୟ ମନର ପ୍ରଶାନ୍ତି କେବେ ଭାଙ୍ଗେ ନାହିଁ । ସେ ଆପଣା ଉପରେ ନିର୍ଭର ରଖି ନିଜ କାମ ନିଜ ହାତରେ କରି ମୁଣ୍ଡ ଉଞ୍ଚା ରଖି ଦିନ କଟାଇ ଆସିଛନ୍ତି ।

ଅନେକ ଦିଗରେ ତାଙ୍କର ଝୁଙ୍କ, ଆରମ୍ଭ କରନ୍ତି, ବହୁତ ସମୟ ଦିଅନ୍ତି ତା'ପରେ ତା' ଅଟକିଯାଏ । ଝୁଙ୍କ ଥିଲା ଇତିହାସ ଗବେଷଣା କାର୍ଯ୍ୟ, ବହୁତ ଚିପାଚିପି କଲେ, କୁଆଡ଼େ ସେ ଗଲା । ଝୁଙ୍କ ଥିଲା ଓଡ଼ିଆରେ ସର୍ଟହ୍ୟାଣ୍ଡ ତିଆରି କରିବା, ୧୯୩୪-୩୫ରୁ ସାରିଲେଣି । ନିଜେ ନିଜ ପଦ୍ଧତି ଅଭ୍ୟାସ କରି ତରତର କରି ଆମମାନଙ୍କଠୁଁ ଡିକ୍‌ଟେସନ୍ ନେଇପାରିଲେ, ତଥାପି ଇଚ୍ଛା ହେଲା ଆହୁରି ମାଠିବେ । ତା'ପରେ ଦେଶକୁ ଦେବେ, ସେ ସେଇଠି ରହିଲା । ଆମ ଭାଇମାନଙ୍କ ଭିତରେ ଉପନ୍ୟାସ ଲେଖା ଆରମ୍ଭ କରିଥିଲେ ଆଗ ସେ, ମୋ ପିଲାଦିନୁଁ ଦେଖିଛି, ତାଙ୍କର ଯୋଡ଼ିଏ ତିନୋଟି ଉପନ୍ୟାସ ଆରମ୍ଭ ହୋଇ ମଝିରେ ଅଟକି ରହିଥିଲେ, ସେ ଡୋରି ଆଉ ପିଟିଲା ନାହିଁ । ଲୁଇ କୁନେଙ୍କ କଞ୍ଚାଖିଆ ନେଚରୋପ୍ୟାଥି ବହୁତ ଦିନ ଅଭ୍ୟାସ କରି ଛାଡ଼ିଦେଲେ, ନାନା ବିଷୟରେ ବହି ଲେଖିବାକୁ ମାଲ୍‌ମସଲା ସଂଗ୍ରହ କରି ରଖି, ତା'ପରେ ଆଉ ଲେଖିଲେ ନାହିଁ । ଶୁଣିଛି, ଭାଇ ପାଟ୍‌ନାରେ ଥିଲାବେଳେ ତାଙ୍କର ଜଣେ ବନ୍ଧୁ ତାଙ୍କର ଗୋଟିଏ ସଂପର୍କୀୟା ଭଉଣୀଙ୍କର ଚିଠିଟିଏ ଦେଖାଇଥିଲେ, ହସ୍ତାକ୍ଷରର ସୌନ୍ଦର୍ଯ୍ୟ ଦେଖାଇବାକୁ । ଭାଇ ସେ ଅକ୍ଷର ଦେଖି ମୁଗ୍‌ଧ ହେଲେ । ସେ ବନ୍ଧୁ ପ୍ରସ୍ତାବ ପକାଇ ବାପାଙ୍କ ପାଖକୁ ଚିଠି ଦେଲେ । ବାପା ରାଜି ହେଲେ । ବଡ଼ ଭାଉଜବୋଉ ଆସିଲେ । ଶ୍ରୀମତୀ ସୁନ୍ଦରମଣି ଦେଈ ।

ପ୍ରକୃତରେ, ତାଙ୍କ ହସ୍ତାକ୍ଷର ଅତି ସାନ ସାନ ଓ ଅତି ସୁନ୍ଦର, ବନାନ୍ ସବୁବେଳେ ନିର୍ଭୁଲ୍ । ଚେହେରା ବି ଖୁବ୍ ସୁନ୍ଦର । ଝଙ୍କଡ଼ ପାଖ କଟାଙ୍ଗ ତାଙ୍କ ଘର, ଗୋଟିଏ ପୁରୁଣା ଜମିଦାର ପରିବାର, ବାଙ୍କାବଜାରର ରାଜକିଶୋର ଦାସ ତାଙ୍କ ପିଉସୀ ପୁଅ ଭାଇ ଅର୍ଥାତ୍ ନନ୍ଦକିଶୋର ଦାସ ତାଙ୍କ ପିଇସା । ଯୋଡ଼ିଏ ଭଉଣୀ ସେମାନେ, ଭାଇଟିଏ ଥିଲେ, ସେ ନିଃସନ୍ତାନ ହୋଇ ମରିଗଲେ । କଟାଙ୍ଗ ପୁଅ ହୋଇ ଆସିଲେ ରାଜକିଶୋର ଦାସଙ୍କ ପୁତୁରା ଦେବ ବାବୁ ।

ସେହି ଭାଇ ଭାଉଜବୋଉ, ପ୍ରାୟ ଦେଢ଼ବର୍ଷ ମୁଁ ଥିଲି ତାଙ୍କ କତିରେ ପାଟ୍‌ନାରେ, ସାତ ବର୍ଷରୁ ନଅ ବର୍ଷ ହେଲାଯାକେ, ପଛେ ଆହୁରି ସାଢ଼େ ତିନିବର୍ଷ, ମ୍ୟାଟ୍ରିକୁଲେସନ ସରିବାଯାକେ ।

ପାଟ୍‌ନା ଯାତ୍ରାବେଳର ବାଟ ମନେପଡ଼େ, —ରେଲ ଚାଲିଯାଉଛି, ଆମ ଗାଁ ଆଖଡ଼ାଘରେ ଏକା ତାଳରେ ଏକା ବୋଲ୍‌ରେ ବାଜିଲାଗିଛି ମୃଦଙ୍ଗ, ସବୁ ଦୌଡ଼ି ଦୌଡ଼ି ପଛକୁ ପଳାଉଛି, ଦୂରଦୂରାନ୍ତରେ ସବୁ ଦୌଡ଼ୁଛି ଆଗକୁ, ଅଛିଣ୍ଡା ଖେଳ ସେ ।

ଜୀବନଯାକ ସେହି ଅନୁଭୂତି ରହିଗଲା । ସବୁ ଚାଲିଯାଉଛି, ଯେତେ ଆଖିଝାଲ୍‌ସା ପଟୁଆର ତାର ତାତ୍ପର୍ଯ୍ୟ ଖାଲି ସେତିକି ।

'ଆମଘର' ଛଡ଼ା 'ପାଟ୍‌ନାର ସେତେବେଳର ସ୍ମୃତିରୁ ମନେପଡ଼ନ୍ତି କେତେଗୁଡ଼ିଏ ମୁହଁ, କେତେଗୁଡ଼ିଏ କାହାଣୀ । ସେ ଘର ଆଉ ଚିହ୍ନି ପାଇବି ନାହିଁ । ଚିଡ଼୍‌କୋରା ହାଟ ପାଖେ ସତେଇଶି ନମ୍ବର ସଡ଼କ ଉପରେ ସେ ବସାଟି । ପାଖରେ ବଡ଼ ଆମ୍ବ ବଗିଚା, ଠିକ୍ ପିଠିଆଡ଼େ ଶାମବାବୁଙ୍କ ଘର ।

ଗୋଲାପ, ପ୍ରସାରୁଣି ଆଉ ପୋଟଳ, ତିନୋଟି ନୂଆ ଗଛ ଦେଖିଲି 'ଆମ ଘରେ', ଆଗରୁ ଦେଖି ନ ଥିଲି । ଘରେ ହିଁ ମୁଁ ରହୁଥିଲି । ମନକୁମନ ନାନା ଖେଳ ।

ଥରେ କଇଁଚିଟିଏ ପାଇ ନିଜ ପ୍ରସାଧନରେ ମନ ଦେଲି । ଭାଉଜବୋଉ ନ ଥିଲେ । ମୋ ମନଖୁସିରେ ମୋ ମୁଣ୍ଡବାଳ ମୁଁ ମୋ ନିଜ ହାତରେ ଏଠି ସେଠି କାଟିବାକୁ ଲାଗିଲି । ନିଶ୍ଚୟ ନିଜ ପାରିବାର ପଣରେ ଗର୍ବ ଅନୁଭବ କରିଥିବି । ସାମ୍ନାରେ ମିଳିଲା କଜ୍ଜଳ, ନିଶ ପାଇଁ ଉପଯୁକ୍ତ, ଆଉ ସିନ୍ଦୂର ଓ ପୋମେଡ୍, ତା' ବ୍ୟବହାର ମୁଁ ଦେଖିଛି । ମୁଣ୍ଡରେ ବୋଳିବା ପାଇଁ ଭାଉଜବୋଉଙ୍କ ମୁଣ୍ଡତେଲ । ଏକୁଟିଆ ଥାଇ କ'ଣ କରିଥିବି ତା'ପରେ ? ଖଟତଳେ ଭାଉଜବୋଉ ଥୋଇଥିଲେ ହାଣ୍ଡି ହାଣ୍ଡି ଗୁଡ଼-ଆମ୍ବ ଆଚାର, ବିଲାତିଆଳୁ ଆଚାର, ସଜନା ଛୁଇଁ ଓ ଆମ୍ବ ଆଚାର । ସେଠିକି ମୁଁ ଆଗରୁ ବାଟ ଦେଖିଥିଲି । ତା'ପରେ ବିଶିରାମାୟଣରୁ ସାନ ଛାନ୍ଦଟିଏ ମୁଁ ଆବୃତ୍ତି କରିଥିବି । ଯେତିକି ମନେ ଥିଲା—"ଯୋଚିକୃଷ୍ଣ ଅଶ୍ୱମାନ ସେ—ରଥେ ଚଢ଼ି ଦଶାନନ, ଶ୍ରୀରାମ ରଥ ସମ୍ମୁଖେ ରଥ କରି ଶର ବିନ୍ଧେ ଘନ ଘନ ସେ—ଯୁଝିଲା ।" 'ଯୁଝିଲା' କହିଲାବେଳେ ମୁଁ ନିଶ୍ଚୟ ଖଟତଳେ ବସି ନ ଥିବି । ମୋ ନିଜର ବହୁତ ମୁଦ୍ରା ଥିଲା ଯାହା ଆମ ରାମନବମୀରେ ମୁଁ ଦେଖିନାହିଁ ।

ସେତିକିବେଳେ ବିପତ୍‌ପାତ, —ଧୂଳ କାହ୍ନୁ ଇସ୍କୁଲ୍‌ରୁ ଆଇଲେ, ଜଳଖିଆ କରି ଦେବାକୁ ଭାଉଜବୋଉ ପାଖଘରୁ ଆଇଲେ । ଦୁନିଆଁ ପଶି ଆସିଲା ।

ମତେ ଚାହିଁ କାଠ ପରି ଠିଆହୋଇ ରହିଲା ।

ସେମାନେ ଗାଳି ଦେଲେ ନାହିଁ, କିଛି କହିଲେ ନାହିଁ, ମୋ ମୁହଁକୁ ବଲ ବଲ କରି ଅନାଇଁ ରହିଲେ ।

ତା'ପରେ ହସିଲେ । ଓଃ ! ହସ ଏଡ଼େ ଭୟାନକ ହୋଇପାରେ ! କିଏ ମୋ ମୁହଁ ସାମ୍ନାରେ ଦେଖାଇ ଧରିଲା ଆରିସିଟାଏ ।

କୁହୁକ ଭାଙ୍ଗିଗଲା, ସେମାନେ ହସିଲେ, ମୁଁ କାନ୍ଦିଲି । ହସ ଦାଉରୁ ରକ୍ଷା କରିବାକୁ ମତେ କୁଣ୍ଢେଇ କାଖେଇ ମୋ ମୁହଁକୁ କାନିରେ ଘୋଡ଼ାଇ ପକାଇ ଟେକି ନେଇଗଲେ ଭାଉଜବୋଉ ।

ମତେ ଗୋଟାଏ ଉପାଧି ଦିଆଗଲା, ତା ଅର୍ଥ ମୁଁ ଏପର୍ଯ୍ୟନ୍ତ ବୁଝିନାହିଁ—''କୁପ୍‌ପାସ୍ୱାମୀ'', ସଂକ୍ଷେପରେ ''କୁପା'' ।

ସେଦିନୁଁ ଉପାଧି ଦେଖିଲେ ଡରମାଡ଼େ, ଚିଡ଼ିମାଡ଼େ ।

ଘରେ କେଉଁଦିନ ସଭା ବସିଲା, ସ୍ଥିର କରାଗଲା ଯେ ମତେ ପାଠ ପଢ଼ା ହେବ । ସେ ଦାୟିତ୍ୱ ନେଲେ କାହ୍ନୁ ଭାଇ । ସେହି ୧୯୨୦ରେ ସେ ମତେ ଇଂରେଜି ପଢ଼ାଇବାକୁ ଆରମ୍ଭ କଲେ, ମାନେ ଲେଖିଦିଅନ୍ତି, ସେଇଥିରୁ ଓଡ଼ିଆ ଶିଖା ହେବ । ମଝିରେ ମଝିରେ କିଛି ଅଙ୍କ । ମୋ ଆକାର ଖୁବ୍ ଖର୍ବ ଥିଲା । ସେ ସମସ୍ତିଙ୍କି ପ୍ରତିଶ୍ରୁତି ଦେଲେ ମତେ ମଣିଷ କରିବେ, ଏମିତି ପଢ଼େଇବେ ଯେ ମୁଁ ବିଖ୍ୟାତ ହେବି । ଭବିଷ୍ୟତରେ ନାନା ସ୍ୱପ୍ନ ଫାନ୍ଦି ମତେ କହିଥିଲେ ସେସବୁ ଓଷା ପାଳିବାର ଫଳ ।

ଏ—ବି—ସି—ତା'ପରେ ସିଏଟି କ୍ୟାଟ୍ ଆଦି । କଥା ହେଲା ମୁଁ ଓ ଭାଉଜବୋଉ ଏକାଠି ଇଂରେଜି ପଢ଼ିବୁ । ସେ ମତେ ସା' ଦେଇ ନିଜେ ଖସିଯାଇ ତାରା ଖେଳିଲେ, ମୁଁ ବନ୍ଧା ପଡ଼ିଲି । ଆସିଲା ଲଙ୍‌ମ୍ୟାନ୍‌ସ୍ ଗ୍ରୀନ୍ ଏଣ୍ଡ୍ କୋଙ୍କ ପ୍ରାଇମର୍ ଓ ବୁକ୍ ୱାନ୍ ଥାଇ ଗୋଟିଏ ବହି । ସେଇଠୁ ବୁକ୍ ଟୁ, ଦେଢ଼ ବର୍ଷରେ ବୁକ୍ ଟୁ ମଝି ଟପିଥିଲା ମୁଁ ପାଟ୍‌ନାରୁ ଆସିଲି । ଇଂରେଜି ଉଚ୍ଚାରଣ ବି କାହ୍ନୁଭାଇ ଓଡ଼ିଆରେ ଲେଖିଦିଅନ୍ତି ମୁଁ ଘୋଷେ, ବନାନ, ମାନେ, ଅନୁବାଦ ଲେଖା, ହସ୍ତାକ୍ଷର ତ ସହଜେ । ''ବଂସି ଖାଇଲେ ନଈବାଲି ସରେ'' ଆଦି ତ ଆଗରୁ ଲେଖିଥିଲି, ପୁଣି ଏଠି ସେସବୁ, ଆଉ

ଇଂରେଜିରେ: ''ମାଇଁ ନେମ୍ ଇଜ୍—'' ।

ଗୋରୁ ନଡ଼ା ଖାଇଲା ପରି ହଜମ କରି ଦେଉଥିଲି, ସ୍ମରଣଶକ୍ତି ଭଲ ଥିଲା, କିନ୍ତୁ ମନେ ବୋଧହୁଏ ରଖୁଥିଲି ମାଡ଼ ଭୟରେ, ଉତ୍ତର ଠିକ୍ ଠିକ୍ କହି ନ ପାରିଲେ କାହ୍ନୁଭାଇ ମାଡ଼ ଦେଉଥିଲେ । ଓଃ ! ଏବେ ବି ମନେପଡ଼େ ।

କାନ୍ଦିଲେ ବି ଘୋଷିବାକୁ ପଡ଼ିବ । ''ହେଁ ! ଫେର ! ଫେର୍ ଅନ୍ୟମନସ୍କ ହେଲୁ । ଫେର୍ ଅବାଧ୍ୟ ହେଲୁ ! ଦେଖିବୁ ? ଦେବି ?'' ମପାଚୁପା ପାଠ, ''ଆଜି ଏତିକି, ମୁଁ ଆଇଲାବେଙ୍କୁ ସରିଥିବ ।'' ମଝିରେ ମଝିରେ ଭାଉଜବୋଉଙ୍କ ଆଶ୍ରା ନେଲେ ପାଠର ପରିମାଣ ଟିକିଏ କମାଇ ଦିଆଯାଏ । ଯେଉଁଦିନ ସରିଥାଏ, ଭୁଲ୍ ହୁଏ ନାହିଁ, କାହ୍ନୁଭାଇ ଗେଲ ଆଦର କରନ୍ତି, ସମସ୍ତିଙ୍କୁ କହନ୍ତି । ମଝିରେ ମଝିରେ ଅନ୍ୟମାନଙ୍କ ଆଗରେ ମତେ ପଚାରନ୍ତି ଓ ମୋର ଉତ୍କର୍ଷତାକୁ ପ୍ରଶଂସା କରନ୍ତି । ମନ ଫୁଲିଉଠେ । କିନ୍ତୁ ପାଠ ସରେ ନାହିଁ । ପୁଣି, ପୁଣି ।

''ତୁ ବିଦ୍ୱାନ୍ ହେବୁ''—ଏଇଆ ଥିଲା ତାଙ୍କର ଆଶା ଓ ନିର୍ଦ୍ଦେଶ । ''ମୁଁ ବିଦ୍ୱାନ୍ ହେବି'', ଏଇଆ ଥିଲା ମୋର ପ୍ରତିଜ୍ଞା । ମୋର ପାଖେ ପାଖେ ରହି, ମତେ କାନେ କାନେ ବୁଝେଇ ସାଢୁଲେଇ ଫୁସୁଲେଇ ମୋ ମନ ଭିତରେ ସେ ଗୋଟାଏ ଇଚ୍ଛା ତିଆରି କରିଥିଲେ, ମୁଁ ସାଧାରଣଙ୍କ ପରି ହେବି ନାହିଁ । ତାଙ୍କ ଦୋମାହାଲା ଇସ୍କୁଲ୍ ମତେ ଦେଖାଇ ଆଣିଥିଲେ, ଥରେ ମୁଁ ଗୋଟିଏ ମାଷ୍ଟରଙ୍କ ଟୋପିଟି ମୁଣ୍ଡରେ ଦେଇ ଟେବୁଲ ଉପରେ ବସିଥିଲି । ମୋର ଇଚ୍ଛା ଥିଲା ମୁଁ ସେଠି ଦିନେ କିପରି ପଢ଼ିବି । କିନ୍ତୁ ବହୁତ ମୂଲ୍ୟ ଦେବାକୁ ପଡୁଥିଲା ସେଥିପାଇଁ, ପିଠିରେ, ଗାଲରେ । ଓଃ ! ମାଡ଼ !

ଭାଉଜବୋଉ ଅନେକ ସମୟରେ ପିଠିରେ ପଡ଼ନ୍ତି, ମତେ ଆସି ଛଡ଼େଇ ନେଇ ଯାଆନ୍ତି, ଦିଅର ଭାଉଜଙ୍କର ବଚସା ଲାଗେ, ମାଡ଼ ବନ୍ଦ ହୁଏ । କିନ୍ତୁ ପାଠ ବି ବନ୍ଦ ହୁଏ । କାହ୍ନୁଭାଇ କହନ୍ତି ''ଆଉ ମୁଁ ତାକୁ ପଢ଼େଇବି ନାହିଁ । ସେ ଚୁଲିକି ଯାଉ ।''

ଦିନାକେତେ ନିଧଡ଼କରେ ବୁଲେ । ପୁଣି ହୁକୁମ୍ ହୁଏ, କାହ୍ନୁଭାଇ ପାଠ ପଢ଼େଇବେ । ନ ହେଲେ ମୋ ଆଡୁ ମୁଁ ତାଙ୍କୁ ଅନୁନୟ କରେ, ସେ ମତେ ପଢ଼ାନ୍ତୁ । ନ ହେଲେ ମନ ଭିତରେ ନାନା ଆଶା ଚୂନା ହୋଇଯାଏ ।

"ଆଉ ଅବାଧ୍ୟ ହବୁ ନାହିଁ ତ ?"

"ନା ।"

"ମୋ ହୁକୁମ୍ ମାନିବୁ ?"

"ହଁ ।"

"ହଉ, ପଢ଼େଇବି, ଅବାଧ୍ୟ ହେଲେ ଆଉ ତତେ ଅନାଇବି ନାହିଁ ।"

ଗୁଣ୍ଡୁଚିମୂଷାମାନେ କେଡ଼େ ସୁନ୍ଦର ଖେଳନ୍ତି, ନାଚନ୍ତି । ଦୁଆରେ ପ୍ରଜାପତି ଉଡ଼ନ୍ତି । ଖରାରେ ଏପଟ ସେପଟ ହେଲେ କେତେ କଳ୍ପନା ଆସେ । ନୁଟୁକୁଟୁ ଖେଳ ପାଇଁ କେତେଠିଁ କେତେ ଉପକରଣ । ତଥାପି ପଢ଼ିବାକୁ ହେବ ।

ସେ ଦି' ଭାଇ ପଢ଼ି ବସନ୍ତି । ମୁଁ ମୋ ବହି ଖୋଲେ । ଧୂଳଭାଇ ପଢୁ ପଢୁ ଢୁଳାନ୍ତି । ଶୁଭେ ଘୁଙ୍ଗୁଡ଼ି । କାହ୍ନୁଭାଇ ପଢୁଥାନ୍ତି । ବଡ଼ଭାଇ ଚୁପ୍‌କରି ଆସି ଦି' ଭାଇଙ୍କି ପ୍ରଶ୍ନ ପଚାରନ୍ତି । ଧୂଳଭାଇ ଧଡ଼ପଡ଼ ହୋଇ ଉଠିପଡ଼ି ଆଖି ମଳି ମଳି ବଡ଼ପାଟିରେ କହନ୍ତି "ଆଜ୍ଞା ?" ଭାଇ ପ୍ରଶ୍ନ ପଚାରନ୍ତି । ଧୂଳଭାଇ ଗଡ଼ ଗଡ଼ କରି ଉତ୍ତର କହିଦିଅନ୍ତି । ଭାଇ ଗଲେ ପୁଣି ଶୋଇପଡ଼ନ୍ତି ।

ଦିନେ ରାତିରେ ମୁଁ ପାଇଖାନା ଗଲି । କ'ଣ ଦେଖିଲି କି ଭ୍ରମ କଲି ଯେ ମୁଁ ହାଉ ହାଉ ପାଟିକରି ଦୁଆରକୁ ଦଉଡ଼ି ଆସିଲି । ଧୂଳଭାଇ କାହ୍ନୁଭାଇ ଦିହେଁ ଉଠି ଦୁଆରକୁ ଦଉଡ଼ି ଆସି "ଚୋ—ଚୋ—" (ଚୋର) ବୋଲି ପାଟି କଲେ, ମୁଁ ବି ପାଟି କଲି । ଏକାଠି ଆମେ ତିନିହେଁ କାଳିସୀ ଲାଗିଲା ପରି "ଚୋ—ଚୋ" ବୋଲି ପାଟି କରୁଥାଉଁ । ଭାଇ ଗୋଟାଏ ପ୍ରକାଣ୍ଡ ତଡ଼ା ଧରି ପଦାକୁ ବାହାରିଲେ, ଆଗ ଆସି ଆମ ମୁଣ୍ଡରେ ହାତ ଥାପୁଡ଼େଇ ଦେଲେ ଯେ ଆମେ ତୁନିହେଲୁଁ । ତା'ପରେ କବାଟ ଖୋଲି ସେ ଚୋର ଖୋଜି ଗଲେ । ତେଣୁ ବିହାରି ପୁଲିସ ଜଣେ ଗଇଁସଇଁ ହୋଇ ଧାଇଁ ଆସି ରାଷ୍ଟ୍ରଭାଷାରେ ପଚାରିଲା "ଶଶୁରା ଚୋର୍ କିସ୍ ଓର୍ ଭାଗ୍‌ଗଲୌ ବାବୁଜି ?"

ସୁନ୍ଦର ଶୁଭେ ପାଟନାର ହିନ୍ଦୀ, ମିଥିଳାର ବୋଲି ମିଶିଛି । ସୀତାଙ୍କର ଜନ୍ମସ୍ଥାନ ସେଇଆଡ଼େ, ଜନକ୍‌ପୁର୍ । "ସେ ବି କ'ଣ ଏମିତି ଘାଗ୍ରା ପିନ୍ଧୁଥିଲେ ? ଏଇ ଭାଷା କହୁଥିଲେ ଦେବୀ" ମୁଁ ପଚାରେ । ଭୋର୍ ସକାଳୁ ଉଠିଲେ—ବାସି ମୁହଁରେ ପାଣି ଦିଆହୋଇ ନ ଥିବ ଆଗ ଶୁଭିବ ଯାଚି ଯାଚି ବୁଲୁଛି

ଜଣେ—"ଗୋଇଠା ଲବ ? ଗୋଇଠା ଲବ ?"

ଆରେ ଡାକ—ଡାକ—ଡାକ, ପଳେଇବ ନଇଲେ, "ହେଇ ଗୋଇଠା" କାହାର ଦରକାର ଏଡ଼େ ପାହାନ୍ତିଆରୁ ଗୋଇଠା ?

"ଗୋଇଠା ଲବ ?"

ଅର୍ଥାତ୍ "ଘଷିଫରା ନବ ? ଘଷି ?"

ସଞ୍ଜ ପଡ଼ିଲେ ଖରାଦିନେ ଆଉ ଗୋଟାଏ ଜିନିଷ ବିକ୍ରି ହୁଏ—

"ଖଟ୍‌ମଲ୍ ଖିଲାନା ?"

ସେ ଖେଳେଣା ନୁହେଁ । ଓଡ଼ିଆରେ ହୁଅନ୍ତା, "ଛାରପୋକ କାମୁଡ଼େଇ ହେବ ?"

ତେଣର ଲୋକେ କେହି କେହି ଛାରପୋକଙ୍କୁ ନିଜ ରକ୍ତ ଖୁଆଇ ଦାନ ଦ୍ୱାରା ପୁଣ୍ୟ ସଞ୍ଚୟ କରିବାକୁ ଚାହାନ୍ତି । ତେଣୁ ଯେ "ଛାରପୋକ ଖୁଆଇବ" ବୋଲି ଡାକେ ସେ ଉପାସୀ ଛାରପୋକ ଭର୍ତ୍ତି ହୋଇଥିବା ଦଉଡ଼ିଆ ଖଟଟିଏ ଧରି ବୁଲେ, ପଇସା ଦେଲେ ସେ ଖଟରେ କିଛି ସମୟ ସେ ଶୋଇବାକୁ ଦେବ, ଯେତେ ବେଶି ପଇସା ପାଇବ ସେତେ ବେଶି ବେଳ ଶୋଇବାକୁ ଅନୁମତି ଦେବ କାରଣ ଛାରପୋକ ସେତେ ବେଶୀ ରକ୍ତ ଶୋଷିନେବେ, ତେଣୁ ଦାତାର ପୁଣ୍ୟ ବଢ଼ିବ ।

ପାଟ୍‌ନାର ବହୁ ସ୍ମୃତି ସଞ୍ଚୟ କଲି, କିନ୍ତୁ ସେ ପଚ୍ଛଥରର । ଆରଥରକର ଦେଢ଼ ବର୍ଷର ବେଶି ସ୍ମୃତି ମନେ ନାହିଁ ।

ମନେପଡ଼େ ଧାଡ଼ି ଧାଡ଼ି କୋଠାଘର, ମଝିରେ ସଡ଼କ, ଦି' ଧାଉଡ଼ି ସନ୍ଧିରେ ସିମେଣ୍ଟରେ ଢାଲୁ ପଡ଼ିଛି ମଝିରେ ନଳାକୁ, ସେହି ସନ୍ଧିରେ ସ୍ଥାନେ ସ୍ଥାନେ ଗାଈ ରଖି ଗଉଡ଼ମାନେ, ବଡ଼ ବଡ଼ ଗାଈ ଆଉ ବାଲ୍‌ଟି ବାଲ୍‌ଟି ଦୁଧ । ଫଳ ଲଦିହୋଇ ପ୍ରକୃତରେ ଭାଙ୍ଗିପଡୁଥିବା ଝଙ୍କାଳୋଟଣି ଆମ୍ବଗଛଗୁଡ଼ିକ, ମାଲ୍‌ଦା ଆମ୍ବ, ଲେଙ୍ଗଡ଼ା ଆମ୍ବ । ଗର୍ଦ୍ଦନିବାଗ୍ ଭିତରେ ନୂଆ ରାଜଧାନୀ । ଓସାର 'ଖଗୋଲ୍ ରୋଡ୍' ଦି'ପଟେ ପ୍ରକାଣ୍ଡ ପ୍ରକାଣ୍ଡ ଗଛ, ଚିତ୍‌କୋ'ରା ହାଟ, ପରିବାପତ୍ର କୁଢ଼ କୁଢ଼, ବଡ଼ ବଡ଼ ପଥର ଖଣ୍ଡ ପରି ପାଟ୍‌ନାର ଲୁଣ, ଇଟାପରି ଗୁଡ଼, ମାଛି ପରି ବିରୁଡ଼ି ବେଢ଼ନ୍ତି ।

'ଟାଇପ୍' ଘର, ଏକାପରି, ଏକାପରି ହତା, ସ୍ଥାନେ ସ୍ଥାନେ ଏକା ଦୃଶ୍ୟ । ଗୋଟିଏ ଘଟନା ମନେ ପଡ଼ୁଛି । କାହ୍ନୁଭାଇ ଇସ୍କୁଲରୁ ଆସିଲେ ।

ଆଗରୁ କବାଟି ଖୋଲା ଥିଲା । ଘର ଭିତରେ ଟଉବର ହୋଇ ପଶିଲେ । ପିଣ୍ଡା ଉପରେ ତାର ବନ୍ଧା ହୋଇଛି, ତାରରୁ ଗାମୁଛାଟି ଝୁଲୁଛି, ବଦଳିଲେ । ବାଁପଟେ 'କଳ-ଘର'କୁ ଗଲେ, ଲୋଟା ଥୁଆ ହୋଇଛି, ଚୌବାଛାରୁ ପାଣି ଭରିଲେ, ବାହାରି ଆସି ଅଗଣା ବାରେ ସେମୁଣ୍ଡରେ ଡାହାଣ ପାଖେ ପାଇଖାନାକୁ ଗଲେ, ପାଇଖାନା ଆଗରେ, କଦଳୀଗଛଗୁଡ଼ିଏ, ଆମ୍ବଗଛଟିଏ, ପାଚିରି କାନ୍ଥରେ ପ୍ରସାରୁଣି ମାଡ଼ିଛି । ବାହାରିଲେ, କଳ ଘରକୁ ଗଲେ, ଧୋଇ ହେଲେ, ଆସିଲେ, ହାଫ୍‌ପ୍ୟାଣ୍ଟ୍ ବଦଳିଲେ । ଭୋକ କଲା । ଡାକିଲେ, ''ଭାଉଜୋଉ !''

ମଝିଘରୁ ଉତ୍ତର ଆସିଲା ''ଭୟା'' ।

''ଏଃ ! ଭାଉଜୋଉ ଆମର ଥଟ୍ଟା କରୁଚନ୍ତି ପରା, ହିନ୍ଦୀ କହୁଛନ୍ତି'' କାହ୍ନୁଭାଇ ଭାବିଲେ ପୁଣି ଡାକିଲେ, —''ଭାଉଜୋଉ !''

ଭାଉଜୋଉ ବାହାରିଲେ ।

ଦିହେଁ ଦିହିଁଙ୍କ ମୁହଁକୁ ଚାହିଁଲେ, ଭାଉଜୋଉ ହସିଲେ, ତା'ପରେ କାବା ହୋଇ ଅନାଇଁ ରହିଲେ । କାହ୍ନୁଭାଇ ଆଉ କିଛି ବୁଝିପାରିଲେ ନାହିଁ, ତା'ପରେ ସେ ବି କାବା ହୋଇ ରହିଲେ । ନାଟକକୁ ଆହୁରି କ୍ଷିପ୍ରତର କରିଦେଇ ସେତିକିବେଳେ ଦାଣ୍ଡକବାଟ ବାଟେ ପଶି ଆସିଲେ ଭାଇ, ତା'ପରେ ପାଖକୁ ଆସି ସେ' ବି କାବା ହୋଇ ଠିଆ ହେଲେ । ଠିକ୍ ତାଙ୍କ ପଛେ ପଛେ ପଶି ଆସିଲା ଆଉ ଗୋଟିଏ ପିଲା, ''ଭଉଜି'' ''ଭଉଜି'' ବୋଲି ପାଟି କରି କରି, କାହ୍ନୁଭାଇଙ୍କୁ ଦେଖି କହିଲା ''ଆରେ ଭାଇ କାନୁ, ତୁମ୍ କବ୍ ଆୟେ ?'' ସେ ତାଙ୍କ ସାଙ୍ଗ ମୁରଲୀ, ସେ ଭାଇ ସେ ଭାଉଜ ସେ ଘର ତା'ର ।

କାହ୍ନୁଭାଇ କହନ୍ତି, ସେ ଭାଉଜ ଏ ଭାଉଜଙ୍କ ଚେହେରାରେ ବହୁତ ସାଦୃଶ୍ୟ, ସେ ଭାଇ ଆମ ବଡ଼ ଭାଇଙ୍କ ପରି, ସେ ଘର ଅବିକଳ ଆମ ଘର ପରି । ଅନ୍ୟମନସ୍କ ଅବସ୍ଥାରେ ଥରେ ଭୁଲ୍ ହେଲାପରେ ଆଉ ସେ ଭୁଲ୍ ସୁଧାରିବାକୁ ସୁଯୋଗ ଘଟିନାହିଁ ।

ସେ ଭାଉଜ ପେଟେ ଖୁଆଇ ତା'ପରେ ଯାଇ ଛାଡ଼ିଲେ, ସ୍ନେହ ଓ ଆତିଥେୟତାରେ ବିହାରର ଲୋକେ ଊଣା ନୁହନ୍ତି, କପଟ ନାହିଁ, ମନକୁ ପାଇଲେ ପରମ ସ୍ନେହୀ ।

ମନେପଡୁଛି ବିହାରି ଭାଇମାନଙ୍କ ସଂକୀର୍ତ୍ତନ, ବିଶେଷତଃ ରାମନବମୀ

ଉପଲକ୍ଷେ "ହୋ ରାମା " "ହୋ ରାମା" ବୋଲି ଘୋଷା ।

ଆଉ ମନେପଡ଼େ ଗଙ୍ଗାନଦୀ । ମନେଅଛି ଯେଉଁଦିନ ଦିଯାଘାଟ୍‌ର ପାହାଚରେ ଠିଆହୋଇ ମୁଁ ସେ ନଈକି ଅନାଇଁଥିଲି ଆଉ ଭାବୁଥିଲି କେଡ଼େ ବଡ଼ ସେ ନଈ ଆମ ଗାଁ ସିଡୁଆ ନଈ (କାଠଯୋଡ଼ି—ଦେବୀ)ଠୁଁ ଢେଉ ଉଠୁଥାଏ । ଷ୍ଟିମର୍ ଚାଲୁଥାଏ । ପାଣିକି ଦି'ଭାଗ କରି ଉଠୁଥାନ୍ତି ବୁଡୁଥାନ୍ତି ପୁଣି ଉଠୁଥାନ୍ତି ସୁସୁମରମାନେ, କ'ଣ କଳା କଳା ଜନ୍ତୁ, କ'ଣ ଭୟଙ୍କର ନିଶ୍ଚୟ । କିନ୍ତୁ କିମ୍ଭୀର ଦିଶିଲେ ନାହିଁ, ଘଡ଼ିଆଳ, ଛୁ'ମୁହାଁ, ଥଣ୍ଡିଆ ସେହି ଯେଉଁମାନେ ଆମ ନଈରେ ଦିଶନ୍ତି, ଯାହାଙ୍କୁ ମୁଁ କୁତୂହଳରେ ଅନାଏଁ । ଆଃ ! ଆମ ନଈ ! କାହିଁ ଏଠି ସେ ବାଲିଚରା ? ବହୁତ ଉଚ୍ଚ ବହୁତ ଟାଣ ମାଟି ଅତଡ଼ାର ଠିକ୍ ତଳୁ ତଳକୁ ପାଣି ଲାଗିଛି । କେଡ଼େ ଓସାର ଏ ନଈ ! ୟାରି ନାଁ କ'ଣ ସମୁଦ୍ର ? କାହିଁ ଆରପାରି ? ଆଖି ପାଉନାହିଁ । ଆମ ନଈରେ ପାଣି କୂଳରେ ଠିଆହେଲେ ଆରପାରି ବନ୍ଧ ଉପରେ ଗୋଟି ଗୋଟି ହୋଇ ସବୁ ବାରି ହୋଇପଡ଼େ । ମଣିଷଙ୍କ ମୁହଁ ବି ଦିଶେ, ଆରପାରି ତୁଠର ଲୋକଙ୍କୁ ବଡ଼ ପାଟିକରି ଡାକିହୁଏ, ଆମ ନଈ ଦୂରକୁ କେତିକି ଆଣେ, ଯେ ନଈ ସବୁ ଦୂରେଇଦିଏ !

ଏ ପାଣି ଦେଖି ଧାଇଁଯିବାକୁ ମନ ହେଉନାହିଁ, ଡରମାଡୁଛି, କାନେ କାନେ କୁହା ହୋଇଛି "ହୁସିଆର, ଖୁଲୁବୁଲୁ ହ'ନା, ଅକାତ ପାଟି ଟି !"

ଯେ ଗଙ୍ଗା ଦେବୀ । କେତେ ଲୋକ ସ୍ତୋତ୍ର ପଢୁଛନ୍ତି ଜେ—ଜେ—ମା, ବିପତ୍ତି ନ ପଡୁ ।

ଆମ ନଈ ବି ଦେବୀ, ଟିକିଏ ତଳକୁ ତା' ନାଁ ବି 'ଦେବୀ' ହୋଇଯାଇଛି । କିନ୍ତୁ ସେ ଦୁଃଖର ସୁଖର । ଖାଲି ବର୍ଷାଦିନେ ପାଗଳ ହୁଏ, ସେତିକି ଯାହା ।

କାର୍ତ୍ତିକ ପୂନେଇଁ ଦିନର ଅନ୍ଧାରି ପାହାନ୍ତିଆ । ପ୍ରବଳ ଶୀତ । ଆମେସବୁ ଏକ୍କା ଗାଡ଼ିମାନ ଚଢ଼ି ବହୁତ ପରିବାର ବହୁତ ଦୂରରୁ ଦଳ ହୋଇ ଯାଇଥିଲୁଁ । 'ଅ-କା-ମା-ବଇ' କରିବାକୁ ଓ ଜଳନ୍ତା ସଳିତା ଖଞ୍ଜା ହୋଇଥିବା କଦଳୀ ଡଙ୍ଗା ଭସେଇବାକୁ । ମଜା ସେତିକି । ବହୁତ ମଜା ।

ଥରେ ସେମିତି ଦିନରେ ଗଙ୍ଗାର ପାହାଚେ ପାହାଚେ ତଳକୁ ଗଡ଼ି ପଡୁଥିଲା ଭାଇଙ୍କ ବଡ଼ପୁଅ ଶାମ, ତିନି ବର୍ଷର ହୋଇଥାଏ, କିଏ ଜଣେ ତାକୁ ଦେଖିପାରି ଟେକିନେଲେ ।

ଏଇ ଗଙ୍ଗା, ଯାରି କୂଳରେ ଭାଗଲପୁରରେ ଦାହ ହେଲେ ମୋର ଦାଦି, ଆଉ ପଛେ, —ପାଟ୍‌ନାରେ—ମୋର ବାପା ।

ପାଟ୍‌ନାରେ ଘରେ ଗୋଟିଏ ସ୍ମରଣୀୟ ଘଟଣା ହେଲା, —ଭାଇଙ୍କର ପ୍ରଥମ ସନ୍ତାନର ଜନ୍ମ, ଝିଅ । ମୋ ମନରେ ବହୁତ ଆନନ୍ଦ ହେଲା । ଛୁଆଟିକି ଦେଖି ବହୁତ କୁତୂହଳ ହେଲା, ଅନେକ ସମୟରେ ବସିରହି ଅନାଇଁଥାଏ, ମନହୁଏ ସେ ମତେ କଥା କହନ୍ତା !

ରେଳଲାଇନ୍, ଦି'କରେ ତାରବାଡ଼, ବନ୍ଧ ଉପରେ ଗହଳ ହୋଇ ବେଣାବୁଦା, ସେଥିରେ ବେଣାଫୁଲ, ରେଳ ଯିବା, ରେଳ ଆସିବା, ରାତିରେ ରେଳ ଚିମ୍ନିରୁ ନିଆଁ, ଚକ ତଳେ ନିଆଁର ଝିକିମିକି, କେତେ ଚଳନ୍ତି ମୁହଁ, ସବା ଶେଷରେ ସିଧା ଠିଆ ଗାର୍ଡ଼ ସାହେବ । —ପ୍ରଚଣ୍ଡ ତା'ର ଆକର୍ଷଣ । ଦି' କରେ କରେ ତାର ଉପରେ ଧାଡ଼ିକିଧାଡ଼ି ଚଢ଼େଇ । ତାରଖୁଣ୍ଟିରେ କାନ ମାଡ଼ିଲେ କି ବିଚିତ୍ର ସଙ୍ଗୀତ ! କିନ୍ତୁ ସେ ପାଖକୁ ଯିବାକୁ ମନା, ଗଲେ ଓଟାରି ଆଣନ୍ତି ।

ଘରେ ଦିନ ଦିନକର ନାନା କାହାଣୀ, କୌତୁକପ୍ରଦ । କାହ୍ନୁଭାଇଙ୍କି ଗୁରୁ ପରି ମାନିଥାଏଁ । ସେ ମତେ ଇଂରେଜି ପଢ଼ାଉଥାନ୍ତି, ଆଉ କିଛି କିଛି ଓଡ଼ିଆ । ତା'ପରେ ଦିନେ, ଗାଁରୁ ଚିଠି ଆସିଲା ବୋଉ ମତେ ଝୁରି ହେଉଛି । ଭାଇ ଆଣି ଛାଡ଼ିଦେଇ ଗଲେ । ୧୯୨୧ର ଶେଷଭାଗ ।

"ମୋ ଧନରେ, —ମୋ ସୁନା—ମୋ ଗୋପୁଲି—" ବୋଉ କୁଣ୍ଢେଇ ପକାଇଲା । ଆଜିକାଲି ଆଠବର୍ଷର ପିଲା ବିଦେଶ ବି ଏକୁଟିଆ ଯାଇପାରେ, ଅଷ୍ଟମ ଶ୍ରେଣୀରେ ବି ପଢ଼ିପାରେ, ସେତେବେଳର ଗାଁଗହଳିର ଆଠବର୍ଷ ଚାଲିଥିବା ପିଲା ବୋଧହୁଏ ଶିଶୁ ଅବସ୍ଥାରେ ହିଁ ଥିଲା, ସମସ୍ତେ ତାକୁ ସେହି ଦୃଷ୍ଟିରେ ଦେଖୁଥିଲେ ।

ପାଟ୍‌ନାରୁ ଫେରିଆସି ୧୯୨୩ରେ ଗାଁରୁ ଚାଲିଯିବାଯାକେ ସେହି ଯେଉଁ ଦେଢ଼ବର୍ଷ କି ଦୁଇବର୍ଷ ସେତେବେଳେ ଖାଲି ଡିଆଁ, ଘରକୁ ଆସେ ଖାଇବା ପାଇଁ, ଅନ୍ୟ ସମୟରେ ଗାଁଯାକ ବୁଲୁଥାଏଁ ଖେଳୁଥାଏଁ । ତାହାକି ପାଠ ମୋର ସରି ଯାଇଥାଏ, କିନ୍ତୁ ବାପା ଗାଁ ପିଲାଙ୍କୁ ଏକାଠି ବସାଇ ସଦ୍‌ବୁଦ୍ଧି ସତ୍‌ଶିକ୍ଷା ଓ କିଛି ବିଦ୍ୟାଶିକ୍ଷା ଦେବା ସକାଶେ ଅବୈତନିକ ଭାବେ ସ୍ୱେଚ୍ଛାରେ ଯେଉଁ ପାଠଶାଳାଟିଏ ଖୋଲିଥାନ୍ତି ସେ ନ ଥିଲାବେଳେ ମୁଁ ସେଠି ବସି ପିଲାଙ୍କୁ ପଢ଼ାଏ, ମୋର ପୁରୁଣା ପାଠ ବି ପଢ଼େ । ବାପା ବସିଥିଲାବେଳେ

ବି ତୁନିହୋଇ ସେଠି ବସିରହି ପୁରୁଣା ପାଠ ପଢ଼ିବାକୁ ପଡ଼େ, ତାଙ୍କଠୁଁ ବୁଝି ବୁଝି କିଛି ନୂଆ ପାଠ ବି ଧରେଁ । ପିଲାଙ୍କର ବହୁତ ଉପକାର ହେଉଥାଏ, ତାଙ୍କ ବାପ ମା କୃତଜ୍ଞତା ଜଣାଇ ଯାଉଥାନ୍ତି, କିନ୍ତୁ ଗାଁ' ପିଲା ଦିନେ ଆସିଲେ ଦିନେ ନାହିଁ, ଇସ୍କୁଲ୍ ସେମାନଙ୍କୁ ଅଡୁଆ ଲାଗେ । ବଡ଼ଦିନେ ଯେତେବେଳେ ଦେଖିଲି ଯେ ଅନୁନ୍ନତ ଆଦିବାସୀ ଅଞ୍ଚଳରେ ବି ସେହି ଅବସ୍ଥା ପିଲାଦିନେ ଗାଁ ପିଲାଙ୍କ କଥା ମୋର ମନେ ପଡ଼ିଲା । ସେ ସମସ୍ୟା ଏକା ଆଦିବାସୀଙ୍କର ନୁହେଁ । କ୍ରମେ କେତେ ମାସ ପରେ ବାପା ସେ ଉଦ୍ୟମରୁ କ୍ଷାନ୍ତ ହେଲେ ।

ଇତ୍ୟବସରରେ ୧୯୨୧ର ଶେଷ ଅଧକ ବେଳକୁ ଧୃବଭାଇ କାହ୍ନୁଭାଇ ବି ପାଟ୍‌ନାରୁ ଚାଲିଆସିଲେ । ଘରେ ହେଲୁଁ ବାପା, ବୋଉ, ଆମେ ତିନିଭାଇ । ସେମାନେ କଟକ ପ୍ୟାରିମୋହନ ଏକାଡ଼େମୀରେ ନବମ ଶ୍ରେଣୀରେ ନାଁ ଲେଖାଇଲେ, ପ୍ରତିଦିନ ସକାଳୁ ପଖାଳ ଖାଇ ଦୁଇ ଭାଇ ଘରୁ ବାହାରନ୍ତି, ଚାଲି ଚାଲି ବନ୍ଧେ ବନ୍ଧେ ଛଅ ମାଇଲ ଓ ତା'ପରେ ମାଇଲିଏ ଗଲେ ଇସ୍କୁଲରେ ପହଞ୍ଚନ୍ତି । ଇସ୍କୁଲରେ ପଢ଼ନ୍ତି, ପଢ଼ା ସରିଲେ ଗାଁର ପଡ଼ୋଶୀ ସୌଜନ୍ୟ ତାଡ଼ନାରେ କାହା ପାଇଁ କଟକର କେଉଁ ଗଳି କି ସାହିରେ ଅନ୍ୟ କାହାକୁ କିଛି ଖବର ଦେବା, କାହା ପାଇଁ କିଛି କିଣି ଆଣିବା, ଏତକ ସାରି ପୁଣି ଧରନ୍ତି ବାଟ, ରାତି ପହରେ ହେଉ ହେଉ ପୁଣି ଚାଲି ଚାଲି ଘରେ ପହଞ୍ଚନ୍ତି । ଏମିତି ସେମାନେ ଯାଇଆସି ପଢ଼ିଲେ ପାଶ୍ କଲେ ନବମ ଶ୍ରେଣୀ, ତା'ପରେ ଦଶମ ଶ୍ରେଣୀ, ତା'ପରେ ୧୯୨୩ରେ ଏକାଦଶ ଅର୍ଥାତ୍ ଶେଷ ଶ୍ରେଣୀ ହେଲା, ସେ ବର୍ଷ ରହିଲେ କଟକରେ 'ସାମନ୍ତ ହଷ୍ଟେଲ୍' ମେସ୍‌ରେ ।

ଆଗ ଦି' ବର୍ଷ ସେ ଦୁହିଁଙ୍କର ଯା'ଆସ କରି ପାଠପଢ଼ା ମୋ ମନରେ ବହୁତ ଆଶା ଉତ୍ସାହ ଆଣୁଥିଲା, ସେମାନେ ବହୁତ ନୂଆ ନୂଆ କଥା କହୁଥିଲେ, ସେମାନେ ନାଁ ଡାକ୍ ଛାତ୍ର ଥିଲେ, ଗାଁରେ ବହୁତ ପ୍ରଶଂସା, ସମସ୍ତେ ଆଶ୍ଚର୍ଯ୍ୟ ହେଉଥିଲେ ବାଟରେ ଯାଉ ଯାଉ ପାଠ ଆଲୋଚନା କରି କରି ରାତିରେ କ୍ଳାନ୍ତ ଦେହରେ କେତେବେଳେ ଟିକିଏ ବହି ଦେଖି କେମିତି ସେମାନେ ଏତେ ଭଲ ପଢୁଛନ୍ତି ।

ମୁଁ ଖୁସିହୁଏ ସେମାନଙ୍କ ବହିପତ୍ର ଦେଖି, ଓଡ଼ିଆ ବହିତକ ପଢ଼େ । ମୋ ପାଇଁ ସେମାନେ ସାନ ସାନ ବହି ବି ଆଣି ଦିଅନ୍ତି ।

ମୋ ପକ୍ଷରେ ଆହୁରି ଉତ୍ସାହର କାରଣ ହୋଇଉଠିଲା ୧୯୨୧ ନିଜେ ।

ଦେଶବ୍ୟାପୀ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା, ଆମ ଗାଁ ଆମ ଅଞ୍ଚଳ ଉତ୍ସାହ ଉତ୍ତେଜନାରେ ଦୁଲୁକିଲା । ସେଥିରେ ମୁଖିଆ ହେଲେ ଯୁବକମାନେ । ଆମ ଗାଁରେ ବନ୍ଦୁ ଓ ରାମଭାଇ ସେ କାର୍ଯ୍ୟରେ ଆପଣାକୁ ପାଣି ଛଡ଼ାଇ ଦେଲେ, ବିଶେଷତଃ ବନ୍ଦୁ—ସେ ହେଲା କଂଗ୍ରେସର ମେମ୍ବର, ଆମ ଅଞ୍ଚଳର ଆଦର୍ଶ ଦେଶପ୍ରେମୀ କର୍ମୀ । ସେ ଗାଁ ଗଣ୍ଡା ବୁଲିଲା, ପ୍ରଚାର ସଂଗଠନ ନାନା କାର୍ଯ୍ୟ କଲା, ଅନେକ ଲୋକ ମାତି ଉଠିଲେ । ସେ ଦୁହିଁଙ୍କ ସଙ୍ଗରେ ଥିଲେ ଧୂଳଭାଇ କାହ୍ନୁଭାଇ, ଇସ୍କୁଲ୍‌ରେ ପଢ଼ିବା ସଙ୍ଗେ ସଙ୍ଗେ ତାହାରି ଭିତରେ ସେମାନେ କିଛି କିଛି କଂଗ୍ରେସୀ ବହି ବିକ୍ରି, ଖଦୀ ପ୍ରଚାର ଆଦି କରୁଥିଲେ, ନିଜ ଗାଁରେ ଓ ଆଖପାଖ ଅଞ୍ଚଳରେ ବେଶି କାର୍ଯ୍ୟ କରୁଥିଲେ ମୋ ଭିଣୋଇ ଶ୍ରୀ ମଦନ ମୋହନ ମହାପାତ୍ର, ଅରଡ଼ିଆପଦା (ମହୀଧରପଡ଼ା)ର ଜଣେ ଜମିଦାରଙ୍କ ବଡ଼ପୁଅ । କେତେବେଳେ ହାର୍ମୋନିଅମ୍ ଝୁଲାଇ କାନ୍ଧରେ ଖଦଡ଼ ଗଣ୍ଠିରା ବୋହି ଗୀତ ବୋଲି ବୋଲି ଦଳବଳ ଘେନି ପ୍ରଚାର ଓ ଖଦୀ ବିକ୍ରି, କେତେଠିଁ ଅରଟ ପ୍ରଚାର, ହିନ୍ଦୁ-ମୁସଲମାନ ଏକତା, ଗ୍ରାମ ସଂଗଠନ, ମୁଷ୍ଟି ଭିକ୍ଷା, ଲାଇବ୍ରେରି ପ୍ରତିଷ୍ଠା, ନାନା କାର୍ଯ୍ୟ ସେମାନେ କରୁଥିଲେ ।

ଆମ ଗାଁରେ ବସିଗଲା ଘରେ ଘରେ ଅରଟ, କପା ଚାଷ ଆରମ୍ଭ ହେଲା, ସୂତା କଟା ପ୍ରତିଯୋଗିତା ହେଲା, କେତେ ଲୋକଙ୍କର ଦୈନିକ ଅଭ୍ୟାସରେ ପରିଣତ ହେଲା, ଘରେ ଘରେ ମୁଠିଚାଉଳ ପାଇଁ ହାଣ୍ଡିମାଠିଆ ବସିଲା, ବିଲାତି ଲୁଗା ସଂଗ୍ରହ କରାହୋଇ ପୋଡ଼ା ହେଲା, କେତେ ଘରେ ଖଦଡ଼ ପିନ୍ଧିଲେ, ହିନ୍ଦୁ-ମୁସଲମାନ କୁଣ୍ଢାକୁଣ୍ଢି ହୋଇ ଜାତୀୟ ସଙ୍ଗୀତ ଗାଇ ଗାଇ ବୁଲିଲେ, କଦମ ଦାଣ୍ଡରେ ପ୍ରତି ସଞ୍ଜରେ ବସିଲା ବଡ଼ ବଡ଼ ସଭା, ଭେଦ ଛେଦ ତୁଟାତୁଟି ଗାଁ' କଳି ଆପୋଷିରେ ମେଣ୍ଟାମେଣ୍ଟି, ସବୁ ଜାତି ଏକାଠି ହୋଇ ପରସ୍ପର ଭିତରେ ସାହାଯ୍ୟ ସହାନୁଭୂତି ବଢ଼ାଇବା କାମ, ଅନେକ କାମ ହେଲା, ଗାଁର ସଂକୀର୍ତ୍ତନ ସଂପ୍ରଦାୟ ଗାଇଲେ ନୂଆ ସଂକୀର୍ତ୍ତନ—''ଭାଇରେ ଆଜି ଆସିଛି ଦିନ—'', କେତେ ଶଙ୍ଖ ହୁଳହୁଳି ଧ୍ୱନି ଭିତରେ ଏ ଗାଁରୁ ସେ ଗାଁ ଝଂକୃତ ହେଲା ସେହି ଅଭୟ ବାଣୀ—

''ମହାତ୍ମା ଗାନ୍ଧିକି ଜୟ !''

କାହ୍ନୁଭାଇ ଧୂଳଭାଇ ଗୀତ ଗାଇ ଗାଇ ହାଟରେ ବାଟରେ ଦି'ପଇସିଆ କଂଗ୍ରେସୀ ବହି ବିକୁଥିଲେ, ଗାଉଥିଲେ—

''ଅରଟରେ ରଟ ରଟ କାଟ ଭାଇ ସୂତାରେ—'' ବକ୍ତୃତା ଦେବାକୁ ବୁଝାଇବାକୁ ବାହାରୁ ଆସନ୍ତି ନେତାମାନେ, କେତେବେଳେ କିଏ । ମୋର

ମନେଅଛି ଯେତେବେଳେ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଆସି ସଭା କରିଥିଲେ, ଆମ ଅଞ୍ଚଳରେ ଏତେ ଉତ୍ସାହ ଦେଖି ସେ ମୁଗ୍ଧ ହୋଇଥିଲେ, ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ, ତାଙ୍କର ଗୁଣାବଳୀ, ତ୍ୟାଗ, କୁଷ୍ଠରୋଗୀଙ୍କ ସେବା ଆଦି ବିଷୟ ଶୁଣି ଆମ ଅଞ୍ଚଳର ଲୋକେ ତାଙ୍କୁ ଧନ୍ୟ ଧନ୍ୟ କରିଥିଲେ ।

ଆଉ ମନେଅଛି ଯେଉଁଦିନ ହିନ୍ଦୁ ମୁସଲମାନ ଏକତା ବଢ଼ାଇବାକୁ ଆମ ଗାଁ ଲୋକେ ପଟୁଆର କରି ଧାନଘରପଡ଼ା ଓ ରାଉତରାପୁର ଯାଇଥିଲେ, ସେ ଗାଁମାନଙ୍କର ମୁସଲମାନମାନେ ମହା ଆନନ୍ଦରେ ସେ ପଟୁଆରରେ ମିଶି ଆସିଥିଲେ, ଏକାଠି ସଂକୀର୍ତ୍ତନ କରି ବିରାଟ ଦଳ ହୋଇ ସେମାନେ ବୁଲିଥିଲେ ଗାଁକୁ ଗାଁ । ଏପରି ଅନେକ ସଭା ଅନେକ ପଟୁଆର ହେଉଥିଲା, ତାଜିଆ ବାହାରିଲା ବେଳେ ବନାଠି, ଲାଠି, ଖଣ୍ଡା ଖେଳରେ ମୁସଲମାନ ଭାଇମାନଙ୍କ ସଙ୍ଗେ ଆମ କୁଞ୍ଜଭାଇ ବି ଏକାଠି ବୁଲିଥିଲେ ଓ ତାଙ୍କର ଖେଳ ଦେଖାଇ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲେ ।

ଆସନ୍ତି କେତେବେଳେ କିଏ ଖଦଡ଼ ପରିହିତ ଶାନ୍ତମୂର୍ତ୍ତି ନେତା, କି ଜହ୍ନୀ ଅନ୍ଧାରରେ ଲୋକେ ଗଦା ହୋଇ ପଡ଼ନ୍ତି, କେତେ କ'ଣ କଥାଭାଷା ହୁଏ, କେତେ ନୂଆ ନୂଆ ଖବର ଆସେ ଗାଁଯାକ ଖେଳିଯାଏ, —'ଭିତିରି ଖବର' । ଯେମିତି ତୁନି ହୋଇ ଆସିଥିଲେ ସେମିତି ତୁନି ହୋଇ ସେ କୁଆଡ଼େ ଉଭେଇ ଯାଆନ୍ତି ।

ଭାରତ-ଇଂରେଜ ସରକାର, —ଗାନ୍ଧୀ ମହାତ୍ମା, —ସ୍ୱରାଜ – ସତ୍ୟାଗ୍ରହ – ପୁଲିସ୍ – ଅନେକ ନୂଆ କଥା ଘରେ ଘରେ ଆଲୋଚିତ ହୁଏ ।

ଆମ ନଈବନ୍ଧ ତଳେ ଗାଁକୁ ଗଡ଼ିଯିବା ବାଟ କରରେ ବନୁର ଗୋଟିଏ ବଖରା ଘର ଥିଲା । ସେଇଠି ଖୋଲିଲା 'ଲାଇବ୍ରେରି' । ବହୁତ ଘରୁ ବହୁତ ବହି ଆସି ସଂଖ୍ୟା ଲଗାହୋଇ ସଜା ହୋଇ ରହିଲା । ବେଶି ଉପକାର ହେଲା ମୋର । ମୁଁ ବହି ପଢ଼େ, ରାମଭାଇ ବୁଝନ୍ତି, ବେଳେ ବେଳେ ଆବୃତ୍ତି କରନ୍ତି ।

ରାମଭାଇ ମୋ' ବାପାଙ୍କ ସାନଭାଇ ଦିବ୍ୟସିଂହ (ଦୁବ) ଦାଦିଙ୍କ ପୁଅ । ସେ ସେକେଣ୍ଡ କ୍ଲାସ୍‌ରେ ପଢୁଥିଲେ । ସେଇଠୁ ପଢ଼ା ଛାଡ଼ିଥିଲେ, ସେ ବହୁତ ବହି ପଢ଼ିଥିଲେ, ଆପଣା ଖିଆଲ୍‌ରେ ଜୀବନ ବିତାଇବା ତାଙ୍କର ରୁଚି ଥିଲା । ପଛେ ୧୯୨୩ରେ ସେ ବିଭାହେଲେ, ତାଙ୍କ ବିଭାଘରକୁ ମୁଁ ମାର୍କୁଣ୍ଡି ହୋଇ ଚଣ୍ଡୀହଟା ଯାଇଥିଲି, ଭାଉଜ କବି କୃଷ୍ଣମୋହନ ପଟ୍ଟନାୟକଙ୍କ ଝିଅାରୀ । ରାମ ଭାଇ ପଛେ ସବ୍-ଓଭରସିଅର ଓ ମୟୂରଭଞ୍ଜର ମୁରୁଡ଼ା,

କୋରାପୁଟ୍, ପରେ ମାଲ୍କାନଗିରିର ଲୋକାଲ୍ ସବ୍-ଓଭରସିଅର୍ ଥିଲାବେଳେ ହଠାତ୍ ଅକାଳରେ ମରିଗଲେ । ତାଙ୍କର ଏକମାତ୍ର ପୁଅ ଅଧ୍ୟାପକ ମେଜର୍ ଗୁରୁପ୍ରସାଦ ମହାନ୍ତି ପ୍ରତିଷ୍ଠିତ ଆଧୁନିକ ଓଡ଼ିଆ କବି ।

ସେହି ଲାଇବ୍ରେରିରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ 'କୋଣାର୍କେ' ମୁଁ ଆବୃତ୍ତି କରି କରି ପଢ଼ିବାର ମୋର ମନେପଡ଼ୁଛି, ରାମ ଭାଇ ବୁଝାଉଥିଲେ । ଆଉ ମନେପଡ଼ୁଛି, ସେଇଠି ସେ ବୁଝାଉଥିଲେ ଦେଶ କ'ଣ, ସ୍ୱାଧୀନତା କ'ଣ । ଶିଖେଇଥିଲେ ଗୋଦାବରୀଶ ବାବୁଙ୍କ ପ୍ରସିଦ୍ଧ ଗୀତଟି—''ତୁଙ୍ଗ ଶିଖରୀଚୂଳ—''

''ସତ୍ୟଯୁଗ ଆସିଗଲା'', ଖଞ୍ଜାରେ ବନ୍ଦୁ କହୁଥିଲା ।

''ସ୍ୱରାଜ ଆସିବା ଉପରେ, ମହାତ୍ମା ଗାନ୍ଧୀ ସାକ୍ଷାତ୍ ମହାତ୍ମା'' ସମସ୍ତେ କହୁଥିଲେ ।

''ଭଗବାନଙ୍କ କଳା ଘେନି ମହାତ୍ମା ଜନ୍ମ ହୋଇଛନ୍ତି'', ବାପା କହୁଥିଲେ, ''ଅସୁରଙ୍କ ଭାରା ବେଶି ବଢ଼େଇଲେ ଭଗବାନ୍ ଏମିତି ମହାତ୍ମାମାନଙ୍କ ଦ୍ୱାରା ତାକୁ ଉଶ୍ୱାସ କରନ୍ତି, ସତ ଉପୁଜେ ।''

ମୁହଁ ମୋଡ଼ିଦେଇ ଦାଣ୍ଡପିଣ୍ଡାରେ ବସି ଲୋକନାଥ ବଡ଼ବାପା କହୁଥିଲେ ''ଏଗୁଡ଼ାକ ପାଗଳ, କିହୋ ଆଇନ୍ ଆଗରେ କିଏ ଠିଆ ହେବ ? ଗବର୍ମେଣ୍ଟ ! ସେ ଏତିକିରେ ହଟିଯିବ ! ହୁଁ ! ଦେଖିବ ରଇଥା । ପାଇବେ, ପାଇବେ ।''

୧୯୨୩ ସରିକି ଆମ ଗାଁରେ ଆନ୍ଦୋଳନର ଉତ୍ତେଜନା କମି ଯାଇଥିଲା । କିନ୍ତୁ ଆଲୋଚନା ଚାଲୁ ରହିଥିଲା । ''ଗାନ୍ଧୀ ମହାତ୍ମା କେମିତି ଅଛନ୍ତି ?'' କିଏ ଆଉ କାହାକୁ ପଚାରେ । ବହୁତ ଧରପଗଡ଼ । ବହୁତ ଘରପୋଡ଼ି । ଗାଁ ଲୋକେ ରାତି ରାତି ବୁଲି ବୁଲି ପହରା ଦିଅନ୍ତି । ଆମ ପାଇଁ ସେ ଗୋଟାଏ ମଉଜ—ବୁଲା ।

ଯେତେ ଯାହା ହେଉ, ଯେ ଯାହା କହୁ, ସାଧାରଣ ଲୋକଙ୍କର ବିଶ୍ୱାସ ଅତୁଟ ରହିଥାଏ, —''ସ୍ୱରାଜ୍ୟ ଆସିବ, ଆଜି ନ ହେଉ, କାଲି ।''

୧୯୨୩ ସାଲର ଗୋଟାଏ ଦିନ, ବୈଶାଖ ସରିଥିବ, ତା ସହିତ ମୋର ଦଶମ ଜନ୍ମଦିନ, ମୋ ଜୀବନରେ ଗୋଟାଏ କ୍ରାନ୍ତିର ଦିନ, ପୁରୁଣା ଯୁଗ ଶେଷ ହେଲା, ନୂଆ ଯୁଗ ଆସିଲା ।

ନ ଆସିଥିଲେ କ'ଣ କ୍ଷତି ହୋଇଥାନ୍ତା ? —ଆଜି ଚଉରାଳିଶି ବର୍ଷ ପରେ ମୁଁ ନିଜକୁ ନିଜେ ପଚାରୁଛି । ଭଲ ତ ଥିଲି, ଯାହା ମିଳିଲା ତା ଖାଇଦେଇ ସକାଳୁ ସଞ୍ଜଯାକେ ମନଇଚ୍ଛା ଡେଉଁଥିଲି ବୁଲୁଥିଲି । କେତେବେଳେ କେଉଁ କଳ୍ପନା, କେଉଁ ଖେଳ, କେଉଁ ମଉଜ । କଦମ୍ବ ଦାଣ୍ଡ ଧୂଳିରେ

ବହୁତ ବେଳ ବିତୁଥିଲା, ବସି ବସି ଚାଲି, ନଇଁ ନଇଁ ଚାଲି ପ୍ରଜାପତି ଓ କଙ୍କି ଧରିବା, ସାନ ସାନ ଘର ତୋଳିବା, ଧୂଳିରେ ଚିତ୍ର ଓ କାଦୁଅରେ ମୂର୍ତ୍ତି ତିଆରି କରିବା, ଧୂଳିରେ ଅକ୍ଷର ଲେଖିବା, କଣ୍ଟା ଡାଳ ଓ ଫୁଲ ପୋତି ବଗିଚା କରିବା, ଏପରି ଅନେକ ଉପାଦେୟ କାର୍ଯ୍ୟ । ବିଲ, ନଈକୂଳ, ପୋଖରୀକୂଳ, ତୋଟା, ଅରମା, ସେଠି ଅନିଷା କରିବାକୁ ବହୁତ ଜିନିଷ, ଜନ୍ତୁ, ଉଦ୍‌ଭିଦ, ଆକାଶର ରଙ୍ଗର ପରିବର୍ତ୍ତନ, —ବହୁତ ବହୁତ । ସାହି ବୁଲିଲେ କାହା କତିରେ ଅଟକି ରହି ତା କାମରେ ହାତ ଲଗେଇଲେ ତାଠୁଁ ଶୁଣିବାକୁ ମିଳିବ ଅନେକ ଚମତ୍କାର କାହାଣୀ, ସମୟ ବଳେ ଭୁଲି ହୋଇଯିବ ।

‘‘ସେ ବାଉରି ଟୋକାଟି କିଏ କି ? —ସେଇ ମ, ଏଠି ଅନେକ ସମୟରେ ତାକୁ ମୁଁ ଦେଖୁଚି ।’’ ଜଣେ ନୂଆ ହୋଇ ଆସିଥିବା ଭାଉଜ ଏ ପ୍ରଶ୍ନ ପଚାରିଥିଲେ, ଗାଁରେ ଏସବୁ କଥା ଧରାହୁଏ, ଧରାହୋଇ ରହିଗଲା ବହୁତ ବର୍ଷ । ବୋଉ ଭାରି ଛକ ଜଳା ।

କିନ୍ତୁ ତାକୁ ଦୋଷ ଦେଇ ହେବ ନାହିଁ, ମୋ ଭେକ ମୋ ବଣ ମାମୁଁର ଉପଯୁକ୍ତ ଭଣଜା ପରି ନିଶ୍ଚୟ ହୋଇଥିବ । ପାଣିକେନ୍ଦୁରି ଫୁଲ ତୋଳିଯାଇ ଆଣ୍ଠୁ ଡୁବୁଡୁବୁ କାଦୁଅ, ଦେହଯାକ ଧୂଳି, ମୁଣ୍ଡଯାକ ବାଲି, ସବୁବେଳେ ତରଂତରଂ, ଅସ୍ଥିର ଯେପରିକି ହାତରେ ବହୁତ କାମ ।

ଦିନେ ସକାଳେ ଏହିପରି ଅବସ୍ଥାରେ ମୁଁ ଗାଁର ଅନ୍ୟାନ୍ୟ କେତେ ପିଲାଙ୍କ ସଙ୍ଗରେ ଦାଣ୍ଡରେ ଖେଳୁଥିଲି, କାହ୍ନୁଭାଇ ମତେ ଟେକିନେଇଗଲେ ଖଞ୍ଜା ଭିତରକୁ । ବୋଉ ଆଗରେ କଚିଦେଇ କହିଲେ ‘‘ଦେଖ୍ ତୋ ଗେହ୍ଲାପୁଅ କେମିତି ଚୁଲିକି ଗଲାଣି । ଯାହା ପଢ଼େଇଥିଲି ସବୁ ପୋଡ଼ି ଖାଇଲା । ଗାଁ ଟୋକାଙ୍କ ସଙ୍ଗେ ସାଙ୍ଗହୋଇ ଖେଳି ଖେଳି ସମୟ ନଷ୍ଟ କରୁଛି । ସତ୍ୟାନାଶ ହେଇଗଲା ।’’

ମୋ ମନରେ କୌଣସି ଦୋଷର ଚେତନା ନ ଥିଲା । ମୁଁ ପ୍ରତିବାଦ କରୁଥିଲି, ଦେହ କଷ୍ଟ ଲାଗି କାନ୍ଦୁଥିଲି ।

‘‘ତାକୁ ଛାଡ଼ିଦେ କହ୍ନେଇ ’’

ବାପା ।

‘‘ସବୁ ଦୋଷ ମୋର, ମୁଁ ତାକୁ ବୁଝେଇବି । ତୁମେ ସବୁ ଚାଲିଯା’’ । ସମସ୍ତେ ତୁନିହୋଇ ରହିଲେ । ବାପା ମୋ ଉପରେ ରାଗିଲେ ନାହିଁ, କାହାରି ଉପରେ ରାଗିଲେ ନାହିଁ । ଦୁଃଖିତ ହୋଇ କହିଲେ, —‘‘ମୁଁ ଘରେ ବସି ପଢ଼ିଲି, ପିଲାଟି ମୋର ମୂରୁଖ ହେଲା, ତା ଜୀବନ ନଷ୍ଟ ହେଲା, ତା

କଥା ବୁଝିବାକୁ କେହି ନାହିଁ, ଏଠି କେଉଁଠି ଇସ୍କୁଲ୍ ନାହିଁ ଯେ ସେ ଇସ୍କୁଲ୍‌ରେ ପଢ଼ିବ, ପଢ଼ିବା ବୟସ ବି ଚାଲିଯାଉଛି, ହଉ, ଭଗବାନଙ୍କ ଇଚ୍ଛା ।''

ସମସ୍ତେ ଗଲେ, ବାପା ମତେ କହିଲେ ''ଯା ନା ଥା ।''

ତାଙ୍କ ସ୍ୱର ଅତି ଗମ୍ଭୀର, ଗୁରୁତ୍ୱପୂର୍ଣ୍ଣ, କୋମଳ ଓ ଦୁଃଖିତ ଶୁଭୁଥାଏ । ମୋ ମୁଣ୍ଡ ଉପରକୁ ତାଙ୍କ ହାତ ଲମ୍ବି ଆସିଲା, ଭାବିଲି—ଏଥର ବୋଧହୁଏ କିଛି ଗୋଟାଏ ଘଟିବ, ବାପା ନିଜ ହାତରେ ମତେ ଶାସ୍ତି ଦେବେ ।

କହିଲେ—''ଡର୍‌ନା—''

ମୋ ମୁଣ୍ଡ ଆଉଁଶିଲେ ।

ମତେ ସତେ ସତେ କାନ୍ଦ ମାଡ଼ିଲା, ଅନୁଭବ କଲି ''ମୋର କ'ଣ ଦୋଷ ହୋଇଛି ।'' କହିଲେ, —''ତତେ ଯେତେ ମୁଁ ବୁଝେଇଲି, ତୋ ଭାଇମାନେ ବୁଝେଇଲେ, ତୁ ତ ଶୁଣିଲୁ ନାହିଁରେ ପୁଅ । ଦେଖୁଚୁ, ମୁଁ ଘରେ ବସିଛି, ଏଠି ଇସ୍କୁଲ୍ ନାହିଁ କି ମାଷ୍ଟର ନାହାନ୍ତି । ଘରେ ପଇସା କଉଡ଼ି ନାହିଁ ଯେ ଖର୍ଚ୍ଚ କରି ତତେ ଆଉ କେଉଁଠି ରଖେଇ ପାଠ ପଢ଼େଇବି । ସେଇଥିପାଇଁ କହୁଥିଲି, ତୋ ଭାଇମାନଙ୍କୁ ପଚାରି ତାଙ୍କଠୁଁ ପାଠ ବୁଝି ମୋଠୁଁ ବୁଝି ତୁ ତୋ ମନକୁ ମନ ପଢୁଥାନ୍ତୁ, ଘରେ ଥୋଡ଼ାଏ ପଢ଼ିଗଲେ ପଛେ କେତେବେଳେ ସୁବିଧା ହେଲେ ତତେ ଇସ୍କୁଲ୍‌ରେ ଭର୍ତ୍ତି କରାଇ ଦିଅନ୍ତେ । ତୁ ତା କଲୁ ନାହିଁ ।''

ଅଟକିଯାଇ ଗୁମ୍‌ହୋଇ ରହିଲେ । ଦୀର୍ଘଶ୍ୱାସ ପକାଇଲେ । କହିଲେ—

ତା'ହେଲେ ତୁ ବଡ଼ ହେଲେ କ'ଣ ହେବୁ ?

ବଡ଼ଭାଇ ପାଟ୍‌ନାରେ ଚାକିରି କରିଛି । ଧିଳ କାହ୍ନୁ ପାଠ ପଢୁଛନ୍ତି, ମଣିଷ ହେବେ । ତୁ ମୂରୁଖ ହେଲୁ, ବଡ଼ ହେଲେ ତୁ ହଳ କରିବୁ, ପେଟ ପୋଷିବୁ । ବିଲରୁ ଆସିବୁ, ଗାଧୋଇବୁ, ଓଳି ତଳେ ଠୁନି ହୋଇ ଠିଆ ହୋଇ ରହିବୁ । ଭାଉଜମାନଙ୍କ ଭିତରୁ କାହାର ନିଘା ପଡ଼ିଗଲେ କହିବେ, ''ହେଇଟି ହଳୁଆ ଆଇଲାଣି, ତୋରାଣି ଅଜାଡ଼ିଦିଅ ପିଇବ । ହେଇ ହଳୁଆ, ସେଇଠି ତୋରାଣି ରହିଲାଣି । ସେତେବେଳେ ମୁଁ କି ତୋ ବୋଉ ତ ଆଉ ନ ଥିବୁଁ ଯେ ତତେ ଆହା ବୋଲି ପଦେ କହିବୁଁ ! ଭାଉଜମାନେ ଝିଙ୍ଗାସୁଥିବେ—ଆରେ, ଆରେ, ହଳୁଆଟା କ'ଣ ଘର ଭିତରକୁ ମାଡ଼ି ଆସୁଚି ଦେହଯାକ କାଦୁଅ ସାଲୁ ସାଲୁ ! ଇସ୍ ! କେଡ଼େ ଅସନା ! କେଡ଼େ ଗନ୍ଧ ! ତୁ ବାହାରେ ଥା, ବାହାରେ ଥା— !''

ପୁଣି ଦୀର୍ଘଶ୍ୱାସ ପକାଇଲେ, ମୁଁ କଳାକାଠ-ପଡ଼ିଯାଇ ଶୁଣୁଥାଏ, ସେ

କହିଯାଉଥାନ୍ତି :—

''ମତେ ଦୃଶ୍ୟ ହେଉଛି । ସେଇଆ ହେବ ତୋ ଭବିଷ୍ୟତ୍, ତୁ ସେଇଆ ହବୁ । ତୋ ସାଙ୍ଗ ବାଉରି, କଣ୍ଡରା, ଗାଁଯାକର ଯେତେ ହାଟୁଆ ବାଟୁଆଙ୍କ ପିଲାଏ । ତାଙ୍କଠୁଁ କି ବୁଦ୍ଧି ଅବା ଶିଖିବୁ ତୁ ! ସେମାନେ ଶୁଦ୍ଧ କରି କଥା ଦି'ପଦ ବି କହି ଶିଖିନାହାନ୍ତି । ତୁ ପାଠ ପଢ଼ିଥିଲେ ସେମାନଙ୍କୁ ଶିଖେଇଥାନ୍ତୁ, ତା' ତ ହେଲା ନାହିଁ, ଯେତିକି ଶିଖିଥିଲୁ ତା' ବି ଭୁଲିଯିବୁ । ସମସ୍ତେ ମଣିଷ ହେବେ, ସୁଖରେ ଘର କରି ରହିବେ, ତୁ ତାଙ୍କ ହଳିଆ ମୂଲିଆଙ୍କ ସାଙ୍ଗରେ ମିଶି ଗୋରୁ ଜଗିବୁ, ହଳ କରିବୁ, ତାଙ୍କ ଚାକର ହୋଇ ରହିବୁ । ହଉ, ତୋ କର୍ମ ! ବାପ ମା ଜନ୍ମ ଦେଇଛନ୍ତି ବୋଲି ତ ଆଉ କର୍ମ ଦେଇ ନାହାନ୍ତି । ତୋର ସେଇଆ ହେବ ବୋଲି ତତେ ସେଇ ବୁଦ୍ଧି ଦିଶୁଛି, ଆଉ ଯେ ଯାହା କହିଲେ ମୁଣ୍ଡରେ ପଶୁନାହିଁ । ତୋର ସେଇ ଦଶା ହେବ ବୋଲି ତୁ ନଷ୍ଟ ଚତୁର୍ଥ ହୋଇ ଜନ୍ମ ହେଲୁ, ସବୁ ସରିଲା ବେଳକୁ ଜନ୍ମ ହେଲୁ । ଯେତେବେଳେ ମୁଁ ବି ନିରୁପାୟ, ଚାକିରି ନାହିଁ, ଟଙ୍କାପଇସା ନାହିଁ, କେବେ ତୋ ବଡ଼ଭାଇ ଟଙ୍କା ଦଶଟା କୋଡ଼ିଏଟା ପଠେଇବ ବୋଲି ଅନେଇଁ ବସିଛି । ଯୋଗମାୟା ଏମିତି ତୋ ଭବିଷ୍ୟତଟା ତିଆରି କରୁଛି, ତୋ ମୁଣ୍ଡରେ ଦୁର୍ବୁଦ୍ଧି ଦେଉଛି, ସବୁ ଯୋଗ ଖଞ୍ଜି ଦେଉଛି ତୁ ସେଇଆ ହେବୁ ବୋଲି । ଚେତ୍-ଚେତ୍ ତତେ ଚେତେଇ ଦେଲି, ଏଣିକି ତୋ ଇଚ୍ଛା ତୁ ଯାହା କର୍ । ବୃଥା ତତେ ମାରିଲେ ଧରିଲେ କ'ଣ ହେବ ?''

ମୁଁ ନୀରବରେ କାନ୍ଦୁଥାଏ । ବୋଉ ପାଟିକଲା—''ବୃଥା ପିଲାଟା ସାଙ୍ଗରେ କାହିଁକି ଲାଗିଛ କହିଲ ?''

''ବୃଥା ନୁହେଁ, ତାକୁ ଦଶ ବର୍ଷ ଚାଲିଲାଣି, ମୁଁ ତାକୁ ଖାଲି ବୁଝେଇ ଦେଉଛି । ଆମର କାମ ତାକୁ ବୁଝେଇଦେବା, ସମସ୍ତିଙ୍କୁ ସଦ୍‌ବୁଦ୍ଧି ଦେବା, କିଏ ଚେତୁ କି ନ ଚେତୁ ସେ ତା'ର ଦାୟିତ୍ୱ । ପରିଣାମ କ'ଣ ତାକୁ ତା କହିଦେବା, ତେଣିକି—

''ଯାହାକୁ ଯେମିତି ଆସେରେ ବାବା—
କାଖ ଟେକି ଟେକି ନାଚ ।''

''ଆ'ଲୋ, ମୋ ସୁନା ଆ ଖାଇବୁ ଆ—'' ବୋଉ ମତେ କୁଣ୍ଢେଇ ପକାଇଲା । ବୋଉ କୋଡ଼ରେ ମୁହଁ ମାଡ଼ିଦେଇ ମୁଁ କଇଁ କଇଁ ହୋଇ କାନ୍ଦିଲି ।

''କିରେ—କିରେ—ଗୋପରେ—ମୋ ଗୋପୁଲି—'' ମୋର କଇଁ ଉଠୁଥାଏ ।

"ଓଃ ! କାନ୍ଦ !" ବୋଧହୁଏ କାହ୍ନୁଭାଇ କହୁଥାନ୍ତି, "ମୁଣ୍ଡାଗୁଡ଼ାକ ଆଖିରୁ ବୋହି ପଡୁଚି, ଥାଉ ! ତୁ ତା ମୁଣ୍ଡଟିକି ଖାଇବୁ ବୋଉ ।"

"ଗଲୁ ତୁ ତୋ କାମରେ, ଭାରି ଭାକ୍‌ଚିଆଳି ହେଇ କଥା କହୁଚି—"

"ସେ ବଳେ ପାଇବ ଯେ, —ମୋର କି ଯାଏ !"

"ଗୋପରେ—କାନ୍ଦନା, ଖାଇବୁ ଆ—"

"ଖାଇବି ନାଇଁ । ମୁଁ ପା-ଠ-ପ-ଢ଼ି-ବି— ।"

"ପଢ଼ନ୍ତୁ ନାଇଁ କି । ସମସ୍ତେ ପଢ଼ିବେ ତୁ କ'ଣ ପଢ଼ିବୁ ନାଇଁ !"

"ମୁଁ — ମୁଁ ହଳୁଆ ହେବି ନାହିଁ ବୋଉ — ମତେ କାହିଁକି — କିଏ — କହିବ — ତୋରାଣି —"

"ତୁନି ହ, ଫାଙ୍ଗୁଳା ଟୋକା । ବାପା କହିଲେ ବୋଲି ସତରେ ତୁ ହଳୁଆ ହେଇ ଖଟିବୁ ! ଆ, ଖାଇବୁ ଆ—"

ମତେ ଆଉ କେହି କିଛି କହିଲେ ନାହିଁ । କିନ୍ତୁ ମୋ ଭବିଷ୍ୟତ୍ ବିଷୟରେ ବାପା ଯେଉଁ ରୂପ ଆଙ୍କିଦେଲେ ସେ ଜୀଅନ୍ତା ହୋଇ ମୋ ଆଖିଆଗରେ ନାଚୁଥାଏ, ମୁଁ ବାରମ୍ବାର ତାକୁ ଦେଖୁଥାଏ, ଆତଙ୍କରେ ଶୀତୋଉଥାଏ । ସେଥିରୁ ରକ୍ଷା ପାଇବାକୁ ମୁଁ ମୋର ପୁରୁଣା ପାଠକୁ ପଢୁଥାଏଁ—କାହ୍ନୁଭାଇ ଯେଉଁ ଲଙ୍ଗ୍‌ମ୍ୟାନ୍‌ସ୍ ରିଡ଼ର୍‌ର ପ୍ରାଇମର୍, ବୁକ୍ ଓ୍ୱାନ୍ ଓ ବୁକ୍ ଟୁର ଅଧା ମତେ ପଢ଼ାଇ ଦେଇଥିଲେ ବାରମ୍ବାର ସେଇଆକୁ ଲେଉଟାଉଥାଏ । ମନେପଡୁଛି, ସେଥିରେ ଗୋଟାଏ ବାଘ କଥା ଥିଲା, ଗୋଟାଏ ସାପ କଥା ଥିଲା, ଗୋଟାଏ ନଡ଼ିଆଗଛର ବର୍ଣ୍ଣନା ଥିଲା । ସେଇମାନେ ତ ପଢ଼ିଥିବା ବର୍ଣ୍ଣବୋଧ ଶିଶୁବୋଧ ଆଦି, ପଣିକିଆ ପଚିଶି ଖେଦା, ସେହିମାନେ ମତେ ରକ୍ଷା କରିବେ ଆସନ୍ତା ବିପଦରୁ, ଭବିଷ୍ୟତର ଦୁଃସ୍ୱପ୍ନ ଦାଉରୁ ରକ୍ଷା-କବଚ ସେମାନେ ।

ଗଲା ବିତି ସେ ଦିନଟି । ପଦାକୁ ବାହାରିଲି ନାହିଁ । ମନ ଭିତରେ ନାନା ସାତ-ପାଞ୍ଚ । କ୍ରମେ ସେ ଥମିଲା, ରୂପାନ୍ତରିତ ହେଲା ଗୋଟିଏ ସ୍ପଷ୍ଟ ନିଷ୍ପତ୍ତି ହୋଇ ।

ଘରୁ ଚାଲିଯିବାକୁ ପଡ଼ିବ କଟକ ।

ସେହି ଯେଉଁଠି ମୋ' ଉପରର ଯୋଡ଼ିଏ ଭାଇ ରହି ପାଠ ପଢୁଛନ୍ତି, ଥରେ ମତେ ବୁଲେଇ ନେଇଥିଲେ, ସେଇଠିକି । ମୁଁ ବି ସେଠି ରହିବି,

ପଢ଼ିବି ।

ନିଷ୍ପତ୍ତି ସରିଥିଲା ମୋ ମନେ ମନେ । ଏକୁଟିଆ ମୁଁ କେବେ ଘରୁ କୁଆଡ଼େ ଯାଇନାହିଁ । କିନ୍ତୁ ଯିବାକୁ ପଡ଼ିବ, ଅନ୍ୟ ଉପାୟ ନାହିଁ ।

କଥା ପ୍ରଘଟ ହେଲେ ବାପା ବୋଉ ଅଟକାଇ ପାରନ୍ତି, ସେମାନେ କହିବେ ଏଇଠି ରହି ତୁ ଘରେ ପଢ଼ । ତା ଅସମ୍ଭବ ।

ଆଉ ମୁଁ ଘରକୁ ଫେରିବି ନାହିଁ, ଫେରିଲେ ଫେରିବି ବହୁତ ବର୍ଷ ପରେ, ପଣ୍ଡିତ ହୋଇ, ମଣିଷ ହୋଇ ।

କଟକରେ ଧୂଳିଭାଇ କାହ୍ନୁଭାଇ ମତେ ଇସ୍କୁଲରେ ନ ପଢ଼ାଇଲେ ମୁଁ ପୁଣି ସେଠୁ ଆଉ କୁଆଡ଼େ ଛୁ' କରିବି, ଏ ସଂସାରରେ ଯେ ହେଲେ ଥିବ ଯେ ମୋ ପାଠପଢ଼ା ବ୍ୟବସ୍ଥା କରିଦେବ ।

ବାପା ଯେଉଁ ଚିତ୍ର ଆଙ୍କି ଦେଲେ—କଦାପି ମୋ' ଭବିଷ୍ୟତ୍ ସେପରି ହେବାକୁ ମୁଁ କରାଇ ଦେବି ନାହିଁ ।

ରାତି ଆସିଲା, କଟିଗଲା, ତହିଁଆରଦିନ ସକାଳେ ମୁଁ ଘରେ ହିଁ ବେଶି ବେଳ ରହିଲି ମୋ ବହିପାଖେ । ଦି'ପହରର ଖିଆପିଆ ସରିଲା । ମୋ କାମିଜ୍ ଖଣ୍ଡିକ ଓ ମୋ ଗାମୁଛା ମୁଁ ମୋ ଖଞ୍ଜରେ ଘରୁ କାଢ଼ି ଆଣିଲି, ଦାଣ୍ଡରେ ଯେଉଁ ଧୂଳିଆଘର ଧାଉଡ଼ିକ ତହିଁରୁ ଯେଉଁ ବଖରାଟି ଖଞ୍ଜାରେ ପଶିବା ପାଇଁ ବାଟଘର ମୁଁ ସେଇଠି ମୋ ମୁଣ୍ଡତଳେ ନୋଚାକୋଚା କାମିଜ୍ ଓ ଗାମୁଛା ଥୋଇ ଶୋଇ ରହିଲି । ଖରା ତାଉ ବଢ଼ିଲା, ଘରେ ସମସ୍ତେ ବିଶ୍ରାମ କଲେ, ଗାଁ ତୁନେଇଲା । ଉଦୁଉଦିଆ ଖରାରେ ମୁଁ ବାହାରି ପଡ଼ିଲି ।

କଦମ ଦାଣ୍ଡରେ ହନୁମାନ୍ ମୂର୍ତ୍ତି କତିରେ ଗୋଡ଼ତଳେ ପଡ଼ିଲି । ଗୋଟିଏ ଗୋଟିଏ ହୋଇ ବନ୍ଧ ଉପରକୁ ଉଠିଗଲି । ଆମଘର ସଳଖେ ବନ୍ଧ ଉପରବାଟେ ଗଲାବେଳେ ମୁଁ ଡରି ଡରି କାନେଇଲି—ନା, କାହା ପାଟି ଶୁଭୁ ନାହିଁ । ଡାହାଣ ପାଖେ ନଇବାଲି ଉପରେ ମରୀଚିକା ଝଳଝଳୋଉଛି, କେଡ଼େ ଚୁପ୍‌ଚାପ୍ ଚାରିଆଡ଼ । ସତୀଗାଡ଼ିଆ ପାଖେ ଅଟକି ଠିଆହେଲି, ପାଦତଳ ପୋଡ଼ିଯାଉଛି । ଓହ୍ଲେଇ ଯାଇ ସତୀଗାଡ଼ିଆ ପାଣିରେ ଗାମୁଛା ବୁଡ଼େଇ ଆଣିଲି, ତଳେ ଥୋଇ ତାହାରି ଉପରେ ଠିଆହେଲି । ବାଟେ ବାଟେ ରହିରହିକା ମୁଁ ସେହିପରି କରେ ଓ କିଛି ସମୟ ପରେ ଆଗକୁ ମାଡ଼େ । ବାଙ୍କ ବୁଲି ଗଲାପରେ

ନାଗବାଲି ଅଦୃଶ୍ୟ ହେଲା । କ୍ରମେ ଗଲା ଖଣ୍ଡାଏତା, ଜରିପଡ଼ା । ବନ୍ଧ ପାଖରେ କାହାର ଗୋଟିକିଆ ଘରକୁ ଯାଇ ପାଣି ମାଗି ପିଇଲି । ଗୋଟିଏ ଦରବୁଢ଼ୀ ସ୍ତ୍ରୀ ଲୋକର ମୁହଁ ଦିଶିଯାଏ । କେଡ଼େ ସ୍ନେହରେ କହୁଥିଲା- ''ଆହା, କାହା ଘର ପିଲା ବଳଟେରେ ବାପା, ଏଡ଼େ ଝୋଲାମରା ଉଦୁଉଦିଆ ଖରାରେ ଏକୁଟିଆ କୁଆଡ଼େ ଯାଉଚୁ ? ବସିଯା ଏଇଠି, ଛାଇ ନେଉଟିଲେ ଯିବୁ ।''

''ନାଇଁ ମ ମାଉସି, ତରତର ହଉଚି ପରା, ଡେରି ହେଇଯିବ ।'' ଗଲା ଜରିପଡ଼ା, ଉରାଳି, ଗୋପାଳପୁର, ଆଗରେ ରେଲ୍ ପୋଲ । ତଳେ କାଠଯୋଡ଼ି ନଈ । ନଈରେ ପାଣି ଅଛି ।

କିଏ ଜଣେ ବାଟୋଇ ପଶିଗଲା, ତା' ପଛେ ପଛେ ମୁଁ ବି ପଶିଗଲି । ପାଣି ହେଲା ଜଙ୍ଘେ, ତା'ପରେ କମିଲା । ଆରପାଖେ କଟକ । ବାଲିଏ ବାଲିଏ ଯାଇ ବନ୍ଧକୁ ଉଠିଲି । ବାଟ କୁଆଡ଼େ ?

ମୁଁ ମନେରଖିଛି—ତେଲେଙ୍ଗା ବଜାର, ସାମନ୍ତ ହଷ୍ଟେଲ୍ କେଉଁଠି ପଚାରୁ ପଚାରୁ ବାଟ ମିଳିଗଲା ।

ବେଳ ବୁଡୁଥାଏ । ମୁଁ ସାମନ୍ତ ହଷ୍ଟେଲ୍‌ରେ ପହଞ୍ଚିଲି । ଏଇ କ'ଣ ସେଇ ଜାଗା ? ଏଇଠି ଥିବେ ଭାଇ ନୁହେଁ ?

''କିଏ ତୁମେ ? କାହାକୁ ଖୋଜୁଛ ?'' କିଏ ଜଣେ ପଚାରିଲେ । ମୁଁ ଯଦୁ କାହ୍ନୁଙ୍କ ପରିଚୟ ଦେଲି । ଆଗ ନେଲେ ଯଦୁଙ୍କ ପାଖକୁ । ଦେଖିଲି, ସେ ନୁହନ୍ତି । ତା'ପରେ ନେଲେ କାହ୍ନୁଙ୍କ ପାଖକୁ । ''କ'ଣ ଦରକାର ?'' କାହ୍ନୁ କହିଲେ । ଦେଖିଲି, ସେ ନୁହନ୍ତି । ମୋର ଆଶା ବୁଡ଼ିଗଲା । ବହୁତ ପିଲା ମତେ ଘେରିଗଲେ । ତା'ପରେ ମତେ ନେଲେ ମୋ ଭାଇ ଯଦୁ, କାହ୍ନୁଙ୍କ ପାଖକୁ ।

''କିରେ ଗୋପ ?''

ଆଉ ମୁଁ ଭୋ ଭୋ କାନ୍ଦିଲି ।

ସେମାନେ ଉଦ୍‌ବିଗ୍ନ ହେଲେ, ଅସ୍ଥିର ହେଲେ, ଗାଁରୁ ମୁଁ ଏକୁଟିଆ ଆସିଛି, ଆଗରୁ କିଛି ଖବର ନାହିଁ, ତା'ପରେ କିଛି ନ କହୁଣୁ ଭେଁ । ''ଆରେ କହରେ—କହରେ ବାପା ବୋଉ ଭଲ ଅଛନ୍ତିଟି ? ଆରେ କ'ଣ ହେଲା ?''

''ଭାଇ ମୁଁ—ପଢ଼ିବି—''

କଥାଟା ସେମାନେ ଶୁଣିଲେ । ବହୁତ ଆଶ୍ଚର୍ଯ୍ୟ ହେଲେ, ଦୁଃଖିତ ହେଲେ । ରାତିରେ ଆଉ ଗାଁକୁ ଖବର ପଠାଇବା ଉପାୟ ନ ଥିଲା, ତଥାପି ସେମାନେ ଚେଷ୍ଟା କଲେ ।

ମତେ ଖୁସି କରିବାକୁ ଆଣି ଦେଲେ ପେଡ଼ା । ସେକାଳର ସେ ପେଡ଼ା ଆଉ ମିଳୁ ନାହିଁ । ମୋ ମନରେ ଛକ ପଶିଯାଇଛି, ତେଣୁ ମୁଁ ଏଭଳି ଗୋଟିଏ ଦୁଃସାହସିକ କାର୍ଯ୍ୟ କରିଛି, —ମୋ ସଙ୍ଗରେ ବ୍ୟବହାର କରିବାକୁ ପଡ଼ିବ ଖୁବ୍ ସାବଧାନତା ସହକାରେ, ସେମାନେ ଆପଣା ଆପଣା ଭିତରେ ମନ୍ତ୍ରଣା କରି ଏହି ସିଦ୍ଧାନ୍ତରେ ପହଞ୍ଚି ସାରିଥିଲେ ।

ତହିଁଆରଦିନ ବାପା-ବୋଉଙ୍କ ପାଖକୁ ଖବର ଦେଲେ । ମୁଁ ଗାଁକୁ ଫେରିଯିବାକୁ ନାହିଁ କରିଦେଇ ଅଡ଼ି ବସିଲି ଯେ ମୁଁ ବି ଇସ୍କୁଲ୍‌ରେ ପଢ଼ିବି, କଟକରେ ସେହିମାନଙ୍କ କତିରେ ସେଇଠି ରହିବି ।

"ହଉ, ହଉ, ସେଇଆ କରିବା—" ସେମାନେ କହିଲେ । ତହିଁଆରଦିନ ସେମାନେ ମତେ ପି. ଏମ୍. ଏକାଡ଼େମି ସ୍କୁଲକୁ ନେଇ ଯାଇଥିଲେ, କେଉଁ କ୍ଲାସ୍‌ରେ ମତେ ବସାଇ ଦେଇଥିଲେ ।

କଟକରେ ଯେଉଁ ଦି'ଦିନ ରହିଲି ସେତକ ବେଳ ସେମାନେ ମୋର ଖୁବ୍ ଚର୍ଚ୍ଚା କଲେ, ଅନେକ ସ୍ଥାନ ମତେ ବୁଲାଇ ଦେଖାଇ ତା'ପରେ ଦିନେ ମତେ ସଙ୍ଗରେ ଘେନି ଗାଁକୁ ଆଣିଲେ । ବାପା ବୋଉ ଆଦୌ ରାଗିଲେ ନାହିଁ ।

ବାପା ମୁହଁ ଶୁଖେଇ କହିଲେ "ତତେ ମୁଁ କ'ଣ କହିଲି ବୋଲି ତୋ ମନରେ ଏତେ ଛକ ପଶିଗଲା ଯେ ତୁ ପଳେଇଲୁ, ହଇରେ ? ହଉ । ତୁ ପଢ଼ିବୁ । ପାଠ ପଢ଼ିବୁ ବୋଲି ତୋର ଯଦି ଏଭଳି ମନ ଡାକିଲାଣି ଯେ ତୁ ଘରୁ ପଳେଇଗଲୁ ତୁ ନିଶ୍ଚୟ ପଢ଼ିବୁ, ମୁଁ ଯାହା ଭାବୁଥିଲି ତା' ଭୁଲ୍, ସଙ୍ଗେ ସଙ୍ଗେ ଭଗବାନ୍ ତା'ର ଜବାବ୍ ଦେଇଦେଲେ । ତୋ ଦେଇ ବହୁତ ପାଠ ହେବ । ହଇହୋ, ତେମେ ଶୁଣୁଚ, ଯେମିତି ମନ ସେମିତି ହଉ ମୁଁ ମୋ ପୁଅକୁ ପାଠ ପଢ଼େଇବି । ମୁଁ ଠାକୁରଙ୍କୁ କହିଲିଣି, ଏଥର ମତେ ଗୋଟାଏ ଚାକିରି ମିଳିଯିବ, ମନକଲେ ଆସୁଥିବ ବାଟରେ ଥିବ, ମୁଁ ଯିବି—"

"ତମର ସେ ଦେହ ଆଉ କାହିଁ ସେ ବଳ ଆଉ କାହିଁ ତେମେ ବିଦେଶ କରିଯିବ ପିଲାକୁ ପାଠ ପଢ଼େଇବ ବୋଲି ?"

"ନ'ହେଲେ କିଏ ଆଉ କରିବ କହୁନା ? ନାଃ, ଯେ ଭଗବାନଙ୍କ ନିର୍ଦ୍ଦେଶ, ତାଙ୍କ ଇଚ୍ଛା, ମୁଁ ପୁଣି ଚାକିରି କରିଯିବି ଖାସ୍ ଯେ ପଢ଼ିବ ବୋଲି ।" ମତେ କହିଲେ "ଆଉ ଅଳ୍ପ କେଇଟି ଦିନ ମ, ସେଇଠୁ ତ ଆମେ ଯିବା, ତୁ ସେତେଦିନଯାକେ ଟିକିଏ ସବୁର୍ କର, ଖେଳୁଥା, ବୁଲୁଥା, ଟିକିଏ ଟିକିଏ ବହି ଉପରେ ଆଖି ପକାଉଥା । ଆଉ ତତେ କେହି ଗାଳି ଦେବେ ନାହିଁ ।"

କ୍ଷୋଭରେ ବୋଉକୁ କହିଲେ–"ଶୁଣିଲ, —କି ଦଶା ! ପାଠ ପଢ଼େଇ ପାରିଲି ନାହିଁ ଯେ ପୁଅ ମୋର ଅଭିମାନ କରି ଘରୁ ପଳେଇଲା ! ବସୁଧା କ'ଣ ଆଉ ଥରେ ଦି'ଭାଗ ହେବ ନାହିଁ ମତେ ମୋ ଲାଜ ଲୁଚେଇବାକୁ ଥାନ ଟିକିଏ ଦେବାକୁ ?"

ତହିଁର ଅଳ୍ପ କେଇଦିନେ ବାପା କାହାଠୁଁ ଚିଠି ପାଇ ଗଲେ ପୁରୀ, ସେଠି କାହା ସଙ୍ଗେ ସାକ୍ଷାତ୍ କଲେ । ଆସିଲାବେଳେ ମୋ ପାଇଁ ଗୋଟିଏ ଆଠ-ଅଂଶିଆ ହଳଦିଆ ପେନ୍‌ସିଲ୍ ଆଣିଥିଲେ । କହିଲେ "ଯାକୁ ମତେ ସମୁଦ୍ର ଦେଲା । ନେ ।"

"ସମୁଦ୍ର କେମିତି ଦେଲା ବାପା ?"

"ସମୁଦ୍ର କୂଳରେ ବୁଲୁଥିଲି । ଗୋଟିଏ ଢେଉ ଆସି ପିଟି ହେଲା ଆଉ ମୋ ଗୋଡ଼ ପାଖେ ଏ ପେନ୍‌ସିଲ୍‌ଟିକି ଫୋପାଡ଼ି ଦେଲା । ଯା ଅର୍ଥ, ଖୁବ୍ ଶୀଘ୍ର ମତେ ଚାକିରି ମିଳିଯିବ ଓ ମୋ ପୁଅ ଯିବ, ପାଠ ପଢ଼ି ।"

କେତୋଟି ଦିନ ପରେ ଦର୍ପଣି କୋର୍ଟ-ଅଫ୍-ୱାର୍ଡ୍‌ସରୁ ତାଙ୍କ ପାଖକୁ ଗୋଟିଏ ନିଯୁକ୍ତି ପତ୍ର ଆସିଲା, ବାରିକ୍‌ମିସ୍ତ୍ରୀ ବିଭାଗର ଓଭରସିଅର କାମ । ବାପା ମତେ ସଙ୍ଗରେ ଘେନି ଗଲେ ।

ଧାନମଣ୍ଡଳରେ ରହିଲୁଁ । ଯେଉଁ ପୁରୁଣା ଘରଟି ଏବେ ଅଞ୍ଚଳ-ଅଫିସ୍ ହୋଇଛି ସେ ତାଙ୍କର ବସା । ସେ ନିଜେ ରାନ୍ଧନ୍ତି, ମତେ ଘରେ ପଢ଼ାନ୍ତି, ପାଠ ଦେଇ ଯାଆନ୍ତି କାମକୁ ।

ସେ ମତେ କିଛି କିଛି ଅଙ୍କ ପଢ଼ାଉଥିଲେ, ଲୀଳାବତୀ ସୂତ୍ରରୁ କିଛି କିଛି ଶିଖାଉଥିଲେ, ସବୁ ମୁଁ କାଳକ୍ରମେ ଭୁଲିଗଲି, କିନ୍ତୁ ସେତେବେଳେ ବାପାଙ୍କ ତୁଣ୍ଡରୁ ପଦେ ସାବାସ୍ ଶୁଣି ମୁଁ ଭାରି ଖୁସି ହେଉଥିଲି ଓ ମନଦେଇ କାମରେ ଲାଗୁଥିଲି । ସେ ପାଠ ଅପେକ୍ଷା ବେଶି ଜୋର୍ ଦେଉଥିଲେ ପ୍ରକୃତି

ଅଧ୍ୟୟନ ବିଷୟରେ, ସଙ୍ଗରେ ବୁଲେଇ ନେଇ ନାନା କଥା ବୁଝାଉଥିଲେ । ତୁଣ୍ଡେ ତୁଣ୍ଡେ ବହୁତ ଉପାଖ୍ୟାନ ସେ କହନ୍ତି, ପ୍ରତି ଉପାଖ୍ୟାନରୁ ଶିଖିଲା ଭଳି ସେଥିରେ କିଛି ନୀତି ଥାଏ ।

ସ୍ଥାନ ଉପରକୁ ନେଇ ବଣପାହାଡ଼ମୟ ଗଡ଼ଜାତକୁ ମତେ ଚିହ୍ନାଇ ଦେଇଥିଲେ ମୋ ବାପା, ତା'ର ଆରମ୍ଭ ସେହି ଦର୍ପଣିରୁ । ସେତେବେଳେ ଦର୍ପଣିରେ ସ୍ଥାନେ ସ୍ଥାନେ ଘନ ଅରଣ୍ୟ । ମୋର ମନେପଡୁଛି ତାଙ୍କ ସଙ୍ଗରେ ଚାଲି ଚାଲି ଧାନମଣ୍ଡଳରୁ ମହାବିନାୟକ ଯିବାବେଳର ଦୃଶ୍ୟ । ରାସ୍ତାର ଦୁଇଆଡୁ ବଣ ଚାପି ଆସିଥାଏ, ବଡ଼ ବଡ଼ ଗଛ, ବାଟରେ ବଣୁଆ ହାତୀର ପାହୁଲ ଓ ଘୁଅ ପଡ଼ି ପଡ଼ି ଯାଇଥାଏ, ପାହାଡ଼ରେ ସ୍ଥାନେ ସ୍ଥାନେ ଶଳପ ଗଛ, ବାପା କହନ୍ତି 'ରାମ-ଗୁଆ', ଗୁଆ ନ ଥିଲେ ତା ଫଳକୁ କୁଆଡ଼େ ଗୁଆ ପରି ବ୍ୟବହାର କରିହୁଏ, —ମୁଁ ଜାଣେ ନାହିଁ ।

ମହାବିନାୟକ ଦେଖି ମତେ ଭାରି ଖୁସି ଲାଗିଲା । ଘନ ଜଙ୍ଗଲ ଘୋଡ଼ିହୋଇ ପର୍ବତ । ତାହାରି ଉଚ୍ଚ ଡାଲୁରେ ଫଳ ଭର୍ତ୍ତି ଆମ୍ବ ପଣସ ତୋଟା ତଳେ ନାନା ପରନର ଦେଉଳ, ପାନ୍ଥଶାଳା, ପାହାଡ଼ରୁ ଫୁଟି ସାନ ସାନ ଜଳପ୍ରପାତ ସୃଷ୍ଟି କରିଥିବା ଝରଣା, ବଗିଚା । ମହାବିନାୟକ ଆଜିକାଲି ତୁନିତାନି ଛିନା ଛିନା ପଡ଼ିରହିଛି, କିନ୍ତୁ ସେତେବେଳେ ସେଠି ବହୁତ ଯାତ୍ରୀଙ୍କର ଭିଡ଼ ଲାଗିଥାଏ, ଏଠି ସେଠି ସାନ ସାନ କୁଡ଼ିଆ କରି କେତେ କେତେ ବାବାଜି ଓ ସାଧକ ରହିଥାନ୍ତି । ପରିବାର ଘେନି କିଛିକାଳ ରହିଯାଆନ୍ତି ଅନେକ ଯାତ୍ରୀ । ସେତେବେଳେ ସେଠି ଶହ ଶହ ପାତିମାଙ୍କଡ଼ । ବହୁତ ଉଚ୍ଚରେ ପାନ୍ଥଶାଳାରେ ବସି ଚାରିଆଡ଼େ ତାଙ୍କରି କୌତୁକ ଖେଳ କସରତ୍ ଯୁଦ୍ଧ ଓ ଦୁଷ୍ଟାମି ଦେଖୁ ଦେଖୁ ସମୟ ଅଣ୍ଟେ ନାହିଁ । ସୁଆରମାନେ ବଡ଼ ବଡ଼ ହଣ୍ଡାରେ ଦେଉଳରୁ ପ୍ରସାଦ ମୁଣ୍ଡାଇ ଆସିଲାବେଳେ ବେଳେ ବେଳେ ପାତିମାଙ୍କଡ଼ମାନେ ଗଛ ଚଢ଼ିଲା ପରି ମଣିଷ ଦେହରେ ଚଢ଼ି ମୁଣ୍ଡକୁ ଉଠି ହଣ୍ଡାରେ ମୁହଁ ହାତ ପୂରାଇ ଖାଇଯାଆନ୍ତି । ଜେଉଁଠି ପଞ୍ଚାଏ ଭକ୍ତ ପଙ୍ଗତରେ ବସିଥିଲାବେଳେ ହଠାତ୍ ସେହି ପତ୍ରରେ ବସିପଡ଼ନ୍ତି ପାତିମାଙ୍କଡ଼ମାନେ, ଦଳପତିଙ୍କୁ ଘେନି ଥରେ ଦଳ ଆସି ପହଞ୍ଚିଗଲେ ଆଉ ତାଙ୍କୁ ଘଉଡ଼ି ଦେବାକୁ କେହି ସାହସ କରନ୍ତି ନାହିଁ । ଗୋଟିଏ ଦଳପତି ଆମ ବସାକୁ ଅନେକ ସମୟରେ ଖାଇଲାବେଳେ ଆସେ, ଖୁବ୍ ହୃଷ୍ଟପୁଷ୍ଟ, ପହିଲ୍‌ମାନ୍ ପରି ଚେହେରା, ତାକୁ କିଛି ଖାଇବାକୁ ଦେଲେ ସେ ଚାଲିଯାଏ । ତୀର୍ଥ କ୍ଷେତ୍ରରେ କୁକୁର କେତୋଟି

ବି ବୁଲୁଥିଲେ, କିନ୍ତୁ ମାଙ୍କଡ଼ମାନଙ୍କୁ ସେମାନେ ଡରି ଡରି ଚଳନ୍ତି, ଦଳପତି ଗୋଟିଏ କୁକୁର ଉପରେ ଘୋଡ଼ା ଚଢ଼ି ଆଗ ଠାଇ ଠାଇ ଝାବୁଡ଼ା ପିଟି ତା'ପରେ ତା ବେକ ପାଖରେ ପୂକାଏ କାମୁଡ଼ି ଦେବା ଦୃଶ୍ୟ ମୁଁ ଦେଖିଥିଲି ।

ମନେପଡୁଛି, ଜଣେ ସୁନ୍ଦର ଚେହେରା ଗେରୁଆପିନ୍ଧା ବାବାଜି ସେଠି ଥିଲେ, ସେ ବାପାଙ୍କ ସଙ୍ଗରେ କଥାଭାଷା ହୁଅନ୍ତି । ବଙ୍ଗଳା କହନ୍ତି, ବେଳେ ବେଳେ ସୁନ୍ଦର ବଂଶୀ ବଜାନ୍ତି । ବାପା କହୁଥିଲେ, ସେ ଖୁବ୍ ବିଦ୍ୱାନ୍ । ଆଉ ମନେପଡୁଛି, ଗୋଟିଏ କୁଡ଼ିଆ ଭିତରେ ଜଣେ ଖୁବ୍ ବୁଢ଼ା ବାବାଜି ଥିଲେ, ନିଶ ଦାଢ଼ୀ ଝୋଟ । ସେ ଘରର ପଛ କାନ୍ଥ ଗୋଟାଏ ପ୍ରକାଣ୍ଡ ପଣସ ଗଛର ଗଣ୍ଡି । ସେଥିରେ ବହୁତ ପଣସ ଫଳିଥାଏ ।

ପ୍ରାୟ କୋଡ଼ିଏ ପଚିଶି ଦିନ ମୁଁ ବାପାଙ୍କ ସଙ୍ଗେ ବୁଲିଥିଲି । ତା'ପରେ ମତେ ସେ ଗାଁକୁ ପଠାଇଦେଲେ, ନିଜେ ରହିଗଲେ । ହାତୀ, କୁତ୍ରା, ବାଘ, ମୟୂରଙ୍କ ବୋବାଳି ମୁଁ ଶୁଣି ଆସିଲି, ସେମାନଙ୍କ ଘର ଦେଖି ଆସିଲି, ଶୁଣି ଆସିଲି ନାନା କାହାଣୀ, ଅନ୍ୟମାନଙ୍କ ଆଗରେ ଗପିବାକୁ ।

ଦି' ତିନି ମାସ ପରେ ବାପାଙ୍କ କାମ ସେଠି ସରିଗଲା, ସେ ଘରକୁ ଆସିଲେ । ଅଳ୍ପଦିନ ପରେ ସୋନପୁରର ମହାରାଜା ପୁରୀ ଆସି ତାଙ୍କୁ ଡକାଇଲେ ଓ ପୁଣି ତାଙ୍କ ପୁରୁଣା ଚାକିରିରେ ଯୋଗଦେବାକୁ ତାଙ୍କୁ ଅନୁରୋଧ କଲେ, ସେ ରାଜି ହେଲେ । ସୋନପୁରର ବାରିକ୍ ମିସ୍ତ୍ରୀ ବିଭାଗର ମୁଖ୍ୟ କର୍ତ୍ତା, ପଦବୀ ଓଭରସିଅର, ଲୋକ-ତୁଣ୍ଡରେ "ଉଗ୍ରେସର" । ବେତନ ପଚାଶ ଟଙ୍କା । ଯା ପୂର୍ବରୁ ସେ କରିଥିଲେ ସୋନପୁରରେ ମହାନଦୀର ପଥର-ବନ୍ଧ, ତାକୁ କହନ୍ତି, 'ଚିର', ତା'ଛଡ଼ା ରଜା ନଅର, ନାନା ପୋଲ, କୋଠାବାଡ଼ି, ସଡ଼କ, ଜଳସେଚନ ଯୋଜନା ଆଦି । ଏଥର କରିବେ ସୋନପୁର ଆରମୁଣ୍ଡରେ ତେଲନଦୀର ପଥରବନ୍ଧ, ସୁବର୍ଣ୍ଣମେରୁ ମନ୍ଦିର ସମେତ ଅନେକ ପ୍ରାଚୀନ ମନ୍ଦିରର ମରାମତ, ଆଉ ଅନେକ କାମ ।

"ଏଥର ତୁ ଇସ୍କୁଲ୍‌ରେ ନାଁ ଲେଖେଇବୁରେ ଗୋପ—", ବାପା ମତେ କହିଲେ । ମୁଁ ଖୁସି ହେଲି ।

୧୯୨୩ ର ଅଗଷ୍ଟ କି ସେପ୍‌ଟେମ୍ବର ମାସ, ବାପା ଓ ମୁଁ ନାଗବାଲି ଛାଡ଼ିଲୁଁ ।

ଅନେକ ଲୋକ ତାଙ୍କ ଆଶୀର୍ବାଦ ନେବାକୁ ବା ତାଙ୍କଠୁଁ ବିଦା ହେବାକୁ ତାଙ୍କ କତିକି ଆସିଥିଲେ । ସମସ୍ତେ ଦିନ ଦିନ ଲାଗି ତାଙ୍କୁ ମନା କରୁଥିଲେ

''ଏ ବୟସରେ ଚାକିରି କରିବାକୁ ଆଉ ଏତେଦୂରକୁ ଯା'ନ୍ତୁ ନାହିଁ, କୋଉ ପାଖ ବାଟ ହେଇଚି ? ବୟସ ଅଣଷଠି ପୂରିବା ଉପରେ, ଦେହ ଜରାଗ୍ରସ୍ତ, ସ୍ୱାସ୍ଥ୍ୟ କେବେ କେବେ ଖରାପ ହେଉଛି, ଏ ଅବସ୍ଥାରେ ଖରା-ତରାରେ ବଣ ଜଙ୍ଗଲରେ ଗସ୍ତବୁଲା କାମ ଏତେ ଖଟଣି କ'ଣ ଦେହରେ ଯିବ ? ଦେହ ବାଧିକା ପଡ଼ିଲେ ସେଠି କେଉଁ ହାରିଗୁହାରି ଅଛି ?''

ବାପା ସେ ଉପଦେଶ ଶୁଣିଲେ ନାହିଁ, କହିଲେ ''କାହାର ଦେହଟା କାଳକଯାକ ସେମିତି ରହିଥିବ ଯେ ସେଥିପାଇଁ ଏତେ ଲୋଭ ? ଯାହା ହେବାର ଥିବ ତାକୁ ଅଟକେଇବ କିଏ ? ଜଙ୍ଗଲରେ ବୁଲିଲେ ଅଧିକା ହେବ ନା ଘରେ ବସିଥିଲେ ଅଟକେଇ ହେବ ? ନା, ଯେତେଦିନ ଯାକେ ଆପଣା ଦେହରେ ବଳ ଥିବ ସେତେଦିନ ଯାକେ ଆପଣା ଦାୟିତ୍ୱ ଆପେ ସମ୍ଭାଳିବା ଉଚିତ୍ । ପିଲା ଯୋଡ଼ିଏ ପଢୁଛନ୍ତି । ଏଣ୍ଟ୍ରେନସ୍ ପାଶ୍ କଲେ ଆହୁରି ପଢ଼ିବେ ନା ତାଙ୍କ ପାଠ କ'ଣ ଏଇଠୁ ସାରିଦେବା ? ଯେ ଗୋଟିକ ପଛରୁ ଲାଗି ଆସୁଛି, ଇସ୍କୁଲ୍‌ରେ ନାଁ ଲେଖି ତା ଯତ୍ନ ନେଲେ ସେ ମଣିଷ ହୁଅନ୍ତା । ଘରର ଅବସ୍ଥା ଯାହା, ତେଣେ ସେ ପିଲାଟି ପାଟ୍‌ନାରେ ଅଛି ଯେ ଏଡ଼େ ମହଙ୍ଗା ଜାଗାରେ ବିଦେଶରେ ସେ ଆପଣା କୁଟୁମ୍ବ ପୋଷିଲାବେଳକୁ ତାକୁ ବାଧା, ଆଉ କାହା ବୋଝ ସେ ସମ୍ଭାଳିବ ? ମୋର କ'ଣ ହେଇଯାଇଚି କି ମୁଁ ଖାଲିଟାରେ ଘରେ ପଡ଼ି ରହିଥିବି ?''

୧୯୨୬ ଜୁଲାଇ ପହିଲାରେ ଯେଉଁ ମଣିଷ ଏ ସଂସାର ଛାଡ଼ିଦେଇ ଚାଲିଗଲେ, ୧୯୨୬ ଅପ୍ରେଲ୍ ୨୫ ତାରିଖରେ ସେ ସୋନପୁରରୁ ବାହାରି ସୋନପୁର-ବଉଦ ସରିହଦ ଚିହ୍ନ ଟାଣିବା ପାଇଁ କୁଆଘରା ବୋଲି ଗୋଟିଏ ସ୍ଥାନରେ ପହଞ୍ଚିଥିଲେ, ବାଷଠି ବର୍ଷ ବୟସରେ କ୍ରମାନ୍ୱୟ ସତର ଦିନ କାଳ ବଣ ଜଙ୍ଗଲରେ ବୁଲି ପର୍ବତ ଚଢ଼ି, ସର୍ଭେ କରି ମେ ମାସ ୧୨ ତାରିଖରେ ସୋନପୁର ଲେଉଟି ଆସିଲେ, ଜୁନ୍ ୬ ତାରିଖ ପର୍ଯ୍ୟନ୍ତ ସେ ଦିନ ଦିନକର କାର୍ଯ୍ୟ ଡାଇରି ନିଜ ହାତରେ ଲେଖି ଯାଇଛନ୍ତି । ତା'ପରେ ଲେଖିଛନ୍ତି ''୭-୬-୨୬'', କିନ୍ତୁ ଡାଇରି ଲେଖିବାକୁ ବସି ପୁଣି କେଉଁଥିପାଇଁ ସେ ଆଉ କିଛି ଲେଖି ପାରିନାହାନ୍ତି, ତା'ର ଅଳ୍ପଦିନେ ସେ ପାଟ୍‌ନା ଗଲେ ଓ ୧-୭-୨୬ରେ ଦେହ ଛାଡ଼ିଲେ । ଅପ୍ରେଲ ୨୬ ତାରିଖରେ ସେ 'ସାନ ନରିଆ' ପର୍ବତର ଶିଖ ଉପରେ ଚଢ଼ି କୁଆଘରାରୁ ସେଠିକି ବି. ଜି. ଲାଇନ୍ ନେଇଥିଲେ । ଅପ୍ରେଲ୍ ୨୭ରେ, ୨୮ରେ, ୨୯ରେ ଏହିପରି ପ୍ରତିଦିନ ସେ

ସୋନପୁର ରାଜ୍ୟର ସେକ୍ରେଟେରୀ (ଦେୱାନ୍) ଓ ଅନ୍ୟାନ୍ୟମାନଙ୍କ ସଙ୍ଗରେ କୁଆଘରା ଛାଉଣୀରୁ 'ସାନ ନରିଆ' ପର୍ବତର ଶିଖଯାକେ ଚଢ଼ିଛନ୍ତି ଓହ୍ଲେଇଛନ୍ତି । ଅପ୍ରେଲ ୩୦ରେ, ମେ' ୧ରେ ସେମାନଙ୍କୁ ସଙ୍ଗରେ ଘେନି କୁଆଘରାରୁ 'ବଡ଼ନରିଆ' ପର୍ବତ ଶିଖକୁ ଚଢ଼ିଛନ୍ତି ଓ ଓହ୍ଲାଇଛନ୍ତି । ମେ ୨ରେ 'ବାଘମାଡ଼ି' ଓ 'ନରିଆ ପର୍ବତ' ପାଖରେ ଥିବା ସୋନପୁର ରାଜ୍ୟର ସନ୍ଧିରୁ 'ମୁଣ୍ଡିପଥର' ପର୍ଯ୍ୟନ୍ତ ଯାଇଛନ୍ତି, ମେ ୩ରେ ଅନ୍ୟମାନଙ୍କୁ ସଙ୍ଗରେ ଘେନି ମୁଣ୍ଡିପଥରରୁ କୁଆଘରା ଦେଇ ବେଲ୍‌ଖୋଲା ଯାକେ ସୀମା ଦେଖାଇ ଯାଇଛନ୍ତି । ୪ ତାରିଖରେ 'ନରିଆ ଦେବତା' ପର୍ବତରୁ 'ମାଙ୍କଡ଼ଡିଆଁ' ପର୍ବତ ଶିଖଯାକେ ସନ୍ଧି ଗାର ପକାଇଛନ୍ତି ଓ ମେ ୯ ତାରିଖ ଯାକେ ୫, ୬, ୮ ଓ ୯ ତାରିଖ ଦିନ ପ୍ରତ୍ୟହ 'ମାଙ୍କଡ଼ଡିଆଁ ପର୍ବତ' ଉପରେ 'ପର୍ବତ ସର୍ଭେ' କରି କରି ସନ୍ଧି ଗାର ପକାଇଛନ୍ତି, ୯ ତାରିଖରେ 'କୁଆଘରା' ଫେରିଛନ୍ତି । ୧୦ ତାରିଖରେ ପୁଣି ସେହି ପର୍ବତ ସର୍ଭେ କରିଛନ୍ତି । ୧୧ ତାରିଖରେ ସର୍ଭେ କାମ କରିସାରି ସର୍ଭେ ଲାଇନ୍‌କୁ କାଗଜରେ ପ୍ଲଟ୍‌କରି ନକ୍ସା ତିଆରି କରି ଦାଖଲ କରିଛନ୍ତି, ୧୨ ତାରିଖରେ ସୋନପୁର ଫେରିଛନ୍ତି ଓ ସେହି ଦିନଠୁଁ ୭-୬-୨୬ରେ ଲେଖା ଅଟକିବା ଯାକେ ପ୍ରତ୍ୟହ ଯାହା ଯାହା କଲେ ତା ସେ ଡାଇରିରେ ଲେଖିଛନ୍ତି ।

କର୍ତ୍ତବ୍ୟ-ପାଳନ କଲାବେଳେ ଆପଣା ଉପରେ ତାଙ୍କର ଉପ୍ରୋଧ ନ ଥିଲା, ସେ ବାରମ୍ବାର କହନ୍ତି 'କାର୍ଯ୍ୟଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ ।'

ନୀତି-ପାଳନରେ ବି ସେ କଠୋର ଓ ନିଷ୍ଠାପର ଥିଲେ ।

ତାଙ୍କ ଆଖିରେ ମଣିଷଠି ବଡ଼ ତା'ର ସଦ୍‌ଗୁଣର ମହକ, ଆଉ କିଛି ନୁହେଁ, ଧନ ସମ୍ପତ୍ତି, କି କ୍ଷମତା, କି ଚେହେରା ତ ଆଦୌ ନୁହେଁ । ଆପଣା ବଂଶର ଓ ଆପଣା ଦେଶର ପରମ୍ପରାର କାହାଣୀ ଭିତରୁ ନାନା ଉଦାହରଣ ଦେଇ ସେ ଅନୁପ୍ରାଣିତ କରନ୍ତି, ଶାସ୍ତ୍ରପୁରାଣରୁ ଉପାଖ୍ୟାନଗୁଡ଼ିକ କହନ୍ତି, ସେ ମଣିଷମାନେ ଯେ ଥିଲେ ଓ ସେସବୁ କାହାଣୀ ଯେ ସତ ଏଥିରେ ତାଙ୍କର ଆଦୌ ସନ୍ଦେହ ନ ଥିଲା ।

ଭବିଷ୍ୟତକୁ ସେ ତାଙ୍କ ଯୋଗବଳରେ ଦେଖି ପାରୁଥିଲେ ଓ ମରିବା ଆଗରୁ ଆପଣା ମରିବା ତାରିଖ ଓ ସମୟ ସେ ପାଞ୍ଜିରେ ଲେଖି ଯାଇଥିଲେ । ମରିବାର ୩ ବର୍ଷ ପୂର୍ବରୁ ସେ ତା ଜାଣି ସାରିଥିଲେ କି ସେହି ଯେଉଁ ବର୍ଷ ପାଞ୍ଜିରେ ଲେଖିଲେ ସେତିକିବେଳେ ଜାଣିଲେ—ତା କହି ହେବ ନାହିଁ ।

ସେ କେଉଁ କାର୍ଯ୍ୟ କରିବେ ବୋଲି ଯାଉଛନ୍ତି, ସେଥିରେ ପରିଶ୍ରମ କେତେ, ଅସୁବିଧା କେତେ ତା ସେ ନିଶ୍ଚୟ ଜାଣିଥିଲେ । ନିଜର ବଳ ଓ ବୟସ ବିଷୟ ତାଙ୍କୁ ଅଜଣା ନ ଥିଲା । ସବୁ ଜାଣିଶୁଣି ସେ ଯେଉଁପରି ଭାବରେ ଗଲେ ତହିଁରେ ନିହିତ ଥିବା ଆତ୍ମୋତ୍ସର୍ଗର ଦୃଷ୍ଟାନ୍ତ ଅତି ମହନୀୟ ।

ଯେତେବେଳେ ମୁଁ ଥକିଯାଏଁ ସେତେବେଳେ ତାଙ୍କର ଶେଷ ସ୍ମୃତି ସେହି ସାନ ଡାଇରିଖାତାକୁ ଖୋଲେ ଓ ତାଙ୍କ ହାତ ଅକ୍ଷରକୁ ପଢ଼େ । ବାଷଠି ବର୍ଷ ବୟସରେ ମରିବାର ଦେଢ଼ମାସ ଆଗରୁ ଯେଉଁ ଲୋକ କାହିଁ ନରିଆ ପର୍ବତ କାହିଁ ମାଙ୍କଡ଼ଡିଆଁ ପର୍ବତ ଉପରେ ଚଢ଼ି ପର୍ବତ ସର୍ଭେ କରି ବିବାଦୀୟ ସୀମାଗାର କାଢ଼ି ଚିହ୍ନ ଦେଉଥିଲା ତାହାରି ଅଦମ୍ୟ ସାହସ ଓ କର୍ମପ୍ରେରଣା କଥା ମନେ ପକାଏ । ଅବିକଳ ଯେମିତି ମୁଁ ଭାବେ ଯେ ଫକୀରମୋହନ ତାଙ୍କୁ ଷାଠିଏ ବର୍ଷ ହେଲା ପରେ ଉପନ୍ୟାସ ଲେଖିବା ଆରମ୍ଭ କରିଥିଲେ । ଉଦାହରଣ ତା' ଉପରେ ଲଦି ହୋଇ ପଡ଼େ । ମଧୁବାବୁ ଅତି ବୃଦ୍ଧାକାଳ ପର୍ଯ୍ୟନ୍ତ ନିଷ୍ଠାପର ଭାବରେ ଓକିଲାତି କରୁଥିଲେ । ଆର୍ତ୍ତବାବୁ ମରିବାର ଅଳ୍ପ ସମୟ ଆଗରୁ ବି ବିଛଣାରେ ପଡ଼ି ଓଡ଼ିଆ ମହାଭାରତ ବିଷୟରେ ତାଙ୍କର ପ୍ରବନ୍ଧକୁ ଡାକି ଦେଉଥିଲେ । ମରିବାଯାକେ କାମ କରିବା ଗୋଟାଏ ସୌଭାଗ୍ୟ । ସେ ଗୌରବ ସେ ସୌଭାଗ୍ୟ ସମସ୍ତିଙ୍କୁ ମିଳେ ନାହିଁ ।

ବାପା ଯେ ଘରୁ ଗୋଡ଼ କାଢ଼ିଲେ, ଗାଁ ଛାଡ଼ିଲେ, ଆଉ ଫେରିଲେ ନାହିଁ । ସେଆଡ଼େ ସେଆଡ଼େ ଗଲେ ପାଟ୍‌ନା, ସେଉଠୁ ଗଙ୍ଗାକୂଳ । ମୁଁ ଯେ ତାଙ୍କ ସଙ୍ଗରେ ଗାଁରୁ ଗଲି, ଗଲି ବୋଧହୁଏ ସବୁଦିନ ପାଇଁ ।

''ଆମ୍ଭ ଗ୍ରାମ ନାଗବାଲି, ଡାକଘର ଫୁଲନଖରା, ଥାନା କଟକ ସଦର, ଜିଲ୍ଲେ କଟକ !'' ବୋଉକୁ ସେତେବେଳେ ନେଲେ ନାହିଁ, —''ତୁମେ ଗଲେ ଘର ଉଜୁଡ଼ିବ ଯେ, —ଏ ପିଲା ଦୋ'ଟିଙ୍କ କଥା କିଏ ବୁଝିବ ? ସାମନ୍ତ ହଷ୍ଟେଲ୍‌ରେ ଏ ଶେଷ ବର୍ଷଟା ସିନା ରହିବେ, ଛୁଟି ହେଲେ ଘର ବୋଲି ତ ଦଉଡ଼ି ଆସୁଥିବେ !'' ତାଙ୍କ ଦେହ ବେମାର ଖବର ପାଇ ବୋଉ ଗଲା ୧୯୨୬ ଆରମ୍ଭ ସରିକି, ସେତେବେଳେ ଯାକେ ସୋନପୁର ବସାରେ ଏକା ବାପା ଓ ମୁଁ ।

ମୁଁ ଗାଁକୁ ଆସିଲି ୧୯୩୦ରେ, ସାତ ବର୍ଷ ପରେ, କିନ୍ତୁ ଗାଁରେ ରହିବି ବୋଲି ନୁହେଁ, ବୁଲି ଆସିଥିଲି । ୧୯୨୬ରେ ବୋଉ ଗାଁରୁ ଚାଲିଗଲା ପରେ ଆମ ଘର ତିନିବଖରାକ ବେମରାମତ ହୋଇ ଭାଙ୍ଗିପଡ଼ିଲା, ୧୯୨୩

ସରିକି ସେ ପୁରୁଣା ହୋଇଯାଇଥିଲା । ୧୯୩୦ରେ ଧ୍ରୁବଭାଇଙ୍କ ବିଭାଘର ହେଲା । ସେଥିପାଇଁ କାହ୍ନୁଭାଇ ଧ୍ରୁବଭାଇ ମିଶି ଘର ତିନି ବଖରା ଠିଆ କରିଥିଲେ, ନିଜେ କାମ କରିଥିଲେ, ମୁଁ ପାଟ୍‌ନାରୁ ଫେରିଲାବେଳେ ସେହି ଘର ଥିଲା । ମୁଁ କଟକରେ ରହି କଲେଜରେ ପଢ଼ିଲି, କାହ୍ନୁଭାଇ କଟକରେ ରହିଲେ, ଧ୍ରୁବଭାଇ ବୋଉ ଓ ଭାଉଜବୋଉଙ୍କୁ ଘେନି ଚାକିରି ଗାଁକୁ ଗଲେ, ୧୯୩୪ ସୁଦ୍ଧା ସେ ଦୁର୍ବଳିଆ ଘରଟି ବି ଭାଙ୍ଗିଗଲା, ଡିହ ପଦା ହେଲା । କଟକରେ ଥିବାଯାକେ ୧୯୩୯ ଯାକେ ଅକାଳେ ସକାଳେ କେବେ କେବେ ମୁଁ ଗାଁକୁ ଯାଇଛି, ରହିବାକୁ ନୁହେଁ, ବୁଲି । ବଡ଼ଭାଇ ଯେଉଁ ଘରଟି ଗାଁରେ ତୋଳିଲେ ସେ ହେଲା ୧୯୫୬ରେ, ଗାଁର ଆରମୁଣ୍ଡରେ ଗାଁ ବସ୍ତିଠୁଁ ଦୂରରେ । ସେ ଏକପ୍ରକାର 'ଅପୋଡ଼ା-ପୃଥ୍ୱୀ', ସେଠି ଆଗେ କେହି ଚୁଲି ଜାଳି ନ ଥିଲା ।

ଘର ପଡ଼ି ରହିଲା, ଆମେ ଗଲୁଁ ଚାଲି । ମନେପଡ଼ିଯାଏ, ପଶ୍ଚିମ ପାଖ ଘରେ ବାପା ବସି ଧ୍ୟାନ କରନ୍ତି, କେତେ କଥା କହନ୍ତି ତା'ପରେ । ମଝିଘର ପିଣ୍ଡାରେ ଦି' ପହରେ ବୋଉ ବସି ପୁରାଣ ପଢ଼େ । ପୂର୍ବପାଖ ଘରେ ରୋଷେଇ ହୁଏ, ସେଇ ଘର କାନ୍ଥରେ ମରାହୋଇ ରହିଥିଲା କେତେ କଡ଼ା କଉଡ଼ି । ବୋଉ କହେ ମୋ ଜନ୍ମବେଳର ।

କେତେ ହସ କାନ୍ଦ କେତେ ଦୁଃଖ ସୁଖ ସେଇ ଘରେ, ସେଇ ପିଣ୍ଡାରେ, ସେଇ ଦୁଆରେ ।

ପଶ୍ଚିମ ପାଖେ ଘରକୁ ଲାଗି ଉଚ୍ଚ ଡିହ-ବାରି, ବାପା ସେଠି ବାଡ଼ ବୁଜିକରି ଦେଇଥିଲେ, ଅପର୍ଯ୍ୟାପ୍ତ ପରିବା ଲଗାଇଥିଲେ । ଏବେ ସେଠି ଖାଲ, ନଈବନ୍ଧ ଉଚ୍ଚ କଲାବେଳେ କାନ୍ତରଟି ସେଠୁ ସବୁ ମାଟି ତାଡ଼ି ନେଇଛି ।

ଘର ଡିହ ପଦା, —ବାପାଙ୍କ ଧ୍ୟାନ କଲା, ଜ୍ୟୋତିଦେଖା ସ୍ଥାନ, ମୋର ଖେଳିବା ପଢ଼ିବା ବିଶିରାମାୟଣ ବୋଲିବା ସ୍ଥାନ, ଆମ ସମସ୍ତିଙ୍କର ଏକଦା ଆଶ୍ରୟସ୍ଥଳ, ସେହି ଯାହାକୁ ବର୍ଷା ତୋଫାନ ଦାଉରୁ ରକ୍ଷା କରିବୁ ବୋଲି ଆମେ ଚାଳକୁ ଧରି ଓହଳି ପଡୁଥିଲୁ—

ଫୁଙ୍ଗା ପଡ଼ିଛି ସେ ସ୍ଥାନ, ତହିଁରୁ କେତେ ମାଟି କିଏ କୁଆଡ଼େ ବୋହି ନେଇଛି । କେତେ ତଡ଼ାହୋଇ ପଡ଼ିଥିବ ବନ୍ଧ ଉପରେ । ବନ୍ଧ ଖୁବ୍ ଉଚ୍ଚ ହୋଇଛି, ଓସାର ହୋଇଛି ।

ଆମ ଘରର ପଥର ଖୁଣ୍ଟଗୁଡ଼ିକ, ପଥର ପାହାଚଗୁଡ଼ିକ, ଘରର ଯେତେ

କାଠଖୁଣ୍ଟ, ଗୋବମରା କବାଟ, ଖଟ ପଲଙ୍କ, ଅଣ୍ଟାଏ ଉଞ୍ଚ ସିନ୍ଦୁକମାନ, ପେଡ଼ିମାନ, ବାକ୍‌ସମାନ, ଗଛ ପିଲିସଜ, ରୁଖା, ଗଙ୍ଗାଳ, ବାସନକୁସନ, ଗୁଡ଼ହାଣ୍ଡି, ତେଲମାଠିଆ, ଘିଅମାଠିଆ, ହାଣ୍ଡି ହାଣ୍ଡି ବଡ଼ି ଓ ଆଚାର, ଯେତେ ଘରକରଣା ଜିନିଷ ଯେତେ ଆଳୁକୁଚି ମାଳୁକୁଚି—

ନାହିଁ ସେସବୁ, କିଏ ନେଇଯାଇଛି ।

ସେହି 'କିଏ'ର ଅନ୍ୟ ନାଁ 'ସମୟ',—'କାଳ' —ସେ କେତେବେଳେ କାହା ବେଶରେ ଆସେ । ସେ ନାଁରେ କିଛି ଯାଏ ଆସେ ନାହିଁ ।

କେତେ ଲୋଭ ଥିଲା ମୋ ବୋଉର ସେ ଘର ପ୍ରତି ! ମାଛିଟାଏ ସତେ କି ସେଠି ସେ ବସେଇ ଦେବ ନାହିଁ । ବାପା ବି ଗାଈଗୋରୁ ରଖିଥିଲେ, ନିଜେ ହାତରେ ଖୁରପି ଧରି ଘାସ ଛେଲି ଆଣନ୍ତି ଗାଈକି ଖୋଇବେ ବୋଲି । କାହାନ୍ତି ସେ ଗୋରୁ ?

ବାପା ବେଳେ ବେଳେ ସକାଳୁ ଉଠି ବୋଲନ୍ତି ମନବୋଧ ଚଉତିଶା, ଆମ୍ଭକୁ ଘୋଷାନ୍ତି, ତା ତାତ୍ପର୍ଯ୍ୟ ବୁଝାନ୍ତି । ବୋଉ ଯେତେବେଳେ 'ମୋର' 'ମୋର' ହୁଏ ସେତେବେଳେ ସେ ଏକାଦଶ ସ୍କନ୍ଧରୁ ଦାର୍ଢ୍ୟତାଭକ୍ତିରୁ ପଦ ଉଦ୍ଧୃତ କରି ଉଲୁଗୁଣା ଦିଅନ୍ତି । ସେ ସଂସାରରେ ରହି ଆସକ୍ତିଶୂନ୍ୟ । ସେ କହନ୍ତି—ଜନକ ମହର୍ଷିଙ୍କ ଆଦର୍ଶ ହିଁ ଅଧିକ କଠିନ, ବାହାଦୁରି ସେଇଥିରେ ବେଶି ।

> "ସବୁଥିରେ ଥିବ—କାହିଁରେ ନ ଥିବ—
> ପଦ୍ମ ପତ୍ରରେ ପାଣି—
> ପୋଖରୀ ଭିତରେ ହଂସ—"

ସେହିକଥା ବାରମ୍ବାର କହୁଥିଲେ ସେ ।

> "ଏସବୁ ଦି'ଦିନିଆଁ—କେଳା କୁହୁକ—
> ରହିବ ନାହିଁ ଯେ ସବୁ ଦିନେ—
> ଏଗୁଡ଼ା ବାହାରର ଲାଗେ, ଛାଡ଼ିଯାଏ,
> ବଢ଼େ, ଛିଡ଼ିଯାଏ ।

ଆଉ କାହିଁକି ଆସୁଛ ? ଭଗବାନଙ୍କୁ ମନେ ରଖିଥିବ, ସେଇ ଆମ ସମସ୍ତିଙ୍କର ସହାୟ, ତାଙ୍କ ବିନା ଆଉ କିଏ ଅଛି ? ଯାଅ । ଭଗବାନ ତୁମକୁ ଆଶୀର୍ବାଦ କରନ୍ତୁ ।"

ଢରିପଡ଼ା ଗଲା, ଦୁଇ ବାଙ୍କ ଉହାଡ଼ରେ ଗାଁ ରହିଲାଣି ଅଦୃଶ୍ୟ ହୋଇ । ମୁହଁ ପୋଛିଲେ । "ଜନମ ମାଟିର ମୋହ କାଟିହୁଏ ନାହିଁରେ ଗୋପ । ଚାଲ୍‌, ମୋ' ହାତ ଧର୍‌, ପଛକୁ ଅନାନ୍ତି ନାହିଁ ।"

ସେ ସତେକି କଥା କହନ୍ତି ଆମ୍ଭାକୁ ଲାଖ କରି, ମୋ' ସଙ୍ଗରେ କଥା କହିଲାବେଳେ ବି ବଡ଼ ମଣିଷ ସଙ୍ଗେ କଥା କହିଲା ପରି କହନ୍ତି । ଏପରି ମୁଁ ଅନ୍ୟତ୍ର ଦେଖିଛି କେବଳ ସଭ୍ୟତାର ଆର ମୁଣ୍ଡରେ । କନ୍ଧ ସମାଜରେ । ମୁଁ ସତେକି ସାନପିଲା ନୁହେଁ, ତାଙ୍କର ସମାନସ୍କନ୍ଧ, କିନ୍ତୁ ମୋ ପାଇଁ ଉପଦେଶ ଲୋଡ଼ା, ଏହିପରି ତାଙ୍କର ବ୍ୟବହାର ମୋ ପ୍ରତି ସବୁଦିନେ ।

ଲୋକେ କହନ୍ତି ସେ ଗୃହୀ ହୋଇ ମଧ୍ୟ ପରମ ସାଧକ, ସନ୍ୟାସୀ, ତତ୍ତ୍ୱଜ୍ଞ, ଅନାସକ୍ତ ଯୋଗୀ ପୁରୁଷ ।

ସେମାନେ ତାଙ୍କଠୁଁ ବିଦା ହେଲେ କାନ୍ଦି କାନ୍ଦି । ହାଡ଼ି, ପାଣ, ବାଉରି, କଣ୍ଡରା, ଧୋବା, ଗଉଡ଼, କେଉଟ, ଚଷା, ବଢ଼େଇ, କମାର, କୁମ୍ଭାର, ମହାନ୍ତି, ବ୍ରାହ୍ମଣ, ମୁସଲ୍‌ମାନ—ଗାଁର ଭାଇମାନେ । ବଣିଆ ବାଉରି ମୋ ବୋଉର ଭାଇ, ସେ ମୋ ବଣିମାମୁଁ, ହନୁମନ୍ତ ପରି ବଳିଷ୍ଠ ଗଢ଼ଣ । ଚନ୍ଦା ନାହାକ ଅବଧାନଙ୍କ ସ୍ତ୍ରୀ ଓ ଶରଦୀ ଗଉଡୁଣୀ (କୁରୁପାର ବୋଉ) ମୋ ବୋଉର ଝିଅ, ଭରତ ବଢ଼େଇ ଓରଫ ଶ୍ରୀ ଭକ୍ତବତ୍ସଳ ମହାରଣା ମୋର ଦାଦି—ସରୁ ବେକରେ ପ୍ରକାଣ୍ଡ କଣ୍ଠା, ବେକକୁ ହଲେଇ ହଲେଇ ଅଣାକାରଙ୍କ ଭଜନ ବୋଲନ୍ତି ଭାରି ଚମତ୍କାର ସ୍ୱର ଛାଡ଼ିଦେଇ, – କେତେ – କେତେ – ସେମାନେ । ନାଗବାଲିର ସେତିକି ବିଶିଷ୍ଟତା ଥିଲା, ଜାତି ଅଜାତି ଶ୍ରେଣୀ ସାନ ବଡ଼ ବୋଲି ଭେଦାଭେଦ କାହା ମନରେ ନ ଥିଲା । ଆମ ଘରକୁ ନୂଆ ବୋହୂଟିଏ ଆଇଲେ ତାଙ୍କ ଘର ମାଇପେ ତାଙ୍କ ବିଶିଷ୍ଟ ବେଶ ପିନ୍ଧି ବୋହୂ ଦେଖି ଆସୁଥିଲେ, ତାଙ୍କ ବୋଲିରେ ଜଣାଇଁ ଯାଉଥିଲେ ହୃଦୟର ଅନାବିଳ ସ୍ନେହ, ପରମ ଆନନ୍ଦରେ–

"ଇବେ, ଏଇଟା ଆମ ଗୋପାଳିଆ ମାଇପ ରେବ, —କାହା ଦେରେ (ପରି) ହେଇଚି ବା, ତା ବୋପା ଦେରେ କି ମା ଦେରେ ବା—ଦେଖେଁ ଦେଖେଁ—ଆହା-ହା କି ଶୋଭା ମୁହଁ, ଅନ୍ଧାର ଘର ଆଲୁଅ କରିବ ପରା, କୋଟି ପରମାଇ ହେଇଥାଲୋ ମୋ ମା' ରାଣୀ, କାଚ ବଜର ହେଉ, ଆମ ଗୋପାଳିଆକୁ ଘଣ୍ଟ ଘୋଡ଼େଇ ରଖିଥା ରେ—ବାବା ନୀଳକଣ୍ଠେଶ୍ୱର—"

ପଛଆଡୁ ଶାଶୁଙ୍କ ନିର୍ଦ୍ଦେଶ—"ଗୋଡ଼ତଳେ ପଡ଼ ବୋହୂ, ଯେ ତମ ଆଇଶାଶୁ ହେବେ, —ଆଇ ୟା'ଙ୍କୁ, ଯେ ତମ ବଡ଼ ଯାଆ ହେବେ ପରା—ଆଉ ୟା'ଙ୍କୁ, ଯେ ତମ ପିଇସୀଶାଶୁ ହେବେ ପରା—"

"ମରିଯାଉଥାଏଁଟି—କାଚ ବଚ୍ଛର ହଉଲୋ ମା, —ଥାଉ ଥାଉ ହେଲା ହେଲା—ଉଠ୍-ଉଠ୍‌ବେ, —ହେ ମାହାପୁରୁ—ଆର ବରଷ ଏଇଦିନକୁ—ମୋ ବୋହୂ କୋଡ଼ରେ ଏଡ଼େ ବକଟେ ଦେଇଥିବଟି, ଫଳନ୍ତି ଗଛ, ଫଳ ଅଜାଡ଼ି ପକୋଉ—ମୋ ଗୋପାଳିଆ ପୁଅ ଘର କରୁ ହେ ମାହାପୁରୁ—"

ମନେପଡ଼େ ଦିନକର କଥା । ୧୯୩୮ ହୋଇପାରେ, ବାପା ମରିବାର ୧୨ ବର୍ଷ ପରେ । ଗାଁକୁ ବୁଲି ଯାଇଥିଲି । ଗଲି ଧାନଘର ପଡ଼ା, ଆମ ଗାଁଠୁ ବନ୍ଧେ ବନ୍ଧେ ଗୋବିନ୍ଦପୁର ଆଡ଼କୁ ମୋଡ଼ିଁଲେ ଆଗ ପଡ଼ିବ ସେ । ସେଠି କିଛି ମୁସଲ୍‌ମାନ୍ ବସ୍ତି, ଆଉ ସେଠି ଜଇଦାଦିଙ୍କ ପ୍ରଥମା ସ୍ତ୍ରୀଙ୍କ ବାପଘର, ଅର୍ଥାତ୍ ମନୁଅପା ମାମୁଁଘର ।

ବାଉଁଶ ଗଛ ଛାଇ ତଳେ ନଇଁ ନଇଁ ଆସିଲା ବୁଢ଼ୀଟିଏ ଅଣ୍ଟାରେ ହାତ ଦେଇ ମୋ ମୁହଁକୁ ଅନାଇଁ ରହି କହିଲା—

"କ୍ୟା ବୋଲା ବାବା, ନାଗବାଲି ? ନାଗବାଲିରେ ଘର ? ତୁ କାହାର ବଚ୍ଛା ବେଟା ? ମୋର ସୁର୍‌ଜା ଭାଇକି ପହଚାନୁ ?"

"ହଁ ମାଉସୀ, ମୋ ଘର ନାଗବାଲି, ମୋ ବାପା ସୂର୍ଯ୍ୟମଣି ମହାନ୍ତି ।"

"ଏଁ ! ଏଁ ! ମୋ ସୁର୍‌ଜା ଭାଇକା ବେଟା ?" ବୁଢ଼ୀ ଆସି ମୋ ହାତକୁ ଧରି ପକାଇଲା, ମୁହଁରୁ ହସ ବୋହିଯାଉଚି, କହିଲା "ଆରେ ତୁ କୋନ୍ ବେଟା ରେ ? ଗିରିଆ ? ନା—ଓ ତ ସବ୍‌ସେ ବଡ଼ା ବେଟା ହମାରୀ । ଏ ଧୂଳିଆ ? ଏ କହ୍ନେଇ ? ବୋଲୋ ବଚ୍ଛା—କହ୍ନେଇ ? କୌନ୍ ? ଆରେ ତୁ କ୍ୟା ଗୋପିଆ ?"

"ଠିକ୍ କହିଲ, ମୁଁ ଗୋପିଆ ମାଉସୀ ।"

"ଏଁ !" ବୁଢ଼ୀ କାନ୍ଦ୍ କାନ୍ଦ୍, "ମୋ ଗୋପୁଲି—" ମୁହଁ ଅଣ୍ଡାଳିବାକୁ ହାତ ବଢ଼େଇଦେଲେ, ମୁଁ ନଇଁପଡ଼ିଲି, କହିଲେ—"ଗୋପ । କେଡ଼େ ବକଟେ ହେଇଥିଲୁ—ହାଃ ହାଃ ହାଃ—ମୂଷାଛୁଆ—ଇଆଦ୍ ହେ ବୁଢ଼ୀକୁ ବାପ ? —ମେରୀ ଜାନ୍—ଖୋଦାତାଲ୍ଲା ତେରା ଭଲା କରେ ରେ ବେଟା—ଆଉ ମୋ ଆଖିକି ଦିଶୁନାହିଁ ବାପା—ବୋଲୋ ବଚ୍ଛା—ମୋ ସୁର୍‌ଜା ଭାଇ କୈସା ହେ । କୋଉକାକୁ ଦେଖିନାଇଁ, —ଆଉ ଯାଇ ଆସି ପାରୁନାଇଁ—ତା ପିଠିର ଭଉଣୀଟା ମୁଁ, କୈସେ ହାମ୍‌କୋ ଭୁଲ୍‌ଗିଆ, —ସୁର୍‌ଜା ଭାଇ ଭଲା ଅଛିଠି ବେଟା ? ମଜ୍‌ବୁତ୍

ଅଛି ? କହୁନୁ କାଇଁକି ? ଏଁ ! ମେରା ଭାଇ—''

ମୁଁ କହିପାରୁ ନ ଥାଏ ।

କିଏ ଗୋଟିଏ କହିଲା, ବୋଧହୁଏ ଶାମ ସାଂନ୍ତରା, ତାକ ନାଁ ମନୁ, ସମ୍ପର୍କରେ ମୋର ମାମୁଁ କିନ୍ତୁ ସେ ମତେ ଦଣ୍ଡବତ କରେ । ସେଇ ବୋଧହୁଏ କହିଲା ଯେ ମୋ ବାପା ଆଉ ନାହାନ୍ତି, ମଲେଣି ବାରବର୍ଷ ହେଲା ।

ତୁ ତୁ କରି ମୁଣ୍ଡକୁ ତଳେ ବାଡ଼େଇ ଦାଣ୍ଡଧୂଳିରେ ଗଡ଼ି ବୁଢ଼ୀ ବଡ଼ପାଟିରେ ବାହୁନି ବାହୁନି କାନ୍ଦିଲେ ।

''ଆରେ ମେରୀ ସୁରଜା ଭାଇରେ—ଆଉ ତତେ କାହୁଁ ପାଇବିରେ—ତୁ କାହାଁ ଚାଲ୍‌ଗିଆ—ତେରା ଛୋଟା ବେହେନ୍‌କୁ ସାଥ୍ ନାହିଁ ଲିଆରେ— ।''

ମେରୀ ଭାଇ କାହାଁ ଚଲାଗିଆରେ—ବାରବର୍ଷ ପରେ ପୁଣି ଥରେ ବାପା ମୋ ଆଗରେ ମରିଥିଲେ, ବାଉଁଶବଣର ଛାଇ ତଳେ ଧାନଘରପଡ଼ା ଗାଁ ଦାଣ୍ଡରେ ତାଙ୍କର ଭଉଣୀର ଛାତିଫଟା ବାହୁନାରେ ।

ଜାଣି ନ ଥିଲି ସେ ତାଙ୍କର ଭଉଣୀ ।

ସେ ମିଆଁ ଶମ୍‌ସେର୍ ଖାଁଙ୍କ ଜନ୍ମଦାତ୍ରୀ ।

ସେହି ସେ ନାଗବାଲି ଧୂଳିର ବିଶିଷ୍ଟ ଗୁଣ, ଆଉ ପ୍ରାଚୀନ ଓଡ଼ିଶାର । ସେଠି ଆଖି ପଇଠି ଆତ୍ମାକୁ ଚିହ୍ନେ, ଜାତି ଧର୍ମର ଭେଦ ନାହିଁ, ଆବରଣ ନାହିଁ ।

ଯେଉଁମାନେ ବଢ଼େଇ ଦେଖାନ୍ତି, ମଣିଷଙ୍କୁ ନାକ ଟେକନ୍ତି, ନିଜର ଢମ ବଖାଣନ୍ତି ଆଉ ମାପି ବସନ୍ତି ନିଜ ରକ୍ତରେ ଅନ୍ୟ କେଉଁ ଦେଶର କେଉଁ ଜୀବର ରକ୍ତର କେତେ ଭାଗ ମିଶିଛି, ଯେଉଁମାନେ ପ୍ରକାଣ୍ଡ ପ୍ରକାଣ୍ଡ 'ସାଜ୍ଝା' ଓ 'ବଂଶାନୁବଳୀ' ଗଢ଼ିବାରେ ପ୍ରୟାସୀ ହୁଅନ୍ତି, ଆମେ ଜାଣୁ ସେମାନେ ଖାନ୍ଦାନୀ ନୁହନ୍ତି, ସବୁଠୁଁ ବେଶି ଖାନ୍ଦାନୀ ବେଶି ଆଭିଜାତ୍ୟ ଏ ଦେଶର ମାଟି ।

ଏକ ଏଠି ସମସ୍ତେ । ମନୁଷ୍ୟ ଧର୍ମର, ମାନବିକ ଏକତାର ପ୍ରତୀକ ଜଗନ୍ନାଥ ।

ଖୋର୍ଦ୍ଧାରେ ଦେଖିଛି ପରସ୍ପରକୁ ଦଣ୍ଡବତ କଲାପରି ମୁହାଁମୁହିଁ ହୋଇ ଗାଁ ଗୋହିରିର ଏପାଖେ ସେପାଖେ ଠିଆ ହୋଇଥାନ୍ତି ଦେଉଳ ଆଉ ମସ୍‌ଜିଦ୍ । ମାଣିକାଘୋଡ଼ା (ମାଣିକୀଗଡ଼)ର ମାଣିକ ଭୂୟାଁଣୀକୁ ପ୍ରତିଷ୍ଠା କରିଥିଲା କନ୍ଧ, ପୂଜା କରେ ହିନ୍ଦୁ, ଦଶହରା ପୂଜା ଆରମ୍ଭରେ କୁଶବଟୁ ନାଇ 'ସଂକଳ୍ପ' କରି ବସନ୍ତି ମୁସ୍ଲିମ୍ ଦଳବେହେରା, ଦେବୀ ପଟୁଆର କରି ଆସି ପ୍ରତି

ମୁସ୍‌ଲିମ୍ ଘର ଆଗରେ ବିଜେ କରି ଗୃହସ୍ଥ ଦେଉଥିବା ଭୋଗ ପାଆନ୍ତି । ଅସଂଖ୍ୟ ଏପରି ଉଦାହରଣ ।

ବାପା କହୁଥିଲେ, –"ଏକ ବ୍ରହ୍ମ, ଦ୍ୱିତୀୟ ନାସ୍ତି । ସକଳ ଘଟେ ନାରାୟଣ । ଯେ କୃଷ୍ଣ, ସେ ଆଲ୍ଲା, ସେ ଖ୍ରୀଷ୍ଟ, ସବୁ ଧର୍ମରେ ଅବତାରମାନେ ହୋଇଛନ୍ତି, ସବୁ ଯୁଗରେ ସାଧୁସନ୍ଥ ଥିଲେ । ସବୁ ଧର୍ମକୁ ସମ୍ମାନ କରିବ, କୌଣସି ଧର୍ମକୁ ନିନ୍ଦା କରିବ ନାହିଁଟି ।"

୧୯୨୩ ଅଗଷ୍ଟ ମାସରେ ଗାଁରୁ କଟକ ଯାଇ ରେଳ ଚଢ଼ି ବାପା ଓ ମୁଁ ଗଲୁଁ କଲିକତା । ଥରେ ପାଟ୍‌ନା ଯାଇ ପାଟ୍‌ନାରୁ ଆସିବା, ଧାନମଣ୍ଡଳ ଯିବା ଓ ଆସିବା, ରେଲ୍ ଚଢ଼ା ମୋର ଅଚିହ୍ନା ନୁହେଁ, ନୂଆକରି ଦେଖିଲି କଲିକତାରେ ଟ୍ରାମ୍ ଗାଡ଼ି, ପାଞ୍ଚମାହଲା ସାତମାହଲା କୋଠା, କଲିକତାର ଯାଦୁଘର, ଚିଡ଼ିଆଖାନା, କାଳି ଠାକୁରାଣୀ, ଦର୍ଶନୀୟ ସ୍ଥାନଗୁଡ଼ିକ । ଏଡ଼େ ବଡ଼ ସହର, କିନ୍ତୁ ସତେ ଯେମିତି ଖାଇ ଗୋଡ଼େଇଲା, କାହାରି ଆଉ କାହାରି ସଙ୍ଗରେ ସମ୍ପର୍କ ନାହିଁ, ଏକାଠି ଥାଇ ସୁଦ୍ଧା କେହି କାହାର ନୁହେଁ, ପର ଲୋକେ ।

ସେଠି ଆମେ ରହିଲୁ ପଦ୍ମପୋଖରୀ ରୋଡ଼ରେ ସୋନପୁର ମହାରାଜାଙ୍କ ଘରେ ।

ମହାରାଜା–

ଜୀବନରେ କେବେ ରାଜା ଦେଖି ନ ଥିଲି, ମନେ ମନେ ଭାବିଥିଲି କେତେ କ'ଣ । କାହାଣୀରେ ଶୁଣିଛି ରାଜାମାନଙ୍କ କଥା, ସେମାନେ ଅସାଧାରଣ । ସେହି ଧାରଣା ଘେନି ଦେଖିଲି ମହାରାଜା ଶ୍ରୀ ବିରମିତ୍ରୋଦୟ ସିଂହଙ୍କୁ, ଜଣେ ବୃଦ୍ଧ ଲୋକ, ଗମ୍ଭୀର । ହସ ମାଡ଼ିଲେ ଓଠ ଚାପି ଅଳ୍ପ ହସନ୍ତି । ସାଧାରଣ ମନୁଷ୍ୟ ତ ! ସେମିତି ରକ୍ତମାଂସର ଶରୀର । ଦଣ୍ଡବତ ସାରି ତୁନିହୋଇ ଠିଆହୋଇ ରହିଥିଲି ।

ଥରେ ତାଙ୍କ ସଙ୍ଗରେ ବାପା ଓ ମୁଁ ମଟରରେ ବସି କୁଆଡ଼େ ଗଲୁଁ । ତାଙ୍କ ପଛେ ପଛେ ଆମେ ସମସ୍ତେ ବି ଗୋଟିଏ ଘରର ପିଣ୍ଡା ପାଖରେ ଓହ୍ଲାଇ ପଡ଼ିଲୁଁ, ଭିତରକୁ ଖବର ଗଲା । ତା'ପରେ ଆମେ ଗଲୁଁ ଜଣକୁ ଦେଖି । ବସିଥିଲେ ଜଣେ ଡେଙ୍ଗା ଗୋରା ଲୋକ, ବଡ଼ ମୁହଁ । ମହାରାଜା ନମସ୍କାର କଲେ । ସେ ଭଦ୍ରଲୋକ ଉଠିପଡ଼ି ଦଣ୍ଡବତ କରି ବଙ୍ଗଳାରେ କହିଲେ–

"କିଏ ? ସୋନପୁର ଆସିଛନ୍ତି ?"

ମହାରାଜା ରହିଲେ, ଆମେ ଚାଲିଆସିଲୁଁ । ସ୍ୱୟଂ ମହାରାଜା ଯାହାଙ୍କ ଘରକୁ ନିଜେ ଗଲେ ସେ ନିଶ୍ଚୟ ସେହିପରି କିଏ ହୋଇଥିବେ ବୋଲି ଅନୁମାନ କଲି । ବାପା କହିଲେ ସେ ବିଜୟ ମଜୁମ୍‌ଦାର୍, ବ୍ୟାରିଷ୍ଟର୍, ମହାରାଜାଙ୍କ ପରାମର୍ଶଦାତା, ମହାରାଜା ତାଙ୍କୁ ଖୁବ୍ ଖାତିରି କରନ୍ତି । ସେ ଅନ୍ଧ ହୋଇ ଯାଇଛନ୍ତି । କିନ୍ତୁ ତାଙ୍କର ବୁଦ୍ଧି ଖୁବ୍ ପ୍ରଖର ।

ସେହି ସେ ବିଜୟ ମଜୁମ୍‌ଦାର୍ ଯେ ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ଆଗ୍ରହୀ ଥିଲେ ଓ କିଛି ଲେଖାଲେଖି କରିଥିଲେ । ସୋନପୁର ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ । ସେ ,ଗୋଟିଏ ତମ୍ବାପଟାରେ ଲେଖା ହୋଇଥିବା ଯଯାତିକେଶରୀଙ୍କ ରାଜଧାନୀର ଅବସ୍ଥିତି ବିଷୟକ ଖୋଦିତ ଅକ୍ଷରକୁ ମହାନଦୀ ଓ ତେଲନଦୀର ସଙ୍ଗମସ୍ଥଳ ଅର୍ଥାତ୍ ସୋନପୁର ବୋଲି ପଢ଼ି ବ୍ୟାଖ୍ୟା କରିଥିଲେ, କିନ୍ତୁ ପଛେ ଅନ୍ୟମାନେ ତାକୁ ପଢ଼ିଲେ ମହାନଦୀ ଓ ଚିତ୍ରୋତ୍ପଳାର ସଙ୍ଗମସ୍ଥଳ ବୋଲି, ତେଣୁ ସୋନପୁର ଆଉ ଯଯାତିକେଶରୀଙ୍କ ରାଜଧାନୀ ବୋଲି ଚିହ୍ନିତ ହୋଇପାରିଲା ନାହିଁ ।

କଲିକତାରେ ଆମେ ଯେଉଁ ପଦ୍ମପୋଖରୀ ସଡ଼କ (ପଦ୍ମ ପୁକୁର୍ ରୋଡ଼୍) ଉପରେ ଗୋଟିଏ ଘରେ ଥିଲୁଁ ସେ ଜାଗାଟି ଫାଙ୍କା ଫାଙ୍କା, ଆଉ କରେ ଯେଉଁ ବିଶାଳ ପ୍ରାସାଦ ଥାଏ ବାପା କହିଲେ ସେ ଗୋଟିଏ ଧୋବାର, ଧୋବା ଖୁବ୍ ଧନୀ । ସେ ପ୍ରାସାଦଟି ଆମେ ଥିବା ନଅରଠୁଁ ଆହୁରି ବଡ଼ ।

ପଦ୍ମପୋଖରୀ ନାଁ ଶୁଣି ଖୁସି ହୋଇଥିଲି, ଭାବିଥିଲି ଆମ ଗାଁ ପୋଖରୀ ପରି ଏଠି ବି ବହୁତ ପଦ୍ମ ଫୁଟିଥିବ । ଦିନେ ଗଲି ବୁଲି । ପୋଖରୀ ଦେଖିଲି । ପଦ୍ମ ନାହିଁ, ଦଳ ଭୁଟୁଭୁଟୁ । ନିରାଶ ହେଲି ।

ସେହି ଘରେ ଦେଖିଲି ଦାମ୍-ମାମୁଁଙ୍କୁ ।

ସେ ମୋ' ବୋଉର ଦାଦିପୁଅ ଭାଇ । କିନ୍ତୁ ବୋଉ ତଳେ ସବା ବଡ଼ ଭାଇ ସେ, ପରେ ମାମୁଁଘର କହିଲେ ତାଙ୍କରି ପୁଅ ନାତିମାନଙ୍କ ସଙ୍ଗେ ହିଁ ସମ୍ପର୍କ ରହିଲା । ମାଇଁ ମରିଥାନ୍ତି ବହୁଦିନୁଁ । ସାନପୁଅ ବୃନ୍ଦାବନ ମୋ ସାଙ୍ଗର, ମୋ ତଳ କ୍ଲାସ୍‌ରେ ପଢୁଥିଲା ହଠାତ୍ ମରିଗଲା । ମଝିଆଁପୁଅ ମଦନଭାଇ ମୋଠୁଁ ଦୁଇ ତିନି ବର୍ଷ ବଡ଼ । ତାଙ୍କର ଚାରିପୁଅ ଛଅ ଝିଅ । ମଦନ ଭାଇ ମୋର ଦୁଇକ୍ଲାସ୍ ଉପରେ ପଢୁଥିଲେ । ଏକା ସ୍କୁଲ୍‌ରେ ଓ ଏକା କଲେଜ୍‌ରେ ଆମେ ଥିଲୁଁ । ପଛେ ଠାଏ ଏକା ସ୍ଥାନରେ ଚାକିରି କରିଛୁଁ । ବଡ଼ପୁଅ ନଟଭାଇ ତାଙ୍କଠୁଁ ଆଉ ସାତ ବର୍ଷ ବଡ଼ । ସେ ପାଠପଢ଼ା ବନ୍ଦ କରିଥାନ୍ତି । ସେ ସୋନପୁରରେ ରହିଲେ ।

ଦାମ ମାମୁଁ ୧୯୪୯ରୁ ଗଲେଣି । ଡେଙ୍ଗା, ଅତିକାୟ, ଅତିମୋଟା ମଣିଷ । ପ୍ରକାଣ୍ଡ, ଠିଆ ହେଲେ ଦୁଆର ମୁହଁ ବନ୍ଦ ହୋଇଯାଏ । ତାଙ୍କ ପେଟ ପରସ୍ତ ପରସ୍ତ ଗଦି ପରି, ଆଉଜି ଶୋଇବାକୁ ସୁଖ ଲାଗେ । ପ୍ରତି ନିଶ୍ୱାସରେ ସ୍ପ୍ରିଂଲଗା ଖଟ ଉପରେ ଡନ୍‌ଲୋପିଲୋ ଗଦି ପରି ସେ ପେଟ ଉଠୁଥାଏ, ପଡୁଥାଏ, ମାମୁଁ ପିଠି ଥାପଡ଼ୋଉଥାନ୍ତି, ମୋଟା ନରମ ଗଦି ପରି ହାତପାପୁଲି, କହନ୍ତି "ଶୋଇପଡ଼ ଭଣଜା । ଶୁଅ ବାବା, ଶୁଅ ।" ଅତି କୋମଳ ଶାନ୍ତ ମିଷ୍ଟଭାଷୀ ସ୍ନେହୀ ମଣିଷ ଦାମ ମାମୁଁ, ବିଚାରବନ୍ତ ମଣିଷ । ସେ ଖୁଆନ୍ତି ବହୁତ । ନିଜେ ଖାଦ୍ୟପ୍ରିୟ । ସେ ସୋନପୁର ମହାରାଜାଙ୍କର ବୁଦ୍ଧିମାନ୍ ଓ ସୁଦକ୍ଷ କର୍ମଚାରୀ ଥିଲେ, ପଦବୀ—'ଭଣ୍ଡାର ବହିଦାର' । ବହୁତ ଜନପ୍ରିୟ ହୋଇଥିଲେ । ଦୁଃଖୀ ରଙ୍କି ଅଭାବୀ ଲୋକଙ୍କୁ ସାହାଯ୍ୟ କରନ୍ତି, ଦାନ ପୁଣ୍ୟ କରନ୍ତି, ତାଙ୍କର ବ୍ରତ ଉପାସ ପୂଜାଓଝା ଓ 'ନୀତି' ଲାଗି ରହିଥାଏ । ଭାଇ, ପୁତୁରା, ବନ୍ଧୁବାନ୍ଧବ, ସମସ୍ତିଙ୍କୁ ଏକା କୁଟୁମ୍ବ କରି ଆପଣା ତତ୍ତ୍ୱାବଧାନରେ ରଖି ତାଙ୍କର ଘରକରଣା, କାମ କରନ୍ତି ବରାଦ୍ ଦେଇ କିଏ କରାଉଛି ଜାଣିହୁଏ ନାହିଁ ।

ମାମୁଁ ପଦ୍ମପୋଖରୀରୁ ଗାଧୋଇ ଫେରିଲାବେଳେ ମୋ ପାଇଁ ଆଣି ଦେଇଥିଲେ ଗୋଟିଏ ଘୁଡ଼ି, ପଡ଼ିଥିଲା, ପାଇଥିଲେ ।

ଆଗ ସୋନପୁରରେ କି ଆଗ କଲିକତାରେ ଦେଖିଲି ଆଉ ଜଣେ ମାମୁଁଙ୍କୁ, ସେ ଦାମ ମାମୁଁଙ୍କ ଭାଇ ରାମ ମାମୁଁ । ତାଙ୍କର ପୁଅ ନାହିଁ, ଗୋଟିଏ ଝିଅ, ଡାକ୍ତର ବିଭୂତି ପଟ୍ଟନାଏକଙ୍କୁ ବିଭା ହୋଇଛି । କଟକର ସେ କାଳର ପୁରୁଣା କଂଗ୍ରେସ କର୍ମୀ ଓକିଲ ଧର୍ମାନନ୍ଦ ପଟ୍ଟନାଏକଙ୍କର ସେ ବୋହୂ । ରାମ ମାମୁଁ ବି ସୋନପୁରରେ କାର୍ଯ୍ୟ କରୁଥିଲେ । ବାପାଙ୍କ ବେମାରିବେଳେ ସେ ଅନେକ ଥର ଆସନ୍ତି ଓ ଖବର ବୁଝନ୍ତି ।

ମୋ' ବୋଉର ଆଉ ବୋଉର ଯୋଡ଼ିଏ ପୁଅ । ଯୁଧିଷ୍ଠି ମାମୁଁ କୈଳାଶ ମାମୁଁ । ଯୁଧିଷ୍ଠି ମାମୁଁ, ପହିଲ୍‌ମାନ୍, କସ୍‌ରତ୍ କରୁଥିଲେ, ସୋନପୁର ମହାରାଜାଙ୍କର ସେ ବି ଜଣେ ଭଣ୍ଡାର ବହିଦାର ଥିଲେ । ମାମୁଁ ମାଇଁ ସୋନପୁରଠୁଁ ଖଣ୍ଡେ ଦୂରରେ ତାଙ୍କ ଗାଁ ବାଇଗଣ୍ ଜୋରିରେ ରହୁଥିଲେ । ସେଠି ତାଙ୍କର ବୋଉ ଥିଲେ, ମୁଁ ସେଠିକି ଘୋଡ଼ାରେ ଚଢ଼ି ଯାଏଁ ।

କଲିକତାରେ ଯେଉଁ ଦ୍ୱିତୀୟ ଜଣଙ୍କ ସଙ୍ଗେ ମନେ ରହିଲା ଭଳି ଚିହ୍ନା ହେଲା ସେ ସୋନପୁର ମହାରାଜା ହାଇ ଇଂଲିଶ୍ ସ୍କୁଲର ସହକାରୀ ହେଡ୍‌ମାଷ୍ଟର ଶ୍ରୀ ନରେନ୍ଦ୍ର ନାଥ ରାୟ, ବି.ଏ., ଘର ନୋଆଖାଲି । ସେ

ସପରିବାର ସୋନପୁରରେ ଥାଆନ୍ତି । ବଡ଼ ଝିଅ, ଆମର "ଦିଦି", ମୋଠୁଁ ଚାରି କି ଛ ବର୍ଷ ବଡ଼ ହେବ, ବହୁତ ବହି ପଢ଼େ । ବଙ୍ଗଳା ହିଁ । ଗେଟମ୍‌ଗାଟମ୍ ସାନ ସାନ ଯୋଡ଼ିଏ ପୁଅ, 'ମାଖନ୍' ଆଉ 'ଛାନା' ଅର୍ଥାତ୍ 'ଲହୁଣୀ' ଓ 'ଛେନା' । ମାଖନ୍‌କୁ ଛ ସାତ ବର୍ଷ ଚାଲିଥାଏ, ଛାନା ଠିକ୍ ତା ତଳେ । ଆଉ ତାଙ୍କ ବୋଉ—କ'ଣ ଡାକୁଥିଲି ? 'ମାଉସୀ' ବୋଧହୁଏ, 'ମାସୀମା' । ସେ ପରିବାର ସହିତ ଚିହ୍ନା ହେଲା ମୁଁ ସୋନପୁର ଆସିଲା ପରେ । ଆମ୍ଭକୁ ଯେଉଁ କ୍ୱାଟର୍ସ ମିଳିଥିଲା ସେ ଗୋଟିଏ ବଡ଼ ଘର, ତା'ର ବଡ଼ ହତା, ଯୋଡ଼ିଏ ବଡ଼ ବଡ଼ ଖଞ୍ଜା । ନରେନ୍‌ବାବୁଙ୍କ ଅନୁରୋଧକ୍ରମେ ବାପା ଖୁସିହୋଇ ତାଙ୍କୁ ବଡ଼ ଖଞ୍ଜାଟିକି ଛାଡ଼ିଦେଲେ, ଛୋଟ ଖଞ୍ଜାରେ ଆମେ ଦିହେଁ ଥାଉଁ । ବାପା ଗସ୍ତରେ ବାହାରିଗଲେ ନରେନ୍‌ବାବୁଙ୍କ ଘରେ ମୁଁ ରହିଯାଏଁ, ସେମାନେ ମତେ ଭାରି ଭଲ ପାଉଥିଲେ, ତାଙ୍କ ପୁଅ ଦୋ'ଟିଙ୍କ ସଙ୍ଗେ ଏକାଠି ମୁଁ ବଢ଼ିଛି, ଅନ୍ୟ କୁଆଡ଼େ ଛାଡ଼ି ଦିଅନ୍ତି ନାହିଁ । ସୁସ୍ୱାଦୁ ରୋଷେଇ ମାସୀମାଙ୍କର, ସାରୁ ଡେମ୍ଫକୁ କାଟି ଖଟା ଦେଇ ସେ ଚଟଣି କରୁଥିଲେ, ଆଉ କରୁଥିଲେ 'ଚଡ଼୍‌ଚଡ଼ି', କେତେ କ'ଣ । ନରେନ୍‌ବାବୁ ରାତି ହେଲେ ଶୋଇଲା ବେଳେ ବଇଁଶୀଟିଏ ବଜାନ୍ତି, କେବେ କେବେ ଗୀତଟିଏ ଗାଆନ୍ତି, ଗୋଟିଏ ଗୀତ ତାଙ୍କର ଅତି ପ୍ରିୟ ଥିଲା, ବୋଧହୁଏ ତା ସୁରଟି ଲାଗି—

"ଯମୁନେ, ଏଇ କି,<br>
  ତୁମି ସେଇ ଯମୁନେ—ପ୍ରବାହିନୀ,<br>
ଓନାର୍ ଶ୍ୟାମଲ୍ ତଟେ<br>
ରୂପେର୍ ହାଟେ, ବିକୀତ<br>
  ଶ୍ରୀ ନୀଲମଣି ।<br>
କୋଥାୟ ଚାରୁ ଚନ୍ଦ୍ରାବଲୀ—<br>
  କୋଥାୟ କା ସେ ଜଲକେଲି ।

ଭାରି ହୃଦୟସ୍ପର୍ଶୀ ଲାଗୁଥିଲା ସେ ସ୍ୱର ।"

ସୋନପୁର ଗଡ଼ଜାତ ଭିତରେ ନିଶା ଅନ୍ଧାରରେ ବଙ୍ଗଦେଶର ନୋଆଖାଲିର ଜଣେ ଶିକ୍ଷିତ ମଣିଷ ବଇଁଶୀର ରାଗିଣୀରେ ସତେକି ଝୁରି ହେଉଥିଲେ କେଉଁ ହଜିଲା ଅତୀତକୁ । କେଉଁ ନଇର ପ୍ରତୀକ ସେ ଯମୁନା ? ସେ କ'ଣ ସମୁଦ୍ର ପରି ପାଦ୍ମା ନଇ ?

ବେଶି ଉଚ୍ଚ ନୁହନ୍ତି, ସ୍ୱାସ୍ଥ୍ୟ ଭଲ, ଭିକ୍‌ଜିକ୍ ଶ୍ୟାମଳ ବର୍ଣ୍ଣ, ମୁହଁ

ଓସାର, ସେଥିରେ ବିଶିଷ୍ଟତା ଗୋଟାଏ ଉଚ୍ଚ ଶୁଆଥଣ୍ଟିଆ ନାକ, ସେତେବେଳଯାଏ ସେଭଳି ନାକ ମୁଁ ଦେଖି ନ ଥିଲି । ସବୁବେଳେ ଶାନ୍ତ ମୂର୍ତ୍ତି, ଭାବୁକ, ହସ ହସ, ମିଠା କଥା, ଟାଣକରି କାହାକୁ କହନ୍ତି ନାହିଁ । ଓଡ଼ିଆରେ ହିଁ କଥା କହନ୍ତି କିନ୍ତୁ ସେଥିରେ ଟିକିଏ ବଙ୍ଗଳା ଉଚ୍ଚାରଣ ମିଶିଥାଏ, ତେଣୁ ବେଳେ ବେଳେ କୌତୁକିଆ ଶୁଭେ । ସେ ଅଙ୍କ ଓ ଇଂରେଜି ବିଶାରଦ ଥିଲେ । ମନେପଡ଼ୁଛି, ବାର୍ଷିକ ପରୀକ୍ଷାରେ ଥରେ ସାର୍ ପ୍ରଶ୍ନ ତିଆରି କରି ଲିଥୋ କରାଇ ଆମକୁ ଦେଇଥିଲେ, ଲେଖା ଥିଲା–''ସେ ମତେ ଭଲ ବାସନ୍ତି ।''

ମୁଁ ତା'ର ଉତ୍ତର ଲେଖିଥିଲି, ''ହି ଗିଭ୍ସ୍ ମି ଏ ଗୁଡ୍ ସ୍ମେଲ୍'' । ଏଇ ଉତ୍ତର ଦେଲି ବୋଲି ମୋର ସାଙ୍ଗ ପଢ଼ୁଆମାନଙ୍କ ସଙ୍ଗରେ ମୋର ଘମାଘୋଟ ବାଗ୍‌ଯୁଦ୍ଧ ହୋଇଥିଲା, ସାର୍‌ଙ୍କ ଓଡ଼ିଆ ସଙ୍ଗେ ସେମାନଙ୍କର ଆଗରୁ ଚିହ୍ନାପରିଚ ଥିଲା ଓ ସେମାନେ ମତେ କହିଲେ ''ହି ଲଭ୍ସ୍ ମି'' । ମୁଁ ମୋ ମତରୁ ଟଳି ନ ଥିଲି । ବାପାଙ୍କୁ ପଚାରିବାଯାଏ କଥା ଯାଇଥିଲା ।

ନରେନ୍ଦ୍ର ନାଥ ରାୟଙ୍କୁ କେଇପଦ କଥାରେ ବର୍ଣ୍ଣନା କରିହେବ, –''ବୁଦ୍ଧିମାନ୍, ଧୀର, ସ୍ନିଗ୍ଧ, ମାର୍ଜିତ, ଜୀବନକୁ ଉପଭୋଗ କରନ୍ତି ।''

''ଓଗୋ ଶୁନ୍ ଚ–'' କେଡ଼େ କଅଁଳେଇ ଡାକନ୍ତି ସେ, ''ଯାକ୍‌ଟା ପାନ୍ ଦାଓ ଦିକି ।'' ସେ ପ୍ରକୃତରେ ଭଲ ବାସନ୍ତି ।

ବସିପଡ଼ି ଚାହା ଖାଇଲାବେଳେ ଲାଗେ ସେ ବସିବାବେଳେ ବି ଆନନ୍ଦ ଉପଭୋଗ କରୁଛନ୍ତି, ବାମ୍ଫୁଆ ଚା'ରୁ ଢୋକେ ପିଇଦେଇ ସେ ସତେକି ଅଭିଭୂତ ହୋଇପଡ଼ନ୍ତି, ଆରାମ୍‌ରେ କହନ୍ତି–''ଆଃ''–

ତା'ପରେ ସେ ବଙ୍ଗଳା କି ଇଂରେଜି କବିତାଟିଏ ପଢ଼ି ଆବୃତ୍ତି କରନ୍ତି, ଆମେ ସବୁ ଶୁଣୁଁ, ମୁହଁରେ ଆଖିରେ ଭାବ ଫୁଟେ ।

ଘରେ ସବୁ ସଜାସଜି, ପରିଷ୍କାର, ମୋଟା ମୋଟା ବହିଗୁଡ଼ିକ ଥାକ ଥାକ ହୋଇ ସଜାହୋଇ ଥୁଆ ହୋଇଥାଏ, ତା'ର ସଦ୍‌ବ୍ୟବହାର ହୁଏ ।

ଖାଦ୍ୟ କି ପୋଷାକରେ ସେତେ ଦାମୀ ଜିନିଷ ନ ଥାଏ, କିନ୍ତୁ ସବୁ ପରିଚ୍ଛନ୍ନ । ଶୋଇବା ବିଛଣା କି ସୁନ୍ଦର ପରିଷ୍କାର, ଶୀତଦିନେ ମୋଟା ଶେଯ ରେଜେଇ, ତାଙ୍କ ଛୁଆ ଦୋ'ଟିଙ୍କ ସଙ୍ଗେ ଶେଯ ଘୋଡ଼ିହୋଇ ମୁଁ ଶୋଇପଡ଼େଁ, ରାତି ଦଶରୁ ଟପେ ନାହିଁ ।

ତାଙ୍କ ସ୍ତ୍ରୀ ଶେଥା ଗୋରା, ଟିକିଏ ଦୁର୍ବଳ, ସବୁବେଳେ ସଫା, ସ୍ୱର ନରମ ଓ ସ୍ନେହୀ, ସମସ୍ତିଙ୍କର ଯତ୍ନ ନିଅନ୍ତି, ଯେତେବେଳେ ଦେଖିଲେ ବି

କାମ କରୁଥାନ୍ତି । ସେ ଚଟି ମାଡ଼ି ରୋଷେଇ ଘରେ ପଶନ୍ତି, ମତେ ଆଗ ଅଡୁଆ ଲାଗୁଥିଲା, କିନ୍ତୁ କ୍ରମେ ଆରେଇଗଲା । ଦି'ପହରେ ସେ ପଢ଼ନ୍ତି କାଶୀରାମ କୃତ ମହାଭାରତ, କେତେଥର ବସି ବସି ଶୁଣିଛି ।

ଆଦ୍ୟ ଜୀବନରେ ଗୋଟିଏ ବଙ୍ଗାଳି ପରିବାର ସହିତ ଘନିଷ୍ଠତା ମୋର ସେହି ପ୍ରଥମଥର, ଖୁବ୍ ଭଲ ଧାରଣା ହୋଇଥିଲା । ମୁଁ କୁତୂହଳୀ ହେଲି । ବାପାଙ୍କୁ ପଚାରିଲି । ବାପା ମତେ ବଙ୍ଗାଳିମାନଙ୍କ ବିଷୟରେ ବଡ଼ ଉତ୍ସାହପ୍ରଦ ଧାରଣା ଦେଇଥିଲେ । କହିଥିଲେ, —ସେମାନେ ଖୁବ୍ ପାଠପଢ଼ା ଲୋକ, ଖୁବ୍ ବୁଦ୍ଧିମାନ୍, ତାଙ୍କ ଭିତରେ ଅନେକ ଥିଲେ ଯେ ଗୋଟିଏ ଗୋଟିଏ ରତ୍ନ । ବଙ୍ଗଦେଶ ସଭ୍ୟ ଦେଶ, ବିଶେଷତଃ ଇଂରେଜ ଆସିଲା ପରେ ସେମାନେ ଇଂରେଜି ପଢ଼ି ନୂଆ ଆଲୁଅ ପାଇଲେ, ତାଙ୍କର ବିକାଶ ଘଟିଲା । ବାପା କହୁଥିଲେ, ଇଂରେଜ ଯୁଗରେ ସେମାନେ ଓଡ଼ିଶାର ନାନା ସ୍ଥାନରେ ଗୁରୁ ଓ ଶିକ୍ଷକ ହୋଇ ଆମକୁ ପାଠ ପଢ଼ାଇଲେ, ସ୍ଥାନେ ସ୍ଥାନେ ସ୍କୁଲ୍ କଲେଜରେ ଶିକ୍ଷକ ହେଲେ ସେହିମାନେ, ବଡ଼ ବଡ଼ ଲେଖକ, ଓକିଲ, ଚାକିରିଆ ହୋଇ ସେମାନେ ନାଁ କଲେ । ବାପା କହନ୍ତି, ଶ୍ରୀ ରାମକୃଷ୍ଣ, ସ୍ୱାମୀ ବିବେକାନନ୍ଦଙ୍କ କଥା, ରବୀନ୍ଦ୍ରନାଥଙ୍କ କଥା, କହନ୍ତି ବଙ୍ଗଳାରେ ଅନେକ ବହି, ସେଥି ଭିତରୁ ଅନେକ ଅତି ଉପାଦେୟ ଆଧ୍ୟାତ୍ମିକତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ, ପଢ଼ିଲେ ଜ୍ଞାନ ବଢ଼ିବ । ଆଉ ସେ କହନ୍ତି ସେମାନେ କେମିତି ଆଗ ଇଂରେଜଙ୍କୁ ସାହାଯ୍ୟ କରିଥିଲେ, ପଛେ କେମିତି ବୁଦ୍ଧି ବିଚକ୍ଷଣତା ସହକାରେ ବଙ୍ଗଭଙ୍ଗ ଆନ୍ଦୋଳନ ଚଳାଇଲେ, ଇଂରେଜଙ୍କୁ ନାକେଦମ୍ କଲେ ।

ବାପା କହୁଥିଲେ, —ଭାରତରେ ସବୁଠୁ ବଳି ସମ୍ମାନ ହିଁ ଅତୀତରେ ଥିଲା ଆମରି ଓଡ଼ିଶାର ଶିକ୍ଷା ସଭ୍ୟତା, କଳା, ସବୁଥିରେ, କ୍ରମେ ଇଂରେଜ ଅମଳ ବେଳକୁ ସେସବୁ ଦବିଗଲା, ହାଡ଼ ଭାଙ୍ଗିଗଲା, ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଆ ଲୋକ ଛଟପଟ ହୋଇ ମଲେ, ଗାଁ ଗାଁ ପଦା ହେଲା, ଦେଶଯାକ ବିଦେଶୀ ଚରିବୁଲିଲେ, ଓଡ଼ିଆ ହେଲେ ଅଜ୍ଞ, ଅଶିକ୍ଷିତ, ପଛୁଆ । ତା'ପରେ ଉଠିଲେ ଗୌରୀଶଙ୍କର, ଫକୀରମୋହନ, ରାଧାନାଥ ଆଦି, ପ୍ରସିଦ୍ଧ ମଧୁବାବୁ, ଧୀରେ ଧୀରେ ଦେଶ ଉଠିବାକୁ ଆରମ୍ଭ କଲା କିନ୍ତୁ ବଙ୍ଗାଳିଙ୍କ ସଙ୍ଗେ ତୁଳନା ହେବ ନାହିଁ । ସେ କହୁଥିଲେ ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁ ଥିଲେ ଓଡ଼ିଆ ବ୍ରାହ୍ମଣ ପରିବାରର ସନ୍ତାନ, ତାଙ୍କ ପୂର୍ବପୁରୁଷ ଯାଜପୁରରୁ ନବଦ୍ୱୀପକୁ ଉଠିଯାଇଥିଲେ, ଆଉ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର—ଯାହାଙ୍କ ବିଷୟରେ ବାପା

ଅନେକଥର କହନ୍ତି, ବାପା କହୁଥିଲେ ସେ ମେଦିନିପୁରର ଓଡ଼ିଆ ବ୍ରାହ୍ମଣ । ଏ ଖବର ମୁଁ ସଙ୍ଗେ ସଙ୍ଗେ ନରେନ୍ଦ୍ରନାଥ ରାୟଙ୍କ ପରିବାରରେ କହିଥିଲି, ସେମାନେ ଟିକିଏ ତର୍କ କରିଥିଲେ, ବିଶେଷତଃ 'ଦିଦି', ତା'ପରେ ଆଉ ଉଚ୍ଚବାଚ କଲେ ନାହିଁ ।

ବାପା କହୁଥିଲେ ଆମର ଜଗନ୍ନାଥ ମହାପ୍ରଭୁ ସବୁଠୁଁ ବଡ଼ ଠାକୁର, ଯୁଗେ ଯୁଗେ ତାଙ୍କୁ ବେଢ଼ି ରହି ଏ ଦେଶର ଟେକ ଓ ବଡ଼ତି, ଭାରତ ସବୁ ସନ୍ଥ ତାଙ୍କୁ ଦର୍ଶନ କରି ଧନ୍ୟ ହୋଇଛନ୍ତି, ତାଙ୍କଠି ଲୟ ରଖି ନିଜର କର୍ତ୍ତବ୍ୟ କରିବାରେ ଲାଗି ପଡ଼ିଲେ ଓଡ଼ିଶା ପୁଣି ଉନ୍ନତ ହେବ, ପାଠ ନ ପଢ଼ି ପରିଶ୍ରମ ନ କରି ଅଳସୁଆ ନିକମା ମୂରୁଖ ଅସନା ହୋଇ ରହିଥିଲେ ଲୋକେ ହସୁଥିବେ । ପରକୁ ଗାଳି ଦେଉଥିଲେ ଆମର ନିଜର ଉପକାର ହେବ ନାହିଁ ।

ବାପା କହୁଥିଲେ, —ବାରମ୍ବାର କହୁଥିଲେ, —ପରଠିଁ ଯେତେ ଯାହା ଭଲଗୁଣ ଅଛି ଆମେ ତାହା ଶିଖିନେବା, ମଲାଯାକେ ଶିଖୁଥିବା, ମନକୁ ମୋଟ କରିବା ନାହିଁ, ଯେଉଁଠି ଯାହା ଭଲ ଭଲ ଅଛି ତାକୁ ଶିଖି ଅଭ୍ୟାସ କଲେ ଆମେ ଦିନେ ପରକୁ ଟପି ବଡ଼ ହେବା, ବହୁତ ବଡ଼ ହେବା, ଆମଠୁଁ ଶିଖି ଆମ ଉତ୍ତାରୁ ଯେ ଆସିବେ ସେ ଆହୁରି ବଢ଼ିବେ, ଦେଶର ପୁଣି ନାଁ ଉଡ଼ିବ । ଏଇ ଯୁଗରେ ବଙ୍ଗ ଦେଶରେ ନୂଆ ଆଲୁଅ ନୂଆ ଜ୍ଞାନ ସଂଚରିଛି, —ଭଲ, ଆମେ ତାକୁ ଶିଖିନେବା ଉଚିତ୍ ।

ଦିନେ ସୋନପୁରରେ ମୁଁ ବାପାଙ୍କୁ ଧରି ବସିଲି "ବାପା ମତେ ବଙ୍ଗଳା ଶିଖାଇଦିଅ ।" ୧୯୨୪ ହେବ । ସକାଳ ନଅଟା ହେବ । ସେ କହିଲେ "ହଉ" । ମୋ ପାଖରେ ଇଂରେଜି ପଢ଼ା ବହିର ଗୋଟିଏ ବଙ୍ଗଳା ମାନେ ବହିଥାଏ, କଟକରୁ ଡାକରେ ଆସିଥାଏ ଯେ ମୁଁ ତାକୁ ବୁଝିପାରୁ ନ ଥାଏ । ବାପ ପୁଅ ବହି ଖୋଲି ବସିଲୁଁ । ସେ ଗୋଟିଏ ଗୋଟିଏ ଇଂରେଜି ଶବ୍ଦର ବଙ୍ଗଳା ଅର୍ଥ ପଢୁଥାନ୍ତି, ଗୋଟି ଗୋଟି କରି ଅକ୍ଷର ଚିହ୍ନାଉଥାନ୍ତି । ମୁଁ ସେ ବହିରେ ଅନ୍ୟତ୍ର ସେହିପରି ଅକ୍ଷର ଆପେ ବାଛିନେଇ ଉଚ୍ଚାରଣ କରୁଥାଏଁ । ବସିପଡ଼ିଲି ଦିନସାରା । ବଙ୍ଗଳା ପଢ଼ା ଶିଖା ହୋଇଗଲା । ତା'ପରେ ଚାଲିଲା ଅଭ୍ୟାସ । ମୋ ଜୀବନରେ ଏକାଦିନକେ ବଙ୍ଗଳା ପଢ଼ି ଶିଖିଥିଲି । ପଛେ ଏକୋଦିନକେ ଶିଖିଲି ଜୀପ୍ ଗାଡ଼ି ଡ୍ରାଇଭିଂ । ଗୁଣୁପୁରରୁ ରାୟଗଡ଼ା ଆଣିଲି । ସେପରି ଭାବେ ଆଖିରେ ଅକ୍ଷର ଦେଖି ଦେଖି ନ ପଢ଼ିଥିଲେ ବୋଧହୁଏ

ଭଲ ହୋଇଥାନ୍ତା । କାରଣ ଜୀବନଯାକ ବଙ୍ଗଳା ଅକ୍ଷର ଲେଖି ଶିଖିଲି ନାହିଁ, କଷ୍ଟେମଷ୍ଟେ ଝାଳନାଳ ହୋଇ ଛାପାଅକ୍ଷର ପରି ଲେଖିପାରେଁ । ଅଥଚ ପଢ଼ିପାରେଁ, କହିପାରେଁ, ବୁଝେଇପାରେଁ, ପାଟ୍‌ନା ହାଇସ୍କୁଲ୍‌ରେ ପଢ଼ିଲାବେଳେ କେବେ କେବେ ଖୁସିରେ ମୁଁ ବଙ୍ଗଳା ସାହିତ୍ୟ କ୍ଲାସ୍‌ରେ ବସିପଡ଼େଁ, ଆଗରୁ କିଛି ନ ପଢ଼ି ବ୍ୟାକରଣ ଓ ସାହିତ୍ୟ ପ୍ରଶ୍ନମାନଙ୍କର ଠିକ୍ ଠିକ୍ ଉତ୍ତର ଦିଏଁ । ଶିକ୍ଷକ ମତେ ଦେଖାଇ ଅନ୍ୟମାନଙ୍କୁ ଭର୍ତ୍ସନା କରନ୍ତି ।

ବଙ୍ଗଳା ଅକ୍ଷର ଚିହ୍ନିଲି ମାନେ ବହି ପଢ଼ି ବୁଝିବା ପାଇଁ, କିନ୍ତୁ ସୁବିଧା ହେଲା ନରେନ୍ ବାବୁଙ୍କ ଘରୁ ପିଲାଙ୍କ ବହି ପଢ଼ିବାକୁ ଅଭ୍ୟାସ କରିବା ବିଷୟରେ । ଶବ୍ଦ ପଢ଼ିପାରିଲି, ଚିହ୍ନା ଇଂରେଜି ଶବ୍ଦର ବଙ୍ଗଳା ଅର୍ଥ ପଢ଼ି ଆଗରୁ ନିଜେ ଜାଣିଥିବା ଓଡ଼ିଆ ପ୍ରତିଶବ୍ଦ ମନେପକାଇ ସେହି ଓଡ଼ିଆ ଶବ୍ଦର ବଙ୍ଗଳା ପ୍ରତିଶବ୍ଦ କ'ଣ ତା' ମୁଁ ଜାଣିଲି, ବାପା ଅତି ସୂକ୍ଷ୍ମରେ ବ୍ୟାକରଣଗତ ପ୍ରଭେଦରୁ କିଛି ବୁଝାଇଦେଲେ । ତେଣୁ ଦିଦି, ମାଖନ୍, ଛାନା ଓ ତାଙ୍କ ମା'ଙ୍କର ଆଶ୍ଚର୍ଯ୍ୟ ଜନ୍ମାଇ ମୁଁ ବେଳେ ବେଳେ ତାଙ୍କ ଘରେ ବଙ୍ଗଳା ବହି ପଢ଼ି ଶୁଣାଇଲି, ଭୁଲ୍ ହେଲେ ସେମାନେ ବୁଝେଇ ଦିଅନ୍ତି । ସୋନପୁରରେ ଥିଲାବେଳେ ବେଶି ଅଗ୍ରଗତି ହେଲା ନାହିଁ, କାରଣ ମୁଁ ଓ ସେମାନେ ଓଡ଼ିଆରେ କଥାଭାଷା ହେଉଥିଲୁଁ । ଅସଂଖ୍ୟ ଶବ୍ଦ ଭିତରୁ ଅଳ୍ପ କିଛି ମୁଁ ବହିରୁ ଶିଖିଲି । ପଛେ ବେଶି ଜାଣିଲି ପାଟ୍‌ନାରେ ପଢ଼ିଲାବେଳେ । କିନ୍ତୁ ଖଣ୍ଡିଆ ଖଣ୍ଡିଆ ବଙ୍ଗଳା ଶିଖୁ ଶିଖୁ ସାର୍‌ଙ୍କ ଘରେ ମୋର ଚିହ୍ନା ହେଲା ଯୋଡ଼ିଏ ମାସିକ ପତ୍ରିକା ସଙ୍ଗରେ; ଗୋଟିଏ 'ବସୁମତୀ', ଆଉଟି ପିଲାଙ୍କ ପତ୍ରିକା 'ମୌଚାକ୍' ।

ଶିକ୍ଷିତ ବଙ୍ଗାଳି ପରିବାର ଯେଉଁଠି ରହିଥିବେ ସେମାନେ କିଣି କିଣି ପଢୁଥିବେ ବଙ୍ଗଳା ବହି, ବଙ୍ଗଳା ସାହିତ୍ୟ ପତ୍ରିକା, ବଙ୍ଗଳା କବିତା ଗାଉଥିବେ ।

ଦିନେ ଦିନେ ଦିଦି ପଢ଼ି ଶୁଣାଏ ବଙ୍ଗଳା ବହିରୁ ।

"ବୁଝିପାରୁଚ ?"

ମୁଁ 'ହଁ' କରେଁ ।

କେତେବେଳେ ଗୋଟାଏ ଗୋଟାଏ ଅଖାଡୁଆ ଶବ୍ଦ ବଡ଼ ଅଡୁଆ କରେ ।

"ତିନି ଘାଡ୍‌ନାଡ୍ ଲେନ୍" ।

କ'ଣ ଏ ଘାଡ୍‌ନାଡ୍ ? ବାପାଙ୍କୁ ପଚାରିଲେ ବୁଝାଇ ଦିଅନ୍ତି ।

ବଙ୍ଗଳାରେ ଏତେ ବହି ! ଏଡ଼େ ସୁନ୍ଦର ବହି ! କି ମଲାଟ ! କି କାଗଜ ! କେତେ ଛବି ! କେଡ଼େ ସୁନ୍ଦର ସୁନ୍ଦର ଗପ ! ଆମର ଓଡ଼ିଆରେ କ'ଣ ନ ଥିବ ? ନିଶ୍ଚୟ ଥିବ । ଆମର କେଡ଼େ ସଭ୍ୟତା ! କେତେ କୀର୍ତ୍ତି ଥିବ, ଏଠି ନାହିଁ । ମୋ ମନର କଥା ଜାଣିଲା ପରି ଦିନେ 'ଦିଦି' ପଚାରିଲେ, ''ହେଇ ଦେଖ ଆମ ବଙ୍ଗଳା ଭାଷାରେ କେତେ ବହି, କେଡ଼େ ସୁନ୍ଦର ସୁନ୍ଦର ବହି । ତୁମ ଓଡ଼ିଆରେ ଅଛି ?''

ତାଙ୍କ ବୋଉ ଠିଆ ହୋଇଥାନ୍ତି, ମୁରୁକି ମୁରୁକି ହସୁଥାନ୍ତି, ମାଖନ୍ ଓ ଛାନା ମୋ ମୁହଁକୁ ଅନେଇଁଥାନ୍ତି ।

ଖୁବ୍ ଦମ୍ଭ ଦେଖାଇ କହିଲି 'ଓଡ଼ିଆରେ ନାହିଁ ? ନିଶ୍ଚୟ ଅଛି । ଆହୁରି ବହୁତ ବହୁତ ଅଛି, ଓଃ ଏ ଘର ଊଣ ହେବ ଗଦେଇଲେ । ଆମ ଘରେ ଗଦା ଗଦା ତାଳପତ୍ର ପୋଥି, ଏଡ଼େଡ଼େ ମୋଟ ଛପା ପୁରାଣସବୁ, ମୋ ବୋଉ ପଢ଼େ—ନୃସିଂହ ପୁରାଣ, ଭାଗବତ, ଦାର୍ଢ୍ୟତାଭକ୍ତି, ମହାଭାରତ, ରାମାୟଣ, ବିଶିରାମାୟଣ, ହରିବଂଶ, ସୁଧାସାରଗୀତା, ଓଃ ! କେତେ କେତେ !''

ତାଙ୍କ ବୋଉ କହିଲେ—'ହଁ, ଅଛି, ଖୁବ୍ ଚମତ୍କାର ବହି ସେଗୁଡ଼ିକ ।'

ଦିଦି କହିଲେ—'ଆରେ ସେ ତ ପୁରାଣ, ହେଇଟି ତ ଆମର ବଙ୍ଗଳାରେ ଅଛି ମହାଭାରତ, ରାମାୟଣ, ମୁଁ ପଚାରୁଛି, ତମର ଏମିତି ଉପନ୍ୟାସ ସବୁ ଅଛି ? ହେଇ ଦେଖ ଆମ ଘରେ କେତେ ଉପନ୍ୟାସ, ବଙ୍କିମ୍‌ଚନ୍ଦ୍ର ଗ୍ରନ୍ଥାବଳୀ, ଶରତଚନ୍ଦ୍ର ଗ୍ରନ୍ଥାବଳୀ, ଅନୁରୂପା ଗ୍ରନ୍ଥାବଳୀ, ଆଉ ହେଇ ଦେଖ ଏସବୁ, ଦେଖୁଚ ? ଅଛି ଏମିତି ତୁମ ଓଡ଼ିଆରେ ? ନାଁ କହିଲ ?''

''ଆଚ୍ଛା ମୁଁ କହିବି ।''

ସଞ୍ଜବୁଡ଼େ । ''ବାପା—ସେ ଏମିତି କହିଲା । ଆମ ଓଡ଼ିଆରେ ଉପନ୍ୟାସ ନାହିଁ ?''

ବାପା ଥୋଡ଼ାଏ ନାଁ କହିଲେ, ମୁଁ ଟିପିନେଲି । ତହିଁଆରଦିନ ସକାଳେ ହସି ହସି ପହଞ୍ଚିଗଲି । କହିଲି ତାଲିକା ଆଣିଚି । ହେଇ ଶୁଣ । ଉପନ୍ୟାସ କହିଲେ ଫକୀରମୋହନ ସେନାପତିଙ୍କ ଉପନ୍ୟାସ, ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ ଏମିତି ଆଉ କେଉଁ ଭାଷାରେ ନାହିଁ । ଆଉ କେତେ ଅଛନ୍ତି । କାବ୍ୟ କଥା ଛାଡ଼, ରାଧାନାଥ ରାୟ—''

''ଉହୁଁ, ରାୟ ? ସେ ତ ବଙ୍ଗାଳି—''

''ତୁମେ ଜାଣିନା, ରାଧାନାଥ ରାୟ ଖାଣ୍ଟି ଓଡ଼ିଆ, ରାୟ ତ ଓଡ଼ିଆରେ ବି ଅଛନ୍ତି । ମହାକବି । ମଧୁସୂଦନ ରାଓ–''

''ଆରେ, ରାଓ ବି କ'ଣ ଓଡ଼ିଆ ? ସେ ତ ଆଉ କିଛି–''

''ଧେତ୍ତେରି । ତମେ କିଛି ଜାଣିନା । ସେ ଖାଣ୍ଟି ଓଡ଼ିଆ ।''

''ହଁ ନା– !''

''କାହିଁକି ଯୁକ୍ତି କରୁଚୁ ଖୁକି, ସେ ଯାହା କହୁଛି ତୁ ଶୁଣ୍, ସତରେ ଓଡ଼ିଆରେ କମ୍ ବହି ନା କ'ଣ ?''

''ଆଉ ଶୁଣ–କବି ସାରଳାଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ ରଥ, ଯଦୁମଣି, ମଧୁସୂଦନ ରାଓ, ରାଧାନାଥ ରାୟ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ତୁମେ କୋଣାର୍କେ ପଢ଼ିଚ ? କି ଚମତ୍କାର !''

''ଆରେ କବି ତ ବଙ୍ଗଳାରେ ବି ବହୁତ, ଏଇ ଦେଖ ରବୀନ୍ଦ୍ରନାଥ ଠାକୁର–'' ହଁ, ବାପା ତାଙ୍କ କଥା ମତେ କହିଥିଲେ, ପ୍ରସିଦ୍ଧ କବି । ''ତୁମର ଓଡ଼ିଆରେ ଖାଲି ଫକୀରମୋହନଙ୍କର ଚାରିଖଣ୍ଡ ଉପନ୍ୟାସ ? ଆମର ବଙ୍ଗଳାରେ ଯେ ଶହ ଶହ ହଜାର ହଜାର ଉପନ୍ୟାସ ଆଉ ଗଳ୍ପ ।''

''ଅଛି–ଅଛି–ଓଡ଼ିଆରେ ବି ଅଛି ।''

''ତା'ହେଲେ ଆଣ ପଢ଼ିବା ।''

ବାଜି ମାନିନେଲି । ବାପାଙ୍କୁ କହିଲି । ବାପା ଆଣିଦେଲେ ଛପା ପୁସ୍ତକ ତାଲିକାଟିଏ, କଟକ ଟ୍ରେଡ଼ିଂ କମ୍ପାନୀର, କହିଲେ ''ଯାହା ତୋ ମନ ହେଉଛି ତା ମଗେଇଦେ, ଭି.ପି.ରେ ଆସୁ ।''

ଚିଠି ଲେଖିଲି ଶ୍ରୀ ଆର୍ତ୍ତ ମିଶ୍ର କାବ୍ୟତୀର୍ଥଙ୍କୁ । ଆସିଲା–ଉପନ୍ୟାସ ଭିତରୁ ଫକୀରମୋହନଙ୍କର 'ଲଛମା', ଚିନ୍ତାମଣି ମହାନ୍ତିଙ୍କର 'ଟଙ୍କାଗଛ', 'ବୁଲା ଫକୀର', କୁନ୍ତଳାକୁମାରୀ ସାବତଙ୍କର 'କାଳୀବୋହୂ', 'ନଅତୁଣ୍ଡୀ', 'ଭ୍ରାନ୍ତି', 'ପରଶମଣି', ଗଳ୍ପ ଭିତରୁ 'ଉତ୍କଳ କାହାଣୀ', 'ଆରବ୍ୟ କୁସୁମ', 'ଗୁଲେବକାଓ୍ୱଲି', 'ସୁନାଚାଙ୍ଗୁଡ଼ି', ଆଉ ଜୀବନୀ ଭିତରୁ ସ୍ୱୟଂ ମହାତ୍ମା ଗାନ୍ଧୀଙ୍କ ଜୀବନୀ । ଦୟାନିଧି ମିଶ୍ରଙ୍କ 'କମଳକୁମାରୀ' ବି ଆସିଥିଲା । ପାର୍ସଲ ଖୋଲି ବହିତକ ଦେଖି ଦୁଃଖିତ ହେଲି, ମୁଁ ଏତେ ବହି ମଗାଇଥିଲି, ଆସିଲା ଏତିକି ?

କିନ୍ତୁ 'ଟଙ୍କାଗଛ' ଦେଖି ଭାରି ଖୁସି ହେଲି, ଏତେ ମୋଟ ବହି, ହଳଦିଆ ମଲାଟ, ବହିଟିର ଚେହେରା ଦେଖି ନିଶ୍ଚୟ ଦିଦି ହେରିକା ଦବିଯିବେ, କାହୁଁ ଏପରି ବହି ଥିବ ବଙ୍ଗଳାରେ ?

ବହିତକ ନେଇ ଗଲି ।

ଦିଦି ସ୍ୱୀକାର କଲେ ଯେ ଓଡ଼ିଆରେ ବହି ଅଛି, ଉପନ୍ୟାସ ଅଛି, କହିଲେ—"କିନ୍ତୁ..."

"ଆଉ କିନ୍ତୁ କ'ଣ ?

"କେତେ ଅଳ୍ପ ! ଏ ବହିଟି ମୋଟା ହୋଇଛି ବୋଲି କହୁଛ ତ, ହେଇ ଦେଖ କେତେ କେତେ ଆହୁରି ମୋଟା ଉପନ୍ୟାସ । ତୁମ ଓଡ଼ିଆ ଭାଷାରେ ଏତେ ବହି ନାହିଁ । ଆଗେ ପୁରୁଣା ବହି ପୋଥି ଆଦି ବହୁତ ଥିଲା, ସବୁ ଭାଷାରେ ଅଛି, କିନ୍ତୁ ଆଧୁନିକ ଉପନ୍ୟାସ ଅତି ଅଳ୍ପ । ଆଙ୍ଗୁଠି ଅଗରେ ଗଣିହେବ ।"

"କ'ଣ ଆଉ କରିବି !" ମୁଁ କହିଲି, "ବହୁତ ଅଛି ଯେ, ବହିଦୋକାନୀ ପଠାଇଲେ ନାହିଁ, ମୁଁ ମଗେଇଥିଲି ।"

"ଆଚ୍ଛା, ଯାହା ଆସିଛି ସେଇତକ ପଢ଼ାଯାଉ । ତୁମେ ପଢ଼ିବ, ଆମେ ଶୁଣିବା ।" କୁନ୍ତଳାକୁମାରୀଙ୍କର କାଳୀବୋହୂ, ନଅତୁଣ୍ଡୀ ମୁଁ ସେମାନଙ୍କୁ ପଢ଼ି ଶୁଣାଇଥିଲି, ସେମାନଙ୍କୁ ଭାରି ମଜା ଲାଗିଥିଲା, କିନ୍ତୁ ଦିଦି କହିଲା "ଏତେ ଗଳ୍ପ, ଏଡ଼େ ସାନ !" ଟଙ୍କାଗଛରୁ କିଛି ମୁଁ ଶୁଣେଇଲି, ତା'ପରେ ବନ୍ଦ କରାଗଲା । ଓଡ଼ିଆ ବଙ୍ଗାଳି ସାହିତ୍ୟ ବିଷୟରେ ତୁଳନାତ୍ମକ ସେ ଆଲୋଚନା ଆଉ ପଡ଼ିଲା ନାହିଁ । ମନ ଭିତରେ କ୍ଷୋଭ ରହିଗଲା, ବଙ୍ଗଳାରେ ଯେତେ ଉପନ୍ୟାସ ଓଡ଼ିଆରେ ତାଠୁଁ ବହୁତ କମ୍ ।

ଗୋଟିଏ ଭାଷା କହୁଥିବା ଲୋକେ ଅନ୍ୟଭାଷା କହୁଥିବା ଲୋକଙ୍କ ଆଗରେ ଠିଆ ହେଲେ ମର୍ଯ୍ୟାଦା ପାଆନ୍ତି ବା ନ ପାଆନ୍ତି ତାଙ୍କ ଭାଷାରେ ଗଢ଼ା ହୋଇଥିବା ସାହିତ୍ୟର ଉତ୍କର୍ଷ ଘେନି, ଅନ୍ୟ କାରଣ ଲାଗି ନୁହେଁ । ସାହିତ୍ୟ ହିଁ ବିଦ୍ୟା । ବିଦ୍ୟା ଥିଲେ ବିଦେଶରେ ଗୌରବ ମିଳେ । ବିଦ୍ୟା ନ ଥିଲେ ଗୌରବ ନାହିଁ, ଜୀବନ ଧିକ୍ । ଓଡ଼ିଶାର ଆଧୁନିକ ସାହିତ୍ୟ ନାଁ ଡାକ୍ ନ ହେଲେ ଆଧୁନିକ ଓଡ଼ିଆ ଅନ୍ୟମାନଙ୍କ ଆଖିରେ ଇଜ୍ଜତ୍ ପାଇବ ନାହିଁ । ଓଡ଼ିଶାର ଅତୀତ ଥିଲା ମହନୀୟ, ଏ ଯୁଗର ଅନ୍ୟଲୋକେ

ଆମ ଅତୀତକୁ ମନେପକାଇ ଆମ୍ଭକୁ ମର୍ଯ୍ୟାଦା ଦେବେ ବୋଲି ଆଶା କରିବା ବୃଥା, ସେ ମର୍ଯ୍ୟାଦା ମିଳୁଛି ଓ ମିଳୁଥିବ ଅତୀତର ସେହି ମହାପୁରୁଷମାନଙ୍କୁ, ଆମ୍ଭକୁ ନୁହେଁ । ଆମେ ଓଡ଼ିଆ ବୋଲି ମର୍ଯ୍ୟାଦା ପାଇବା କେବଳ ଗୋଟିଏ କଥା ହେଲେ, —ଯଦି ଆମର ଆଧୁନିକ ସାହିତ୍ୟ ସମୃଦ୍ଧ ହେବ । ଆମର ଦରକାର ପ୍ରସିଦ୍ଧ ଗଳ୍ପ ଉପନ୍ୟାସ, ବହୁତ ସଂଖ୍ୟାରେ । କେମିତି ତା ସମ୍ଭବ ହେବ ?

ସେହି ଚିନ୍ତା ପଶିଲା ମୋ ମୁଣ୍ଡରେ । ୧୯୨୩-୨୪ରେ ଶ୍ରୀ ନରେନ୍ଦ୍ରନାଥ ରାୟଙ୍କ ଘରେ ଏତେ ବଙ୍ଗଳା ବହି ଦେଖି, ତାଙ୍କ ଝିଅ ସଙ୍ଗରେ ବଙ୍ଗଳା ଓ ଓଡ଼ିଆ ଭାଷାର ଉତ୍କର୍ଷର ତୁଳନା ବିଷୟରେ ବାଦତର୍କରେ ଲାଗି ରାତି ରାତି ମୁଁ ଭାବିଛି । ସେହି ବାଦବୁଦିଆ ବଢ଼ିଗଲା ମୋ ମନରେ ଧୀରେ ଧୀରେ, ଲାଇବ୍ରେରିରେ ମାଳ ମାଳ ଇଂରେଜି ବହି ଦେଖି, ପଛେ ପାଟ୍ନାରେ ବଙ୍ଗଳା ସାହିତ୍ୟ ଓ ସଂସ୍କୃତିର ଆହୁରି କତିକୁ ଆସି । ମନ ଅସ୍ଥିର ହୁଏ, ଉପାୟ ?

ସୋନପୁରରେ ବାପାଙ୍କୁ ପଚାରିଥିଲି, —"ବାପା, ଆମର କ'ଣ ସେମିତି ବହି ଲେଖା ହେବ ନାହିଁ ?"

ସେ ହସି ହସି ଅଭୟ ଦେଲେ, "ହେବ, ନିଶ୍ଚୟ ହେବ । ବଡ଼ ହେଲେ ତେମେ ସବୁ ତ ଲେଖିବ । କହ୍ନେଇ କେଡ଼େ ସୁନ୍ଦର ଗପ ଲେଖେ । ତୁ ବି ଲେଖିବୁ ।"

"କେମିତି ଲେଖିବି ବତେଇଦେବ ବାପା ।"

"ନିଜେ ପାଠ ପଢ଼ିଲେ ଭଲ ପଢ଼ିଲେ ବଳେ ତୁ ଲେଖିପାରିବୁ, ତୋ ମନକୁ ଲେଖିବୁ । କେହି ବତେଇ ଦେବା ଦରକାର ପଡ଼ିବ ନାହିଁ । ଆଗ ଭଲକରି ପଢ଼, ଶିଖ୍ । ଯେଉଁମାନେ ଲେଖକ ହୁଅନ୍ତି ସେମାନେ ଆଗ ନିଜକୁ ତିଆରି କରନ୍ତି ଖୁବ୍ ଜ୍ଞାନୀ ଖୁବ୍ ପଣ୍ଡିତ କରି ଗଢ଼ି, ଦେଖୁନୁ କବି ଜୟଦେବଙ୍କୁ, ସେ ଆମ ଓଡ଼ିଆ ଲୋକ, କେତେ ପଢ଼ିଥିଲେ କେତେ ଜାଣିଥିଲେ ! ସେମିତି ଧାଡ଼ିଟିଏ ଆଉ କିଏ ଲେଖିବ ! ତାଙ୍କ ଗୀତଗୋବିନ୍ଦ ଗାଇଲେ ଶୁଣିବାକୁ ଲୋଭ କରି ସ୍ୱୟଂ ନାରାୟଣ ପରା ଧାଇଁ ଆସନ୍ତି । ରହି ପାରନ୍ତି ନାହିଁ । ଦେଖ୍ ଜଗନ୍ନାଥ ଦାସଙ୍କୁ, ସେମିତି ପଦଟିଏ କିଏ ଲେଖିବ ! ପଦେ ପଦେ କଥାରେ ସବୁ ରହିଛି ରେ ! କେଡ଼େ ବଡ଼ ମହାପୁରୁଷ ! କେତେ ଜ୍ଞାନ ! ଯେ ଲେଖକ ହେବ ସେ ହେବ ମହାପଣ୍ଡିତ, ଦିନ ଦିନ ରାତି

ରାତି ଲାଗି ପାଗି ପାଠର ସମୁଦ୍ର ମୁଣ୍ଡ ଭିତରେ ରଖିବ । ହେବ ଆଚରଣରେ ଶୁଦ୍ଧ, ପବିତ୍ର, ଚରିତ୍ରରେ ନିଷ୍କଳଙ୍କ । ତେବେ ଯାଇ ମା' ସରସ୍ୱତୀ ବର ଦେବେ, କଣ୍ଠରେ ବିଜେ କରିବେ, ନ ହେଲେ ନାଇଁ । ଖାଲି ପଦ ଯୋଡ଼ିଦେଲେ ସାହିତ୍ୟ ହେବ ନାହିଁ, ସେଗୁଡ଼ାକ ଶସ୍ତା ଗୀତ, ଶସ୍ତା ଲେଖା, ଯାହା ମନ ତା, ନିଃସାର, ସେଥିରେ କିଛି ନାହିଁ ଖାଲି ତଷୁ । ସେମିତି ଲେଖାଗୁଡ଼ାଏ ଗାରେଇଲେ ଲେଖକ ବୋଲାନ୍ତି ନାହିଁ, ଆଗ ପଢ଼, ଶିଖି, ପଛେ ଲେଖିବୁ । ଯାହା ମନ ଯେଡ଼େ ତାହା ପ୍ରଭୁ ତେଡ଼େ । ତୋ ଦେଇ ହବ । ଆଗ ପଢ଼ ।''

ଦିନେ ଲେଖିବି—ମୋ ମାତୃଭାଷାର ଗୌରବ ବଢ଼ାଇବି, ଏ ଧାରଣା ଏ ପ୍ରତିଜ୍ଞା ବୋଧହୁଏ ସେତିକିବେଳେ ଜନ୍ମ ହୋଇଥିଲା, ଶ୍ରୀ ନରେନ୍ଦ୍ରନାଥ ରାୟଙ୍କ ପରିବାରରେ ଏହି ଆଲୋଚନା ଉତ୍ତାରୁ । ବାପା କହିଲେ ''ଅମରକୋଷ ପଢ଼, ଅମରା ଢମରା ନିଠେଇ ଘୋଷି ଆଉ ସବୁ ପାଠ ଚାଳରେ ଖୋସ୍ ।'' ଅମରକୋଷ ସେ ଆବୃତ୍ତି କରିପାରୁଥିଲେ । ମତେ କିଣିଦେଲେ । ମୁଁ ଏଗାର ବର୍ଷର । ଘୋଷିଲି—''ଅମରାଃ ନିର୍ଜ୍ଜରାଃ ଦେବାଃ ବିବୁଧାଃ ତ୍ରିଦଶାଃ ସୁରାଃ ।'' କହିଲେ—''ମୂଳ ହେଲା ସଂସ୍କୃତ, ତାକୁ ନ ଚିହ୍ନିଲେ ଓଡ଼ିଆ କ'ଣ ଶିଖିବୁ ?'' ସଂସ୍କୃତ ବ୍ୟାକରଣ କୌମୁଦୀ, ମାଟ୍ରିକ୍ ଫୋର୍ଥ କ୍ଲାସ୍‌ରେ ସିଦ୍ଧାନ୍ତ ଚନ୍ଦ୍ରିକା ପଢ଼ିଲି, —ବିଦ୍ୟାସାଗରକୃତ, ମୁଁ ପଛେ ପଢ଼ିଲି, କିନ୍ତୁ ସୋନପୁରରେ ମାଇନର ଚାରିଶ୍ରେଣୀରେ ପଣ୍ଡିତ ଆଦିତ୍ୟଗୁରୁ, କପିଳ ମିଶ୍ର ଓ ଦାମୋଦର ଶାସ୍ତ୍ରୀ ମହାଶୟ ନିଜେ ସଂସ୍କୃତଭାଷାରେ ପ୍ରବୀଣ ଥାଇ ଓଡ଼ିଆକୁ ସଂସ୍କୃତ ପରି ପଢ଼ାଉଥିଲେ, ଓଡ଼ିଆ ଶବ୍ଦର ବ୍ୟୁତ୍ପତ୍ତି ପଢ଼ାଉଥିଲେ ଓ ପ୍ରଶ୍ନ ପଚାରୁଥିଲେ । ଆମର ଷଷ୍ଠ କ୍ଲାସ୍‌ରେ ପଢ଼ା ହେଉଥିଲା ପଣ୍ଡିତ ଆର୍ତ୍ତତ୍ରାଣ ଶତପଥିଙ୍କ ଅପଭ୍ରଂଶବୋଧିନୀ, ଶୁଦ୍ଧିବୋଧକ, ଘୋଷିଥିଲି । ପ୍ରତି ଓଡ଼ିଆ ଶବ୍ଦରେ ମୂଳ ଧାତୁ କ'ଣ ପ୍ରତ୍ୟୟ କ'ଣ ମୂଳ ସଂସ୍କୃତରୁ କେମିତି ତା ଅପଭ୍ରଷ୍ଟ ହୋଇଛି ଏସବୁ ଆମେ ଷଷ୍ଠ ଶ୍ରେଣୀରେ ଘୋଷି ଘୋଷି ଶିଖି ପରୀକ୍ଷା ଦେଉଥିଲୁ ଓ ସେହି ମୂଳଦୁଆ ହିଁ ମୋର କଲେଜ ଶେଷଯାକେ କାର୍ଯ୍ୟରେ ଲାଗିଲା ।

''ଯାହା ନୂଆ ଶବ୍ଦଟିଏ ଶିଖିଲୁ, ଇଂରେଜି ଓଡ଼ିଆ କି ବଙ୍ଗଳା ତାକୁ ଟିପି ରଖି ।'' ବାପା କହୁଥିଲେ, ବାଷଠି ବର୍ଷରେ ସେ ତା ବି କରୁଥିଲେ ।

ତେଣୁ ସେହି ସମ୍ପର୍କରେ ଶ୍ରୀ ନରେନ୍ଦ୍ରନାଥ ରାୟଙ୍କ ସ୍ମୃତି ଆପେ ମନେପଡ଼େ । କଲିକତାରେ ଦେଖା ହେଲା । ବାପା କହିଲେ ସୋନପୁରରେ

ମୋ ନାଁ ଲେଖା ହେବ । ସେ ମୋ ସଙ୍ଗେ କଥାଭାଷା କରି ମୋ ଇଂରେଜି ଜ୍ଞାନ ପରୀକ୍ଷା କଲେ । ତା ପୂର୍ବରୁ କାହ୍ନୁଭାଇ ମତେ ଇଂରେଜି ପଢ଼ାଇଥିଲେ ଓ ମୁଁ ଲଙ୍ଗମ୍ୟାନ୍‌ସ୍ ଗ୍ରୀନ୍ ଏଣ୍ଡ କୋ'ଙ୍କ ସେକେଣ୍ଡ ରିଡ଼ିଂ ବୁକ୍ କାଢ଼ି ବହି ଶେଷରୁ ବି ପଢ଼ି ବୁଝାଇ ପାରିଲି । ସେ ଭାରି ଖୁସି ହେଲେ ଓ ଆଶ୍ଚର୍ଯ୍ୟ ହେଲେ, କହିଲେ, ''ଯାର ଇଂରେଜି ଜ୍ଞାନ ମାଟ୍ରିକ୍ ଥାର୍ଡ଼ କ୍ଲାସ୍‌ର ଯଦିଚ ବୟସ ମୋଟେ ନଅ ଓ ଆକାର ଏଡ଼େ ସାନ । ଯେ ନିଶ୍ଚୟ ଖୁବ୍ ମେଧାବୀ ଛାତ୍ର । ସୋନପୁର ଆସୁ, ମ୍ୟାଟ୍ରିକ୍ ଫୋର୍ଥ କ୍ଲାସ୍‌ରେ ନାଁ ଲେଖାଇଦେଲେ ଭଲ ହେବ । ମୁଁ କରିଦେବି ।'' ବାପା କହିଲେ ''ଇଂରେଜି ଟିକିଏ ପଢ଼ିଛି ସିନା, ଅନ୍ୟାନ୍ୟ ପାଠ ତ ଅଛି । ତେଣୁ ତାକୁ ସବୁ ପାଠ ପରୀକ୍ଷା କରାନ୍ତୁ, ଯେଉଁ ଶ୍ରେଣୀକୁ ଯୋଗ୍ୟ ହେବ ବରଂ ତା ତଳ ଶ୍ରେଣୀରେ ପଢ଼ୁ ।'' ସେହି ବର୍ଷ ସୋନପୁରରେ ମତେ ପରୀକ୍ଷା କରାଗଲା । ବିଭିନ୍ନ ମାଷ୍ଟର୍ ପରୀକ୍ଷା କଲେ । ଇଂରେଜିରେ ମୁଁ ଅଷ୍ଟମ ଶ୍ରେଣୀ ବାର୍ଷିକ ପରୀକ୍ଷା ପାଇଁ ଯୋଗ୍ୟ ବିବେଚିତ ହେଲି । ଓଡ଼ିଆରେ ସପ୍ତମ ଶ୍ରେଣୀରେ ପଢ଼ିଲା ଭଳି, ଅଙ୍କରେ ଷଷ୍ଠ ଶ୍ରେଣୀ ଲାଗି (ମାଇନର୍‌ର ୪ କ୍ଲାସ୍‌ରୁ ତଳ ୨ୟ କ୍ଲାସ୍), ଇତିହାସ, ଭୂଗୋଳ, ବିଜ୍ଞାନ ଆଦି ମୁଁ ଆଦୌ ପଢ଼ିନାହିଁ । ନିଷ୍ପତ୍ତି ହେଲା ମୁଁ ଷଷ୍ଠ କ୍ଲାସ୍‌ରେ ନାଁ ଲେଖାଇବି । ମୋର ଇସ୍କୁଲ୍ ଜୀବନ ଆରମ୍ଭ ହେଲା ସୋନପୁର ମହାରାଜା ହାଇ ଇଂଲିସ୍ ସ୍କୁଲ୍‌ରେ ଷଷ୍ଠ ଶ୍ରେଣୀରୁ, ୧୯୨୩ ସେପ୍‌ଟେମ୍ବରରୁ ।

ଥାକ ଥାକ କୋଠା-ଗହଳି କଲିକତା, —ତା ଆକାଶରେ ଘୁଡ଼ି ଭର୍ତ୍ତି, ସଡ଼କରେ ମଣିଷ ଓ ଗାଡ଼ି । ମୁଁ ମନେରଖିଲି ତା'ର ଚିଡ଼ିଆଖାନାର ଜନ୍ତୁମାନଙ୍କୁ, ଜାତି ଜାତି ମାଙ୍କଡ଼, ଗରିଲ୍ଲା, ସିପୋଞ୍ଜି, ଜାତି ଜାତି ବାଘ, ଭାଲୁ, ସିଂହ, ଜଳହସ୍ତୀ, ଜେବ୍ରା, ଓଟ, ହାତୀ, ଜାତି ଜାତି ହରିଣ, ମୃଷା, ଉଷ୍ଟ୍ରପକ୍ଷୀ, ନାନାପ୍ରକାର ଚଢ଼େଇ । ସବୁ ମିଶିଲେ ଯେଉଁ ବିଚିତ୍ର ସମାବେଶ ମୋ ସ୍ମରଣପଟରେ ତା ନାଁ କଲିକତା ।

ରହିଲା ପଛରେ । ପୁଣି ଚଢ଼ିଲୁଁ ରେଲ୍ । ଦି' ଦିନ ପରେ ଆଦ୍ରା, ଆସନ୍‌ସୋଲ୍ ଆଉ କାଳିମାଟି ବାଟେ ପହଞ୍ଚିଲୁଁ ସମ୍ବଲପୁର ।

ସମ୍ବଲପୁରରେ ରଜାଘର ବସା, ନଈକୂଳେ । ବାପା ବୁଲେଇ ବୁଲେଇ ଦେଖାଇଲେ । ସମଲାଇ ଦର୍ଶନ କରି ମୁଁ ଭାରି ଖୁସି ହେଲି, ବାପା କଳାପାହାଡ଼କୁ ମାରିବା କିମ୍ବଦନ୍ତୀ କହିଲେ ।

ଭାଷା, ପୋଷାକ, ଖପର୍ଲି ଘର, ସବୁ ବିଷୟରେ ନୂଆ ନୂଆ ଲାଗିଲା ସମ୍ବଲପୁର, ଭଲ ଲଗିଲା ।

ତା'ପରେ ଦିନେ ମହାନଦୀରେ ବସିଲୁଁ ନାହାରେ । ସମ୍ବଲପୁରରୁ ବାହାରିଲୁଁ ସୋନପୁର ଯିବୁଁ ବୋଲି । ପୂରିଲା ପୂରିଲା ନଈ, ଖର ସୁଅ, ବଡ଼ ବଡ଼ ପଥର ସନ୍ଧିରେ ସାପେଇ ସାପେଇ ନାହା ଚାଲିଛି, ଦି' ପାଖରେ କେତେ ପାହାଡ଼, ଜଙ୍ଗଲ, ଡିପ କୁଦ, ବହୁତ ବହୁତ ଦୂର ଛଡ଼ା ଗୋଟିଏ ଗୋଟିଏ ଗାଁ । ମତେ ପାଣିକି ଗୋଡ଼ହାତ ବଢ଼ାଇବାକୁ ମନା, ନଈରେ କିମ୍ଭୀର ଭୟ । ବାପା କହି ଦେଉଥାନ୍ତି, —କେଉଁ ସ୍ଥାନର କି ତାତ୍ପର୍ଯ୍ୟ ବା ଇତିହାସ, କେଉଁଠି କୂଳରେ ବାଘ ଭୟ, କେଉଁଠି ମଣିଷମାରୁ ଡକାୟତଙ୍କ ଭୟ । ଦିନଯାକ ନାହା ଚାଲେ, ରାତି ହେଲେ କେଉଁଠି କୂଳରେ କାତ ମରାହୋଇ ବନ୍ଧାହୁଏ । ରୋଷେଇ ନାହାରେ ହିଁ ହୁଏ, ଖାଇବାକୁ ପ୍ରଚୁର ମାଛ, କେଉଟମାନେ ଧରନ୍ତି ।

ଦି' ପାଖେ ତୀଖ ଅତଡ଼ା ଉପରେ ବହଳ ଶାଗୁଆ ବଣ ଧାଡ଼ିହୋଇ ଲମ୍ବିଛି । ତା' ସେକରେ ନେଳି-ଶାଗୁଆ ପାହାଡ଼ମାନଙ୍କ ବିମାନ, ଗୋଟିକ ଉପରେ ଆଉ ଗୋଟିଏ । ମଝିରେ ବଙ୍କେଇ ବୁଲି ଜୀଅନ୍ତା ପୂରିଲା ପୂରିଲା ନଈ । ସ୍ୱାସ୍ଥ୍ୟବତୀ, ଜୀବନ ଛଳ ଛଳ, ଚଞ୍ଚଳ ଗତି, ସରସ ମୁହଁ, ସତେ ଯେମିତି ସମ୍ବଲପୁରଆଡ଼ର ଟୁକେଲ୍‌ଟିଏ, ତା'ର ହସ ସରେ ନାହିଁ, ଗପ ସରେ ନାହିଁ, ତା ମାୟା ଚାରିଆଡ଼େ ବିଞ୍ଚିହୋଇ ପଡ଼ୁଥାଏ ଜହ୍ନ ଆଲୁଅ ପରି । ସେ ନଈର ହଳଦିଆ ବଢ଼ିପାଣିରେ ବଉଦ-ଓଢ଼ା ସୂର୍ଯ୍ୟ ନିସ୍ତେଜ ହୋଇ ମିଶି ଗୋଳି ହୋଇଯାଏ । ଚାଇଁ ଚାଇଁ ହୋଇ ବରଷା ଅସରା ମାଡ଼ିଆସେ, ଜାଲ ଟାଙ୍ଗି ଦିଏ, ପବନ ଘୁମୁରେ । ବରଷା ଛାଡ଼େ, କେତେବେଳେ ହଠାତ୍ ସଫାସୁତୁରା ଗୁଲୁଗୁଲିଆ ପିଲାଟିଏ ପରି ସୂର୍ଯ୍ୟ ମୁହଁ ଦେଖାଏ । ପୁଣି ସେ ବୁଢ଼ା ହୁଏ, ମରେ, ପୋଡ଼ାହୁଏ, ଦିଗ୍‌ବଳୟରେ ପାହାଡ଼ ସେପାଖେ ଜଳିଉଠେ ତା'ର ନାଲି ଜୁଇନିଆଁ ।

ମନେ ପଡ଼ିଯାଏ ସେତିକିବେଳର ସଞ୍ଜଟିଏ । ଅତଡ଼ା ସେପାଖେ ଗୋଟିଏ ଗୋଳିଆ ପାହାଡ଼, କଳାଘୁମର ବନସ୍ତ ଛୁଆଣି । ତା ଆଗରେ ଅତଡ଼ା ଉପରେ ଗୋଟିଏ ଛୋଟ ଗାଁ, ଧାଡ଼ି ଧାଡ଼ି ଖଡ଼ ଛାତ, ଖପର୍ଲି ଛାତ, ଢାଲୁ ପଉନ ଉପରେ ଉଠାଣିଆ ହୋଇ ଖେଳେଣା କଣ୍ଢେଇ ପରି ଘରଗୁଡ଼ିକ ସଜାହୋଇ ରହିଥାଏ । ଯେମିତି ଆସ୍ତେ ଆସ୍ତେ ଚଢ଼ି ଚଢ଼ି ପାହାଡ଼ ଆଡ଼କୁ ଯାଇଛି । ଏଠି ସେଠି ନାଲି ନାଲି ଆଲୁଅ ଜଳୁଥାଏ । ଲୋକଙ୍କ ପାଟି

ଶୁଭୁଥାଏ, ଗୋରୁଙ୍କ ହମା ରଡ଼ି ଶୁଭୁଥାଏ, କେଉଁଠୁ ଗୋଟିଏ ମନ୍ଦିରରୁ ବାଜିଲା ଘଣ୍ଟା ଟାଇଁ ଟାଇଁ ମାଦଳ ଢାଉଁ ଢାଉଁ । ଡଙ୍ଗା ପାଖେ ପାଣି ଶୁଭୁଥାଏ ଛଳାତ୍—ଛଳାତ୍—ଛପ୍-ଛପ୍ । ତୀବ୍ର ଆଇଁଷ ଗନ୍ଧ ନାକରେ ବାଜୁଥାଏ । ଡଙ୍ଗା କୂଳରେ ବନ୍ଧା ହେଲା । ନଈର ଅନ୍ଧାର ଭିତରୁ ଆମେସବୁ ନଲଟଣ ଆଲୁଅରେ କୂଳକୁ ଉଠି ଆସିଲୁଁ ଗୋଟିକ ପରେ ଗୋଟିଏ । କେତେ ଲୋକ ଆସି ବେଢ଼ିଗଲେ । ସେ ରାତିକ ଆମ ରହଣି ଗୋଟିଏ ଘର ଭିତରେ, ସେଇଠି ରୋଷେଇ ହେଲା । ଖୁବ୍ ସୁଆଦ ମାଛ ତରକାରି । ବାପା ରାନ୍ଧିଥିଲେ । ଗାଁ ଲୋକେ ବହୁତ ଆଦର ଦେଖାଇ ବେଢ଼ି ବସି ଗପ କରୁଥାନ୍ତି । କେଡ଼େ ଚଞ୍ଚଳ ଘର ମଣିଗଲି । ଯେମିତି ଏମାନେ ମୋର କେତେ କାଳର କେଡ଼େ ଚିହ୍ନା ।

ମୁଁ ଜାଣିନାହିଁ କେଉଁ ଗାଁ ସେ, ଆଉ କେବେ ଯାଇନାହିଁ । କିନ୍ତୁ ମୋ ଜୀବନରେ ଅନେକଥର ହେତୁ କରିଛି ସେ ଗାଁକୁ ।

ସକାଳୁ ସେ ଗାଁ ଛାଡ଼ି ଚାଲିଗଲୁଁ । ପୁଣି ଡଙ୍ଗା । ତା'ପରେ ନଈ ସୁଅ ଆହୁରି ଖର ଜଣାଗଲା, ନଈରେ ବଡ଼ ବଡ଼ ପଥରମାନଙ୍କ ସଂଖ୍ୟା ବଢ଼ିଲା । ସେମାନଙ୍କ ସନ୍ଧିରେ ପାଗଳ ପରି ନଈ ଗର୍ଜି ଗର୍ଜି ଡେଉଁଥାଏ । ନାଉରୀ ପ୍ରାଣପଣେ ସୁଅ ସଙ୍ଗେ ଲଢ଼ୁଥାନ୍ତି । ହଠାତ୍ ଠାଏ ଡଙ୍ଗାର ତଳିରେ କଣାଟାଏ ହୋଇଗଲା, ପାଣି ପଶିବାକୁ ଲାଗିଲା । ନାଉରୀଙ୍କୁ ଉଲୁରି ଲାଗିଗଲା । ମୁହଁରେ ସତେକି ପାଣି ନାହିଁ, ହାତ କାମ କରୁଛି ବିଜୁଳି ବେଗରେ । ଥୋକାଏ ଟିଣ ଖୋଳରେ, ବାଲ୍ଟିରେ ଡଙ୍ଗା ଭିତରୁ ପାଣି କାଢ଼ି ନଈକି ଫେରାଇ ଦେଉଛନ୍ତି । ଥୋକାଏ କାତ ମାରୁଛନ୍ତି । ନରେନ୍ ବାବୁଙ୍କ ମୁହଁରେ ଛାନିଆଁ ଦେଖିଲି ଆଖି ବଡ଼ ବଡ଼ ହୋଇଗଲା । ପାଟି କରୁଥାନ୍ତି "ସର୍ବନାଶ୍ ! ଓ ବାବା ସର୍ବନାଶ୍ !" ସେ ଭାବୁଥିଲେ ଡଙ୍ଗାରେ ପାଣି ପଶି ଡଙ୍ଗାଟା ବୁଡ଼ିଯିବ ।

ବାପା, ଆଶ୍ୱାସନା ଦେଉଥାନ୍ତି, "କିଛି ହବ ନାହିଁ, କେହି ଡର ନାହିଁ ।"

କଣାଟା କେମିତି ହୋଇ ବୁଜା ହେଲା, ତଥାପି ପାଣି ଗଳୁଥାଏ, ଅଳ୍ପ । ସେମାନେ ଡଙ୍ଗା ନେଇ ଗୋଟିଏ ଘାଟରେ ଭିଡ଼ିଲେ । ମୁଣ୍ଡ ଉପରେ ସୂର୍ଯ୍ୟ । ସେଠି ସେମାନେ ଭଲ କରି ଡଙ୍ଗାକୁ ମରାମତ କଲେ ।

ପୁଣି ଚାଲିଲୁଁ ।

ଆଗପଛ ହୋଇ କେତେବେଳେ କେଉଁ ଡଙ୍ଗା ଚାଲିଯାଏ । କିଏ

ତା ଭିତରେ ? କୁତୂହଳ ହୁଏ ।

"ବୋଉ ମନେପଡୁଚି କିରେ ?" ବାପା କଁଳେଇ ପଚାରନ୍ତି । ପିଠି ଆଉଁସି ଦିଅନ୍ତି । ମୁଁ କ'ଣ କହେଁ ?

ବୋଉକୁ ତ ମୁଁ ମୋ ଭିତରେ ଘେନି ଚାଲିଥାଏଁ । ରାତି ହେଲେ ତା କୋଡ଼ରେ ଶୋଇପଡ଼େଁ ।

କିନ୍ତୁ କେହି ପଚାରିଦେଲେ ଚାଉଁକିନା ମନେ ପଡ଼ିଯାଏ ବୋଉ ଏଠି ନାହିଁ, ମୁଁ ତାଠୁଁ ଦୂରକୁ ଦୂରକୁ ଚାଲିଯାଉଛି । ଛଳଛଳ ଆଖିରେ ନଈ ଆରପାରିକୁ ଅନାଉଁ ଅନାଉଁ ମନକୁ ଦମ୍ଭ ଦିଏ, ମୁଁ ପାଠ ପଢ଼ିବି, ବଡ଼ ହେବି, ମୋ ବୋଉ ଖୁସି ହେବ । ଆଉ ବୋଉ ତ ମୁଁ ମନକଲା ମାତ୍ରେ ଆସି ପହଞ୍ଚିବ, ବୋଉ ସେଇଆ କହିଚି, ବାପା ବି ସେଇଆ କହିଛନ୍ତି ।

ତେଲଚା' ସୁନାପାଣି ପରି ତାଆଣିଆ ଖରା ପଡ଼ିଥାଏ, କୂଳର ଗଛବୃଛ ଉପରେ, ଦୂରର ନେଳିଚା' ପାହାଡ଼ ଉପରେ । ନଈ କେଡ଼େ ଓସାର ହୋଇଗଲା, ଆରପାରିରେ ବଡ଼ ବଡ଼ ଗଛର ତୋଟା ଗହଳି ହୋଇ ଦିଶୁଛି । ଯେମିତି ଗୋଟାଏ ପ୍ରକାଣ୍ଡ ବଗିଚା । ତା ମଝିରେ ଠିଆହୋଇଛି ଗୋଟିଏ ଦେଉଳର ଶିଖର, ସେଠୁ ବି ସୁନାପାଣି ବୋହିପଡୁଛି ।

"ହେଇ ଅନାରେ ଗୋପ, ହେଇ ସେପାଖେ ଦିଶୁଛି—ସୋନପୁର ।"

"ଏଇ ସୋନପୁର ବାପା ?"

"ଏଇ ସୋନପୁର । ହେଇ ସେ ଦେଉଳ ଦେଖୁଚୁ ନା ? ସେ ସୁବର୍ଣ୍ଣମେରୁ । ଦଣ୍ଡବତ ହ' । ଯେ ସ୍ଥାନ ରାମେଶ୍ୱର, ହେଇ ସେଠି ତେଲମୁହାଣି ଯେଉଁଠି ତେଲ ନଦୀ ଆସି ମହାନଦୀ ସଙ୍ଗରେ ମିଶିଲା । ଏଇ ସେ ସୋନପୁର, କହନ୍ତି ଏଠି ସୁନା ଅଛି, ଯଯାତିକେଶରୀ ଏ ସହର ବସେଇଥିଲେ, ତାଙ୍କର ଯେ ରାଜଧାନୀ ହୋଇଥିଲା । କେତେ ପୁରୁଣାକାଳିଆ ଦେଉଳ ଦେଖିବୁ ଏଠି, ଅସଂଖ୍ୟ । ଭୁବନେଶ୍ୱରରେ ଯେତିକି ଦେଉଳ ଏଠି ସେତିକି ଦେଉଳ । କେତେ ନଈରେ ଗଲାଣି, କେତେ ଭାଙ୍ଗି ଭୁଷୁଡ଼ି ଗଲାଣି, ତଥାପି ଆହୁରି ବହୁତ ଅଛି । ହେଇ ଦେଖୁଚୁ ଯେ ପଥରବନ୍ଧ ? ଆମ କଟକରେ ଯେମିତି ଏଠି ସେମିତି, ପଥରକୁ ପଥରଯୋଡ଼ ଦେହରେ ସୀସା ଢଳା ହୋଇଛି, ହେଇ ଦେଖ୍ କେତେ ଦେଉଳ, ଯେ ଜଗନ୍ନାଥ ଦେଉଳ, ଯେ ସୁରେଶ୍ୱରୀ ଦେଉଳ, ହେଇତି ସେ ହନୁମାନ ଦେଉଳ, ହେ ସେପାଖେ ସମଲେଶ୍ୱରୀ ଦେଉଳ, ଦେଖୁଚୁ ? ଠିକ୍ ସମଲେଶ୍ୱରୀ ଦେଉଳ ପାଖରେ ତୋ ମାମୁଁଘର, ଏଠିକି ଦିଶିବ ନାହିଁ । ହେଇ ଦେଖ୍ ରଜାଘର । ତା ସେ ପାଖେ ଆମ

ଡଙ୍ଗା ଲାଗିବ ।''

ନଈ ସେପାଖେ ପାହାଚ ପାହାଚ ହୋଇ ମହାନଦୀର ପଥର ବନ୍ଧ, ସ୍ଥାନେ ସ୍ଥାନେ ବାଙ୍କ ବୁଲିଛି, ବୁରୁଜ ବାହାରିଛି । ସେହି ତାକୁ କରାଇଥିଲେ । ତା' ଉପରେ ଧୋବଲା ତିନିମହଲା କୋଠା, ରଜାଘର, ଧାଡ଼ିହୋଇ ଆଉ କେତେ କୋଠା, କେତେ ଘର ।

କୁତୂହଳ ଲାଗୁଥାଏ ଲୋକଙ୍କୁ ଦେଖି, ସେମାନେ ମୋର ଅଚିହ୍ନା । ସେମାନେ ଅନେଇଁଥାନ୍ତି ଆମେ ଅନେଇଁଥାଉଁ ।

''ଏଇ ସେ ସୋନପୁରରେ ବାବା, କହୁଥିଇ ଧୂଳିଆ ଏଇଠି ଜନ୍ମ । ସମସ୍ତେ ଏଇଠୁ ଆଗ ମାଇନର ପାଶ୍ କଲେ, ଏଇଠି ମୁଁ ତିରିଶି ବର୍ଷକାଳ ଚାକିରି କଲି, ତୋ' ମାମୁଁ, ମାମୁଁ ବାପା ସମସ୍ତେ ଏଇଠି ରଜାଘରେ ଚାକିରି କଲେ । ଏଇଠି ମୋ ଭେଣ୍ଡିଆବେଳେ ଥିଲି । ଏଠି ତୋ ବୋଉ ଥିଲା । ଘରପରି ଥିଲୁଁ । ମତେ ରଜା କେତେ କରି ଯାଚିଲେ ''ଆମେ ଜମିବାଡ଼ି ଗାଁ ଗଣ୍ଡା ଦବୁଁ ଏଇଠି ରହ,'' ତୋ ମାମୁଁଘର ହଁ କଲେ ସିନା, ଗାଁ ଜମିବାଡ଼ି ନେଇ ରହିଲେ, ମୁଁ ବାରମ୍ବାର ମନାକଲି । ଦେଖ୍ ଫେର୍ ଯୋଗ ଥିଲା ଏଠିକି ଲେଉଟି ଆସିବାକୁ । ସୁବର୍ଣ୍ଣମେରୁ କାହିଁକି ଆଣିଛନ୍ତି ସେ ଜାଣନ୍ତି ।''

ଆଉ ଥରେ ସୋନପୁର ଲେଉଟି ଆସିବା ଯୋଗ ମୋ' ଜୀବନରେ ଆସିଲା ନାହିଁ ।

ନଈରେ ଡଙ୍ଗାର ଘେର ଭିତରୁ ମତେ ମୁକ୍ତି ମିଳିଲା, ଯେତେବେଳେ କିଏ ଜଣେ ଟେକିଆଣି କୂଳକୁ ଉଠିବା ବାଟରେ ଓହ୍ଲେଇଦେଲା । କୂଳରେ କେତେ ଲୋକ !

ଖାଲି ଲୋକ ବି ନୁହନ୍ତି । ପାଣି ପିଇବାକୁ ହାତୀମାନଙ୍କୁ ଅଣା ହେଉଛି । କେଡ଼େ ପ୍ରକାଣ୍ଡ ଆକାରର ଜନ୍ତୁ ! ଅଥଚ ସୋର ଶବଦ ନାହିଁ । ଭାସିଲା ପରି ଚାଲି ଯାଉଛନ୍ତି ଜଣକା ପିଛା ଜଣେ ! ଅନ୍ଧାର ପରି ଦେହ ।

ଆମ ଘର ।

ଆଖି ଆଗରେ ଭାସିଉଠେ ପଇଁଚାଳିଶି ଛୟାଳିଶି ବର୍ଷ ତଳର ଗୋଟିଏ ଛବି । ଗୋଟିଏ ବଡ଼ ହତା, ତା କରେ କରେ ସାମ୍ନାରେ ସଡ଼କଟିଏ ପଡ଼ିଛି ବାଁ ଆଡ଼କୁ ଡାକ୍ତରଖାନା ଦେଇ ଜେଲଖାନା ଦେଇ ଖେଳପଡ଼ିଆ ଦେଇ ମଫସଲକୁ, ଉତ୍ତର-ପଶ୍ଚିମ ମୁହାଁ । ଡାହାଣ ଆଡ଼କୁ ଖଣ୍ଡେ ବାଟ ସିଧା ଦକ୍ଷିଣ ପୂର୍ବକୁ ଯାଇ ରଜାଘର ବଡ଼ ବଗିଚା କରେ କରେ ସିଧା ବଡ଼ପଡ଼ା ବସ୍ତିର ବଡ଼ ବଜାରକୁ; ଆହୁରି ପୂର୍ବକୁ ଝାଙ୍କି । ସେହି ବାଟେ ଆସେ

ରଥ, ବଡ଼ପଡ଼ାର ଜଗନ୍ନାଥ ମନ୍ଦିରରୁ । ସେହି ବାଟେ ମୁଁ ଯାଏଁ ଟିଉସନ୍ ପଢ଼ି ହସ ହସ ସାର୍ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଅଧାପନା ମନ୍ଦିରକୁ ଗୋଟିଏ ଆଟୁ ଉପରକୁ । ହତାରୁ ଦକ୍ଷିଣକୁ ଚଲାବାଟ ପଡ଼ିଛି ପାଖେ ଦୂରରେ ମଦଭାଟି ବାଟେ ଖଦାଳ ପଡ଼ାକୁ, ଘାସିପଡ଼ାକୁ, ଆଉ ପାଖେ ସୁରେଶ୍ୱରୀ ଦେଉଳ ବାଟେ ସୁବର୍ଣ୍ଣମେରୁ ମନ୍ଦିରକୁ, ଆଉ, ତେଲନଦୀକୁ । ହତାର ଦକ୍ଷିଣ ପଟ ପଶ୍ଚିମ ପଟ ଖାଲି ଫାଙ୍କା ପଡ଼ିଆ; —ନିଛାଟିଆ ବିସ୍ତୃତ ।

ହତାର ବାଇଗଣ ବାଡ଼, ମଝିରେ ମଝିରେ କନିଅର, ପାଧୁଆ, ଶିମିଳୀ, ସାମ୍ନାପଟେ ଓ ଡାହାଣେ ଦକ୍ଷିଣ-ପୂର୍ବ ପଟେ ଥୋଡ଼ାଏ ଶାଗୁଆନ୍ ଗଛ, ଶିରୀଷ ଗଛ, —କହନ୍ତି 'ସୋରିଷିଆ', ଭିତରଯାକ ବଡ଼ ବଡ଼ ଶିରୀଷ ଗଛ, କୃଷ୍ଣଚୂଡ଼ା ଗଛ, ଆମ୍ବ ଗଛ, ସତେ ଯେମିତି ଗୋଟାଏ ତୋଟା । ସାମ୍ନାଟା ଉତ୍ତର-ପୂର୍ବ ଦିଗରେ । ସାମ୍ନା ବାଁ ପଟକୁ ଗୋଟାଏ ବଡ଼ କଦମ୍ବ ଗଛ, ତା ତଳେ ଅଲଗା ହୋଇ ଦି ବଖରା ସାନ ସାନ ଖପର ଘର, ସାମ୍ନାରେ ଚାଳି । ସେ ଘରେ ଓ ତା ସାମ୍ନାରେ କାଠ ଜିନିଷ ଓ ଖୁଚୁରା କାଠ ଥାଏ, ବାରିକ ମିସ୍ତ୍ରୀ ବିଭାଗର ବୁଢ଼ା ଗୋପୀ ମିସ୍ତ୍ରୀ ସେଠି ତା ବଢ଼େଇଶାଳ କରିଥାଏ, ପ୍ରତିଦିନ କାମ କରେ ।

ଶାଗୁଆନ୍ ଫୁଲ ସଡ଼କ କର ଗଛରେ ଲଦି ହୋଇଥାଏ, ହତାଯାକ ଶିରୀଷ ଫୁଲର ମହକ । କାଠ ଫାଟକ ବାଟେ ପଶି ଗୋପୀ ମିସ୍ତ୍ରୀ ଶାଳକୁ ଡାହାଣେ ରଖି ସିଧା ଆଗକୁ ଚାଲିଲେ ସାମ୍ନାରେ ଆମ ରହିବା ଘର ଦିଶେ । ବାଁରୁ ଡାହାଣକୁ ଏମୁଣ୍ଡ ସେମୁଣ୍ଡ ପୂରୁଷେ ଉଞ୍ଚ ଫରଚା ପିଣ୍ଡା, ମଝିରେ ପାହାଚ । ପିଣ୍ଡା ଉପରେ ବଡ଼ ଟେବୁଲ୍‌ଟିଏ ପଡ଼ିଥାଏ, ହତା ଆଡ଼କୁ ମୁହଁକରି ଟେବୁଲ୍‌କୁ ଅନାଇଁ ବସିଥାନ୍ତି ଜଣେ ବୃଦ୍ଧ, ସଫା ଶ୍ୟାମଳ ବର୍ଣ୍ଣ, ଆଖିରେ ଧଳା ଫ୍ରେମ୍‌ର ଚଷମା, ଚଉଖୁଣ୍ଟ ହୋଇ ଫରଚା ମୁହଁ, ଆଖିତଳ ହାଡ଼ ବାରି ହୋଇ ପଡ଼େ, ବଡ଼ ନାକ, ଟିକିଏ ଶୁଆଥଣ୍ଟିଆ, ଓସାର ଆଖି, ଓସାର କପାଳ ତୀଖ ହୋଇ ଉପରକୁ ଉଠିଛି, ଟିକିଏ ବଡ଼ ବଡ଼ କାନ, ମୁଣ୍ଡବାଳ ସିଧା କୁଣ୍ଡିଆ ହୋଇଛି ସାମ୍ନାକୁ । ଗମ୍ଭୀର, ନିବିଷ୍ଟ ଠାଣି, ଯାଉ ବିତି ଘଣ୍ଟା ପରେ ଘଣ୍ଟା, କାମ ଚାଲିଥିବ ।

କିଏ ଆସୁଛି ପରା, ବେକ ଟେକି ସାମ୍ନାକୁ ଅନାଇଁ ଦେବେ । ଅଥଚ ଉଜ୍ଜ୍ୱଳ ବଡ଼ ବଡ଼ ଆଖି ଯୋଡ଼ିଏ, ଉଦ୍‌ବେଗ ସଙ୍ଗେ କେବେ ଚିହ୍ନାଜଣା ହୋଇ ନ ଥିଲା ପରା ସେ ଆଖିର ସ୍ଥିର ଦୃଷ୍ଟି, ସତେ ଯେମିତି ସବୁ-ଜାଣତା, ମର୍ଯ୍ୟାଦା ଥାଏ ସେ ଆଖିରେ, ମୁହଁର ସେ ଠାଣିରେ ।

କେତେବେଳେ ସ୍ଥିର ହୋଇ ଖାଲି ଶୂନ୍ୟକୁ ଅନାଇଁ ଚାହିଁଥାଏ ସେ ଆଖି, ଡେଇଁ ଡେଇଁ ସେ ମୁହଁ ସମାଧିସ୍ଥ ।

"ସବୁଠି ସମସ୍ତେ ଅଛନ୍ତି, କିଛି ଶୂନ୍ୟ ନୁହେଁ । ଯାହାକୁ ରୂପ ବୋଲି ମଣୁଛ ସେ ଖାଲି ଭେଳିକି । ସେ ରୂପ ଉହାଡ଼ରେ ସତର ରୂପ ଅଛି । ଶୂନ୍ୟରେ ରୂପ ଅଛି । ସେ କରେ, କରାଏ, ଦିଏ, ନିଏ, ସବୁ ତ ଚାଲେ ତାରି ବୁଦ୍ଧିରେ, ତାରି ଇଚ୍ଛାରେ, ସେ ସବୁ ଶକ୍ତିର ମୂଳ । ତାକୁ ଡାକ, ସେ ଦେଖାଦେବ, ତାକୁ ଝୁରିହୁଅ, ସେ ବୋଧ ଦେବ । ଆଗରେ ସେ ପଛରେ ସେ, ତୁମେ ତାକୁ ଦେଖିପାରୁ ନାହଁ ସିନା ।"

ଆମ ଘର । ସେ ଛବିରେ ମହକ ତ ତାଙ୍କରି ବ୍ୟକ୍ତିତ୍ୱର, ସେ ତା'ର ପ୍ରାଣ-କେନ୍ଦ୍ର । ସେ—ମୋ ବାପା ।

ପିଣ୍ଡାକୁ ଲାଗି ତିନି ବଖରା କୋଠା ଘର; ଉପର ଖପରଲି । ଘରଆଡ଼କୁ ମୁହଁ କରି ଠିଆହେଲେ ବାଁ ଆଡ଼ୁ ଦି ବଖରା ସରକାରୀ ଗୋଦାମ, ଡାହାଣ ବଖରାଟି ବାପାଙ୍କ ଅଫିସ୍, ସେଠି ଆଉ ଦୁଇଜଣ ଅଧସ୍ତନ ବି କାମ କରନ୍ତି, ଜଣେ 'ମୋହରୀର' ପଦବୀଧାରୀ, ସେ ଶିକ୍ଷକ ଗୋବିନ୍ଦ ମିଶ୍ରଙ୍କ ସାନଭାଇ ଗୋପାଳ ମିଶ୍ର । ସେ ଧାଡ଼ିକ ପଛ ଆଡ଼କୁ ଭିତର ଦୁଆର ଆଡ଼କୁ ମୁହଁ କରି ଅନ୍ୟାନ୍ୟ ଘର, ସେ ସେବସାର 'ଆର ଖଞ୍ଜା' ଯେଉଁଠି ଶିକ୍ଷକ ନରେନ୍ଦ୍ରନାଥ ରାୟ ସପରିବାର ରହୁଥିଲେ । ପିଣ୍ଡା ଡାହାଣକୁ ଯୋଡ଼ିଏ କବାଟ । ଗୋଟିଏ ତ ଆର ଖଞ୍ଜାର । ତା ଡାହାଣ ପଟ କବାଟ 'ଆମ ଖଞ୍ଜା'ର କବାଟ ବାଟେ ପଶିଲେ ଲମ୍ବ ହୋଇ ସାମ୍ନାରୁ ପଛକୁ ଗୋଟିଏ ଅଣଓସାର ମାଟି ଦୁଆର । ତା ଡାହାଣପଟେ ପିଣ୍ଡାକୁ ଲାଗି ଏକା ଧାଡ଼ିକେ ଦି' ବଖରା ଘର, ମାଟି ଗାନ୍ଥିନିରେ ଇଟା କାନ୍ଥ, ଚୂନ ଲିପା, ଉପର ଖପର୍ଲି, ତା ସେମୁଣ୍ଡକୁ ଝାଟିମାଟି କାନ୍ଥ ଉପରେ ଖପର୍ଲି ହୋଇ ବଖରାଏ ରୋଷେଇ ଘର, ବଖରାଏ ଭଣ୍ଡାର ଘର, ଗୋଟିଏ କୂଅ । 'ଆମ ଖଞ୍ଜା ଓ ଆରଖଞ୍ଜା' ମଝିରେ ପାଚିରିରେ କବାଟ ।

ସେହି ଦି' ବଖରା ଆମ ରହିବା ଘର । ଆଗ ପଶିଗଲେ ଯେଉଁ ସାନ କୋଠରୀଟି ସେ ଘରଟି ମୋ ପଢ଼ା ଘର, ସେଠି ଟେବୁଲ୍‌ଟିଏ ଚୌକି ଯୋଡ଼ିଏ । ସେ ଘରୁ ଆର ବଖରାକୁ ଦୁଆରମୁହଁ ଅଛି, ଆର ବଖରାରେ ଖଟ ଯୋଡ଼ିଏ, ବାପାଙ୍କର ଓ ମୋର, ଆଉ ପଦାକୁ ଯିବାକୁ କବାଟ ନାହିଁ । ସେହି ଘରେ ଆମର ସବୁ ଜିନିଷପାତି ।

ବାସନ ମାଜିବା ପାଣି ଦେବା ଲୋକ ଦିନବେଳେ କାମ କରେ,

ସଞ୍ଜ ହେଲେ ଘରକୁ ଯାଏ । ଦୁଇ ତିନି ଥର ରୋଷେୟା ବି ରଖା ହୋଇଥିଲା, କିନ୍ତୁ ଖାଇବା ଜିନିଷ ତିଆରିରେ ଟିକିଏ ବି ଅପରିଚ୍ଛନ୍ନତା ବାପା ସହି ପାରୁ ନ ଥିଲେ କି ମତେ ରୁଚୁ ନ ଥିଲା, ତେଣୁ ରୋଷେୟାକୁ ବିଦା କରାହୁଏ, ବାପା ହାତରେ ରୋଷେଇ କରନ୍ତି । ସେ ଖୁବ୍ ସୁତୁରା, ଖୁବ୍ ଫୁର୍ତ୍ତି ହାତ, ତାଙ୍କ ହାତରନ୍ଧା ଖୁବ୍ ସୁଆଦିଆ । ଅତି ଚଞ୍ଚଳ, ଛୁଟ୍‌କିନା ରନ୍ଧା ସରିଯାଏ । ତା ମଝିରେ ସେ ଅନ୍ୟ କାମ କରୁଥାନ୍ତି । କେତେବେଳେ ମତେ କ'ଣ ପଢ଼େଇ ଦିଅନ୍ତି । ଗସ୍ତରେ ଗଲେ ମତେ ରୋଷେଇ କରି ଦେବାକୁ ଓ ଘର ଜଗିବାକୁ ଜଣକୁ ବନ୍ଦୋବସ୍ତ କରି ଦିଅନ୍ତି । ନ ହେଲେ ମୁଁ ନରେନ୍ ବାବୁଙ୍କ ଘରେ ରହିଯାଏଁ ।

ସକାଳ ହେଲେ ବହୁତ ଲୋକ ଆସନ୍ତି । ଗୋପୀ ମିସ୍ତ୍ରୀ ବଢ଼େଇ କାମ କରେ । କରତିଆମାନେ ହତା ଭିତରେ କାଠ କରତନ୍ତି, ମୂଲିଆ ମୂଲିଆଣୀମାନେ ଆସି ଘର ତୋଳା ଜିନିଷ ବୋହି ନିଅନ୍ତି, ଶଗଡ଼ରେ ଜିନିଷ ଆସେ ଜିନିଷ ଯାଏ, ଲୁହାଛଡ଼, ଲୁହାପାତିଆ, ଲୁହା ଜାଲି, ଗେଙ୍ଗୁଟି, ଚୂନ, ସିମେଣ୍ଟ, ଶୁଖିଲା ବେଲ, ହ୍ୟୁମ ପାଇପ୍, ଟୋକେଇ, ଶାବଳ, ନାନା ପଦାର୍ଥ । ଓ୍ୱାର୍କ ସରକାରମାନଙ୍କୁ ମିସ୍ତ୍ରୀମାନଙ୍କ କାମ ବରଗା ହୁଏ । ଉପରଓଳି ମୂଲ ବଣ୍ଟାହୁଏ ।

କେଉଁଦିନ ସକାଳଓଳି କେଉଁଦିନ ପୁଣି ଉପରଓଳି ବାପା ପଦାକୁ ବାହାରି ଯାଆନ୍ତି କାମ କରି । ପୋଷାକ ପିନ୍ଧି ଚାଲି ଚାଲି ଯାଆନ୍ତି, ସଙ୍ଗରେ ଚପରାସି । ଅଳ୍ପଦିନ ପରେ ତାଙ୍କର ଘୋଡ଼ା ଆସିଗଲା; ସେ ଘୋଡ଼ା ଚଢ଼ି ଯାଆନ୍ତି । ଲୋକ ଯାଆନ୍ତି । ଶୂନ୍‌ଶାନ୍ ପଡ଼େ ।

ଇସ୍କୁଲ୍ ନ ଥିଲେ, ଖେଳିବୁଲି ଯାଇ ନ ଥିଲେ, ପଢୁ ନ ଥିଲେ, ସେହି ଜଙ୍ଗଲ ପରି ହତା ଭିତରେ ଏକୁଟିଆ ବୁଲି ବୁଲି ଦେଖି ଦେଖି ମୁଁ ଜୀବନ ଉପଭୋଗ କରେ । କି ସୁନ୍ଦର ଶାଗୁଆ ଛନଛନିଆ ପତ୍ରର ଚାନ୍ଦୁଆ । କେତେ ଫୁଲ । କେତେ ଚଢ଼େଇ, ଗୁଣ୍ଡୁଚି ମୂଷା, ବେଳେ ବେଳେ ମାଙ୍କଡ଼, ପ୍ରତି ଗଛର ବିଶିଷ୍ଟ ରୂପ । ଗୋଟାଏ କିଛି ଦେଖୁ ଦେଖୁ ମନ ଉଡ଼ି ପଳାଏ ଆଉ କୁଆଡ଼େ କୁଆଡ଼େ ।

ଅନେକ ସମୟରେ ମୁଁ ପହଞ୍ଚିଯାଏ ଗୋପୀ ମିସ୍ତ୍ରୀ ପାଖରେ । ଗୋରା ଡେଙ୍ଗା ଦମ୍ଭିଲା ବୁଢ଼ା, ସବୁବେଳେ ତା ହାତ କାମ କରୁଥାଏ, ହସି ହସି ତା ଓଠରେ ମୁହଁରେ ହସର ଭାଙ୍ଗ ପଡ଼ିଯାଇଥିଲା । ସେ କାମ କରୁ କରୁ କାହାଣୀ କହେ, ବେଳେ ବେଳେ ସୁନ୍ଦର ସ୍ୱରରେ ଛାନ୍ଦ ଛାଡ଼ିଦିଏ । କଟକର

ଲୋକ । ସୋନପୁରରେ ରହି ଯାଇଥାଏ ।

କାମ ନ ଥାଇ ଆମ ଘରକୁ ବୁଲି ଆସନ୍ତି ଅଳ୍ପ ଲୋକ । ମାମୁଁଘରୁ ନଟଭାଇ, ମଦନ ଭାଇ କେବେ କେବେ ଆସନ୍ତି । ବାପା ଥିଲେ ସଙ୍ଗବୁଡ଼େ ଆସନ୍ତି ହରଗୁଡ଼ିଆ, ଭ୍ରମର ପାନରା, କେବେ କେବେ ବଙ୍କ୍ରଂ ଗୁଡ଼ିଆ । ବଙ୍କ୍ରଂ ଗୁଡ଼ିଆ ହରଗୁଡ଼ିଆ ଦିହେଁ ଦୁଇଜଣ ମିଠେଇ ବ୍ୟବସାୟୀ, ସହରର ଭଦ୍ରଲୋକ ଦି'ଜଣ । ବଙ୍କ୍ରଂ ପଛେ ହେଲେ ଐତିହାସିକ ଡକ୍ଟର ନବୀନ କୁମାର ସାହୁଙ୍କ ଶ୍ୱଶୁର । ଭ୍ରମର ବାପାଙ୍କଠୁଁ କିଛି କିଛି ବ୍ରହ୍ମଜ୍ଞାନ ତତ୍ତ୍ୱର ବ୍ୟାଖ୍ୟା ବୁଝନ୍ତି; ସେମାନେ ଆସିଲେ 'ସୁଧାସାରଗୀତା', 'ଛୟାକିଶି ପଟଳ', 'ଶିଶୁବେଦ', ଆଦି ବୋଲା ହୁଏ; ବାପା ତା'ର ରୂପକମାନଙ୍କର ଅର୍ଥ ବୁଝାନ୍ତି ।

ସେତେବେଳେ ଯଦି ଜାଣିଥାନ୍ତି ଯେ ଯେଉଁ ବ୍ୟାଖ୍ୟା ବାପା ବୁଝାଉଛନ୍ତି ସେ ଓଡ଼ିଶାର ଅତି ପ୍ରାଚୀନ ଦୁଷ୍ପ୍ରାପ୍ୟ 'ଲୟଯୋଗ' ରୂପକ ବ୍ରହ୍ମବିଦ୍ୟା ସାଧନା ଓ ପଛେ ଆଉ ସେ ବ୍ୟାଖ୍ୟା ମୁଁ କେଉଁଠି ଶୁଣିବି ନାହିଁ, ତେବେ ମୁଁ ସେଥିପ୍ରତି ଧ୍ୟାନ ଦେଇଥାନ୍ତି । କିନ୍ତୁ ସେତେବେଳେ ମୋର ସେଭଳି ଧାରଣାହିଁ ନ ଥିଲା । ମୁଁ ସେଥିପ୍ରତି ଆଗରୁ ମନଯୋଗୀ ନ ଥିଲି । ହର ଗୁଡ଼ିଆଙ୍କର ସୁନ୍ଦର ସ୍ୱାସ୍ଥ୍ୟ, କସରତି ଦେହ, ମୁଣ୍ଡରେ ବାବୁରି ବାଳ, ସୁନା ପରି ଦେହର ବର୍ଣ୍ଣ । ବେଳେ ବେଳେ ସେ ସଙ୍ଗରେ ଆଣନ୍ତି ତାଳପତ୍ରରେ ଲେଖା ହୋଇଥିବା ମହାଭାରତ ପୋଥି, ଗମ୍ଭୀର ସଙ୍ଗୀତମୟ ସ୍ୱରରେ ସେ ଦାଣ୍ଡୀବୃତ୍ତରେ ଲେଖା ସାରଳାଦାସ ମହାଭାରତ ବୋଲନ୍ତି, ଢେଉ ପରି ସ୍ୱର ଲହଡ଼ି ଖେଳି ଖେଳି ମାଡ଼ିଆସେ, ଉଠେ, ଭାଙ୍ଗେ, ପୁଣି ଲହଡ଼ି ମାଡ଼େ ।

ପଢୁ ପଢୁ ତାଙ୍କର କୋହ ଉଠେ, କେତେବେଳେ କାନ୍ଦି କାନ୍ଦି ଆବୃତ୍ତି କରନ୍ତି, କେତେବେଳେ ରାଗି ରାଗି ଆବୃତ୍ତି କରନ୍ତି; ଅଭିଭୂତ ହୋଇ ଆମେ ଶୁଣୁଁ ।

ସାହିତ୍ୟ ଜୀବନ ପାଇ ଅବତାର ହୁଏ ।

କେତେବେଳେ ବୋଲା ହେଉଥାଏ ଏକାଦଶ ସ୍କନ୍ଧ, ନୃସିଂହପୁରାଣ, ବୋଲନ୍ତି ବାପା କି ହର । ବେଳେ ବେଳେ ମତେ ବି ବୋଲିବାକୁ କୁହାହୁଏ, ସବୁବେଳେ ନୁହେଁ ।

''ପାଠ ପଢ଼ । ତୋ କାମ ପଢ଼ିବା । ମୋ କାମ କାମ କରିବା । ଆପଣା କର୍ତ୍ତବ୍ୟ କରୁ କରୁ ମନଟା ଥାଉ ହରିଙ୍କଠିଁ । କାମରେ ହେଳା କଲେ ହରି ଖୁସି ହେବେ ନାହିଁ । କାମ ନାହିଁ, ହରିଙ୍କୁ ଧ୍ୟାନ କର, ତାଙ୍କ ବିଚିତ୍ର ଲୀଳାକୁ ଅନୁଭବ କର ।''

କାମ ନ ଥିଲେ ସେ ଧ୍ୟାନରେ ବସନ୍ତି, ତା ଛଡ଼ା ନିୟମିତ ଭାବେ ସକାଳେ ଗାଧୋଇ ସାରି, ପୁଣି ସଞ୍ଜ ପହରେ, ତା'ପରେ ରାତି ସାଢ଼େଚାରିଟା ଆଗରୁ ଉଠି । ରାତିରୁ ଉଠି ପଢ଼ିବା ପାଇଁ ସେ ମତେ ନିଦରୁ ଉଠେଇ ଦିଅନ୍ତି । ମନଖୁସିରେ ସେ କେତେବେଳେ କେଉଁ ଶ୍ଲୋକ କେଉଁ ଭଜନ ଗାଉଥିଲେ, ମନେ ରଖିଥିଲେ ବହୁତ, କିନ୍ତୁ ତାଙ୍କ ପୂଜାରେ ପାଟି କରି ମନ୍ତ୍ର ଆବୃତ୍ତି ନ ଥିଲା । ସେ ଚୁପ୍‌ଚାପ୍ ପୂଜା, ନିସ୍ତବ୍ଧ ''ଧ୍ୟାନ'' । ନିଃଶବ୍ଦତା ସହିତ ନିଃଶବ୍ଦ ହୋଇ ଆପଣାକୁ ମିଶାଇ ଦେବା ।

ଆଖି ଖୋଲିଲେ ସେ ଆଖି ଆହୁରି ଉଜ୍ଜ୍ୱଳ, ମୁହଁରେ ଅପାର ଶାନ୍ତି, ଆନନ୍ଦ ।

''ତୁମେ କ'ଣ ଦେଖିଲ ବାପା ?''

''ସେ ସବୁ ଭାରି ଚମତ୍କାର, ବହୁତ ଆନନ୍ଦ ମିଳିଲା, କ'ଣ ବୋଲି ତତେ ବୁଝେଇବି ? କେହି ଅନ୍ୟ କାହାରିକି ବୁଝେଇ ପାରେନାହିଁ । ତୋର ଯେତେବେଳେ ହେବ, ତୁ ନିଜେ ବୁଝିବୁ । ବେଳ ଆସିଲେ ହେବ । ଅଇଛା ନୁହେଁ ।''

''କେବେ ବେଳ ଆସିବ ?''

''ତୋର ସେ ବୟସ ହେଲେ । ସତ କହିବୁ, ସତ୍‌ରେ ଚଳିବୁ, କାହା ପ୍ରତି ନିଷ୍ଠୁର ହେବୁ ନାହିଁ, ଭଗବାନଙ୍କଠି ବିଶ୍ୱାସ ରଖିବୁ, କର୍ତ୍ତବ୍ୟ କରୁଥିବୁ, ମନରେ ମୁଁ ବଡ଼ ବୋଲି ଗର୍ବ ନ ଥିବ, ବଳେ ତା ସମୟ ହେଲେ ତୋର ବି ନୂଆ ଆଖି ଖୋଲିଯିବ ।''

''ବାପା ଏଠି ଭୂତ ପ୍ରେତ ନାହାନ୍ତି ?''

''ଦେଖ, ଏ ସଂସାରରେ ଭୂତ, ଦେବଦେବୀ, ସବୁପ୍ରକାର ସବୁଠି ଅଛନ୍ତି । ଥିଲେ ଆମର କ'ଣ କରିବେ ? ସମସ୍ତିଙ୍କ ଉପରେ ବଡ଼ ଭଗବାନ । ସେ ସବୁବେଳେ ସବୁଠି ଆମକୁ ଜଗି ରହିଛନ୍ତି । ତୁ ଦେଖି ପାରୁନାହୁଁ ସିନା, ସବୁବେଳେ ଆମ ପାଖେ ପାଖେ ବିଷ୍ଣୁଗଣ ଅଛନ୍ତି; ଆମେ ନିଦରେ ଶୋଇଥିଲେ ବି ସେ ତେଇଁ ଜଗିଥିବେ । ଯେମିତି ସେମାନେ ନ ଦେଖୁଣୁ ନ ଜାଣୁଣୁ ଆମେ ଲୁଚେଇ କରି କିଛି କରିପାରିବା ନାହିଁ, କିଛି ଭାବିପାରିବା ନାହିଁ, ସେମିତି ତାଙ୍କ ଆଖିରୁ ଲୁଚି ଲୁଚି ଆମ କତିକି କେହି ଆସି ପାରିବେ ନାହିଁ । କୋଉ ଭୂତ ସାହସ କରିବ ଏଠିକି ଆସିବାକୁ ରେ ? ମୁଁ ତୋ କତିରେ ନ ଥିଲାବେଳେ ସେମାନେ ସମସ୍ତେ ଥିବେ, ତୁ କେତେବେଳେ ଏକୁଟିଆ ନୋହୁଁ ।''

୧୯୨୩ ସେପ୍ଟେମ୍ବର । ମୋ ଜୀବନରେ ସେହି ପ୍ରଥମ ଥର ମୁଁ ଇସ୍କୁଲ୍‌ରେ ଛାତ୍ର ହେଲି ।

ମନେ ମନେ ମୁଁ ଉଲ୍ଲାସରେ ଫୁଲିଗଲି, ମୁଁ ଆଉ ନାଗବାଲି ଗାଁ ଦାଣ୍ଡର ଧୂଳିର ବାଉଟୁଙ୍ଗୁରି ନୁହେଁ, ଗୋଟାଏ ନାଁ ନ ଥିବା କିଛି-ନାହିଁ ନୁହେଁ, ଗୋଟିଏ ଇସ୍କୁଲ୍‌ର ପ୍ରାୟ ଅଢ଼େଇଶହ ଛାତ୍ର-ଗୋଷ୍ଠୀ ଭିତରେ ମୁଁ ବି ଜଣେ ଛାତ୍ର; ଗୋଟିଏ କ୍ଲାସ୍‌ର ପ୍ରାୟ ତିରିଶ ଜଣ ଛାତ୍ରଙ୍କ ଭିତରେ ମୁଁ ବି ଜଣେ ଛାତ୍ର, ମୋର ଗୋଟିଏ ବିଶିଷ୍ଟ "ରୋଲ୍-ନମ୍ବର", ସେ ଏକୁଟିଆ ମୋର, ମୋ ଭଳିଆ ମୁଁ ।

ଆମର ସ୍କୁଲ୍, —"ଦି ସୋନପୁର ମହାରାଜା ହା'ଇ ଇଙ୍ଗ୍‌ଲିଶ୍ ସ୍କୁଲ୍", ସଂକ୍ଷେପରେ, ଦି ସୋନ୍‌ପୁର ଏମ.ଆର.ଏଚ୍.ଇ. ସ୍କୁଲ୍ । ତା ପଛଆଡ଼େ ବଡ଼ ଝଙ୍କା ତେନ୍ତୁଳିଗଛ, କୟାଁ ଝାଡ଼ି ଖାଉଁ ।

ମୋର ଶ୍ରେଣୀ ? ସେକାଳର କ୍ଲାସ୍ ସିକ୍ସ, ମାନେ ଛଅ, ଏକାଳରେ ପାଞ୍ଚ ।

ତେଣୁ ଅତି ଆନନ୍ଦରେ ନଅ ବର୍ଷର ପିଲାଟିଏ ଯେଉଁଠି ପାରିଲା ସେଠି ଗାରେଇ ପକେଇଲା ।

Baboo (ବ୍ୟାବୁ, ସେତେବେଳକୁ ମୁଁ ଇଂରେଜି ଅଭିଧାନରେ ତା ମାନେ ଦେଖି ନ ଥିଲି କି ତା'ର ଫାର୍ସି ଅର୍ଥ ଶୁଣି ନ ଥିଲି) ଗୋପୀନାଥ ମହାନ୍ତି । ଆଉ ବହି ମଲାଟରେ ଏମୁଣ୍ଡୁ ସେମୁଣ୍ଡୁ ଗାରେଇଗଲା,

"ଦି ଗ୍ରାସ୍ ଇଜ୍ ଗ୍ରୀନ୍
ଦି ରୋଜ୍ ଇଜ୍ ରେଡ୍
ଦିସ୍ ବୁକ୍ ଇଜ୍ ମାଇନ୍
ଟିଲ୍ ଆଇ ଆମ୍ ଡେଡ୍ ।"

ଦି ସୋନପୁର ଏମାର୍ ଏଚି ସ୍କୁଲ୍ । ମୋ ଥାକ ପୂରିଛି, ମାଣି ପୂରିଛି, ଜାଣିଥିଲେ ତା କାନ୍ଥରେ ଲେଖିଥାନ୍ତି—

"ଅଗର୍ ଫିର୍ଦ୍ଦୌସେ ବର୍‌ରୁଏ ଜମିନସ୍ତ
ହମିନସ୍ତୋ ହମିନସ୍ତୋ ହମିନସ୍ତୋ ।"

କିନ୍ତୁ ଜାଣନ୍ତି କିପରି ? ସେ ଲେଖା ତ ଦିଲ୍ଲୀରେ ଲାଲ୍‌କିଲ୍ଲାରେ ସମ୍ରାଟ୍ ଶାହ୍‌ଜାହାନଙ୍କ ଦରବାରରେ । ସୋନପୁରରେ ଆମେ ଦିଲ୍ଲୀ ଖବର ଜାଣୁ ନ ଥିଲୁଁ । ଆମ ଆଖିରେ ଆମ ସୋନ୍‌ପୁର ହିଁ ସବୁ । ମୋର ମନେପଡୁଛି,

ଜଣେ ସାହାବ ପଚାରିଥିଲେ, "ହ୍ୱାର୍ ଇଜ୍ ଜାମ୍-ଶେଦ୍-ପୋ ?" "ଜାମସେଦ୍‌ପୁର୍ କେଉଁଠି ?" ଭୂଗୋଳ ମାଷ୍ଟର ପ୍ରଶ୍ନଟା ବୁଝେଇଦେଲେ । ସବୁ ପିଲାଙ୍କୁ ପଚରାଗଲା । କେହି କହିପାରିଲେ ନାହିଁ । ଆମର ସେସବୁ କଥାକୁ ନିଘା ନ ଥାଏ । ଭାରି ହସ ମାଡୁଥାଏ । ଇଚ୍ଛା ହେଉଥାଏ, ପାଲଟି ସାହବଙ୍କୁ ପଚାରନ୍ତି, "ହ୍ୱାର୍ ଇଜ୍ ଛନ୍‌ଛାନ୍ ଡୁଂରି ?" ଛନ୍‌ଛାନ୍ ଡୁଂରି ଆମ ଘରଠୁଁ ଉତ୍ତରକୁ ସୋନପୁର ସହରଠୁଁ ଦି ମାଇଲ୍ ଦୂରରେ ଗୋଟିଏ ବଣ, ସେଠି ବହୁତ କଣ୍ଟେଇକୋଳି, ଆମେ ଅନେକଥର ଯାଉଁ । ମନେପଡୁଛି, ଆମ ଭୂଗୋଳ ଶିକ୍ଷକ ଥରେ ମ୍ୟାକ୍‌ମିଲାନ୍ କୃତ ଭୂଗୋଳ ବହିରୁ 'ଇଣ୍ଡୋଚୀନ୍' ବିଷୟରେ ପଢ଼ି ବୁଝାଇ ଦେଉଥିଲେ ।

"ଇଣ୍ଡୋଚୀନ୍‌ରେ ଇଣ୍ଡିଆ ରବର ମିଳେ ।" ଯା ମାନେ ବୁଝିଲ ? ଏଇଟା ଇଣ୍ଡୋଚୀନ୍ ଦେଶର କଥା କୁହାଯାଉଛି । ସେଠି ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ କ'ଣ ? ଇଣ୍ଡିଆ ରବର । ଇଣ୍ଡିଆ ମାନେ ଭାରତବର୍ଷ । ବର ମାନେ ବଟବୃକ୍ଷ । ଇଣ୍ଡିଆର ବର ମାନେ ଭାରତବର୍ଷରେ ଯେମିତି ବଡ଼ ବଡ଼ ବଟବୃକ୍ଷ ହୁଏ, ସେମିତି ବଟବୃକ୍ଷ । ଇଣ୍ଡୋଚୀନ୍ ଦେଶରେ ସେପରି ବଟବୃକ୍ଷ ବହୁତ ବହୁତ ହୁଏ ।"

ନିଷ୍ଠାପର ପୂଜ୍ୟ ଗୁରୁଦେବ ବହୁତ କଷ୍ଟ କରି ପାଠ ବୁଝାଉଥିଲେ । ସରୁଆ ଲୋକ । ଗାଢୁଆ ଆଖିରେ ଖୁବ୍ ଆନ୍ତରିକତା । ସେ' ତ ଚାହୁଁଥିଲେ ଆମେ ଭୂଗୋଳରେ ପଣ୍ଡିତ ହେଉଁ, ଯାହା ପଢୁଛୁଁ ତାହା ନିଜେ ବୁଝି ବୁଝି ମନେରଖୁଁ । ପ୍ରାକୃତିକ ଭୂଗୋଳ ପଢ଼ାଇଲାବେଳେ ସେ ନଲ୍‌ଟଣ, ଦଉଡ଼ି, ଫୁଟ୍‌ବଲ୍, ବହୁତ ପଦାର୍ଥ ବ୍ୟବହାର କରୁଥିଲେ । ଆମକୁ ପଦାରେ ମାଟି କାଦୁଅରେ ବୁଲେଇ ପ୍ରକୃତି ପର୍ଯ୍ୟବେକ୍ଷଣ ଶିଖାଉଥିଲେ । ଏମିତି ବୁଝୋଉ ବୁଝୋଉ ଥରେ ଦରକାର ପଡ଼ିଲା, ପୃଥିବୀ ତ ଗୋଲ ଥିଲା, ପୁଣି ମଝିଟା ତା'ର ଚେପ୍‌ଟା ହେଲା କେମିତି, ସେଇକଥା ଆମକୁ ଆଖିରେ ଦେଖେଇଦେବା ।

ଦରକାର ପଡ଼ି ନ ଥାନ୍ତା । ଓଡ଼ିଶା ଡିଭିଜନ୍‌ର ଶିକ୍ଷା ବିଭାଗର ଡାଇରେକ୍‌ଟର ଏଚ୍.ଡି.ପି. ନାମକ ସାହେବ ପରିଦର୍ଶନରେ ଆସିବେ ବୋଲି ରଜାଘର ମହକୁମାରୁ ଖବର ଆସିଗଲା ।

ବରଗ! ହେଲୁଁ ଆମେ 'ବିଶିସାଗର' ପୋଖରୀ ବନ୍ଧ ତଳକୁ । ସେଠି ପାଣି ଜକାଏ, କଳା ଚିକିଟା କୁମ୍ଭାର ମାଟି । ସେହି ମାଟି ପୁଳାଏ ତାଡ଼ି ଘେନି ଆସିଲୁଁ । କାଦୁଅଟକ ଗୋଟିଏ ଗୋଲ୍ ପିଣ୍ଡୁଳା କରାଗଲା, ଗୋଟିଏ ଶିକାରେ ତାକୁ ରଖାଗଲା, ସେଥିରେ ଗୋଟିଏ ଦଉଡ଼ି ବନ୍ଧାଗଲା ।

ଆମେ ସବୁ ଇସ୍କୁଲ୍ ଦୁଆରେ ଘାସରେ ଠିଆ ହେଲୁଁ । କ'ଣ କରିବାକୁ ପଡ଼ିବ ସାର୍ ଆମକୁ ବୁଝେଇଦେଲେ । ଶିକା ଭିତରେ ରହିଲା ପୃଥିବୀ । ସେ ତରଳ ଅବସ୍ଥାରୁ ମାଟି ଅବସ୍ଥାକୁ ଆସିଛି, କିନ୍ତୁ ତା ଉପରଟା ସଂପୂର୍ଣ୍ଣ ଟାଣ ହୋଇନାହିଁ । ମୁଁ ସେ ଦଉଡ଼ିକି ଧରି ଚକା ଚକା ଭଉଁରି ବୁଲିବି । ଅର୍ଥାତ୍ ମୁଁ ସୂର୍ଯ୍ୟ, ଅନୁମାନ କରିବାକୁ ପଡ଼ିବ ଯେ ସୂର୍ଯ୍ୟ ବୁଲୁନାହିଁ ପୃଥିବୀ ସୂର୍ଯ୍ୟ ଚାରିକରେ ବୁଲୁଛି । ଦଉଡ଼ିଟା ସୂର୍ଯ୍ୟର ଆକର୍ଷଣ ଶକ୍ତି, ସେଇଥିରେ ଭିଡ଼ିହୋଇ ରହି ପୃଥିବୀ ବିଚରା ବୁଲୁଛି । ଏମିତି ଥୋଡ଼ାଏ ବୁଲିଲା ପରେ ସାର୍ ମତେ ଅଟକିବାକୁ କହିବେ । ସେଉଠୁ ଶିକାସ୍ଥ ପୃଥିବୀକୁ ଆମେ ସମସ୍ତେ ଆଖିରେ ପର୍ଯ୍ୟବେକ୍ଷଣ କରିବୁଁ । ସେଉଠୁ ନିଶ୍ଚୟ ଦିଶିବ ଯେ, ପୃଥିବୀର ମଝିଟା ଚେପ୍‌ଟା ହୋଇଯାଇଛି, ଦି ମୁଣ୍ଡ ସରୁ ହୋଇଯାଇଛି, ପୂରା କାଠୁଆ ନ ହେଉଣୁ ବୁଲୁଥିଲେ ସେମିତି ହୁଏ, ସାର୍ କହିଲେ ।

ଆସିଲେ ଏଚ୍.ଡି.ପି. । ପ୍ରକାଣ୍ଡ ଆକାର, ସାଢ଼େ ଛ ଫୁଟିଆ ଇଂରେଜ୍ । ନେଳିଆ ନେଳିଆ ହସିଲା ହସିଲା ଆଖି ସତ, କିନ୍ତୁ ମୁହଁଟା ନାଲି, ପାତିମାଙ୍କଡ଼ ଦେହରେ କେଉଁଠି ଦେଖିଥିଲି ଏ ବର୍ଣ୍ଣ, ମହାବିଣାଏକରେ ? ନାକଟା ଖୁବ୍ ଉଚ୍ଚ ଆଉ ବଡ଼, ସତେ ଅବା ମୁହଁଠୁ ଭିନ୍ନେ ହୋଇ ସ୍ୱତନ୍ତ୍ର ଭାବରେ ତା'ର ସୃଷ୍ଟି ।

ମୁଁ ସେ ମୁହଁକୁ ସେ ଚେହେରାକୁ ଦେଖି କାବା ହୋଇ ଅନାଇଁ ରହିଥାଏଁ । ସାର୍ ପାଠ ବୁଝେଇଲେ, କାର୍ଯ୍ୟରେ ଦେଖାଇବାକୁ ନିର୍ଦ୍ଦେଶ ଦେଲେ । କୁତୂହଳୀ ହୋଇ ତଳ ଆଡ଼କୁ ବେକ ଟେର୍ଛେଇ ଦେଇ ଚାହିଁ ରହିଛି ସମ୍ଭ୍ରାନ୍ତ ଅତିଥିଙ୍କ ନାଲି ମୁହଁ । ସୂର୍ଯ୍ୟ ଚକା ଭଉଁରି ବୁଲିଲା । ପୃଥିବୀ ଘୂରିଲା । ଘୂରିଲା । ଘୂରିଲା ।

ତା'ପରେ ?

କୁଆଡ଼େ ଗଲା ସେ ପୃଥିବୀ ! କାହିଁକି ପକ୍ଷାଘାତ ଘୋଟିଥିବା ହାତଟାଏ ପରି ଅବଶ ହୋଇ ଓହଳି ପଡ଼ିଲା ସୂର୍ଯ୍ୟର ଆକର୍ଷଣ ଶକ୍ତିର ଦଉଡ଼ି ?

ଅନେଇଁଦେଲି ।

ସମଗ୍ର ପୃଥିବୀ ଯାଇ ଲାଖିଯାଇଛି ଏଚ୍.ଡି.ପି. ସାହେବଙ୍କ ନାକ ଅଗରେ ।

''ବସତି ନାସିକା ଶିଖରେ ଧରଣୀ ତବ ଲଗ୍ନା ।''

ଆମ ସାର୍ ତଳକୁ ମୁଣ୍ଡ ପୋତି ଠିଆ ହୋଇଛନ୍ତି ।

ହେଡ୍‌ମାଷ୍ଟରଙ୍କ ଲମ୍ବା ଧଳା ଦାଢ଼ି ଡି.ପି. ସାହେବଙ୍କ ମୁହଁଆଡ଼କୁ ଏକା ଭଙ୍ଗୀରେ ଉଁହୁଙ୍କି ରହିଛି, ତାଙ୍କ ଆଖି କଠୋର ।

ଡି.ପି. ସାହେବଙ୍କ ମୁହଁ ରକ୍ତ ପରି ନାଲି, ଖାଲି ସେହି ଥରାକ; ରୁମାଲ୍‌ରେ ଯେତେ ରଗଡ଼ିଲେ ଯାଉନାହିଁ ବିଶିସାଗର ଆଡ଼ି ତଳର କଳାକାଦୁଅ ।

ଇସ୍କୁଲ୍‌ର ଆଠ କ୍ଲାସ୍ ଟପିଲେ ଯିବାକୁ ପଡ଼େ ସମ୍ବଲପୁର, ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦେବାପାଇଁ, —ସେମାନେ କହୁଥିଲେ, ଆଉ, —ବଡ଼ କଷ୍ଟ କୁଆଡ଼େ ସେ ପରୀକ୍ଷା, ପାଟ୍‌ନା ୟୁନିଭରସିଟିର ମ୍ୟାଟ୍ରିକୁଲେସନ୍, ବହୁ ଭାଗ୍ୟ ଥିଲେ ମଣିଷ ଉଧୁରେ, ବାରମ୍ବାର ଚେଷ୍ଟା କରି . କରି । ଆମ ଇସ୍କୁଲ୍‌ରୁ ତିନି ବର୍ଷରେ ଚାରି ବର୍ଷରେ କିଏ କଦବା କୁଆଡ଼େ ଉଧୁରନ୍ତି, —କ୍ୱଚିତ୍ ଜଣେ ଅଧେ । ଆମର ସାର୍ ଗୋବିନ୍ଦ ବାବୁ ବହୁତ କରି ସେକଥା ଆମକୁ ବୁଝୋଉଥିଲେ । ସେ କହୁଥିଲେ ସେ ନିଜେ ତିନିଥର ସମ୍ବଲପୁରରେ ଯାଇ ଚେଷ୍ଟା କରିଥିଲେ, ଦୁଇଥର କଲିକତାରେ, କୌଣସି ଥର ପାଶ୍ କରିପାରି ନାହାନ୍ତି ।

ସେତେବେଳକୁ ତାଙ୍କୁ ପଇଁତିରିଶି ବର୍ଷ ହୋଇଥିବ, ଗୋଲ୍‌ଗାଲ୍ ଓସାରିଆ ଚେହେରା, ଖୁବ୍ ଅମାୟିକ, ସବୁବେଳେ ହସ ହସ । ମୁଁ ସୋନପୁରରୁ ଆସିଲା ପରେ ଶୁଣିଲି, ପଛେ ତାଙ୍କ ବଡ଼ପୁଅ ମୁରାରି ଓ ସେ ଉଭୟେ ଏକା ସଙ୍ଗରେ ମ୍ୟାଟ୍ରିକ୍ ପାଶ୍ କଲେ । ଆମ ଏମାର୍ ଏଚି. ସ୍କୁଲ୍‌ରେ ମ୍ୟାଟ୍ରିକ୍ ପାଶ୍ ନ କରିଥିବା ସାର୍ ଆଉ କେତେଜଣ ବି ଥିଲେ । କିନ୍ତୁ ଏଫ୍.ଏ. ପାଶ୍ କରିଥିଲେ ଅକ୍ଷୟ ବାବୁ, ସେ ଆମକୁ ଇଂରେଜି ପଢ଼ାନ୍ତି । ଶ୍ରୀ ପ୍ରସନ୍ନ ମିଶ୍ର ତ ବି.ଏ. ପାଶ୍, ସେ ଉପର କ୍ଲାସ୍‌ରେ ପଢ଼ାନ୍ତି । ନରେନ୍ ବାବୁ ବି.ଏ. ପାଶ୍ । ଆଉ, ସମସ୍ତିଙ୍କ ଉପରେ, —ସମସ୍ତିଙ୍କଠୁଁ ଡେଙ୍ଗା ଆଉ ବୁଢ଼ା ଆଉ ଗମ୍ଭୀର, —ଆମର ହେଡ୍‌ମାଷ୍ଟର ଶ୍ରୀ ଗୌର୍ ମୋହନ ଭଟ୍ଟାଚାର୍ଯ୍ୟ, ସେ ଏମ୍.ଏ. ପାଶ୍ । ଆମେ ଶୁଣିଥିଲୁଁ ଚେମ୍ବର୍ସ ଡିକ୍ସିନାରି' ତାଙ୍କର କଣ୍ଠସ୍ଥ; କିନ୍ତୁ ସାହସ କରି କେହି ପଚାରୁ ନାହିଁ । ସେ ନ ପଢ଼ାଉଥିଲା ବେଳେ ନିଜେ କିଛି ହେଲେ ପଢୁଥାନ୍ତି, ଗପନ୍ତି ନାହିଁ, କୁଆଡ଼େ ବୁଲି ଯାଆନ୍ତି ନାହିଁ, ତାଙ୍କ ବିଷୟରେ ଲୋକେ ଖୁବ୍ କମ୍ ଜାଣନ୍ତି, ତେଣୁ ବହୁତ କାହାଣୀ ବ୍ୟାପେ । ଗୋଟାଏ କାହାଣୀ ଏପର୍ଯ୍ୟନ୍ତ ତାଙ୍କ ଛାତ୍ରମାନେ ମନେ ରଖିଥିବେ ଯେ, ଅତୀତରେ ସେ ଥିଲେ ବଙ୍ଗଳାର ଜଣେ ଅତି ଉଗ୍ର ଟେରରିଷ୍ଟ ବା ସନ୍ତ୍ରାସବାଦୀ, ଜଣେ ବଡ଼ ବିପ୍ଳବୀ । ଷାଠିଏ ଡେଇଁଥିଲା ସେ ଦେହକୁ, ଛାତି ମଝିଯାକେ ଲମ୍ବା ଧଳା ଦାଢ଼ି, ତହିଁରେ ଧଳା ନିଶ ମିଶି ଯାଇଥାଏ, ମୁଣ୍ଡରେ ଧଳା

କହରା ହୋଇ ଲମ୍ବା ଲମ୍ବା ବାଳ । କଥା ବଡ଼ ମଧୁର ଓ ଥଣ୍ଡା । କେବେ କାହା ଉପରେ ରାଗିବାର କେହି ଶୁଣିନାହିଁ । କିନ୍ତୁ ତାଙ୍କୁ ଦେଖିଲାକ୍ଷଣି ସବୁ ଗୋଳମାଳ ଥମିଯାଏ, ସମସ୍ତେ ତୁନି ହୋଇଯାନ୍ତି ।

ଓଡ଼ିଆ ପଢ଼ାଉଥିଲେ କପିଳବାବୁ ଓ ଶ୍ରୀ ଦାମୋଦର ଶାସ୍ତ୍ରୀ, ପଛେ ସଂସ୍କୃତ ଶିକ୍ଷକ ଶ୍ରୀ ଆଦିତ୍ୟ ଗୁରୁ । କପିଳ ବାବୁ ଖୁବ୍ ଅଳ୍ପ ଅଳ୍ପ ନମ୍ବର ଦିଅନ୍ତି, ଶହେରୁ ଚାଳିଶ୍ ଦେଲେ ଖୁବ୍ ହେଲା । ଦାମୋଦର ଶାସ୍ତ୍ରୀ ଆକାରରେ ମୋ ମାମୁଁଙ୍କଠୁଁ ସାନ ସିନା, ଗଢ଼ଣ ପ୍ରାୟ ଏକାପରି । ମୋଟା ମଣିଷ, ବଡ଼ ମୁଣ୍ଡ, ଦୁଇ କାନରେ ବଡ଼ ବଡ଼ ସୁନାକୁଣ୍ଡଳ ଆମ୍ବ କଷି ପରି । ସେ କୁଣ୍ଡଳର ତାତ୍ପର୍ଯ୍ୟ ମୁଁ ସେତେବେଳେ ଜାଣି ନ ଥିଲି । ସେ ରାଜାଙ୍କ ସଭା-ପଣ୍ଡିତ, ସଭା-କବି, କେତୋଟି ସଂସ୍କୃତ କାବ୍ୟର ରଚୟିତା, ସଂସ୍କୃତରୁ ଓଡ଼ିଆରେ ଅନୁବାଦ କରି ବି କେତୋଟି ଗ୍ରନ୍ଥ ଛପାଇଥିଲେ, ଅନେକ ଭଣିତା କି ସବୁ ଭଣିତା ରାଜାଙ୍କ ନାଁରେ । ତାଙ୍କ ପୁଅ ରାମକୃଷ୍ଣ ମୋର ଦୁଇ କ୍ଲାସ୍ ତଳେ ପଢୁଥାଏ । ଆଦିତ୍ୟ ଗୁରୁ ଖୁବ୍ ବଡ଼ ସଂସ୍କୃତ ପଣ୍ଡିତ ବୋଲି ଖ୍ୟାତି ଥିଲା । ସେ ଖୁବ୍ ଭଲ ପଢ଼ାଉଥିଲେ । ମହେଶ୍ୱର ସୁବୁଦ୍ଧି ବାବୁ ଇତିହାସ ଓ ଅଙ୍କ ଶିକ୍ଷକ ଥିଲେ; ଶ୍ରୀ ସୋମନାଥ ଦାନୀ ଭୂଗୋଳ, ଭବାନୀବାବୁ ସ୍କୁଲ୍‌ର କିରାନି ଥିଲେ ।

ମୋର ମନେପଡୁଛି, ଆମେ ଦଣ୍ଡବତ ହେଲେ କିଏ ଅବା ମୁଣ୍ଡ ଟୁଙ୍ଗାରନ୍ତି, କିଏ ହାତଯୋଡ଼ି ପ୍ରତି ନମସ୍କାର କରନ୍ତି, କିନ୍ତୁ ଦୁଇ ହାତରେ ବ୍ରାହ୍ମଣର ଆଶୀର୍ବାଦର ମୁଦ୍ରା କରି "ଆୟୁଷ୍ମାନ୍ ଭବ" ବୋଲି କହୁଥିଲେ ଦୁଇଜଣ ସାର୍, ଆଦିତ୍ୟ ଗୁରୁ ଓ ପ୍ରସନ୍ନ ମିଶ୍ର । ପଛେ ମୁଁ ଷଷ୍ଠ ବାର୍ଷିକ ଶ୍ରେଣୀରେ ଏମ୍.ଏ. ପଢୁଥିଲାବେଳେ ରେଭେନ୍‌ସା କଲେଜ୍‌ରେ ଆଇନ୍ ପାଠ ପଢ଼ିବା ପାଇଁ ଆସିଥିଲେ ପ୍ରସନ୍ନ ମିଶ୍ର, ବାଳ ଧଳା ହୋଇଥାଏ, ଦେହ ସେମିତି ଗୋରା, କସରତିଆ, ସେମିତି ସ୍ୱାଧୀନ, ନିଡରୁଆ ବେକର ଭଙ୍ଗୀ, ଦାନ୍ତ ସେମିତି ଝିକିଝିକି, ସେମିତି ପ୍ରସନ୍ନ ହସ ହସି ଆଶୀର୍ବାଦ ମୁଦ୍ରା ଦେଖାଇ ଉଚ୍ଚାରଣ କରିଥିଲେ, "ଆୟୁଷ୍ମାନ୍ ଭବ ।"

ପ୍ରସନ୍ନବାବୁ ବେଳେ ବେଳେ କ୍ଲାସ୍‌କୁ ଆଣନ୍ତି ଗୋଟିଏ ଇଂରେଜି ଖବରକାଗଜ, "ଦି ଅମୃତବଜାର ପତ୍ରିକା", ଅକ୍ଷୟବାବୁ ଆଣନ୍ତି "ଦି ଇଂଲିଶ୍ ମ୍ୟାନ୍" ଆମେ କାବା ହୋଇ ଦେଖୁ ।

ମାନ୍ୟରେ ଯେ ବଡ଼ ସେମାନଙ୍କୁ ଭକ୍ତି କରିବା ସେକାଳରେ ସୋନପୁର

ଇସ୍କୁଲର ସାଧାରଣ ଶିଷ୍ଟାଚାର ଥିଲା । ଶିକ୍ଷକମାନଙ୍କୁ ଆମେ ଭକ୍ତି କରୁଥିଲୁଁ । ଉପର କ୍ଲାସ୍‌ର ପିଲାମାନଙ୍କୁ ମାନ୍ୟ କରୁଥିଲୁଁ । ସେମାନେ ଆମ୍ଭୁକୁ ଶ୍ରଦ୍ଧା କରୁଥିଲେ ।

ସେମାନେ ନିଜେ କେତେ ବିଦ୍ୱାନ୍ ଥିଲେ, କାହାର ଡିଗ୍ରୀ କ'ଣ, ବ୍ୟକ୍ତିଗତ ଜୀବନରେ ସଂସାରର ଘୋଡ଼ାଦୌଡ଼ରେ ସେଥିରୁ କିଏ କ'ଣ ଓ କିପରି ସେ ସବୁ ବିଷୟରେ ଆମ ନିଜର ସାନ ସାନ ମୁଣ୍ଡକୁ ଝାଙ୍କି ମଛି ଆମ ବୁଦ୍ଧିକୁ ଶିକରେ ପକେଇବା ପରିକଳ୍ପନା ଆମ କାହାରିଠି ନ ଥିଲା । ତାଙ୍କ ଉପରେ ଆମର ଥିଲା ବିଶ୍ୱାସ, ସେମାନେ ଆମର ଗୁରୁ, ହିତାକାଙ୍କ୍ଷୀ । ସେମାନେ ବହି ପଢ଼ାଉଥିଲେ । କିନ୍ତୁ ଆମ ଉପରେ ଆହୁରି ବେଶି ପ୍ରଭାବ ପଡୁଥିଲା ତାଙ୍କର ଆମ ବିଷୟରେ ଆଶାର, ସ୍ୱପ୍ନର, ସେମାନଙ୍କ ଉତ୍ସାହର । କେଡ଼େ ସ୍ନିଗ୍ଧ ମଧୁର ମର୍ମସ୍ପର୍ଶୀ ଠାଣିରେ ସେମାନେ ବ୍ୟକ୍ତିଗତ ଭାବରେ ଆମ ପ୍ରତ୍ୟେକଙ୍କ ପାଖରେ ଆବେଦନ କରୁଥିଲେ, —ତୁମେ ସବୁ ଗୋଟିଏ ଗୋଟିଏ ରତ୍ନ, ତୁମଠି ଅଦ୍ଭୁତ ଶକ୍ତି ଅଛି, ପଢ଼ିଲେ, ପରିଶ୍ରମ କଲେ ତା ମନକୁ ପଦାକୁ ଫିଟିବ । ପାଠ ପଢ଼ । ଲାଇବ୍ରେରିରେ କେତେ ବହି । ଚାରିଆଡ଼େ କେତେ ଜ୍ଞାନ । ସବୁ ତୁମେ ପଢ଼ି ନିଅ, ବୁଝି ନିଅ, ନିଜକୁ ନିଜେ ମଣିଷ କର । ଚରିତ୍ର ଠିକ୍ ରଖ । ସମୟ ଆଦୌ ନଷ୍ଟ କର ନାହିଁ । ଏ ଇସ୍କୁଲ୍‌ର ମାନ ବଢ଼ାଅ, ଦେଶର ମାନ ରଖ ।

ସେମାନେ ସ୍ୱପ୍ନ ତେଜି ଜାଣୁଥିଲେ । ଉଦାହରଣ ବହୁତ ଦିଅନ୍ତି ।

ବାରମ୍ବାର କହନ୍ତି "ମୂଳଦୁଆ ଟାଣ କର । ଆଗ ଚରିତ୍ର ବଳ, ମନର ତାଲିମ, ଭାଷାଜ୍ଞାନ । ବୁଦ୍ଧି ।"

କିଏ କେମିତି ସମୟ କାଟୁଛି କେତେ ଘଣ୍ଟା ପଢୁଛି ସେ ବିଷୟରେ ବି ଖବର ରଖୁଥିଲେ, ବେଳେ ବେଳେ ଆଲୋଚନା କରୁଥିଲେ, ପାଠପଢ଼ାରେ ପ୍ରତିଯୋଗିତା ଉତ୍ସାହିତ କରୁଥିଲେ । ଆମ ପ୍ରତି ଅସୂୟା, ନିଷ୍ଠୁରତା, ତାଚ୍ଛଲ୍ୟ, ବ୍ୟଙ୍ଗ, ଅଶ୍ରଦ୍ଧା, —ସେମାନଙ୍କର କାହାରି ନ ଥିଲା ।

ସେମାନେ ଦାତା, ଆମେ ଗ୍ରହୀତା, —ସମ୍ବନ୍ଧ ଏତିକି । ଶିକ୍ଷକ । ମୁଣ୍ଡ ନଇଁପଡ଼େ ।

ଲାଇବ୍ରେରି ମୋ ପକ୍ଷରେ ଗୋଟିଏ ଅଭୁଲା ଅନୁଭୂତି । କାନ୍ଥ କଡ଼ରେ କାଚ ଆଲମାରିରୁ ବହିମାନେ ମୋତେ ଡାକୁଛନ୍ତି । ମୁଁ ଆଖି କିଆରିରେ ପଶିଛି । କିଏ ଜଣେ କହିଲେ, "କ୍ଲାସ୍ ଅନୁସାରେ ହେଇ ସେଠି ଆଲମାରିମାନ

ଅଛି, ତୁମ କ୍ଲାସ୍ ନାଖି ଆଲମାରିରୁ ବହି ନିଅ ।'' ଆଉ ଜଣେ କିଏ ଗମ୍ଭୀର ହୋଇ ପ୍ରତିବାଦ କଲେ ''ନା, ଯାହା ମନ ହେବ ତା ନେଉ ।'' ବାଛିଲି ମୋଟା ମୋଟା ବହି, ଇଂରେଜି, ବହୁତ ଛବି । ଖାତାରେ ନାଁ ଦସ୍ତଖତ କରି ବହି ନେଲି । ବାପା ଖୁସି ହେଲେ । କହିଲେ, ''ଯେତେ ଆଉଟ୍ ବୁକ୍ ପଢ଼ିବୁ ସେତେ ଭଲ । ଯାହା ବୁଝି ନ ପାରିବୁ ଡିକ୍ସିନାରି ଦେଖିବୁ, ପଚାରି ବୁଝିବୁ, ଖୋଜିଲେ ସବୁ ପାଇବୁ, ଯାହା ଶିଖିବୁ ତା ଲେଖି ରଖିବୁ ।'' ଇଂରେଜି ଟିକିଏ ଆଗରୁ ପଢ଼ିଥିଲି, ସେଥିପାଇଁ ସାମାନ୍ୟ ପରିମାଣରେ ଦାନ୍ତ ଗଳୁଥାଏ, ଦରଖଣ୍ଡିଆ କରି ଏଠୁ ଟିକିଏ ସେଠୁ ଟିକିଏ ବୁଝୁଥାଏ, ନ ବୁଝି ପାରିଲେ ଚିନ୍ତା ନାହିଁ । ଅନ୍ତତଃ ବହିମାନଙ୍କ ପ୍ରତି ଆକୃଷ୍ଟ ହେଉଥାଏ । କ୍ରମେ ନିଜେ ମୁଁ ମୋ ବୁଝିଲା ଭଳି ବହି ବାଛି ବାଛି ଆଣିଲି ।

ଶିକ୍ଷକମାନେ ନିଘା ରଖୁଥିଲେ ଓ ନିଜ ଭିତରେ ଆଲୋଚନା କରୁଥିଲେ କିଏ ଲାଇବ୍ରେରିକୁ କିପରି ବ୍ୟବହାର କରୁଛି । ଆକାରରେ ମୁଁ ଖୁବ୍ ସାନ ଥିଲି । ଅଥଚ ବହି ନେଉଥିଲି ବେଶି । ଦି' ବର୍ଷ ପରେ ଏଚ୍.ଡି.ପି. ସାହେବ ଆସି ଇସ୍କୁଲ୍ ଦେଖିଲାବେଳେ ଲାଇବ୍ରେରି ଖାତା କାଢ଼ି ମତେ ଡାକି ମୁକାବିଲା କରିଥିଲେ । ପଚାରି ବୁଝିଥିଲେ ଯେ, ମୁଁ ସେସବୁ ବହି ନେଇ ସେଥିରୁ କ'ଣ କ'ଣ ବୁଝିଛି । ସେ ଏପରି ଖୁସି ହୋଇଗଲେ ଯେ, ମତେ ଗୋଟିଏ ଟେବୁଲ ଉପରେ ଟେକି ଠିଆ କରେଇ ମୋ ମୁହଁକୁ ଅନାଇଁ ରହିଲେ, ହସି ହସି ପିଠି ଚାପୁଡ଼େଇଲେ । ଫଳତଃ ତାଙ୍କ ଆଗମନ ଉପଲକ୍ଷେ ଇସ୍କୁଲକୁ ଦୁଇଦିନ ଛୁଟି କରିବାକୁ ଯେଉଁ ଦରଖାସ୍ତ ତିଆରି କରାଯାଇଥିଲା ପଛେ ମୋ'ରି ହାତରେ ତାଙ୍କୁ ଦେବାକୁ ମତେ କୁହାଗଲା । ଦେଲି ।

ପଛେ ଆସିଲେ ଆଉ ଦୁଇଜଣ ବି.ଏ. ପାଶ୍ ଶିକ୍ଷକ । ଶ୍ରୀ ଦିଗମ୍ବର ମିଶ୍ର ଓ ଶ୍ରୀ ଯୋଗେନ୍ଦ୍ର ମଣ୍ଡଳ । ଯୋଗେନ୍ଦ୍ର ମଣ୍ଡଳ ଅଷ୍ଟମ ଶ୍ରେଣୀ (ଆଜିକାଲିକା ସପ୍ତମ) ବେଳେ ଆମକୁ ଭୂଗୋଳ ପଢ଼ାଉଥିଲେ । ଘର ପୂର୍ବବଙ୍ଗ । ଅତି ବିଚକ୍ଷଣ ଶିକ୍ଷକ । ସେ ପ୍ରାକୃତିକ ଭୂଗୋଳ ଏଡ଼େ ଚମତ୍କାର ପଢ଼ାଉଥିଲେ ଯେ, ସେତିକି ଜ୍ଞାନ ମୋର ପଛେ ବହୁତ କାମରେ ଆସିଲା । ଦିଗମ୍ବର ମିଶ୍ର କସରତ କରୁଥିଲେ, ବ୍ରହ୍ମଚର୍ଯ୍ୟ ଉପରେ ଜୋର୍ ଦେଉଥିଲେ । ଜ୍ଞାନୀ ଥିଲେ । ବାପାଙ୍କ ସଙ୍ଗେ ତାଙ୍କର ଆଲୋଚନା ହୁଏ । ନରେନ୍ଦ୍ର ବାବୁ ଦିନାକେତେ ଚାଲିଗଲା ପରେ ସେ ଆମର ସେ ଆର ଖଞ୍ଜାରେ ଥିଲେ ।

ଇସ୍କୁଲ୍ ସାମ୍ନାରେ ପୁଲିସ୍ ଥାନା । ଆମର ସମ୍ବନ୍ଧ ନ ଥାଏ ।

ଇସ୍କୁଲ୍‌କୁ ଯିବା ଇସ୍କୁଲରୁ ଆସିବା ବାଟରେ ପଡ଼େ "ଚିଡ଼ିଆଖାନା", ସେଠି ମୁଁ ଅଟକିଯାଏଁ । ଶିଂକୁଳିରେ ବନ୍ଧା ହୋଇ ରହିଥାନ୍ତି ଭାଲୁ ତିନୋଟି, ଦି'ଟା ପାତିମାଙ୍କଡ଼, ଗୋଟାଏ ନୀଳଗାଇ, ସେତିକି ସେ 'ଚିଡ଼ିଆଖାନା' । ଲାଗୁଥାଏ, ସେମାନେ ଖୁବ୍ କଷ୍ଟରେ ଅଛନ୍ତି । କାହିଁକି ସେମାନଙ୍କୁ କଇଦି କରାହୋଇଥାଏ ମୁଁ ଜାଣେ ନାହିଁ ।

ଆମର ଚିଡ଼ିଆଖାନାରେ ଆମେ ଥିଲୁ ବହୁତ ପ୍ରକାର । ନୀଳାମ୍ବର ମିଶ୍ର ପିନ୍ଧି ଆସେ କେବେ କେବେ ଗୋଟାଏ ହଳଦିଆ ପାଟ । ତା କାନରେ ସୁନାର ନୋଳି, ବାଁ ହାତରେ ସୁନାର ଖଡୁ ପଟେ ଥାଏ । ଶ୍ୟାମଳ, ଧଡ଼ିଆ, ଡଗ ଡଗ ଚାଲି । ତା ନିଜ ମତକୁ ସେ ଟାଣ କରି କହେ । ଖୁଚୁବୁଚିଆ ସେ ନୁହେଁ, ପଢ଼ାରେ ମନ । ପରୀକ୍ଷାର ଦି' ମାସ ଆଗରୁ ରାତି ୪ଟାରୁ ଉଠି ପଢ଼େ । ରାମ ଶଙ୍କର ମିଶ୍ର ଗୋଲ୍‌ଗାଲ୍ ହୃଷ୍ଟପୁଷ୍ଟ ପିଲା । ବୟସରେ ଟିକିଏ ବଡ଼ । ମନେପଡୁଛି ସେହି ପିଲାଦିନେ ବୋଧହୁଏ ତା'ର ବିଭାଘର ହୋଇଥିଲା । ତା କାନରେ କୁଣ୍ଡଳ, ବେକରେ ସୁନାହାର । ଭବାନୀ ମିଶ୍ର ଶାନ୍ତ ଶିଷ୍ଟ ଗୋରା ପିଲାଟିଏ, ସେ ବି ସୁନାହାରଟିଏ ପକାଏ । କାହ୍ନୁ ମହାପାତ୍ର ଚୁପ୍‌ଚାପ୍ ପିଲାଟିଏ । ଈଶ୍ୱର ମିଶ୍ରର ଗାଲରେ ଗୋଟାଏ ହରଡ଼ ପରି କଳା ଆବୁ । ପିଲାଏ ତାକୁ କହନ୍ତି, 'ଆପୁ' ବା ଅଫିମ, ତା ଡାକ ନାଁ ଆପୁ । ଚୈତନ୍ ମାଝି ମୋଟାସୋଟା କଳା ପିଲାଟାଏ, ଆଦିବାସୀ ଗଣ୍ଡ, ତା' ପିଠିରେ ବିଧା ମାରିଲେ ସେ ହସେ । ପଞ୍ଚାନନ ବହିଦାର ଗୋରା ଓ କସରତିଆ, ଖେଳେ ଭଲ, ଯାହା ତାହା ସଙ୍ଗେ ବଳ କଷାକଷି ହେବାକୁ ତାକୁ ଭଲ ଲାଗେ । ସେ ସାହସ ଦେଖାଏ । ସମ୍ବଲପୁରରୁ ଆସିଲା ହରି ପଟନାଏକ, ଧଡ଼ିଆ, କଳା, କିନ୍ତୁ ଧୋବ ଫରଫର । ସେ ବଡ଼ ବଡ଼ ବାଳ ଓ ବଡ଼ ବଡ଼ ନଖ ରଖିଥାଏ, ତା ନାଁ ରଖା ହୋଇଥିଲା ପେତ୍‌ନୀ । ଶମ୍ଭୁ ଦାନୀ ବୟସରେ ବଡ଼, ଆକାରରେ ଡେଙ୍ଗା, ମେଳାପୀ ପିଲା । ରଙ୍ଗାଧର ଆହୁରି ଡେଙ୍ଗା, ଗୋରା, ବୟସ୍କ । ସେ ଖେଳରେ ଭଲ । ମୋଟା ଓ ଓସାରିଆ ନିମେଇଁ ମିଶ୍ରେ, ଜଣେ ବରିହା, କେଉଁଠିକାର ଜଣେ ଖଣ୍ଡ ଜମିଦାର ପିଲା, ମୋଟା, ଡେଙ୍ଗା, ଓସାରିଆ, ଏମାନେ ବି ମନେ ପଡୁଛନ୍ତି । ମନେ ପଡୁନାହାନ୍ତି ଅନେକେ । ତେୟାଳିଶି ବର୍ଷ ହେଲା ମୁଁ ସେମାନଙ୍କୁ ଦେଖିନାହିଁ ।

ସେଠି ଇସ୍କୁଲ୍‌ରେ ମାଇନର ଚାରି କ୍ଲାସ୍‌ରେ ବି ସାଧାରଣ ଲୋକଙ୍କ

ପିଲାଏ କମ୍ ସଂଖ୍ୟାରେ ଥିଲେ । ଯେଉଁମାନେ ଥିଲେ ସେମାନେ ଚାକିରିଆ, ପଣ୍ଡିତ କି ସ୍ଥାନୀୟ ଧନୀ ଲୋକଙ୍କ ପିଲାଏ ।

ମୋର ସେଠିକା ସହପାଠୀମାନଙ୍କ ଭିତରୁ ଯଥା ସମୟରେ ମ୍ୟାଟ୍ରିକୁଲେସନ୍ ପାଶ୍ କଲେ ଦୁଇଜଣ । ନୀଳାମ୍ବର ଓ କାହ୍ନୁ । ନୀଳାମ୍ବର କଲେଜରେ ଏମ.ଏ. ଶେଷଯାକେ ମୋର ସହପାଠୀ ହୋଇଥିଲା । ସେ ସୋନପୁରର ବାସିନ୍ଦାଙ୍କ ଭିତରୁ ପ୍ରଥମ ଏମ୍.ଏ. ସେଠି ଓ ବଲାଙ୍ଗିର ହାଇସ୍କୁଲରେ ସେ ହେଡ୍‌ମାଷ୍ଟର ହେଲା । ସେଇଠି ରହିଗଲା । କାହ୍ନୁ ବି.ଏ. ପରେ ଓକିଲାତି କଲା, ସୋନପୁରରେ ମହାରାଜାଙ୍କ ଅଧୀନରେ ମାଜିଷ୍ଟ୍ରେଟ୍ ହେଲା, ପଛେ ସରକାର ଅଧୀନରେ ଏ.ଡି.ଏମ୍. ହୋଇ ପେନ୍‌ସନ୍ ନେଲା । ପଞ୍ଚାନନ ପଛେ ମ୍ୟାଟ୍ରିକ୍ ପାଶ୍ କରି ଆସିଲା । ପୋଲିସ୍ ବିଭାଗରେ ଇନ୍‌ସପେକ୍ଟର ଆଦି କର୍ମଚାରୀ ହେଲା । ଶମ୍ଭୁ ବି ବାହାରିଲା, ପଶୁଡାକ୍ତର ହେଲା, ସେହି ବିଭାଗରେ କର୍ମଚାରୀ ହେଲା । ବିଚରା ଈଶ୍ୱର ଆପୁ ଦୁରବସ୍ଥା ଭୋଗିଲା, ଜେଲ୍ ଗଲା ଶୁଣିଛି ।

ଆଉ କିଏ କୁଆଡ଼େ ଯେ ଗଲେ !

ଇସ୍କୁଲ୍‌ରେ ଆମ ଉପରର ଓ ତଳର ଆଉ ଅଳ୍ପ କେତେଜଣଙ୍କୁ ପଛେ କେତେଥର ଦେଖିଛି । ଜଣେ ତ ମୋ ମାମୁଁପୁଅ ମଦନ ଭାଇ, ସେ ବି.ଏ. ପଢ଼ୁଥାନ୍ତି । ମୁଁ ରେଭେନ୍‌ସା କଲେଜରେ ନାଁ ଲେଖାଇଲି । ସୋନପୁର ମହାରାଜାଙ୍କ କର୍ମଚାରୀ ହେବାପରେ ସେ ଓଡ଼ିଶା ସରକାରୀ ଚାକିରିରେ ଡିପୋଟି ଓ ଏସ୍.ଡି.ଓ. ହୋଇ ପେନ୍‌ସନ୍ ନେଲେ । ଜଣେ ତାଙ୍କ ପାଠୀ ରାମଚନ୍ଦ୍ର ତ୍ରିପାଠୀ, ସେ ବି ସେହିପରି ହେଲେ । ଆଉ ଜଣେ କୈବଲ୍ୟ ନାଏକ, କଲେଜରେ ପୁଣି ଦେଖାହେଲା ।

ସେ ଇସ୍କୁଲ୍ ପିଲାଙ୍କ ଭିତରେ ଅନେକଙ୍କଠିଁ ଗୋଟିଏ ବିଶିଷ୍ଟ ଦକ୍ଷତା ଥିଲା, ସେମାନେ ମହାନଦୀରେ ପହଁରୁଥିଲେ, ଉଚ୍ଚ ପଥର ଉପରେ ଠିଆହୋଇ ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି ପାଣିରେ ଡୁବ ମାରୁଥିଲେ ।

ସେମାନେ ଭଲ ଦଉଡ଼ୁଥିଲେ, ଡେଉଁଥିଲେ । ଅନେକେ ଚେମେଡ଼ା, ଡେଙ୍ଗା, ବଳୁଆ ।

ଫୁଟ୍‌ବଲ୍ ଖେଳ ହେଉଥିଲା । କିନ୍ତୁ ଖେଳରେ ଭଲ ତାଲିମ୍ ନ ଥିଲା । ଫୁଟ୍‌ବଲ୍ ଖେଳ ସଙ୍ଗେ ସଙ୍ଗେ ବାୟା ହାତୀ କଥା ମନେ ପଡ଼ିଯାଏ । ରାଜାଙ୍କ ହାତୀ ଭିତରୁ କେହି କେହି କେତେବେଳେ ବାୟା ହୁଅନ୍ତି ବୋଲି ଶୁଣିଥିଲି । ଗୋଟାଏ ହାତୀ ବାୟା ହୋଇ କେତେ ଲୋକଙ୍କୁ ମାରିଥିବାର

କାହାଣୀ ବି ଲୋକେ କହୁଥିଲେ । ସହରରେ ଆତଙ୍କ ପଡ଼ିଥିଲା । ତା'ପରେ ତଳେ ମୂନିଆ ମୂନିଆ ଲୁହା ଶାବଳଗୁଡ଼ାଏ ପୋତି ହାତୀକୁ ଚିଡ଼େଇ ଦେଇ ସେହି ବାଟେ ଦଉଡ଼େଇ ଅଣାହେଲା, ହାତୀର ଗୋଡ଼ ଲାଖିଗଲା, ପଛେ ସେ ମଲା, ଏପରି ବି ଶୁଣିଥିଲି । ଦିନେ ପଡ଼ିଆରେ ଫୁଟ୍‌ବଲ୍ ଖେଳ ଚାଲିଥିଲାବେଳେ ଚହଳ ପଡ଼ିଲା, ''ବାୟାହାତୀ ଆଇଲା ।'' ଯେ ଯୁଆଡ଼େ ଅତର୍କ ହୋଇ ଧାଇଁ ପଳାଇଲୁଁ । ପଛେ ଶୁଣାଗଲା, ହାତୀ ଭଲ ହୋଇଗଲା ।

କିନ୍ତୁ ଥରେ ଗୋଟିଏ ହାତୀ ନଈକୁ ଓହ୍ଲାଉ ଓହ୍ଲାଉ କୂଳରେ ଖସିପଡ଼ିଲା । ଆଉ ଉଠିପାରିଲା ନାହିଁ । ଏତେ ବଡ଼ ଜନ୍ତୁକୁ ଉଠାଇ ପଥରବନ୍ଧ ଉପରକୁ ନେବା କାହାରି ଦ୍ୱାରା ସମ୍ଭବ ହେଲା ନାହିଁ । କେତେଦିନ ଯାକେ ଛୀଅନ୍ତାରେ ପଡ଼ି ପଡ଼ି ଗର୍ଜନ ଛାଡ଼ୁଥାଏ, ଅନେକ କାଉ ସାଗୁଣା ବସି ବସି ଅପେକ୍ଷା କରିଥାନ୍ତି, ଦିନେ ସେ ମରିଗଲା । ନଈକୂଳ, ସୋନପୁରର ଆକାଶ ଶାଗୁଣାମୟ ହୋଇଗଲା । ତା'ପରେ ଆରମ୍ଭ ହୋଇଗଲା ଗୋଟିଏ ବୀଭତ୍ସ କାର୍ଯ୍ୟ । ଗୁଡ଼ାଏ ଲୋକ ଲାଗି କୁରାଢ଼ି କଟୁରିରେ ତା ମାଂସକୁ ହାଣୁଥାନ୍ତି, ମୁଣ୍ଡା ମୁଣ୍ଡା ନାଲି ନାଲି ମାଂସ ବୁହା ହୋଇ କୁଆଡ଼େ ଚାଲିଯାଉଥାଏ । କାମ ବନ୍ଦ ହେଲେ ଲାଗେ ବିଲୁଆ ଶାଗୁଣା ଆଦିଙ୍କ ଭୋଜି । ଗନ୍ଧରେ ନାକ ଫାଟୁଥାଏ । କେତେ ଦିନକେ ସବୁ ଉଠିଗଲା ।

ଚୁମୁଟାଚୁମୁଟି, ଚୁଟି ଝିଙ୍କାଝିଙ୍କି, ଗୋଡ଼ିଆଗୋଡ଼ି, ହସ, ଖେଳ, ଗପ, ମାଡ଼ ମରାମରି, କେତେବେଳେ ''ଆଜିଠୁଁ ତୁମର ଆମର ଆଡ଼ି, ତୁମର ଆମର କାନମୋଡ଼ା'' ଅର୍ଥାତ୍ କାନ ମୋଡ଼ି ହେଉଛି ଆଉ ତୁମକୁ ମୁଁ ପାଟି ଫିଟେଇବି ନାହିଁ ।

କ୍ଲାସ୍‌ରେ କେତେ ରହସ୍ୟ ।

''ବୁଝାଅ, ଲମ୍ବକର୍ଣ୍ଣ ବଚନ ରଚନା ଚତୁର ଥିଲା ।''

ଗମ୍ଭୀର ହୋଇ ନିମେଇଁ ବୁଝୋଉଚି, ''ଲମ୍ ଲମ୍ କାନ୍ । ବଚନର, ବଇଲେ, କଥାର । ଚନା ବଇଲେ ଚେବେଇବାଟା । ଭଜା ହେଇସି । ଚତୁର ବଇଲେ ବଡ଼େ ଚତୁରଟା । ସେମିତିଟା ଥିଲା ।''

''ହଁ ଥିଲା ! ଇଷ୍ଟୁପିଟ । ଠିଆ ହ ବେଞ୍ଚ ଉପରେ ।''

ସହରଯାକ ବୁଲା, ନଈକୂଳେ ବୁଲା, ଛନଛାନଡୁଂରି ବୁଲା, କେବେ ତେଲ୍‌ନଦୀ ପାରିହୋଇ ମନମୁଣ୍ଡା, କେବେ ଡଙ୍ଗାରେ ବସି ନଈର ତେମୁହାଣିରେ

ରାମେଶ୍ୱର ଘାଟ ପାଖେ ଏପାରି ସେପାରି । କେବେ କେଉଁ ଦେଉଳ, କେଉଁ ଯାତ୍ରା ।

ଆଉ, ଘୋଡ଼ାରେ ଚଢ଼ି ବାଇଗଣ ଢୋରି । ବାପାଙ୍କ ଘୋଡ଼ା ମୋ ପାଇଁ ଖୁବ୍ ଉଚ୍ଚ । ସେ ମୋ ପାଇଁ ଗୋଟାଏ ସାନ ଘୋଡ଼ା ଆଣିଦେଲେ । ଘୋଡ଼ା ଚଢ଼ିବାର ଉପକାର ମତେ ବୁଝେଇଲେ । ଆମ ଘରେ ଯେତେ ଯେ ଘୋଡ଼ା ଚଢୁଥିଲେ ସେକଥା କହିଲେ । ଆଗ ଆଗ ଡରୁଥାଏଁ, ପଛେ ଅଭ୍ୟାସ ହୋଇଗଲା । ଘୋଡ଼ା କଦମ୍ ଛୁଟେ । ମତେ ଲାଗେ ପବନରେ ଦୋଳି ଖେଳି ଖେଳି ଗଲାପରି ।

ଘୋଡ଼ାରେ ବସି ମୁଁ ଯାଏଁ ମୋ ମାମୁଁ ମାଇଁ ଓ ଆଈଙ୍କ ପାଖକୁ । ସେଠୁ ଛ'ମାଇଲ୍ ହେବ, ମଫସଲରେ ତାଙ୍କ ଚାଷ ଗାଁ ବାଇଗଣ ଢୋରି । ସେମାନେ ସେଇଠି ରହିଥାନ୍ତି । ବିଲମାଳ ତୋଟା ବାଟ ଭାରି ଭଲ ଲାଗେ । ବହୁତ ସ୍ନେହ ଆଦର ପାଏଁ । ଦିନେ ଅଧେ ରହି ଲେଉଟି ଆସେ ।

ସହରରେ ଥିଲାବେଳେ ଅନେକ ସମୟରେ ଯାଏଁ ମାମୁଁଙ୍କ ଘରକୁ । ସେଠି ବଡ଼ ମାମୁଁ ଓ ତାଙ୍କ ପୁଅ ନଟଭାଇ, ପଦନ ଭାଇ ଥାନ୍ତି । ବଡ଼ମାମୁଁ ଅନେକ ସମୟରେ ରାଜାଘରେ ଥାଆନ୍ତି, ଡେରିରେ ଫେରନ୍ତି । ନଟଭାଇ ସେମାନଙ୍କ ଚାଷ ଗାଁ ଗଡ଼ିଆକୁ ଯା ଆସ କରନ୍ତି । ସେମାନେ ପୋଷିଥାନ୍ତି ନିତିର୍ ଚଢ଼େଇ, ପିଞ୍ଜରାରେ ଥାଏ, ଉଈ ଟାକୁ ଖାଏ, ସିଠି ମାରିଲେ ବୋବାଏ । ଯେତେବେଳେ ମନ ହୁଏ ଖୁବ୍ ଭଲ ଖାଇପିଇ ସ୍ନେହ ଆଦର ପାଇ ବିଶ୍ରାମ ନେଇ ବେଳ କାଟିବାକୁ ସେତେବେଳେ ସେଇଠିକି ଚାଲିଯାଏ । ତାଙ୍କର ଶୁଆଟିଏ ବି ଥାଏ, ବହୁତ କୁକୁର ବିଲେଇ ଥାଆନ୍ତି ।

ଆମେ ବି ଗୋଟିଏ ଚଢ଼େଇ ଆଣିଲୁ । 'ମେରୁ' ଶୁଆ, ସେଠି ଶୁଆକୁ କହନ୍ତି 'ରୂପ' । ଭ୍ରମର ମାଳି ଆଣି ଦେଇଥିଲେ ।

ବାରମ୍ବାର ମତେ କାମୁଡ଼ିବାକୁ ଚେଷ୍ଟା କଲା 'ରୂପ', ପଛେ ଆମେ ବନ୍ଧୁ ହେଲୁ । "ରୂପ ପଢ଼" । ସେ କେଁ କଟର ହୁଏ । ଆମେ ବାରିବାକୁ ଚେଷ୍ଟା କରୁଁ । "କୃଷ୍ଣ ଦାତା, କୃଷ୍ଣ କରତା, କୃଷ୍ଣ କୃଷ୍ଣ ହରେ ରାମ ।" ସେ ନାମ ପଛେ ପରିଷ୍କାର ଶୁଭିଲା ।

ତା'ପରେ ଦିନେ ରୂପ ଉଡ଼ିଗଲା, ଗଛ ଉପରେ ବସି କୃଷ୍ଣ ନାମ ପଢ଼ିଲା । ଆଖପାଖରେ ରହିଲା ଦି'ଦିନ ।

ତା'ପରେ ଦିନେ, ଆକାଶରୁ ଶୁଭିଲା ଆଉ ଗୋଟିଏ ଶୁଆର ପାଟି, ରୂପ ସିଧା ଆକାଶକୁ ଉଡ଼ିଗଲା, ଆଉ ଆମେ ତାକୁ ଦେଖିନାହୁଁ ।

ପ୍ରଧାନ କାମ ଥିଲା—ପାଠପଢ଼ା । ବହି ପଢ଼ା । ଗୋଟାଏ ନିଶା । ବୋଧହୁଏ ଆଉ କିଛି କାମ ନ ଥିଲା ବୋଲି । ତା'ଛଡ଼ା ନୂଆ ଶିଖାଳିର ନୂଆ ନୂଆ କଥା ପ୍ରତି ମୋହ । ବାପାଙ୍କ ଉତ୍ସାହ । ମନରେ ପଶିଥିବା ଗୋଟାଏ ଧାରଣା ଯେ ଏଇବାଟରେ ଗଲେ ମୁଁ 'ଖୁବ୍ ବଡ଼' ହେବି । ଯାଠୁଁ 'ବଡ଼', ତାଠୁଁ 'ବଡ଼', ଆହୁରି 'ବଡ଼' । ସେ ବଡ଼ତିର ସ୍ପଷ୍ଟ ରୂପରେଖ ନ ଥାଏ । ଯେତେବେଳେ ଯାହା ମନେପଡ଼େ, ସେତେବେଳେ ସେହି ପ୍ରକାରେ ତା'ର ଗଢ଼ଣ । ସେତିକିରେ ଅଟକେ ନାହିଁ । ମନେପଡୁଛି, ବହି ପଢୁ ପଢୁ ମୁଁ ଭାବପ୍ରବଣ ହୋଇଯାଏ । ଆଖି ଛଳ ଛଳ ହୁଏ । ତା କାରଣ ବି ମୁଁ ଜାଣେ ନାହିଁ । ମନେ ତ ରହୁଥିଲା ସହଜରେ, ବହିଗୁଡ଼ାକ ମୁଖସ୍ଥ ରହିଯାଏ, ଧାଡ଼ିକି ଧାଡ଼ି, ତା ଅର୍ଥ ସବୁ । ଲୋକଙ୍କ ପ୍ରଶଂସା ଆହୁରି ଉତ୍ସାହ ଦିଏ । ମୂଳରୁ ହିଁ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ପାଏଁ । ସେହି ସ୍ଥାନ ରଖିବାକୁ ରାତିରୁ ଉଠି ପଢ଼େଁ । ବାପା ଉଠେଇ ଦିଅନ୍ତି, ତାଙ୍କର ତ ଉଠି ଧ୍ୟାନ କରିବା ଅଭ୍ୟାସ । ମୋର ହେଣ୍ଡିଆ ଘଣ୍ଟା ଅର୍ଥାତ୍ ଆଲାର୍ମ୍ କ୍ଲକ୍‌ଟିଏ ବି ଥାଏ । ଆଗ ଆଗ ଅଙ୍କରେ ମୁଁ ଦୁର୍ବଳ ଥିଲି । ତା'ପରେ ଗୋବିନ୍ଦ ବାବୁଙ୍କ ପାଖକୁ ଯାଇ ଟିଉସନ ପଢ଼ିଲି, ଅଙ୍କ ହୋଇଗଲା । ବଡ଼ପଢ଼ା ବଡ଼ବଜାର ଉପରେ ଦେଉଳ ଆଗରେ କାହାର ଦୋକାନ ଘରଟିଏ, ଢଦା ଘର, ଉପରକୁ ଚଢ଼ିବାକୁ ପାହାଚଗୁଡ଼ିଏ ଅଛି, ସଂକୀର୍ଣ୍ଣ ପଥ । ଉପରେ ଆଟୁ ଘର, ଜଣେ ମଣିଷ ଠିଆହୋଇ ପାରିବ । ତା ଉପରେ ଚାଳ । ଝରକା ତିନୋଟି । ଆମେ ସେଠି ଦଶ ବାର ଜଣ ପିଲା ଜମା ହେଉଁ । ସାର୍ ପଢ଼ାନ୍ତି, ସକାଳ ଓଳି । ଝରକା ବାଟେ ବହୁତ ଦୂରକୁ ଦିଶେ, ଘର, ତୋଟା, ପୋଖରୀ ଗହଳି । ନଈକୂଳିଆ ପବନ ଆସେ । ଏମିତି ପଢ଼ିଥିବି ବର୍ଷେ । ଭାରି ସ୍ନେହୀ, ସବୁବେଳେ ହସ ହସ, ପ୍ରଫୁଲ୍ଲ ଓ ଉଦାର ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ର । ପିଲାଏ ତାଙ୍କୁ ଓ ସେ ପିଲାଙ୍କୁ ଭାରି ଭଲ ପାଆନ୍ତି । ମୋର ଏବେ ବି ଧାରଣା ସେ ଖୁବ୍ ଜ୍ଞାନୀଲୋକ । ସେତେବେଳେ ଆମ ଘରକୁ ଡାକରେ ଆସୁଥାଏ ଗୋଟିଏ ଖବରକାଗଜ । ଶ୍ରୀ ସ୍ୱପ୍ନେଶ୍ୱର ଦାସ କବିଭୂଷଣଙ୍କ 'ସାଧନା' । ତାକୁ ବି ପଢୁଥାଏଁ ।

ଆମ 'ଆର ଖଞ୍ଜା'ରେ ଆସି ରହିଲେ 'ଡାକ୍ତରବାବୁ', ଶ୍ରୀ ନନ୍ଦ କିଶୋର କାନୁନ୍‌ଗୋ, ଚାକିରି 'ହସ୍‌ପିଟାଲ୍ ଆସିଷ୍ଟାଣ୍ଟ', ଘର କେନ୍ଦ୍ରାପଡ଼ା ଆଡ଼େ । ହାତୀ ପରି ମଣିଷଟିଏ । ସେ ଖୁସି ହୋଇ ମୋ କାନ୍ଧରେ ହାତଟିଏ ଥୋଇଦେଲେ ଓଜନ ମୁଁ ସହିପାରେ ନାହିଁ । ସେ ଖୁବ୍ ମେଳାପୀ ଲୋକ, ଏକୁଟିଆ ଥାଆନ୍ତି, ବହୁତ ଗୁଡ଼ାଏ ଖାଆନ୍ତି, ଖୁବ୍ ଖାଦ୍ୟ ପ୍ରିୟ । ଦିନେ ରାତିରେ ସେ କୁଆଡ଼ୁ ଭୋଜି ଖାଇ ଆସି ଶୋଇ ପଡ଼ିଥିଲେ, ରାତି ଅଧବେଳେ ସେଘରୁ ଗୋଟିଏ ଗର୍ଜନ ଶୁଣି ବାପା ଉଠି ପଡ଼ିଲେ । ଗର୍ଜନ ଉପରେ ଗର୍ଜନ ଶୁଭୁଥାଏ । ଆମେ ଆଲୁଅ ଓ ବାଡ଼ି ଧରି ସେ ଖଞ୍ଜାକୁ ଗଲୁଁ । ନନ୍ଦବାବୁ ତାଙ୍କ ଶୋଇବାଘର ସାମ୍ନାରେ ପିଣ୍ଡାରେ ତଳେ ଲମ୍ବ ହୋଇ ପଡ଼ି ଗର୍ଜୁଥାନ୍ତି, ଗୁଡ଼ାଏ ବାନ୍ତି କରିଥାନ୍ତି, ହୋସ ନ ଥାଏ ।

ପାଟିତୁଣ୍ଡ ହେଲା, ଲୋକ ଆସିଲେ । ସେଇ ପିଣ୍ଡାରେ ବିଛଣା ପାରି ସେହି ପ୍ରକାଣ୍ଡ ଶରୀରକୁ ଶୁଆଇ ଦିଆ ହୋଇଥାଏ । ସେମିତି ସେ ଗର୍ଜୁଥାନ୍ତି । ଦେଖିଲେ କବିରାଜ ସ୍ୱୟଂ ରାଜଗୁରୁ ମହାଶୟ, ବାପାଙ୍କୁ କହିଦେଇ ଗଲେ ''ଯେ ଆଉ ବଞ୍ଚିବେ ନାହିଁ ।'' ସିଭିଲ୍ ସର୍ଜନ୍ ବି ଦେଖିଲେ । କ'ଣ ଚିକିତ୍ସା ଚାଲିଥାଏ । ଦୁଇଦିନ ପଡ଼ି ରହିଲେ, ତା'ପରେ ଦିନେ ସଞ୍ଜବୁଡ଼େ ସେ ମରିଗଲେ ।

ତା'ର ୩/୪ ଦିନ ପରେ ତାଙ୍କ ଗାଁରୁ ତାଙ୍କ ଭାଇ ଆସି ପହଞ୍ଚିଲେ । ସେ ଟେଲିଗ୍ରାମ୍ ପାଇ ନାହାନ୍ତି । ଟେଲିଗ୍ରାମ୍ ଆଗ ଡଙ୍ଗାରେ ଯିବ ସମ୍ବଲପୁର, ସେଠୁ ତାରରେ ଯାଉଥିଲା । ସେ ଗୋଟିଏ ଅଦ୍ଭୁତ କାହାଣୀ କହିଲେ । ଯେଉଁ ରାତିରେ ଡାକ୍ତରବାବୁ ସୋନପୁରରେ ମଲେ, ସେହି ରାତିରେ କେନ୍ଦ୍ରାପଡ଼ାରେ ତାଙ୍କ ଗାଁରେ ତାଙ୍କ ଭାଇ ରାତିରେ ନିଦବାଉଳାରେ ତାଙ୍କୁ ଦେଖିଲେ, ସ୍ୱପ୍ନରେ ଦେଖିଲା ଭଳି । ଡାକ୍ତରବାବୁ ତାଙ୍କୁ କହିଲେ, ''ଆରେ, ମୁଁ ମରିଗଲିଣିରେ, ଜଲ୍‌ଦି ସୋନପୁର ଯାଇ ମୋ ଜିନିଷପତ୍ର ନେଇଆ ।'' ସେ ତାଙ୍କ ଭାଇଙ୍କ ଖବର ବୁଝିବାକୁ ଚାଲି ଆସିଥିଲେ ।

ବାପା ମତେ ବୁଝେଇଦେଲେ, ''ସେମିତି ହୁଏ ।'' ସେ ମୃତ୍ୟୁ ଏବେ ବି ମତେ ଜଳଜଳ ଦିଶୁଛି ।

ଅଲୌକିକ ସଙ୍ଗେ ମୁଁ ନିଜେ ଥରେ ଭେଟାଭେଟି ହେଲାଭଳି ମନେପଡ଼ୁଛି । ସଞ୍ଜ ହୋଇ ନ ଥାଏ, ଘୋଡ଼ାଘାଟ ପଡ଼ାରୁ ନିଛାଟିଆ ବାଟରେ ବିଶିସାଗର

ବନ୍ଧ ତଳେ ତଳେ ମୁଁ ମାମୁଁ ଘର ଆଡ଼କୁ ଆସୁଥାଏଁ । ବିଶିସାଗର ବନ୍ଧରୁ ଓହ୍ଲାଇଲା ବାମନ ପରି ଗୋଟାଏ ମଣିଷ, ତା ଦେହଯାକ ବଡ଼ ବଡ଼ ବାଳ, ମୁହଁଟା ଭୟଙ୍କର । ସେ ମୋ ପଛେ ପଛେ ଆସିଲା । ଲାଗିଲା ମତେ ଗୋଡ଼ାଉଛି । ମୁଁ ଦୌଡ଼ିଲି । ସେ ଦୌଡ଼ିଲା । ପଛକୁ ଅନାଇଁଲି, ସେ ଆଉ ନାହିଁ । ତା ଆଗରୁ କି ପରେ ମୁଁ କେବେ ତାକୁ ଦେଖିନାହିଁ । ତା ଚେହେରା ମଣିଷ ଭଳି ଦି ଗୋଡ଼ିଆ, କିନ୍ତୁ ଦେହର ଗଢ଼ଣ କେମିତି ଜନ୍ତୁପରି । ପିଲାଏ କହିଲେ ସେଠି ଭୂତ ଥାଏ । ବାପା କହିଲେ "ସେ ତୋ ମନର ଭୟ, ଆଉ କିଛି ନୁହେଁ ।" କଥାଟା ମୀମାଂସା ହେଲାନାହିଁ ।

କିନ୍ତୁ ଅଲୌକିକତା ସେଠିକାର ସାଧାରଣ ବିଶ୍ୱାସ, ସାଧାରଣ ଗପ । କେତେ ଟଣ୍ଡେଇ (ଡାଆଣୀ), ଭୂତ, ପ୍ରେତ, ଗୁଣିଗାରେଡ଼ି କଥା ଲୋକେ ଗପନ୍ତି । ବାପା କହନ୍ତି "ଭଗବାନଙ୍କର ଭକ୍ତ ହେଲେ ସେ ସବୁ ଭୟ ନ ଥାଏ । ମୁଁ ତ ମଶାଣି ନିଆଁରେ ପିକା ଲଗାଏଁ, ସେ ସବୁଠୁ ପବିତ୍ର ।"

କିନ୍ତୁ କାହାରି ଅସ୍ତିତ୍ୱ ସେ ଅସ୍ୱୀକାର କରୁ ନ ଥିଲେ । ସେ କହନ୍ତି ଓ ଅନ୍ୟମାନଙ୍କ ଠୁଁ ଶୁଣେଁ, ରାତିଅଧରେ ଦେବୀମାନେ ଝମର ଝମର ହୋଇ ସଡ଼କରେ ଯାଆନ୍ତି, ନିର୍ଜନ ନିଛାଟିଆ ବେଳେ ।

ଶୁଣିଲି ସୁରେଶ୍ୱରୀ ମନ୍ଦିର ସାମ୍ନା ତୋଟା ଭିତରେ କ'ଣ ଗୋଟାଏ ପ୍ରକାର 'ଖଏଲ୍ ମାଟି' ଅଛି । ଦଶରାର ଷଷ୍ଠୀ କି ସପ୍ତମୀ ପୂର୍ବ ରାତିରେ ସେଠିକି ପୁରୋହିତ, କଟୁଆଳ, 'ବଳି' ଓ ଆଉ କିଏ କିଏ ଯାଆନ୍ତି । 'ବଳି' ଗୋଟିଏ ଗାତରେ ହାତ ପୂରାଏ, ହାତରେ କନା ଗୁରା ହୋଇଥାଏ । ମାଟି ମୁଠେଇ ଆଣି ନେଇଯାଏ ସମଲେଶ୍ୱରୀ ମନ୍ଦିରକୁ । ସେଠି ସେ ମାଟିକୁ ଲୁଚେଇ ରଖାହୁଏ । ତହିଁଆର ଦିନ ରାତିରେ ସମଲେଶ୍ୱରୀ ଦେଉଳ ଆଗରେ ମୁଖଶିଆଳିରେ ପୂଜା ଆରମ୍ଭ ହୁଏ । 'ବଳି'କୁ ଅଣା ହୁଏ । ତା ନାହିରେ ପୁରୋହିତ 'ଖଏଲ୍ ମାଟି' ଛୁଆଁଇଲା ମାତ୍ରେ ସେ 'ମରିଯାଏ', ପୁଣି ମନ୍ତ୍ରରେ ଜୀବନ୍ୟାସ ପାଏ, ତେଣିକି ତା ଆଖି ଦେବୀଙ୍କ ଆଖି ।

'ବଳି' ଗୋଟିଏ ଗୋଷ୍ଠୀର ମଣିଷ, ଜାତିରେ 'ଥାନାପତି', ସେ ଦଶହରାରେ 'ବଳି' ହେବ ବୋଲି ତା ପାଇଁ ଜମି ଖଞ୍ଜା ହୋଇଛି । ପୂଜା ଦିନତକ ସରିଲେ ସେ ପୁଣି ସାଧାରଣ ମଣିଷ ହୋଇଯାଏ ।

ମୁଁ ସେ 'ବଳି'ର 'ମରଣ' ଓ 'ଜୀବନ୍ୟାସ' ପାଇବା ଦେଖିଛି । ବଡ଼ ଭୟଙ୍କର ସେ ଦୃଶ୍ୟ । ଭୂଇଁରେ ମୁରୁଜ ପକା ହୋଇ ନାନା ପ୍ରକାର

'ଯନ୍ତ' କଟା ହୋଇଥାଏ । ବଳି ଉପାସ ରହି ଦେବୀ ପାଖରେ ବନ୍ଦୀ ହୋଇଥାଏ । ନାନା ପ୍ରକାର ବାଦ୍ୟ ଯନ୍ତ୍ର ବିକଟ ହୋଇ ଶବ୍ଦ କରୁଥାଏ ଯେମିତି ଏକାଠି ବହୁତ ବିଲୁଆ, ଶାଗୁଣା ବୋବୋଉଛନ୍ତି, ବହୁତ କିଳିକିଳା ବୋବାଳି ଶୁଭୁଛି । ବଳିକୁ ପଦାକୁ ଅଣାହୁଏ, ମୁଖଶିଆଳୀକୁ । ତା ପେଟରେ କ'ଣ ଲଗାଇ ଦିଆହୁଏ । ସଙ୍ଗେ ସଙ୍ଗେ ସେ କାଠ ପରି ପଡ଼ିଯାଏ । କାଠ ଶରୀରଟାକୁ ଟେକି ଯନ୍ତ୍ର ଉପରେ ଥୋଇ ଦିଅନ୍ତି ।

ବାଜା ବାଜେ । ପୁରୋହିତ ମନ୍ତ୍ର ପଢ଼ନ୍ତି । କିଛି ସମୟ ପରେ କାଠ ପରି ଦେହଟା ବିଜୁଳି ଚମକ ଖେଳିଲା ପରି ଖାଲି ଥରେ । ତା'ପରେ ସେ ପେଟାଏ, ଗୁରୁଣ୍ଡେ, ବସେ, ଠିଆହୁଏ, ଡିଏଁ । ଏ ପ୍ରତି ଅବସ୍ଥାରେ କିଛି କିଛି ବେଳ କଟେ । ସେ ଡେଇଁ ଡେଇଁ ନାଚେ । ତା'ର ଲମ୍ୱ ବାଳ ଉପରେ ହାଣ୍ଡି ହାଣ୍ଡି ଦହି ଅଜଡ଼ା ହେଉଥାଏ, ଖଚ୍ ଖାଚ୍ ବୋଦା ହଣା ହୋଇ ଗଣ୍ଡିକୁ ତା ପାଟି ଉପରେ ଟେକି ରଖାହୁଏ । ତା' ପାଟି ଦେହ ରକ୍ତ ଜୁଡୁବୁଡୁ ହୋଇଯାଏ । ସେ ଆହୁରି ଡିଏଁ, ଆହୁରି ବୋଦା ହଣା ହୋଇ ତା ପାଟିରେ ରକ୍ତ ଢଳା ହୁଏ, ସେ ଦୌଡ଼ି ଦୌଡ଼ି ପଦାକୁ ଧାଇଁ ପଳାଏ, ତା ପଛେ ପଛେ ବାଜା ଓ ଜନତା । ସେ ସହରର ରାସ୍ତାଏ ରାସ୍ତାଏ ଦୌଡ଼େ, ନାନା ସ୍ଥାନରେ ଛାମୁଡ଼ିଆ ପାଖେ ଅଟକେ, ପୂଜା ଘେନେ, ବୋଦା ରକ୍ତ ତା ପାଟିରେ ଢଳାହୁଏ, ପୁଣି ଦୌଡ଼େ, ଯାଏ ସହରଠୁ ଦୂରରେ ଥିବା 'ବୁଢ଼ାରାଜା' ଠାକୁର କତିକି, ବହୁତ ଆଡ଼େ ।

ପଛେ ଜାଣିଲି, ସେ ପର୍ବ କନ୍ଧମାନଙ୍କ ମେରିଆ ପର୍ବ ଶ୍ରେଣୀର ।

ଦଶହରା ମଝି ରାତିରେ ଗୋଟାଏ ଫମ୍ପା ଢୋଲ ଶୁଭେ । ତା ସହିତ ଶୁଣିଥିଲି ଗୋଟାଏ କିମ୍ୱଦନ୍ତୀ । ସେ ରାତିରେ କେଉଁ ଧୋବାଟିଏ କୁଆଡ଼େ ରଜା ବେଶ ହୁଏ, ଘୋଡ଼ାରେ ଚଢ଼ି ସହର ବୁଲେ, ଫଟା ଢୋଲ ବାଜୁଥାଏ ।

ବହୁପ୍ରକାର ବହୁତ "ବିଶ୍ୱାସ", ବହୁତ କାହାଣୀ, ବହୁତ କିମ୍ୱଦନ୍ତୀ । ଲୋକେ ବିଶ୍ୱାସ କରୁଥିଲେ, ଆପଣା ଆପଣା ଅବସ୍ଥାକୁ ଆଦରି ନେଇ ବିଶ୍ୱାସରେ ଆଖି ବୁଜିଦେଇ ଗୋଟାଏ ପ୍ରକାର ତୃପ୍ତିରେ ହିଁ ବୋଧହୁଏ ରହିଥିଲେ । ସେମାନଙ୍କର ନିଜ ନିଜ ସମସ୍ୟା ଓ ଦୁଃଖ କଷ୍ଟ ଥିଲା, ଧରି ନେଇଥିଲେ, "ଭାଗ୍ୟରେ ଯାହା ଅଛି ।"

ପଦାରୁ ଦେଖିଲେ ଲାଗେ, ସେମାନେ ସୁଖିରେ ଅଛନ୍ତି । ସମସ୍ତେ ଫୁଲ ସଉକି । ପୁରୁଷଙ୍କ ବେକରେ ଫୁଲ ହାର, କାହା ଚୁଟିରେ ଫୁଲ

ବନ୍ଧା ହୋଇଥାଏ । ଖରାଦିନେ ସଞ୍ଜ ପରେ ରାଶି ତେଲ ବୋଳି ହୋଇ ଘଷି ହୁଅନ୍ତି, "ମର୍ଦ୍ଦନ" । କାନ୍ଧରେ ସୋନପୁରର ବିଶିଷ୍ଟ ଚମ୍ପାଫୁଲିଆ ଗାମୁଛା । ସ୍ତ୍ରୀଲୋକମାନେ ମୁଣ୍ଡରେ ଦେହରେ ଫୁଲ ପିନ୍ଧନ୍ତି । ରଙ୍ଗ ରଙ୍ଗର ସୁନ୍ଦର ସୁନ୍ଦର କାରୁକାର୍ଯ୍ୟମୟ 'କବ୍‌ଟା' ପିନ୍ଧି ବୁଲନ୍ତି । ରାସ୍ତାରେ ବଜାରରେ ସେହିମାନେ ହିଁ ବେଶି । ହାତରେ ମୁନିଆଁ ମୁନିଆଁ ଓଜନ 'କିତୁରିଆ', 'ବନ୍ଦରିଆ', ଦେହରେ ନାନା ଅଳଙ୍କାର । କାନରେ ଅତର ଜୁଟୁବୁଟୁ ତୂଳା ଲାଗିଥିବା ଖାଡ଼ି ଖୋଷନ୍ତି ଅନେକେ, ଇସ୍କୁଲ ପିଲାଏ ବି । ସୋନପୁରର ଚାଉଳ, ବାସ୍ନା ହୁଏ । ମୁଗଡାଲି ଉପରେ ଆଙ୍ଗୁଳିଏ ବହଳ ସର ପଡ଼ିଯାଏ । ଜିନିଷପତ୍ର ଶସ୍ତା । ଜଳବାୟୁ ଖୁବ୍ ଭଲ । ଦୁର୍ବଳ ଲୋକ ଖୁବ୍ ଅଳ୍ପ ହିଁ ଆଖିରେ ପଡ଼ନ୍ତି ।

ସୋନପୁର ସୁନ୍ଦର ଦିଶେ ।

ନଈକୂଳରେ ବହୁତ କେଉଟ, ନଈରେ ବହୁତ ଡଙ୍ଗା, ଘାଟମାନଙ୍କରେ ଜିନିଷପତ୍ର ନେ ଆଣ ଲାଗି ରହିଥାଏ । ବିଶିସାଗର ପାଖେ ଖୁବ୍ ବଡ଼ "କୋଷ୍ଟାପଡ଼ା", କୋଷ୍ଟାମାନେ କୋଷାପୋକ କିଣି ତାକୁ ସିଝେଇ ତହିଁରୁ ପୋକମାନଙ୍କୁ ଫୋପାଡ଼ି ଦିଅନ୍ତି, ସିଝିଥିବା ଖୋଳରୁ ସୂତା କାଢ଼ନ୍ତି, ତହିଁରେ ସୁନ୍ଦର ସୁନ୍ଦର ମଠା ବୁଣନ୍ତି । ସେହି ସେ ପ୍ରସିଦ୍ଧ ସମ୍ବଲପୁରୀ ମଠା । ସହରରେ ବହୁତ 'ଭୁଲିଆ' ଅର୍ଥାତ୍ ତନ୍ତୀ । ପଦବୀ 'ମେହେର୍' । ସେମାନେ ବୁଣନ୍ତି ପ୍ରସିଦ୍ଧ ସମ୍ବଲପୁରୀ ଲୁଗା, କବଟା, ଗାମୁଛା, ଇତ୍ୟାଦି । ଭୁଲିଆମାନଙ୍କର ନିଜର 'ରାମଲୀଳା', 'ଭାରତଲୀଳା' ଥାଏ ତୁଣ୍ଡେ ତୁଣ୍ଡେ, ବେଳେ ବେଳେ ଯାତ୍ରା କରନ୍ତି ।

ସୋନପୁରର ଲୋକେ ସୋନପୁର ରାଜ୍ୟ ଘେନି ଗର୍ବ ଅନୁଭବ କରୁଥିଲେ, —ନ ଦେଖନ୍ତୁ ସେମାନେ ଅନ୍ୟ ଦେଶ, ସେମାନଙ୍କର ବିଶ୍ୱାସ ଥିଲା, "ଆମର ଏ ଚଉଦକୋଶୀ ରାଜ୍ୟ ସବୁଠୁ ଭଲ ଦେଶ; ଏଡ଼େ ଭଲ ଦେଶ ଆଉ ଏ ପୃଥିବୀଯାକରେ ଅଛି ?"

ସଞ୍ଜପହରେ ମଦୁଆମାନେ ପାଟି କରି କରି ଆମ ବସା କରେ କରେ ଯାଆନ୍ତି, ମଦ ଖଟିରୁ ଫେରୁଥାନ୍ତି । ଗୁଡ଼ାଏ ପାଗଳ ଲୋକ, ଦୂରରୁ ତାଙ୍କ ଭାବଭଙ୍ଗୀ ଦେଖିଲେ ହସମାଡ଼େ, ପୁଣି ଡର ବି ମାଡ଼େ । ସେତିକିବେଳେ ମୋର ଗୋଟାଏ ଧାରଣା ହୋଇଯାଇଥିଲା ଯେ ପରସ୍ପରଙ୍କୁ 'ମାମୁଁ', 'ମାମୁଁ' ଡାକନ୍ତି ।

ପୁରୁଣା ବସା ଛାଡ଼ିଲୁ । ନୂଆ ବସା ହନୁମାନ ଦେଉଳ ସାମ୍ନାରେ, ବଡ଼ ଘର, ବଡ଼ ହତା, ବାପା କହିଲେ, ସେଇଟା ହିଁ ତାଙ୍କର ପୁରୁଣା ବସା, ଓଭରସିଅର ରହିବା ପାଇଁ ତୋଳା ହୋଇଥିଲା, ଅନ୍ୟାନ୍ୟ ଥର ସେହି ବସାରେ ସେ ରହୁଥିଲେ । ସେ ଘରେ ଆମେ ଦେଢ଼ ବର୍ଷ ରହିଥିବୁଁ ।

କିନ୍ତୁ ସେ ଘରର ଅନୁଭୂତି ସୁଖର ନୁହେଁ ।

ମନେପଡୁଛି, ଥରେ ହୋଲିକୁ ମୁଁ ଅତର ପକାଇ ରଙ୍ଗ ଗୋଳିଥିଲି । ବୋତଲରେ ନେଇ ଯାଇଥିଲି ଆମ ପୁରୁଣା ବସାକୁ, ସେଠି ଆଉ ଖଞ୍ଜାରେ ପୁଣି ଆସି ନରେନ୍ ବାବୁ ଓ ତାଙ୍କ ପିଲାଏ ରହୁଥାନ୍ତି । ମୁଁ ମାଖନ୍ ଓ ଛାନାଙ୍କୁ ବାସ୍ନା ରଙ୍ଗ ପାଣି ପକାଇଲି, ଉଭୟେ ମୋ ଚେଲା, ଖୁବ୍ ସ୍ନେହୀ । ସେମାନେ ପରମ ଆନନ୍ଦରେ ମାଟି ଗୋବର ପାଣି ଗୋଳି ମୋ ମୁହଁରେ ଆଖିରେ ଦେହରେ ପକାଇଲେ । ଆଖିରେ ବାଲି ଓ ଅସନା ପାଣି ଗୁଡ଼ାକ ପଶିଯାଇ ବହୁତ କଷ୍ଟ ହେଲା । ମୋର ସେ ଦିନ ଗୋଟାକ ଯନ୍ତ୍ରଣାରେ କଟିଲା । ବାପା ବିରକ୍ତ ହୋଇ କହିଲେ, ‘‘ପା—’’

ମଣିଷ ତା ଜୀବନରେ ଯେଉଁ ପ୍ରତିଦାନ ପାଏ, ସେକଥା ଭାବିଲାବେଳେ ଅନେକଥର ମୋର ସେ ଘଟନା ମନେପଡ଼େ । କାହାରି ଉଦ୍ଦେଶ୍ୟ ଖରାପ ନ ଥାଏ, କିନ୍ତୁ ପ୍ରତିଦାନଟା କେମିତି କେମିତି ଏହି ପ୍ରକାର ହୋଇଯାଏ ।

ସେ ବସାରେ ଦୁଃଖର ପ୍ରଧାନ କାରଣ ହୋଇଥିଲା ବାପାଙ୍କର ବାରମ୍ବାର ଅସୁସ୍ଥତା । ସେ ବହୁତ ପରିଶ୍ରମ କରୁଥାନ୍ତି । ତେଲ ନଦୀ ବନ୍ଧ କାମ ଆରମ୍ଭ କରିଥାନ୍ତି । ଗସ୍ତରେ ଯାଆନ୍ତି, ପର୍ବତ ଚଢ଼ନ୍ତି, ପାହାଡ଼ ଉପରେ ସର୍ଭେ କରନ୍ତି । ପୁଣି ଆସି ବେମାର ପଡ଼ିଯାନ୍ତି ।

ଧୂଳଭାଇ ବୋଉକୁ ଆଣି ଛାଡ଼ିଦେଇ ଗଲେ । ବୋଉ ସଙ୍ଗରେ ଆସିଲା ମୋର ଗୋଟିଏ ଭଣଜା, ନରେଶ, ମୋଠୁଁ ୨ ବର୍ଷ ସାନ, ଇସ୍କୁଲରେ ପଢ଼ିବ ବୋଲି ଆସିଥିଲା । ମୁଁ ନରେଶକୁ ପାଠ ପଢ଼ାଇ ତାଲିମ୍ କରିବା ଦାୟିତ୍ୱ ନେଲି । ସେ ଦାଣ୍ଡ ଘରେ ବସି ରଡ଼ି ଛାଡ଼େ ‘‘ୟେ ଫଅସ୍ ୟେ ଫଅସ୍—ୟେ ଫଅସ୍ ମାନେ ଗୋଟିଏ କୋକି ।’’

କେତେବେଳେ ବୋଉ ପାଟି କରେ, ‘‘କ’ଣ ଘଡ଼ିଏ ହେଲା ପିଲାଟା ୟେ ଫସ୍ ୟେ ଫସ୍ ହଉଚି ମ, ଖାଇବୁ ଆ ।’’

ବାପା ମତେ ତାକିଦ୍ କରିଦେଲେ, ‘‘ତୁ ତାକୁ କେବେ ମାରିବୁ ନାହିଁ ।’’

ସେ ସ୍ୱାଧୀନ ହେଲା । ଇସ୍କୁଲ୍‌ରେ ନାଁ ଲେଖା ହେବ ବୋଲି ପ୍ରସ୍ତୁତ ହେଉଥାଏ ।

ରଜାଘର ଭିତରକୁ ମୁଁ କେବେ ଯିବା ମନେ ନାହିଁ । ଥରେ ବଡ଼ ମାମୁଁଙ୍କୁ ଖୋଜି ରଜାଘର ପାଚିରି ହତା ଭିତରର ଭଣ୍ଡାରକୁ ଯାଇଥିଲି । ବଡ଼ ବଡ଼ ଧାନ ଅମାର, ଆଉ କି ଘର ବଖରାଏ, ସେଇଠି ମାମୁଁ ବସନ୍ତି । ପଶୁ ପଶୁ ତୀବ୍ର ସ୍ୱରରେ ଚିତ୍କାର ଶୁଭିଲା, "ହଟୋ, ହଟୋ ! ହଟୋ ହଟୋ !" ବାରମ୍ବାର ସେହି ନିର୍ଦ୍ଦେଶ ଶୁଣିଲି । କିନ୍ତୁ ମଣିଷ ନାହାନ୍ତି । ଥାବା କାବା ହୋଇ ଡରି ଡରି ଠିଆ ହୋଇଥାଏଁ । ମାମୁଁ ଆସିଲେ, ଖୁସି ହୋଇ କହିଲେ, "ଆସ ଭଣଜା ।" ପୁଣି ଚହଳ ଶୁଭିଲା, "ହଟୋ ହଟୋ, ହଟୋ ହଟୋ !"

ମାମୁଁ ମତେ କହିଲେ, "ଏଇଥିପାଇଁ ଠିଆ ହେଇଚ ? ଶାରୀଟା ବୋବାଉଛି ପରା ।"

ପିଞ୍ଜରାରେ ଶାରୀଟାଏ ଟଙ୍ଗା ହୋଇଛି । ସେହି ଡାକ ଛାଡ଼ିଥାଏ "ହଟୋ ହଟୋ ।"

ରଜାଘରେ ସେହି ପଦଟି ଶୁଣି ଶୁଣି ତାର ଅଭ୍ୟାସ ହୋଇ ଯାଇଥାଏ ।

ଆଉ ମୁଁ ଯାଇନାହିଁ ।

କିନ୍ତୁ ମହାରାଜାଙ୍କୁ ଅନେକଥର ଦେଖିଛି, "ଦରବାର" କରନ୍ତି; ସଭାରେ ବସନ୍ତି, କେବେ କେବେ ବୁଲି ବାହାରନ୍ତି । ସେ ସାର୍ ବୀରମିତ୍ରୋଦୟ ସିଂହ । ବହୁତ ଉପାଧି ।

ସେ କଲିକତା ୟୁନିଭରସିଟିରେ ଓଡ଼ିଆ ପଢ଼ାଇବା ପାଇଁ ଓ କଟକ ରେଭେନ୍‌ସା କଲେଜ୍‌ରେ ଏମ୍.ଏ. କ୍ଲାସ୍ ଖୋଲିବା ପାଇଁ ସୋନପୁର ରାଜକୋଷରୁ ଟଙ୍କା ଦେଇଥିଲେ । ତାଙ୍କ ବଡ଼ପୁଅ ବିଭା ହେଲାପରେ ମରିଯାଇଥିଲେ, ସୋନପୁରରେ ତାଙ୍କୁ ଲୋକେ ଝୁରି ହେଉଥାନ୍ତି । ସାନ ପୁଅ ମହାରାଜ କୁମାର ଉଚ୍ଚ ଶିକ୍ଷା ପାଇଥିଲେ ପଛେ ସେ ମହାରାଜା ହେଲେ । ତା'ପରେ ତାଙ୍କ ପୁଅ ମହାରାଜା ହେଲେ, ସେତେବେଳେ ସେ ସାନ· ପିଲା । ସାର୍ ବୀରମିତ୍ରୋଦୟ ସିଂହଙ୍କର କେତେକ ପୂର୍ବପୁରୁଷଙ୍କର ଛବି ଆମ ଇସ୍କୁଲ୍‌ରେ ବି ଥାଏ । ପଛେ ସେମାନଙ୍କ ମୂର୍ତ୍ତି ତିଆରି ହେଲା, କିଏ ଜଣେ ପଣ୍ଡିମା କାରିଗର ଆସି କଲା ।

ସେ କାରିଗର ବିଷୟରେ ମୁଁ କୁତୂହଳୀ ହୋଇଥିଲି, କାରଣ ମୁଁ ଶୁଣିଥିଲି

ଯେ ସେ ଘରଚଟିଆ ଚଢ଼େଇମାନଙ୍କୁ ଧରି ଭାଜି ଭାଜି ଖାଏ । ଗୋରା, ପାତଳ, ବୁଢ଼ା ଲୋକଟିଏ, ଓଡ଼ିଆ ସେ ବୁଝେ ନାହିଁ । ମୁଁ ଅନେକଥର ତା ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଅନାଇଁ ଅନାଇଁ ଭାବୁଥାଏଁ "ଏଇ ଲୋକଟା ଘରଚଟିଆ ଖାଏ ?"

ସୋନପୁରର ପୂର୍ବତନ ମହାରାଜାମାନଙ୍କ ବିଷୟରେ କେତେ କେତେ କାହାଣୀ ଶୁଣିଥିଲି । କିଏ କିଏ ଆଚାରନିଷ୍ଠ, ଧାର୍ମିକ, ପରୋପକାରୀ, ପ୍ରଜାମାନଙ୍କ ସୁଖ ଦୁଃଖ ବୁଝିବାକୁ କିଏ ଦରିଦ୍ର ପଲ୍ଲୀରେ "ଅନ୍ଧାରିବିଜେ" କରି ଫେରିଯାଇ ସକାଳ ହେଲେ ପ୍ରତିକାରର ଉପାୟ କରନ୍ତି, କାହାକୁ ଗର୍ଭିଣୀ ଚୁଚୁନ୍ଦ୍ରାଟାଏ କାମୁଡ଼ିଦେଲା ବୋଲି ସେ ମରିଥିଲେ, ଆଉ କାହାର କ'ଣ ହୋଇଥିଲା ଏହିପରି ।

ସେମିତି ଗୋଟିଏ କାହାଣୀ ମୋର ମନେପଡ଼େ ।

ସେତେବେଳେ ମହାରାଜା ବୋଧହୁଏ ନୀଳାଦ୍ରି ସିଂହ । ଇଂରେଜ୍ ପଲିଟିକେଲ୍ ଏଜେଣ୍ଟ କହିଲେ, "ମହାରାଜା, ଆପଣଙ୍କ ରାଜ୍ୟରେ ବହୁତ ବହୁମୂଲ୍ୟ ଧାତୁଦ୍ରବ୍ୟର ଖଣି ସବୁ ଅଛି । ଏପରିକି ସୁନା ବି ଅଛି । ଆମେ ବିଶେଷଜ୍ଞମାନଙ୍କଠୁଁ ସମ୍ବାଦ ପାଇଛୁଁ ।"

ମହାରାଜା ହସିଲେ, କହିଲେ, "ସେକଥା ତ ଆମ ପୂର୍ବପୁରୁଷମାନେ ବି ଜାଣିଥିଲେ ।"

"ତେବେ ଆପଣ ସେସବୁ ଖଣିର ସଦ୍‌ବ୍ୟବହାର କରୁନାହାନ୍ତି କାହିଁକି ?"

ମହାରାଜା ଭ୍ରୂଲତା ଟେକିଲେ ।

"ଆପଣ ଖଣିଗୁଡ଼ିକ ପଟ୍ଟା ଦିଅନ୍ତେ, ବଡ଼ ସହଜରେ ସେ କାମ ହୋଇପାରନ୍ତା, ବିଦେଶର ବ୍ୟବସାୟୀମାନଙ୍କର ସେଥିପାଇଁ ଖୁବ୍ ଆଗ୍ରହ ଅଛି । ଖଣି ଖୋଳା ହୁଅନ୍ତା, ଆପଣ ସେମାନଙ୍କଠୁଁ ବହୁତ ଧନ ପାଆନ୍ତେ । ଏଠିକା ଲୋକେ କାମ ପାଆନ୍ତେ । ଏ ଅଞ୍ଚଳର ଉନ୍ନୟନ ହୁଅନ୍ତା । ବୁଝିଦେବି ?"

ମୁଣ୍ଡ ହଲାଇ ମହାରାଜା କହିଲେ, "ନା ।"

"ଆପଣ ନିଜେ ବୁଝିବେ ?"

"ନା ।"

"ତା'ହେଲେ ଖଣି ଖୋଳାହେବ ନାହିଁ ?"

"ନା" ।

"କାହିଁକି ?"

"ଖଣି ଖୋଳି ସେଗୁଡ଼ାକ ତ ପର ଲୋକେ ବୋହି ନେଇଯିବେ, ଆମ ଦେଶ ଲୋକଙ୍କର କି ଉପକାର ହେବ ? ଧରନ୍ତୁ ସୁନାଗୁଡ଼ାଏ ବୁହାଇ ଦେଇ ତା ବଦଳରେ ରୂପା ଟଙ୍କା କେତେଟା ପାଇ ପାରିଲେ ଲାଭଟା କ'ଣ ? ଲୁହା ଖଣି ବି ସେମିତି; ତମ୍ବା ଖଣି ବି ସେମିତି । ମୋ ରାଜ୍ୟର ପ୍ରଜାଙ୍କର କ'ଣ ବିଦ୍ୟା ଅଛି ନା ସମ୍ବଳ ଅଛି ଯେ, ସେମାନେ ନିଜେ ସେ ଖଣି ଖୋଳି ଜିନିଷ ବାହାର କରି ତାକୁ କାମରେ ଲଗାଇ ପାରିବେ ?"

"ସେଇଆ ତ ମୁଁ ବି କହୁଛି । ସେମାନେ ପାରିବେ ନାହିଁ । ଅନ୍ୟ କାହାକୁ ଖଣି ପଟ୍ଟା ନ ଦେଲେ ସେସବୁ ଜିନିଷ ଆଦୌ ବାହାରି ପାରିବ ନାହିଁ ।"

"କିନ୍ତୁ ଆଜି ମୋ ପ୍ରଜାମାନେ ପାରିବେ ନାହିଁ । କାଲି ପାରିବେ । କ୍ରମେ ସେମାନେ ଶିକ୍ଷିତ ହେବେ । ଖଣିରେ ଜିନିଷ ରହିଥିଲେ ଦିନ ଆସିବ ଯେତେବେଳେ ସେ ଜିନିଷ ମୋରି ପ୍ରଜାମାନଙ୍କ କାମରେ ଲାଗିବ, ସେଦିନ ଯେବେ ଆସୁ, ସେ ପର୍ଯ୍ୟନ୍ତ ମାଟିତଳେ ସେ ଜିନିଷ ସେମିତି ରହିଥିବ । ଦେଶର ଧନ ସେ । ଭଗବାନ ଦେଇଛି, ଭଗବାନ ସେଠି ରଖିଛି । ଅନ୍ୟକୁ ଏ ଲୋକେ ସଦ୍‌ବ୍ୟବହାର କରିବା ସମ୍ଭବ ନ ହେବା ଯାକେ ସେ ଧନ ସେମିତି ଥୁଆ ହୋଇଥାଉ । ଯଦି ମୁଁ ପରକୁ ଭୂତକୁ ଅନୁମତି ଦେବି ତାକୁ ବୋହି ନେଇ ଯା ବୋଲି ସେ ଧାତୁ-ଧନ ଚାଲିଯିବ । ସରିଯିବ । ସେଥିରେ ବର୍ତ୍ତମାନ ମୋର ନିଜର ସାମାନ୍ୟ ଲାଭ ହୋଇପାରେ, ମୋର ପ୍ରଜାମାନଙ୍କ ଭବିଷ୍ୟତରେ ବହୁତ କ୍ଷତି ହେବ । ମୋ ଦାୟିତ୍ୱ ଖାଲି ଆଜିକ ପାଇଁ ନୁହେଁ, ମୋ ରାଜ୍ୟର ଭବିଷ୍ୟତ୍ ନଷ୍ଟ ନ କରିବା ବି ମୋ ଦାୟିତ୍ୱ, ମୋ ଧର୍ମ । ମୁଁ ତା କଦାପି ନଷ୍ଟ କରିବାକୁ ଦେବି ନାହିଁ ।"

ସେ ମହାରାଜା ଇଂରେଜି ପଢ଼ି ନ ଥିଲେ, ରାଜକୁମାର୍ କଲେଜ୍‌ର ଛାତ୍ର ହୋଇ ନ ଥିଲେ । ତାଙ୍କର ପଢ଼ା ଥିଲା ସଂସ୍କୃତ ଓ ଓଡ଼ିଆ । ସାହେବ୍ ତାଙ୍କୁ ପ୍ରବର୍ତ୍ତାଇ ପାରିଲେ ନାହିଁ । କିଏ ଜାଣିଚି, ହୁଏତ ଏ କାଳରେ ପାରାଦ୍ୱୀପରୁ ଭାରତର ଲୁହାପଥର ଜାପାନ ପଠାହେବା ପ୍ରବନ୍ଧ ଶୁଣିଥିଲେ ସେ କ୍ଷୁବ୍‌ଧ ହୋଇଥାନ୍ତେ, କହିଥାନ୍ତେ "ଏହାଦ୍ୱାରା ଖାଲି ଏ ଦେଶର ଧାତୁ-ଧନ କ୍ଷୟ ହୋଇ ପର ହାତକୁ ଚାଲିଯାଉଛି ସେତିକି ନୁହେଁ, ଜାପାନ୍ ସେଥିରୁ

ତିଆରି କରିବ ଲୁହା, ତାକୁ ନେବ ଆମେରିକା, ସେ କରିବ ଟ୍ୟାଙ୍କ ଆଉ ତୋପ, ତାକୁ ନେବ ପାକିସ୍ତାନ, ଆମରି ଲୁହା ଆମରି ତଣ୍ଟିକି ଛୁରୀ ହେବାକୁ ପେଶା ହେବ; ଏଇ ବୁଦ୍ଧି ଶିଖାଉଛ ମତେ ।''

ପଲିଟିକେଲ୍ ଏଜେଣ୍ଟ ଫିଲିପ୍ ସାହେବ ଦୁଇଥର ଆସିବାର ମୁଁ ଦେଖିଥିଲି । ସେ ସ୍କୁଲ୍ ଦେଖି ବି ଆସିଥିଲେ ।

ବାପା ବହୁତ ବେମାର ପଡ଼ିଲେ । କାଶ, ଜର, ଗୋଡ଼ ଓ ଗଣ୍ଠି ଫୁଲା, ଦୁର୍ବଳତା ଏହିପରି । ରାଜଗୁରୁ ମହାଶୟ ଆସି ଔଷଧ ଦିଅନ୍ତି । ସେ ରାଜାଙ୍କର ବି ବୈଦ୍ୟ, ସୋନପୁରର ଧନ୍ୱନ୍ତରୀ । ନିଜେ ସୁସ୍ଥ, ସବଳ, କର୍ମଠ ହୋଇ ଶହେ ବର୍ଷରୁ ଅଧିକ ବଞ୍ଚି କେତେ ବର୍ଷ ତଳେ ମଲେ । ବାପା ଚାହୁଁ ଚାହୁଁ ସରୁ ହୋଇଯାଉଥିଲେ । ଚିକିତ୍ସାରେ ଦେହ ଟିକିଏ ଭଲ ହେଲେ ପୁଣି କାମରେ ଲାଗନ୍ତି, ଗସ୍ତରେ ଯାଆନ୍ତି । କହନ୍ତି, ''ଆଗ କର୍ତ୍ତବ୍ୟ । ଛାଡ଼୍ ପିତୃକାର୍ଯ୍ୟ, କର୍ ରାଜକାର୍ଯ୍ୟ ।'' କିନ୍ତୁ ଇତ୍ୟବସରରେ କେତେବେଳେ ସେ ବଡ଼ଭାଇଙ୍କୁ ଚିଠି ଲେଖି ସାରିଥିଲେ ଯେ, ତାଙ୍କର ମୃତ୍ୟୁକାଳ ସନ୍ନିକଟ ହୋଇଗଲା, ସେ ଗଙ୍ଗାକୂଳରେ ମରିବାକୁ ଚାହାନ୍ତି, ତେଣୁ ଭାଇ ଆସି ତାଙ୍କୁ ପାଟ୍‌ନା ନେଇ ଯାଆନ୍ତୁ । ପୁଣି ସେଇ ଭାଇଙ୍କୁ ଓ ଧୂଳ ଭାଇଙ୍କୁ ଚିଠି ଲେଖିଲେ । ପାଟ୍‌ନାରୁ ବଡ଼ଭାଇ ଓ କଟକରୁ ଧୂଳ ଭାଇ ଆସିଲେ । ୧୯୨୬ ଜୁନ୍ ମାସର ୧୦/୧୫ ଦିନ ଯାଇଥାଏ, ବାପା ଇସ୍ତଫା ଦେଇ କାର୍ଯ୍ୟ ବୁଝେଇ ଦେଲେ । ଘୋଡ଼ା, ଗାଈ, ଖଟ, ଟେବୁଲ ଚୌକି ଅନ୍ୟାନ୍ୟ ଯେତେ ଯେତେ ଘରକରଣା ଜିନିଷ ସବୁ ଦାନ ଅଥବା ବିକ୍ରି କରି ଝାଡ଼ଝୁଡ଼ କରି ଦିଆଗଲା, ଆମେ ସମସ୍ତେ ସୋନପୁର ଛାଡ଼ି ଡଙ୍ଗାରେ ବସିଲୁଁ ।

ରହିଲା ପ୍ରିୟ ସୋନପୁର, ତା'ର ସୁନ୍ଦର ନଈ, ଫୁଟିଲା ପଦ୍ମ ଭର୍ତ୍ତି ପ୍ରକାଣ୍ଡ ପ୍ରକାଣ୍ଡ ପୋଖରୀଗୁଡ଼ିକ, ଚମ୍ପା, ବଉଳ, ନାଗେଶ୍ୱର, ଶିରୀଷ, ଆମ୍ବବଉଳ ବାସ୍ନାରେ ମହକି ଉଠୁଥିବା ତା ପବନ, ତା ଜଙ୍ଗଲର କୁରେଇ ଫୁଲର ବାସ୍ନା, ତା'ର ଅସଂଖ୍ୟ ଦେଉଳ, ଅଗଣିତ ସ୍ନେହ ଢଳଢଳ ମୁହଁଗୁଡ଼ିକ ।

ସେଠି ଅନେକ ପୁରୁଣା ପୋଲରେ କାନ୍ଥରେ ମୁଁ ଦେଖି ଆସିଥିଲି ବାପାଙ୍କ ନାଁ'ର ଆଦ୍ୟ ଅକ୍ଷର ତିନୋଟି, ଇଂରେଜୀରେ ଏସ୍. ଏମ୍. ଏମ୍. । ସମୁଦାୟ ମହାନଦୀ ପଥରବନ୍ଧ କୁଆଡ଼େ ଆର ପାରି ପାହାଡ଼ ଉପରୁ ଦିଶେ ସେହି ତିନୋଟି ଅକ୍ଷର ପରି ।

ସମ୍ବଲପୁର ପହଞ୍ଚିଲୁଁ । ମହାନଦୀଠୁଁ ସେଇଠି ବିଦାୟ । ଡଙ୍ଗାରୁ ପାଛୋଟି

ନେଲେ ବାପାଙ୍କର ମାମୁଁ ପୁଅ ଭାଇ ଶ୍ରୀ ଗୋପାଳ ଚରଣ ମହାନ୍ତି ସେ ସମ୍ବଲପୁର ଜିଲ୍ଲା ସ୍କୁଲରେ ଶିକ୍ଷକ ଥିଲେ । ତାଙ୍କ ବଡ଼ ପୁଅ ଶ୍ରୀ ଚରଣ, ଡାକ ନାଁ ବନ୍ଟୁ ମୋରି ପରି ଅଷ୍ଟମ ଶ୍ରେଣୀରେ ପଢୁଥାଏ । ବୟସରେ ଓ ଆକାରରେ ମୋଠୁଁ ସାନ; କିନ୍ତୁ ସେତେବେଳେ ସମ୍ବଲପୁର ଜିଲ୍ଲା ସ୍କୁଲର ସେ ଜଣେ ଉଦୀୟମାନ ପ୍ରତିଭାଶାଳୀ ଛାତ୍ର, ତା କ୍ଲାସ୍‌ର ଫାଷ୍ଟ ପିଲା, ଖାଲି ମୋଟରେ ନୁହେଁ, ପ୍ରତି ବିଷୟରେ ଫାଷ୍ଟ ହୁଏ, ତା ଛଡ଼ା ଡିବେଟିଂରେ, ପ୍ରବନ୍ଧରେ, ନାନା ବିଷୟରେ । ଏତେ ବହି ପୁରସ୍କାର ପାଇଥାଏ ଯେ, ଆଲମାରି ଭର୍ତ୍ତି ହୋଇ ଯାଇଥାଏ । ଭାରି ଚଞ୍ଚଳ ଆମ ଦୁହିଁଙ୍କର ବନ୍ଧୁତା ହୋଇଗଲା । କଥାବାର୍ତ୍ତାରୁ ସହଜରେ ଜାଣି ହେଲା ତା'ର 'ନଲେଜ୍' ବହୁତ, ସେ ତା'ର ନିକଟତମ ପ୍ରତିଦ୍ୱନ୍ଦୀଠୁଁ ବହୁତ ବେଶି ନମ୍ବର ପାଏ ।

ସ୍କୁଲ ଜୀବନରେ ଅନ୍ୟ ସ୍କୁଲର ମୋରି କ୍ଲାସ୍‌ର ପିଲା ସଙ୍ଗେ ସେହି ମୋର ପ୍ରଥମ ଚିହ୍ନାଚିହ୍ନି । ସେତେବେଳେ ମନ ଭିତରେ ପାଠପଢ଼ାରେ ପ୍ରତିଯୋଗିତାର ନିଶା ଥାଏ । ଅହଂକାର ଥାଏ ସୋନପୁର ସ୍କୁଲରେ କ୍ଲାସ୍‌ରେ ମୁଁ ଆଗ । କିନ୍ତୁ ସରକାରୀ ସମ୍ବଲପୁର ଜିଲ୍ଲା ସ୍କୁଲ୍ ସେ ସ୍କୁଲ୍‌ଠୁଁ ସବୁ ଗୁଣେ ବଡ଼, ସେଠି ବହୁଗୁଣ ବେଶି ପିଲା, ତାଙ୍କ ଭିତରେ ସେହି ସାନ ପିଲାଟି ଆଗ, ପଚାରି ବୁଝିଲି ସେ ବହୁତ ବହି ପଢ଼ିଛି, ବହୁତ କଥା ଜାଣେ । ଆଉ ଚାରିବର୍ଷ ପର୍ଯ୍ୟନ୍ତ ତା ସଙ୍ଗରେ କେବେ ଦେଖାହେଲା ନାହିଁ, ମୁଁ ବିହାରର ପାଟ୍‌ନାରେ, ସେ ଆଉ କେଉଁଠି କେଉଁଠି । କଲେଜ୍‌ର ପ୍ରଥମ ବର୍ଷ ବେଳେ ଦେଖାହେଲା ବେଳକୁ ପାଠରେ ତା'ର ସେ ପୂର୍ବ ଗୌରବ ନ ଥାଏ । କିନ୍ତୁ ସେହି ଚାରିବର୍ଷଯାକ ମୁଁ ନିଜେ ପାଠ ପଢ଼ିଲାବେଳେ କଳ୍ପନା କରୁଥାଏଁ, ସମ୍ବଲପୁର ଜିଲ୍ଲା ସ୍କୁଲରେ ସେହି ପିଲାଟି ଆହୁରି ଅଧିକ ଆହୁରି ଅଧିକ ଆଗକୁ ପଢ଼ି ପଢ଼ି ଯାଉଥିବ । ମ୍ୟାଟ୍ରିକୁଲେସନ୍ ପରୀକ୍ଷାରେ କିଏ ଆଗ ହେବ କିଏ ପଛ ହେବ ସେକଥା ଭାବି ମନରେ ଆହୁରି ଜିଦି ଆହୁରି ଉତ୍ସାହ ଆସୁଥିଲା ।

ମଣିଷ ଜୀବନ କଥା ଭାବି ପଛକୁ ଅନାଏଁ, ଭାବି ଆଶ୍ଚର୍ଯ୍ୟ ହୁଏଁ କାହାର କ'ଣ ଯେ ହୁଏ ! ପାଠପଢ଼ା ପରୀକ୍ଷାରେ କୃତକାର୍ଯ୍ୟ ହେବା ନାଁ କରିବା ଆଉ ଜୀବନରେ କୃତକାର୍ଯ୍ୟ ହେବା ନାଁ କରିବା କେତେ ଭିନ୍ନେ !

କାହାର କ'ଣ ଯେ ହୁଏ !

କିନ୍ତୁ ପାଠପଢ଼ା କାର୍ଯ୍ୟ ନିର୍ଘଣ୍ଟ ଭିତରେ ସତେ ଯେମିତି ଜୀବନରେ

କିଏ କେମିତି ସଫଳ ହେବ ବିକାଶ ପାଇବ ତା ଉପରେ ଅନୁପ୍ରାସ ନ ଥାଏ । ସେ ମୂଲ୍ୟବୋଧ କେହି ଶିଖାଏ ନାହିଁ, ତାକୁ ଆଖିରେ ରଖି ଉତ୍ସାହ କି ନମ୍ବର ଦିଆହୁଏ ନାହିଁ । ଯାହା ଉପରେ ନମ୍ବର ଦିଆଯାଏ, —ବହିଜ୍ଞାନ, ପଢ଼ା 'ବିଷୟ' ସମ୍ବନ୍ଧେ ଜ୍ଞାନ, ଜୀବନଠୁଁ କେତେ ଭିନ୍ନେ ! ବହି ପଢ଼ାର ବିଚିତ୍ର ଦୁନିଆଁ ଜୀଅନ୍ତା ସଂଘର୍ଷ ସମନ୍ୱୟମୟ ଦୁନିଆଁ ଭିତରେ ତାର ନିଜ ସ୍ୱପ୍ନରେ ବିଭୋର ହୋଇ ଅଲଗା ହୋଇ ରହିଥାଏ । ସେ ଶିଖାଏ ନାହିଁ କି ଉପାୟରେ ବେଶି ଧନ ରୋଜଗାର କରିହେବ, ଫନ୍ଦି ଫିକର ସଂସାରି ଚତୁରତା ମାର୍-ପେଞ୍ଚ୍ କରି ବିବିଧ କ୍ଷେତ୍ରରେ ଉପରକୁ ଉଠିହେବ, ପ୍ରଭାବ, ପ୍ରତାପ ଜାରି କରି ହେବ, ସମାଜରେ 'ଜଣେ' ବୋଲି ବୋଲାଇ ହେବ । ସେ ଶିଖାଏ ନାହିଁ କେମିତି କିଏ କଳାବିତ୍ ହୋଇପାରିବ, ତ୍ୟାଗୀ ସନ୍ଥ ହୋଇପାରିବ, ଆଦର୍ଶ ମଣିଷ ହୋଇପାରିବ । ସେ ଶିଖାଏ ନାହିଁ ବାସ୍ତବ ଜୀବନରେ ମଣିଷ କିଲିବିଲି ଦୁନିଆଁ ଭିତରେ କେମିତି କେଉଁ କ୍ଷେତ୍ରରେ କିଏ 'ସଫଳ' ହେବ । ପଛେ ଯେଉଁମାନେ ସେପରି ସଫଳ ହୁଅନ୍ତି, ତା ହୁଏ ତାଙ୍କ ନିଜ ଉଦ୍ୟମରେ, ପାଠ-ପଢ଼ା ଜୀବନ ବିତେଇବା ସତ୍ତ୍ୱେ, ତା ସହିତ ପାଠ-ପଢ଼ା ନିର୍ଘଣ୍ଟର ସମ୍ବନ୍ଧ ନ ଥାଏ । ବରଂ ଯାହାର ଯେଉଁ ନିହିତ ପ୍ରବଣତା ଥାଏ, ଭଲ ଅବା ମନ୍ଦ, ପାଠ-ପଢ଼ା ଜୀବନ ବିତୋଉ ବିତୋଉ ତା ଅନେକ ସମୟରେ ବଦଳିଯାଏ । ସେ ଆଉ କ'ଣ ହୋଇଯାଏ । ପଛେ କେଉଁ ମଣିଷ ନିଜ ଆବଶ୍ୟକ ନିଜ ଅଭିଜ୍ଞତା ଅନୁସାରେ ବୁଝେ, ଜୀବନରେ ଯା ଜରୁରି, ତା ଜରୁରି । କିନ୍ତୁ ସେ ଜରୁରି କଥାଟି ପାଇଁ ସେ ତା ପାଠ୍ୟକ୍ରମ ଭିତରେ କେବେ ତାଲିମ୍ ପାଇ ନ ଥିଲା, ଯେମିତି ତାଲିମ୍ ପାଏ ତା ପାଠ-ପଢ଼ା ବାହାରେ ସବୁ ଈଶ୍ୱରଙ୍କ ଇଚ୍ଛା, ଶାସ୍ତ୍ର କହେ, ସବୁ ଭାଗ୍ୟ । ଯାହା ମଣିଷର ହାତ-ପାଆନ୍ତି ବାହାରେ ସେଥିକି ମୁଣ୍ଡ ଗଳେଇ ହୁଏ ନାହିଁ । କିନ୍ତୁ ସେ ଧାରଣା ବାହାରେ ମଣିଷ ନିଜ ବୁଦ୍ଧି ବିଚାରରେ ନିଜ ନିଜ ନାହା ପେଲିଲା ବେଳେ ଏତେ ଏତେ ବର୍ଷର ବହି-ପାଠମୟ ଦିନଗୁଡ଼ିକ କଥା ଭାବିଗଲାବେଳେ ଲାଗେ ଅନେକ ଜ୍ଞାନ, ଅନେକ ପ୍ରକାରେ ମନର ବିକାଶ ଲାଗି ସେ ସାହାଯ୍ୟ କରିଥିଲା, କିନ୍ତୁ ସଂସାରି ଜୀବନର ସୁଖ ଦୁଃଖର ନାନା କାଇଦା-କଦର ବିଷୟରେ ରହିଥିଲା ସେ ନୀରବ ।

ତେଣୁ ଯେଉଁମାନେ ବହୁବର୍ଷ ବ୍ୟାପୀ ପାଠପଢ଼ା ଜୀବନରେ ସମୟ ଖର୍ଚ୍ଚ ନ କରି ସିଧା ସିଧା ସଂକଟ ସଂଘର୍ଷମୟ ନାନା ଅଭିଜ୍ଞତାପୂର୍ଣ୍ଣ ଜୀବନରୁ ପାଠ ପଢ଼ି ପଢ଼ି ଚାଲନ୍ତି, ବେଶି ସଂଖ୍ୟାରେ ଉଠନ୍ତି ସେହିମାନେ, ଜୀବନର

ନାନା କ୍ଷେତ୍ରରେ ।

ଛାତ୍ର ଜୀବନର ବାତାବରଣରେ ମଣିଷର ଦରକାରି ଗୁଣମାନଙ୍କ ବିଷୟରେ ଧାରଣା ଥିଲା—ସତ୍ୟ, ସାଧୁତା, ସଚ୍ଚରିତ୍ରତା, ସରଳତା, ବିନୟ, ପ୍ରଗାଢ଼ ପରିଶ୍ରମ, ନିଷ୍କପଟତା । ଯାହାର ଯେତେ ଉଜ୍ଜଳ ହେଉଥାଉ ଆଖି ଆଗରେ ସେଇଆ ଥିଲା ଆଦର୍ଶ । ସେଇଆ କଲେ ସେ ଭଲ ମଣିଷ ହେବ, ବଡ଼ ମଣିଷ ହେବ । ଯୁଗ ଯୁଗର ଶ୍ରେଷ୍ଠତମ ଆଦର୍ଶତକ ଛାତ୍ରର ଆଖି ଆଗରେ ଥିଲା । ସେ ଆଦର୍ଶର ବ୍ୟତିକ୍ରମ ହିଁ 'ସଂସାରି ଚଳଣିରେ କାହାର ସଫଳତାର ଭିତ୍ତି ହୋଇପାରେ ଏ କଳ୍ପନା ହିଁ ନ ଥିଲା ।

ରେଲ୍‌ରେ ବସି ପାଟ୍‌ନା ଯାଉଛୁଁ । ମୋ ସଙ୍ଗେ ସଙ୍ଗେ ଗୋଡ଼ାଉଛି ଅତୀତର ସ୍ମୃତି । ମୋର ଚାରିବର୍ଷର ସ୍ୱାଧୀନ ଜୀବନ ସେଠି ଘର ପାଇଥିଲା । ସ୍ୱାଧୀନତା ! ମୋ ଉପରେ କାହାରି ହୁକୁମ୍ ନାହିଁ, କଟକଣା ନାହିଁ, ଜୁଲୁମ୍ ନାହିଁ, ମୁଁ ଯାହା ମନ କଲେ ବାପାଙ୍କର ତହିଁରେ ମଞ୍ଜୁରି ଅଛି, ସେ ତ ଚାହିଁଥିଲେ ମୋ ମନରେ ଯେପରି କଷ୍ଟ ନ ହେଉ, ମୁଁ ଯେମିତି ବୋଉକୁ ନ ଝୁରେଁ । ବୋଉ ଆସି ମୋ ଆନନ୍ଦ ଆହୁରି ବଢ଼ିଥିଲା । ଦି ଓଳି ମୋ ଜଳଖିଆ ଗାଢ଼ ଆଉଟା ଦୁଧ ଆଉ ଲଡ୍ଡୁ ବା ଅନ୍ୟ କିଛି ମିଠା । ପ୍ରଚୁର ଲେମ୍‌ଞ୍ଚୁସ୍ ମିଳେ । ମୋର ଅଲଗା ପଢ଼ା ଘର, ମୋର ବହି, ଜିନିଷପତ୍ର, ମୋର ଘୋଡ଼ା । ମୋର ବଗିଚା, ମୋର ଶୁଆ, ମନରେ ଖାଲି, "ମୋର-ମୋର-ମୋର ।" ମୋର କେତେ ସାଙ୍ଗ, କେତେ ସ୍ନେହୀ ହିତାକାଂକ୍ଷୀ ।

ପାଟ୍‌ନାରେ କ'ଣ ସେମିତି ନ ଥିବ ? ନିଶ୍ଚୟ ଆହୁରି ଅଧିକ ପରିମାଣରେ । ସେଠି ଭାଇ, ଭାଉଜ, କାହ୍ନୁଭାଇ, ଭାଇଙ୍କର ଛୁଆ ତିନୋଟି, ସେ ଖୁବ୍ ଭଲ ହେବ । ବାପାଙ୍କ ଦେହ ଭଲ ହୋଇଯିବ । ତା'ପରେ ଆମେ ବୋଧହୁଏ ଗାଁକୁ ଯିବୁଁ ? ନା ସୋନପୁର ?"

ଅତୀତ ଆଉ ସୋନପୁରର ଚିତ୍ର ମନେପଡ଼ି ମନ ଦବି ଗଲାବେଳେ ଆହୁରି ସୁଖର ସ୍ୱପ୍ନ କଳ୍ପନା କରି ହେଉଥାଏ । ଖୁବ୍ ଛୋଟ ଥିଲାବେଳେ ପାଟ୍‌ନାରେ ମୁଁ ରହିଆସିଥିଲି । ସେ ଅନୁଭୂତି ସ୍ନେହ ଓ ସୁଖର ।

ରେଲ୍ ବାଟରେ କଳା କଳା ରାତି ମନେପଡ଼େ, ପଳେଇ ଯାଉଥିବା ମିଞ୍ଜି ମିଞ୍ଜି ଆଲୁଅ, କେତେ ପଡ଼ିଆ, ଗାଁ, ଜଙ୍ଗଲ, ପାହାଡ଼ । ତିନିଟା ଜାଗାରେ ଗାଡ଼ି ବଦଳି ହେବାର ମନେପଡ଼େ ।

ବାଟରେ ଆଦ୍ରା ଷ୍ଟେସନ୍‌ରେ ବଡ଼ଭାଇ ବାପାଙ୍କଠୁଁ ବିଦା ହୋଇ ରହିଗଲେ । ତାଙ୍କର ଥାଏ କୋଡ଼ିଏ ଦିନ ଗସ୍ତ ବୁଲିବାର, ତାଙ୍କ ସାହେବ୍ ହାକିମଙ୍କ ସାଙ୍ଗେ ତାଙ୍କୁ ଯିବାକୁ ଆଦେଶ ହୋଇଥାଏ । ସେ ଗଲା ପରେ ରହିଲୁଁ ବାପା, ବୋଉ, ଧୂଳଭାଇ ଆଉ ମୁଁ ।

ଖରାଦିନ ରାତି । ଆମେ ପାଟ୍‌ନା ପହଞ୍ଚିଲୁ । ଯାହାକୁ କୁହାଯାଉଥିଲା "ନିଉଁ କ୍ୟାପିଟେଲ୍" ବା "ନୂଆ ରାଜଧାନୀ" ସେଇଠି ଥାଏ ଭାଇଙ୍କର ବସା । 'ସମାନ୍ତରାଳ ହୋଇ ସଡ଼କଗୁଡ଼ିଏ, ଦି'ପାଖରେ ମୁହାଁମୁହିଁ ଦୁଇ ଧାଡ଼ି ଘର, ପ୍ରତି ଘର ଚାରିକରେ ତାରବାଡ଼ । ସେମିତି ଗୋଟିଏ ଘର ଆଗରେ ଗାଡ଼ି ଠିଆ ହେଲା । ଆମେ ଓହ୍ଲାଇଲୁଁ । ରୋଡ୍ ନମ୍ବର ୧୦ କ୍ୱାର୍ଟର ନମ୍ବର ୨୩–

କାହ୍ନୁଭାଇ ପାଛୋଟି ନେବାକୁ ଆସିଲେ ।

୧୯୨୬ ସାଲର ଜୁନ୍ ମାସ ୨୦ କି ୨୧ ତାରିଖ । ମୁଁ ପାଟ୍‌ନା ଆସିଗଲି । ପୁଣି ୧୯୩୦ ସାଲ ମାର୍ଚ୍ଚ ମାସ ୧୧ ତାରିଖରେ ପାଟ୍‌ନା ଷ୍ଟେସନ୍‌ରେ କଟକ ଆସିବାକୁ ରେଲ୍ ଧରିବାଯାକେ ମୁଁ ପାଟ୍‌ନାର ବାସିନ୍ଦା ହୋଇ ରହିଥିଲି । ଏଇ ତାହେଲେ ଆମ ସାହି । ଧଳା ଧଳା ଏକମାହାଲା କୋଠାଗୁଡ଼ାଏ । ହେଇ ସେ ମୁଣ୍ଡରେ ଦିଶୁଛି ହାଉଁଆ ହୋଇ ବଡ଼ କୋଠାଟାଏ, ଦୋମାହାଲା । ଗାଡ଼ି ବାଙ୍କ ବୁଲିଲାବେଳେ ମୁଁ ଲକ୍ଷ୍ୟ କରିଥିଲି । "ସେଇଠି ତୁ ପଢ଼ିବୁ, ସେଇ ପାଟ୍‌ନା ହାଇସ୍କୁଲ୍ ।" କାହ୍ନୁଭାଇ କହିଲେ ।

ଘରେ ଚୁଆଙ୍କ ଦେହ ଭଲ ନାହିଁ । କାହ୍ନୁଭାଇ କାଖେଇଛନ୍ତି ଭାଇଙ୍କ ମଝିଆଁ ଝିଅଟିକୁ, କେତେ ମାସର, ସେ ବହୁ ଅସୁସ୍ଥ । ପୁଣି ତା'ର ଅଛିଣ୍ଡା କାନ୍ଦ ଆରମ୍ଭ ହେଲା ।

ସେ ଉର୍ମିଳା, ପଛେ ଇଂରେଜି ଅଧ୍ୟାପିକା ହେଲା ।

"ଗର୍ଦ୍ଦନ-ଇ-ବାଗ୍" ଶୁଣିଛି ତା ଅର୍ଥ "ଯେଉଁ ତୋଟାରେ ତଣ୍ଟି କଟା ହୁଏ ।" ଆଗେ ସେଠି ବହୁତ ତୋଟାମାଳ ଥିଲା, ଡକାଏତ୍‌ମାନେ ମଣିଷ ମାରୁଥିଲେ । ପ୍ରକୃତରେ, ଗୋଟାଏ ପୁରୁଣା କୂଅ ଉଝୁଳା ହେଲାବେଳେ ତା ଭିତରୁ ବହୁତ ମଣିଷ ମୁଣ୍ଡ ଖପୁରି କଢ଼ା ହୋଇଥିଲା । ଡକାଏତ୍‌ମାନେ କୁଆଡ଼େ ମଣିଷ ବେକ କାଟି ମୁଣ୍ଡକୁ କୂଅରେ ପକାଇ ଦେଉଥିଲେ ।

ପଛେ ଗର୍ଦ୍ଦନିବାଗ ହେଲା ବିହାର ଓଡ଼ିଶାର ରାଜଧାନୀ ସହର, ପ୍ରକାଣ୍ଡ ଅଞ୍ଚଳ, ସେଠି ସେକ୍ରେଟେରିଏଟ୍, ଲାଟ୍ ଭବନ, ହାକିମ ହୁକୁମା ଓ

ସେକ୍ରେଟେରିଏଟ୍‌ର ସବୁ କର୍ମଚାରୀଙ୍କ ପାଇଁ ବସା, ବହୁ ଅଫିସ୍, ପ୍ରକାଣ୍ଡ ପୋଲୋ ଖେଳପଡ଼ିଆ, ବଡ଼ ବଡ଼ ଖେଳପଡ଼ିଆ, ଦୋକାନ ବଜାର । ପ୍ରାଚୀନ ସହର ପାଟଳୀପୁତ୍ର କତିରେ କତିରେ ନାନା ଶତାବ୍ଦୀର ନାନା ରାଜଧାନୀ, ଶେଷର ଖଣ୍ଡେ ଛାଡ଼ି ଇଂରେଜ୍ ଶାସକ ଗଢ଼ିଲେ "ନିଉଁ କ୍ୟାପିଟେଲ୍ ।" କିନ୍ତୁ ରେଲ୍ ଷ୍ଟେସନ୍ ଥାଏ ବାଙ୍କିପୁର୍‌ରେ, ଗର୍ଦ୍ଦନିବାଗ ଭୁବନେଶ୍ୱର ହେଲେ ବାଙ୍କିପୁର ଅଞ୍ଚଳ ପାଟ୍‌ନା ଅର୍ଥାତ୍ କଟକ । ସେଠି କଲେଜ୍‌ମାନ, ପ୍ରସିଦ୍ଧ ଲାଇବ୍ରେରିମାନ, ମ୍ୟୁଜିୟମ୍, ସିନେମା, ବ୍ୟବସାୟୀ, ଓକିଲ, ବ୍ୟବସ୍ଥାପକ ସଭା, କେତେ କ'ଣ ।

କର୍ମଚାରୀମାନଙ୍କ ଶ୍ରେଣୀ ଓ ପଦବୀ ଅନୁସାରେ ଘର ଓ ହତାଗୁଡ଼ିକ ବଡ଼ କି ସାନ । ବହୁତ ହତାରେ ବଗିଚା ।

ମଝିରେ ମଝିରେ ଅରାଏ ଅରାଏ ଆମ୍ବତୋଟା । ବଡ଼ ବଡ଼ ଜାତି ଆମ୍ବ, ଗୋଲ ଗୋଲ ମାଲଦା ଆମ୍ବ, ଲମ୍ବା ଲମ୍ବା ଲେଂଡ଼ା ଆମ୍ବ, ଆଉ ଅନେକ ପ୍ରକାରର ।

ଗର୍ଦ୍ଦନିବାଗ୍ ମଝିରେ ଯାଇଛି ଓସାର ପିଚୁରାସ୍ତା, "ଖଗୋଲ୍ ରୋଡ଼", ତା ଦି'ପାଖେ ବଡ଼ ବଡ଼ ଗଛ ।

ଆଉ ଯାଇଛି ରେଲ୍ ଲାଇନ୍, ପାଖ ପାଖ ଦୁଇଯୋଡ଼ା, ତା ଦୁଇ କରରେ ତାର ବାଡ଼ । ସ୍ଥାନେ ସ୍ଥାନେ ରେଲ୍ ଲାଇନ୍ ବନ୍ଧ ଉପରେ ଖୁବ୍ ଡେଙ୍ଗା କାଠି-ଘାସ ଗଛର ବଣ, ପୁରୁଷେ ଉଞ୍ଚ ଘାସ ଗଛ ଉପରେ ଫୁଲ ଛାଞ୍ଚୁଣି ପରି ଧଳା ଧଳା ଫୁଲ ଲହଡ଼ି ଖେଳୁଥାଏ ।

ଆକାର ଅନୁପାତରେ ନିଛାଟିଆ ଲାଗୁଥାଏ ଗର୍ଦ୍ଦନିବାଗ୍ । ସକାଳ ସାଢ଼େ ନଅ ପରେ ରାସ୍ତାରେ ଗହଳି ହୁଏ, କର୍ମଚାରୀମାନେ ଅଫିସ୍ ବାହାରନ୍ତି । ଅନେକ ଦଳ ଦଳ ହୋଇ ଚାଲି ଚାଲି ଯାଆନ୍ତି; କେତେ ଲୋକ ଯାଆନ୍ତି ସାଇକେଲ୍‌ରେ । ସେତେବେଳେ ଇସ୍କୁଲ୍ ଆଡ଼କୁ ବି ପିଲାଙ୍କ ସୁଅ ମୁହେଁ । ପୁଣି ବାହୁଡ଼ା ବେଳେ ସେମିତି ଗହଳି ହୁଏ ପାଞ୍ଚଟା ସରିକି, ଲୋକେ ଅଫିସ୍‌ରୁ ଫେରୁଥାନ୍ତି ।

ସପ୍ତାହରେ ରବିବାର ଦିନ ଓ ଆଉ ଯୋଡ଼ିଏ ଦିନ ଠାଏ ତୋଟା ଭିତରେ ବଡ଼ ହାଟ ବସେ, ସେ ଜାଗା ନାଁ ଚିତ୍-କୋରା । ଖଣ୍ଡେ ଦୂରରେ ଗୋଟିଏ ମଫସଲ ଓ ଗୋଟିଏ ପୋଖରୀ, ପୋଖରୀ ନାଁ ମାଣିକ୍‌ଚାନ୍ଦ ତଲାଓ । ଯେକୌଣସି ଦିନ ବଜାର କରିବା ପାଇଁ "ମାର୍କେଟ୍" ଥାଏ ହାଟଠୁଁ ମହରଗ ।

କେତେଠିଁ ଅନ୍ୟାନ୍ୟ ଦୋକାନ ବି ଥାଏ ।

ଲମ୍ବା ରାସ୍ତାରେ ବହୁତ ବୁଲାବିକାଳି ବୁଲୁଥାନ୍ତି । ଘରେ ଘରେ ଜିନିଷ ବିକି ଦେଇଯାନ୍ତି ।

ସ୍ଥାନେ ସ୍ଥାନେ ମାଟି କାନ୍ଥ ଖପର୍ଲି ଛାତର ସାନ ସାନ ଘର କରି ନ ହେଲେ ଚାକି ଟେକି ଦୁଧ ବିକା ଗଉଡ଼ମାନେ ରହିଥାନ୍ତି, ବିଶେଷତଃ ଦୁଇ ଦୁଇ ଧାଡ଼ି କୋଠା ଘରର ପଛଆଡ଼େ । ନାଗୁଆ କଳେ ସେମାନେ ଦୁହାଁକ ଗାଈକୁ ସଙ୍ଗରେ ଧରି ଆଣି ଘର ଘରକ ସାମ୍ନାରେ ଦୁଧ ଦୁହିଁ ଦେଇ ଯାଆନ୍ତି । ପ୍ରତି ଘରର ପଛଆଡ଼େ ବଖରାଏ ଲେଖାଁ ସାନ ସାନ ଘର ଥାଏ, ମଫସଲରୁ ମୂଲିଆ ପରିବାରମାନେ ଆସି ଘରର ବାସିନ୍ଦାର ଅନୁମତି ନେଇ ସେଠି ରହିଥାନ୍ତି, ପର ଘରେ ଚାକିରି କରନ୍ତି । ସେମାନେ ସମସ୍ତେ ସ୍ଥାନୀୟ ଲୋକେ, —ବିହାରି , ଅର୍ଥାତ୍ ବିହାର ଦେଶର ମଣିଷ ।

ପ୍ରତି ଘରେ ପାଣି କଳ ଓ ବାଲ୍‌ଟି ବସିଥିବା ପାଇଖାନା । ବିଜୁଳି ଶକ୍ତି ଆସି ନ ଥାଏ । ଇସ୍କୁଲ୍‌ରେ ଅଫିସ୍‌ମାନଙ୍କରେ ବଡ଼ ବଡ଼ ପଙ୍ଖା ଟଣା ହେଉଥାଏ । ଘରେ ଘରେ ନଲ୍ଠଣ୍ ଜଳେ, ରାସ୍ତାରେ ନଲ୍ଠଣ ଖୁଣ୍ଟ ।

ଲୋକେ ଅଫିସ୍ ଗଲାପରେ ନିଛାଟିଆ ପଡ଼ିଯାଏ । ମଝିରେ ମଝିରେ ଗୋଟିଏ 'ଫେରିବାଲା' ଡାକି ଡାକି ଯାଆନ୍ତି । ବେଳେ ବେଳେ ସ୍ତ୍ରୀଲୋକମାନେ ପଡ଼ିଶା ଘରକୁ ବୁଲି ବାହାରନ୍ତି । ଖରା ବଢ଼େ, ଝରକା ଝିଁ ବନ୍ଦ ଥାଏ । ପୁଣି ଚହଳ ଖେଳେ ସାଢ଼େ ଚାରିଟା ଆଡ଼କୁ । ସଞ୍ଜବୁଡ଼େ ଏ ଘରୁ ସେ ଘରୁ ପଢୁଆ ପିଲାଙ୍କ ପାଟି ଶୁଭେ, ସ୍ଥାନେ ସ୍ଥାନେ ଟେବୁଲ୍ ପାଖେ ପିଲା ପଢୁଥାନ୍ତି । କେଉଁଠି କେଉଁଠି କିଏ ସଙ୍ଗୀତ ସାଧୁଥାଏ । ରାତି ଦଶଟା ନ ହେଉଣୁ ପୁଣି ସବୁ ତୁନିତାନି । ମଝିରେ ମଝିରେ 'ଏକ୍କା' ଗାଡ଼ିର ଶବ୍ଦ, ଗୋଟିକିଆ ଘୋଡ଼ା ଲାଗିଥିବା ଖୁବ୍ ଉଚ୍ଚରେ ଭାଡ଼ି ଉପରେ ଥୁଆ ହେଲାପରି ଖୋଲା ଥାଇ ବସିବା ଆସନ । ଘୋଡ଼ା ବେକରେ ଘୁଙ୍ଗୁର ଝଣ ଝଣ ଖୁରାର ଟପ୍‌ଟାପ୍ ଶୁଭୁଥାଏ, କିଏ କେଉଁଠୁ ଆସିଲା, ବୋଧହୁଏ ଷ୍ଟେସନରୁ ।

ରାତି ବଢ଼େ ।

ବିକଟାଳ ପାଟିଟାଏ ଶୁଭେ, ''ବସ୍ତିବାଲେ ହୁସିଆର୍ ହୋ-ଓ'' । ଅଣ୍ଡିରା ବିଲୁଆର ବୋବାଳି ପରି ରଡ଼ି ଶବ୍ଦଟା ଦୂରକୁ ଦୂରକୁ ଚାଲିଯାଏ ।

ରାସ୍ତା ଆରପାଖ ଆମ ଘର ସାମ୍ନା ଘରର ପିଲାଟି ସଙ୍ଗରେ ମୋର ଚିହ୍ନା ହେଲା, କାହ୍ନୁଭାଇ ଚିହ୍ନା କରେଇ ଦେଲେ । ମୋ ପରି ସେ ବି ପଢ଼େ ଅଷ୍ଟମ ଶ୍ରେଣୀରେ, ପୂର୍ବ କାଳର ମାଟ୍ରିକ୍ ଫୋର୍ଥ କ୍ଲାସ୍ । ବଙ୍ଗାଳି ପିଲାଟିଏ, ତା ନାଁ ପ୍ରଫୁଲ୍ଲ ଦେ । ପାଟ୍‌ନା ହାଇସ୍କୁଲର ଅଷ୍ଟମ ଶ୍ରେଣୀ ବିଷୟରେ ସେ ମତେ ଧାରଣା ଦେଲା, 'ଏ' ଓ 'ବି' ହୋଇ ଯୋଡ଼ିଏ ସେକ୍‌ସନ୍, 'ଏ'ରେ ବଙ୍ଗାଳି ପିଲା, 'ବି'ରେ ବିହାରି ପିଲା, ପ୍ରତି ସେକ୍‌ସନ୍‌ରେ ପଚାଶ କି ଷାଠିଏ ଲେଖାଁ ପିଲା । ସେ ସ୍କୁଲରେ ପ୍ରତି ବିଷୟରେ ପଢ଼ାବହି ସୋନ୍‌ପୁର ସ୍କୁଲଠୁଁ ସମ୍ପୂର୍ଣ୍ଣ ଭିନ୍ନେ, ଇଂରେଜି ପାଇଁ ତ ଚାରିଖଣ୍ଡ ବହି । ପାଠ ଅଧା ହୋଇଗଲାଣି, ପଢ଼ା ବିଷୟ ବି ସମ୍ପୂର୍ଣ୍ଣ ଭିନ୍ନେ । ଭୂଗୋଳରେ ସୋନପୁର ସ୍କୁଲରେ ଆମର ପ୍ରାକୃତିକ ଭୂଗୋଳ ହିଁ ପଢ଼ା ହୋଇଥାଏ, ପାଟ୍‌ନାରେ ତା' ସେ କ୍ଲାସର ପାଠ ନୁହେଁ, 'ଭାରତ' ସରିଛି, ବିଲାତ ଚାଲିଛି । ଭାରତ ଇତିହାସରେ ଆମର 'ହିନ୍ଦୁ ପିରିଅଡ୍' ପଢ଼ା ହେଉଥିଲା, ତାଙ୍କର ତା' ସେ କ୍ଲାସର ପାଠ ନୁହେଁ, ତାଙ୍କର 'ପଠାଣ ପିରିଅଡ୍' ସରି 'ମୋଗଲ' ପଢ଼ା ଚାଲିଛି । ଅଙ୍କରେ ଆହୁରି ବେଶି ତଫାତ୍ । ଅଲଜେବ୍ରାରେ ଆମେ ହରଣ ଗୁଣନ କରୁଥିଲୁଁ, ତାଙ୍କର ଫ୍ୟାକ୍ଟର ସରିଛି । ସବୁ ଭିନ୍ନେ ।

ପ୍ରଫୁଲ୍ଲର ବହି ମାଗି ଆଣି ଅଙ୍କ ଅଙ୍କ କରି ଆରମ୍ଭ କଲି । ନାଁ ଲେଖା ହୋଇ ନ ଥାଏ । ମୁଁ ଘରେ ଥାଏଁ । ବାପାଙ୍କ ଚିକିତ୍ସା ଚାଲିଥାଏ । ସେ ଦୁର୍ବଳ ହୋଇପଡ଼ିଥାନ୍ତି । ପାଦ ଫୁଲିଥାଏ, ଜ୍ୱର ଥାଏ, ରକ୍ତଝାଡ଼ା ହେଉଥାଏ । ବଡ଼ ଭାଇଙ୍କ ସହପାଠୀ ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ରାୟ ମଝିରେ ମଝିରେ ବାଙ୍କିପୁରରୁ ଆସି ତାଙ୍କୁ ଚିକିତ୍ସା କରୁଥାନ୍ତି ।

ସେ ପ୍ରଥମେ ଟିକିଏ ଭଲ ହେଲେ, ପୁଣି ଦେହ ଖରାପ ହେଲା, ସମସ୍ତିଙ୍କ ମନରେ ଉଦ୍‌ବେଗ ହେଲା । ସାତ ଦିନପରେ ସେ ଭଲ ଜଣାପଡ଼ିଲେ, ଡାକ୍ତର ଆସି ଦେଖି କହି ଦେଇଗଲେ ଯେ ଆଉ ବିପଦ ନାହିଁ, ଏଣିକି ସେ ଧୀରେ ଧୀରେ ଟାଣ ହେବେ । ସେଦିନ ରାତି ସାଢ଼େ ଚାରିଟା ବେଳେ ସେ ନିଦରୁ ଉଠିଲେ, ସମସ୍ତିଙ୍କୁ ଡାକି ହାକି ଉଠେଇଲେ, କହିଲେ, ''ଏଥର ମୋ ଯିବା ବେଳ ହେଲା, ଉଠ, କଥାଭାଷା ହେବା ।'' ପୁରାଣ ବୋଲା ହେଲା । ସେ ସୁସ୍ଥ ମଣିଷ ପରି ବସି ସମସ୍ତିଙ୍କ ସଙ୍ଗେ କଥାଭାଷା କଲେ । ସିନ୍ଦୂରା ଫାଟିଲା । ସେ ସମସ୍ତିଙ୍କୁ ଉପଦେଶ ଦେଇସାରି ଆସନରେ ବସି

ଆଖି ବୁଜି ଦେଲେ, ତିନି ଚାରି ମିନିଟ୍ ପରେ ଟଳି ପଡ଼ିଲେ ।

ସେଦିନ ଜୁଲାଇ ପହିଲା ସୂର୍ଯ୍ୟୋଦୟ ବେଳ, ୧୯୨୬ । ତା'ପରେ ସେ ଯେଉଁ ଶୋକାକୁଳ ଦୁଃଖ ଯନ୍ତ୍ରଣାର ଅନୁଭୂତି ଲାଗି ରହିଥାଏ ପନ୍ଦର ଦିନ ପର୍ଯ୍ୟନ୍ତ, ସେ ସତେ ଯେମିତି ଗୋଟାଏ ସ୍ୱପ୍ନ ।

ମୋର ଲଣ୍ଡା ମୁଣ୍ଡରେ ବାଳ ଗଜୁରିଲା । ଅନୁଭବ କଲି ଏ ପୁଣି ଗୋଟାଏ କ'ଣ ଅଚିହ୍ନା ଜୀବନ । ବାପା ନାହାନ୍ତି, ଆଉ ଆସିବେ ନାହିଁ । ବୋଉ ଖାଲି ମୁହଁ ମାଡ଼ି ପଡ଼ି ପଡ଼ି କାନ୍ଦୁଛି, ତଣ୍ଟି ବସିଯାଇଛି, ମଝିରେ ମଝିରେ ଲାଗି ରହେ । ତା'ର ଗୋଟାଏ ଛାତିଫଟା ଗାଉଁ ଗାଉଁ ବିଳାପ, ସମସ୍ତେ ଆମେ କାନ୍ଦୁଁ । ବୋଉର ମୁହଁ, ଚେହେରା ସବୁ କେମିତି ବଦଳି ଯାଇଚି, ସେ ନିଆଶ୍ରୀ, ଦୁଃଖୀ । ଧୂଳିଭାଇ କଟକ ଚାଲିଗଲେ, ଇଞ୍ଜିନିୟରିଂ ଇସ୍କୁଲରେ ତାଙ୍କର ଶେଷ ବର୍ଷର ପଢ଼ା । ବାପା ମରିବା ପଛେ ପଛେ ବଡ଼ଭାଇ ଗସ୍ତରୁ ଲେଉଟି ଆସିଥିଲେ, ସେତେବେଳକୁ ଦିନେ ଦି' ଦିନ ହୋଇଯାଇଥାଏ । ସେ ଅଫିସ୍ ଯାଉଥାନ୍ତି । କାହ୍ନୁଭାଇ ବିହାର ନ୍ୟାସନ୍ୟାଲ କଲେଜରୁ ଆଇ.ଏସ୍‌ସି. ପାଶ କରିଥାନ୍ତି, ସେ ଇଞ୍ଜିନିଅରିଂ କଲେଜରେ ନାଁ ଲେଖାଇଲେ, ପ୍ରତିଦିନ ଚାରି ପାଞ୍ଚ ମାଇଲ ଯାଆନ୍ତି ପୁଣି ଲେଉଟି ଆସନ୍ତି, ଅନେକ ଥର ଚାଲି ଚାଲି ଯା ଆସ କରନ୍ତି । ବଡ଼ଭାଇ ଦେଢ଼ଶହ କି ଶହେ ପଚସ୍ତରୀ ପାଆନ୍ତି । ସେତିକିରେ ଘର ଚଳେ । ଅବଶ୍ୟ, ଖୁବ୍ ଶସ୍ତା କାଳ ସେତେବେଳେ, ଚାଉଳ ମହଣ ବୋଧହୁଏ ଛ' ଟଙ୍କା ଆଠ ଟଙ୍କା, ବାଇଗଣ ସେରକ ଚାରି ପଇସା, ପୋଟଳ ଦୁଇଅଣା, ତଥାପି ନାନା ଆବୁ କଟି କାଟି ଯାଇ ଦରମା ଯାହା ଆସେ ତହିଁରେ ବିଦେଶରେ ସମାଜରେ ଜଣେ ହୋଇ ପାଞ୍ଚଜଣ ମଣିଷ ଓ ତିନୋଟି ଛୁଆଙ୍କ ସମେତ ଘର ଚଳାଇବା ସକାଶେ ବହୁତ ପରିଶ୍ରମ, ଘରକରଣା ବୁଦ୍ଧି, ଧୈର୍ଯ୍ୟ ଓ ତ୍ୟାଗ ଦରକାର ପଡ଼େ । ସବୁ ଅଭ୍ୟାସ ହୋଇଯାଇଥିଲା ।

ମୋର ସୋନପୁର ଚଳଣି କାହିଁ ଏଠି ସାତ ସପନ । ଏଠି ମୁଁ ଗୋଟିଏ ନିୟନ୍ତ୍ରିତ ପରିବାର ଭିତରେ ଜଣେ, ଗୋଟିଏ ଧରାବନ୍ଧା ବ୍ୟବସ୍ଥା ଭିତରେ ମାଡ଼ି ମକଚି ହୋଇ ମୁଁ ଚଳିବାକୁ ବାଧ, ମୁଁ ଏଠି ମେଲା ଖୋଲା ନୁହେଁ ।

କେଡ଼େ ବିଚିତ୍ର ମଣିଷ ଜାତିର ସ୍ୱଭାବ ଯେ ଅବସ୍ଥା ବଦଳୁ ବଦଳୁ ଅତି ଶୀଘ୍ର ତାହା ସଙ୍ଗେ ସଙ୍ଗେ ନିଜକୁ ଖାପ ଖୁଆଇ ଦେଇ ସେ ଚଳିପାରେ,

ପୁଣି ତାହାରି ଭିତରେ ଖୋଜେ ବିକାଶ ଓ ଆନନ୍ଦ । ବଞ୍ଚିବାର ନୂଆ ଉତ୍ସାହରେ ସେ ପୁରୁଣାକୁ ଝୁରି ହେବା ଭୁଲିଯାଏ, ପୁଣି ନୂଆଠି ଦେଖେ ପୁରୁଣାର ତାରତମ୍ୟରେ ନାନା ନୂଆ ଉତ୍କର୍ଷ ।

ଖାପିବାକୁ ବୋଉକୁ ବହୁତ ଡେରି ଲାଗିଥିଲା, ମୁଁ ଖାପିଗଲି ଚଞ୍ଚଳ । ତା'ର ବୋଧହୁଏ ପ୍ରଧାନ କାରଣ ଏତିକି ଯେ ମୋ ଲକ୍ଷ୍ୟ ଥିଲା ପାଠପଢ଼ା, ବହିପଢ଼ା । ମତେ ସେତେବେଳେ ବୋଧହୁଏ ଲାଗୁଥିଲା, ମୋ ଭିତରେ ଯେତେବେଳେ ଯେଉଁ ଆଶା, କାମନା, ସ୍ୱପ୍ନ ଉଦୟ ହେଉଛି, ସବୁ ଭବିଷ୍ୟତରେ ସଫଳ ହୋଇପାରିବ ସେହି ପାଠବାଟେ ଗଲେ, ନ ଯାଇ ପାରିଲେ ହେବ ନାହିଁ, ମୋ ଦୁରବସ୍ଥାର ସୀମା ରହିବ ନାହିଁ । ପାଠପଢ଼ା ପ୍ରତି ମୋର ଖୁବ୍ ଶ୍ରଦ୍ଧା ଓ ଆଗ୍ରହ ଥିଲା, ଅନେକ ପିଲାଙ୍କର ଥାଏ, ତା ସହିତ ମିଶି ଯାଇଥିଲା ଏଭଳି ଗୋଟାଏ ଧାରଣା, ପାକଳ ଜୀବନରେ ପଛେ ବୁଝିଲି, ସେ ଧାରଣା ଅମୂଳକ, କିନ୍ତୁ ସେତେବେଳେ ସେମିତି ଧାରଣା କେମିତି ମନ ଭିତରେ ବଦ୍ଧମୂଳ ହୋଇ ରହିଯାଇଥିଲା । ତା ସହିତ ମିଶିଥିଲା ସ୍ୱପ୍ନିଳ ଆଦର୍ଶବାଦ, ଯାହାଙ୍କ କଥା ମୁଁ ପଢ଼େ ତାଙ୍କରି ପରି ମହତ୍ ହେବି । ମୋର ଆତ୍ମ-ସମ୍ମାନ ଜ୍ଞାନ, ମୋର ମନ ଗହୀରରେ ଗୋପନ 'ଅହଂ'ଭାବ ଓ ଅପରଠୁଁ ବଳି ଉପରକୁ ଉଠିବା ପ୍ରବୃତ୍ତି, ଆଖିଦୁରୁଶିଆ ହୋଇ ଗୋଠ ଭିତରେ ଡେଙ୍ଗା ହୋଇ ଠିଆ ହେବା ଆକାଂକ୍ଷା, ଯାହାକୁ କୁହାଯାଏ ପ୍ରତିଯୋଗିତାମୂଳକ ଉଚ୍ଚାକାଂକ୍ଷା, ସେ ସବୁ ବୋଧହୁଏ ମୋ ନିଜ ଅଜଣାରେ ଏକାଠି ହୋଇ ଗୋଟିଏ ବାଟ ଦେଖାଇଲା, —ବହି ବାଟ । "ବହୁତ ପଢ଼ିବି, ଆହୁରି ପଢ଼ିବି, ଭଲ ପଢ଼ିବି, —ତା'ପରେ ବଳେ ମିଳିଯିବ ଯାଦୁକରର କାଠି" । ତା ଛଡ଼ା ନିଶ୍ଚୟ ଥିଲା ବହି ଭିତରେ ପଳାଇ ଲୁଚିବା ମନୋଭାବ । ବାହାରେ ମୁଁ କିଛି ନୁହେଁ, କେହି ନୁହେଁ, ପିଷ୍ଟ । ବହି ଦୁନିଆଁରେ ପଶିଗଲେ ମୁଁ କୁଆଡ଼େ ନାହିଁ କୁଆଡ଼େ, ମୋ ମନ ଇଚ୍ଛା ବୁଲୁଛି, ସମ୍ପୂର୍ଣ୍ଣ ସ୍ୱାଧୀନ । ତା ସହିତ ଆଉ କେତେ ଧାରଣା କେତେ ଖିଆଲ ଥାଏ । "ବାପା ଏଇଆ ଚାହିଁଥାନ୍ତେ, ତାଙ୍କର ଆତ୍ମା ଖୁସି ହେବ ।" "ବୋଉ ଖୁସୀ ହେବ । ଘରେ ସମସ୍ତେ ପ୍ରଶଂସା କରିବେ, ଖୁସି ହେବେ । ଅନ୍ୟମାନେ ସାବାସ୍ ସାବାସ୍ କହିବେ ।"

ପଛକୁ ଅନାଇଁ ପାଠପଢ଼ା ପ୍ରତି ମୋର ସେତେବେଳର ଧାରଣାକୁ ମୁଁ ବିଶ୍ଳେଷଣ କରିବାକୁ ଏଥିପାଇଁ କୁତୂହଳୀ ହେଉଛି ଯେ, ପାଠପଢ଼ା କ୍ଷେତ୍ରରେ ସେତିକିବେଳେ ମୋ ଦ୍ୱାରା ଯାହା ସମ୍ଭବ ହୋଇଥିଲା, ପଛେ ସେ ଅସମ୍ଭବ

ଆଉ ବୋଧହୁଏ ସମ୍ଭବ ହେଲା ନାହିଁ । ସତ, ଯେତେବେଳେ ମୋର ମୋଟେ କ୍ଲାସ ଏଇଟ୍, ପଛେ ଏମ୍.ଏ. ପରୀକ୍ଷା ବି ଦେଲି, କିନ୍ତୁ ସେହି କ୍ଲାସ୍ ଏଇଟ୍‌ରେ, ମୁଁ ଆସିଛି ଗୋଟିଏ ଗଡ଼ଜାତ ଇସ୍କୁଲ୍‌ରୁ ବର୍ଷର ଠିକ୍ ମଝିରେ, ଅନ୍ୟ ଗୋଟିଏ ସ୍କୁଲକୁ ଯେଉଁଠି ଛାତ୍ର ସଂଖ୍ୟା ତିନି ଚାରି ଗୁଣ, ସେଥିରୁ ଅନେକେ ନାନା ବିଖ୍ୟାତ ସ୍କୁଲର ଭଲ ଭଲ ଛାତ୍ର, ଏ ଇସ୍କୁଲରେ ବହି ଭିନ୍ନେ, ପାଠ ଭିନ୍ନେ, ବର୍ଷକ ପାଠରୁ ଦଶ ଅଣା ଅଂଶରେ ସରିଯାଇଛି । ପାଠପଢ଼ା ହୁଏ ଇଂରେଜି ମାଧମରେ, ପୁଣି ବଙ୍ଗଳା ଓ ହିନ୍ଦୀ ମାଧମରେ, ଶିକ୍ଷକମାନେ ବଙ୍ଗାଳି ଓ ହିନ୍ଦୀଭାଷୀ, ଛାତ୍ରମାନେ ବି ସେହିପରି । ମତେ ସବୁ ନୂଆ କରି ଆରମ୍ଭ କରିବାକୁ ପଡ଼ିବ, ବହି ଖଣ୍ଡିଏ ବି ନାହିଁ । ସବା ଉପରେ, ମୁଁ ବାରବର୍ଷର ପିଲା ଓ ମୋର ସଦ୍ୟ ପିତୃବିୟୋଗ ଘଟିଛି, ଯୁଆଡ଼କୁ ଚାହିଁଲେ ତୀବ୍ର ଅନୁଭୂତି ଆସୁଛି—"ମୋର ବାପା ନାହାନ୍ତି", ବୋଉ କାନ୍ଦୁଛି, ଘରେ ଶୋକର ଛାୟା । ଚାରିଆଡ଼େ ଅଭାବ । ମନ ସଙ୍କୁଚିତ, ତ୍ରସ୍ତ, ବିଷାଦଗ୍ରସ୍ତ । କେମିତି ଆଉ ପାଞ୍ଚ ମାସ ପଢ଼ି ମୁଁ ପାଟ୍‌ନା ହାଇସ୍କୁଲ୍‌ର ବାର୍ଷିକ ପରୀକ୍ଷାରେ ଅଷ୍ଟମ ଶ୍ରେଣୀରେ ପ୍ରଥମ ହେଲି, ଅସମ୍ଭବ ପ୍ରକାରେ ନାନା ବିଷୟରେ ଅଶୀଯାକେ ନମ୍ବର ରଖିଲି, ଆଉ ସମସ୍ତିଙ୍କର ଦୃଷ୍ଟି ଆକର୍ଷଣ କଲି ମତେ ନିଜକୁ ହିଁ ଆଶ୍ଚର୍ଯ୍ୟ ଲାଗେ । ସେହି ସ୍ଥାନ ରହିଥିଲା ସ୍କୁଲର ଶେଷ ପରୀକ୍ଷାଯାକେ । ତା'ଛଡ଼ା "ଗୁଡ୍ କଣ୍ଡକ୍ଟ", "ନିୟମିତ ସ୍କୁଲ ଯିବା", "ଡିବେଟିଂ", "ହସ୍ତାକ୍ଷର", "ଏଲୋକ୍ୟୁସନ୍" ବା "ଆବୃତ୍ତି" ଇତ୍ୟାଦିରେ ବି ମୁଁ "ଫାଷ୍ଟ" ହୁଏ । ସୋନପୁର ପରି ନୁହେଁ । ସେଠି ପୁରସ୍କାର ମିଳେ, ଇଂରାଜି ପ୍ରଭୃତି କେତେଗୁଡ଼ିଏ 'ବିଷୟ' ଲାଗି ବି ଅଲଗା ପୁରସ୍କାର । ପ୍ରତିବର୍ଷ ବହୁତ ବହୁତ ବହି ପୁରସ୍କାର ଘେନି ମୁଁ ଗଡ଼ ଜିତିଲା ପରି ଘରକୁ ଲେଉଟେ । ନାଲି ଫିତା ଗୁରିଆ ହୋଇଥିବା ଥାକ ଥାକ ବହି, ବାନ୍ଧ ବାନ୍ଧ ହୋଇ, ବହିରେ ଥାଏ ଅଭିଲେଖ-ପତ୍ର । କ୍ଲାସ୍ ଏଇଟ୍‌ର ଫାଷ୍ଟ ପ୍ରାଇଜ୍ ବହିରୁ ଖଣ୍ଡିଏ, ଥେୟର କୃତ "ଆବ୍ରାହମ୍ ଲିଙ୍କନ୍" ଏବେ ବି ମତେ ଦାନ୍ତ ଦେଖାଏ । ଶ୍ରୀ ଅଧରାଜ ମୋହନ ସେନାପତିଙ୍କ ହସ୍ତାକ୍ଷର ତାର ମାନପତ୍ରରେ ଅଛି । ହେଡ୍‌ମାଷ୍ଟର ଅଚ୍ୟୁତାନନ୍ଦ ଦସକନ୍ତ କରିଛନ୍ତି, ତାରିଖ ୨୬-୨-୨୭ । ଅନ୍ୟାନ୍ୟ ପ୍ରାଇଜ୍ ବହି ଭିତରେ ଥିଲା ଆଜଟଙ୍କ ଲେଖା "ଲାଇଫ୍ ଅଫ୍ ନେପୋଲିଅନ୍", ଆଉ କାହା ଲେଖା ମୋଟା ବହି "ଫ୍ରମ୍ ଲଗ୍ କେବିନ୍ ଟୁ ହ୍ୱାଇଟ୍ ହାଉସ୍", ଲର୍ଡ଼ ଆଭେବରିଙ୍କ "ୟୁସ୍ ଅଫ୍ ଲାଇଫ୍", ସ୍ମାଇଲ୍‌ସ କୃତ "କ୍ୟାରେକ୍ଟର", "ବେଞ୍ଜାମିନ୍ ଫ୍ରାଙ୍କଲିନ୍",

"ଅଙ୍କଲ ଟମ୍‌ସ୍ କେବିନ୍", ଏମିତି କେତେ ବହି । ସେହି ପୁରସ୍କାର ମିଳିଥିବା ବହି ଭିତରେ **ଇଂରେଜି ଅକ୍ସଫୋର୍ଡ ଡିକ୍ସନାରି** ବି ଥିଲା । ନବମ କ୍ଲାସ୍‌ର ପୁରସ୍କାର ଭିତରେ ଥିଲା ସଂସ୍କୃତରେ "ସଦ୍ଧାନ୍ତ ଚନ୍ଦ୍ରିକା", ପ୍ରକାଣ୍ଡ ଆକାରର ବହିଟିଏ, ପଛେ ବହୁତ କାର୍ଯ୍ୟରେ ଲାଗିଥିଲା ।

ଟିଉଶନ୍ ମାଷ୍ଟର ମୋ ପାଇଁ ନ ଥାନ୍ତି, ଯାହା ନ ବୁଝି ପାରେଁ କ୍ଲାସ୍‌ରେ ଶିକ୍ଷକଙ୍କୁ ପଚାରେଁ । କେତେ ମାସ ପରେ ପୁରୀର ଶ୍ରୀ ଜଗତବଲ୍ଲଭ ଦାସ୍ ବି.ଏ. ଆମ ସଡ଼କରେ ବସା ନେଲେ । ବୋଧହୁଏ ଛୁଟିରୁ ଫେରିଲେ । ସେ ପୂର୍ବେ ଭଦ୍ରଖ ହାଇସ୍କୁଲ୍‌ରେ ଶିକ୍ଷକ ଥିଲେ, ଛାତ୍ରଙ୍କୁ ତାଲିମ୍ କରିବା କାର୍ଯ୍ୟରେ ତାଙ୍କର ଖ୍ୟାତି ଥିଲା । ସେ ସେକ୍ରେଟେରିଏଟ୍‌ରେ ଜଣେ ଆସିଷ୍ଟାଣ୍ଟ୍ ହୋଇଥିଲେ । ତାଙ୍କ ସଙ୍ଗେ ମୁଁ ଚିହ୍ନା ହେଲା ମାତ୍ରେ ସେ ମୋ ପାଠପଢ଼ା ପ୍ରତି ଆଗ୍ରହ ଦେଖାଇଲେ । ସେ ବେଳେ ବେଳେ ମତେ ପାଠ ବୁଝାଇ ଦିଅନ୍ତି, ପଢ଼ିବା ବିଷୟରେ ନିର୍ଦ୍ଦେଶ ଦିଅନ୍ତି, ପରୀକ୍ଷା କରନ୍ତି ଓ ନିୟମିତ ଭାବେ ମୋ ଇଂରେଜି ଲେଖା, ଅନୁବାଦ, ରଚନା, ସଂସ୍କୃତ, ଅଙ୍କ, ଓଡ଼ିଆ ରଚନା ଆଦି ସଂଶୋଧନ କରନ୍ତି, ବେଳେ ବେଳେ ସେଥିରେ ନମ୍ବର ଦିଅନ୍ତି, ତୁଣ୍ଡେ ତୁଣ୍ଡେ ମୋ ସଙ୍ଗେ ସେ ପାଠ ଆଲୋଚନା କରନ୍ତି । ସବୁ ପାଠ ତାଙ୍କ ଜିଭ ଅଗରେ । ତାଙ୍କୁ ମୁଁ ଗୁରୁ ପରି ମାନୁଥିଲି, ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ପାଠ ପଢ଼ି ମୋର ବହୁତ ଉପକାର ହେଉଥିଲା ।

୧୯୨୬ ଜୁଲାଇ ପହିଲାରେ ବାପାଙ୍କ ତିରୋଧାନ । ଜୁଲାଇ କୋଡ଼ିଏ ବେଳକୁ ଦିନେ ମୁଁ ନାଁ ଲେଖା ପାଇଁ ପାଟ୍‌ନା ହାଇସ୍କୁଲକୁ ନିଆ ହେଲି । ସେତେବେଳେ ସ୍କୁଲର ସହକାରୀ ହେଡ୍‌ମାଷ୍ଟର ଥିଲେ କଟକର ଶ୍ରୀ ଯୋଗେଶ୍ ଚନ୍ଦ୍ର ରାୟ, ସେ ଅସ୍ଥାୟୀଭାବେ ହେଡ୍‌ମାଷ୍ଟର ଥିଲେ, କେତେ ମାସ ପରେ ସମ୍ବଲପୁର ବଦଳି ହୋଇଗଲେ । ମନେ ପଡୁଛି, ସୋନପୁର ହାଇସ୍କୁଲର ଟ୍ରାନ୍‌ସଫର ସାର୍ଟିଫିକେଟ୍ ଦେଖାଇଲେ ବି ସେ ସ୍କୁଲର ନିୟମ ଅନୁସାରେ ମତେ ସେହି ସଙ୍ଗେ ସଙ୍ଗେ ପ୍ରଶ୍ନଗୁଡ଼ିଏ ଦିଆଯାଇ ଇଂରେଜି, ଅଙ୍କ ଓ ସାହିତ୍ୟରେ ଟିକିଏ ପରୀକ୍ଷା କରାଗଲା । ତା'ପରେ ମୋ ନାଁ ଲେଖାଗଲା, ମୁଁ ରହିଲି 'ଏ' ସେକ୍‌ସନ୍‌ରେ, ସେଠି ସମସ୍ତେ ବଙ୍ଗାଳି ପିଲା, ମତେ ଛାଡ଼ି ଆଉ ତିନି ଜଣ ଓଡ଼ିଆ ପିଲା, ଜଣେ ଡେଙ୍ଗା, ଧେଡ଼େଙ୍ଗା, ଟିକିଏ ବେଶି ବୟସର, ତା ନାଁ ବସନ୍ତ ପରିଡ଼ା, ଆଉ ଜଣେ ତା'ର କ'ଣ ବନ୍ଧୁବାନ୍ଧବ, ହୃଷ୍ଟପୁଷ୍ଟ ତୁନିତାନି ଲାଜକୁଳା ପିଲାଟିଏ, ଆକାରରେ ସେତିକି,

ତା ନାଁ କ୍ଷେତ୍ରମୋହନ ସ୍ୱାଇଁ, ତୃତୀୟ ଜଣକ ମୋରି ବୟସର ପିଲାଟିଏ, ଭରତ ଦାସ ।

ଦିଶିଯାଉଛି, ଶିକ୍ଷକ ଥିଲାବେଳେ ବସନ୍ତ ପଛ ବେଞ୍ଚରେ ବସି ଗୀତ ବୋଲିଲା ପରି ପାଟି କରୁଥାଏ, "ବଡ଼ ବଡ଼ ବନ୍ଦରେର ବଡ଼ ବଡ଼ ଲେଜ୍" । ସେ ଭାରି ହସୁଥାଏ, କିନ୍ତୁ ତା'ର ସେ ଉକ୍ତିର ତାତ୍ପର୍ଯ୍ୟ କ'ଣ ମୁଁ ତା ବୁଝିପାରି ନାହିଁ । ପଚିଶି ବର୍ଷ ପରେ ସେହି ବସନ୍ତକୁ ମୁଁ କଟକରେ କୋର୍ଟରେ ଦେଖିଥିଲି, ସେ ଗୋଟିଏ ମକଦ୍ଦମାର ସାକ୍ଷୀ ବା ସହାୟକ ପରାମର୍ଶଦାତା ହୋଇ ଆସିଥିଲା । ଇସ୍କୁଲରୁ ଚାଲି ଯାଇଥିଲା ସେ ଗାଁକୁ, ତା'ପରେ ଗାଁରେ ତା ଚାଷବାସ ଆଦିରେ ସମୟ କାଟୁଥିଲା ବୋଲି ଶୁଣିଲି । ଖେତୁ ବି ଇସ୍କୁଲରୁ ଚାଲିଗଲା, ଶୁଣିଲି ସେ ମରିଗଲା । ଭରତ ଦାସର ଡାକ ନାଁ ଧଡ଼ି, ଖୁବ୍ ମେଳାପୀ । ଇସ୍କୁଲରେ ସେ ବହୁତ ଦିନ ମାଷ୍ଟେଇ ରହିଥିଲା, ତା'ପରେ ଛାଡ଼ିଦେଲା । ପଛେ ସେ ହେଲା ଗୋଟିଏ କବିରାଜ ।

ଆମ କ୍ଲାସ୍‌ରେ ଆମେ ହେଲୁଁ ଚାରିଜଣ ଓଡ଼ିଆ ପିଲା, ନବମରେ ବୋଧହୁଏ ଜଣେ ଥାଏ । ହରି ସେନାପତି । ଦଶମରେ ଦୁଇଜଣ, ଭୈରବ ମହାନ୍ତି ଓ ଜଗନ୍ନାଥ ଦାସ । ଭୈରବ ମହାନ୍ତି ମୋ ମଉସା ଶ୍ରୀ ଚିନ୍ତାମଣି ମହାନ୍ତିଙ୍କ ପୁତୁରା । ମଉସା ପଛେ ଓଡ଼ିଶା ସରକାରଙ୍କ ଅର୍ଥ ବିଭାଗରେ ଆଡିସ୍‌ନାଲ୍ ସେକ୍ରେଟାରୀ ହୋଇଥିଲେ । ଭୈରବ ମହାନ୍ତିଙ୍କୁ ମୁଁ ଡାକେ ଭୈରା ଭାଇ । ଭୈରା ଭାଇ ପାଟ୍‌ନା ହାଇସ୍କୁଲ୍‌ର ଫୁଟ୍‌ବଲ୍ ଟିମ୍‌ର ଜଣେ ନାଁ ଡାକ ଖେଳାଳି ଥିଲେ, ଅନ୍ୟାନ୍ୟ ଖେଳରେ ବି ତାଙ୍କର ଖୁବ୍ ଭଲ ନାଁ ଥିଲା, ଯେତେ ଓଡ଼ିଆ ପିଲା ଥିଲେ ବୋଧହୁଏ ତହିଁରୁ ତାଙ୍କ ସାଙ୍ଗମାନଙ୍କ ସଂଖ୍ୟା ସବୁଠୁ ଅଧିକ । ସେ ବହୁତ ପିଲାଙ୍କ ସଙ୍ଗେ ମିଶନ୍ତି । ପାଠରେ ବି ସେ ଖୁବ୍ ଭଲ ଥିଲେ । ଖୁବ୍ ଅଳ୍ପ ସମୟ ବହିପଢ଼ାରେ ଖର୍ଚ୍ଚ କରି ସେ ତାଙ୍କ କ୍ଲାସ୍‌ରେ ସେକେଣ୍ଡ୍ ଥାର୍ଡ଼ ହୋଇ ହୋଇ ଯାଆନ୍ତି । ଖେଳ, ପାଠ, ସାଧାରଣ ବୁଦ୍ଧି, ସାହସ, ସର୍ଦ୍ଦାରି ସବୁ ତାଙ୍କର ଭଲ ଥିଲା ବୋଲି ସେ ଜଣେ "ଅଲ୍‌ରାଉଣ୍ଡର" ବୋଲି ଆମେ ସମସ୍ତେ ଗର୍ବ ଅନୁଭବ କରୁଥିଲୁଁ । ପିଲାଙ୍କ ଭିତରେ ସେ ଜଣେ ନେତା ହୋଇଥିଲେ । ମୋ ଜାଣିବାରେ ଆମ ସ୍କୁଲରେ ପ୍ରଥମ ଷ୍ଟ୍ରାଇକ୍ କରାଇଥିଲେ ସେ, ସେ ରକ୍ଷଣଶୀଳ ସ୍କୁଲରେ ଚହଳ ପଡ଼ି ଯାଇଥିଲା । ପଛେ ସାଧାରଣ ଜୀବନରେ ସେ ଜଣେ ନେତା ହେଲେ, ମନ୍ତ୍ରୀ ବି ହେଲେ, ବାରବାଟି ଷ୍ଟେଡ଼ିୟମ୍ ନିର୍ମାଣ ଓ ପରିଚାଳନା, ଓଡ଼ିଶାରେ

ଖେଳ ଓ ସ୍ପୋର୍ଟସ୍‌ର ପ୍ରସାର ଓ ଅଭିବୃଦ୍ଧିର ପ୍ରଧାନ ଉଦ୍ୟୋକ୍ତା ଓ ପୃଷ୍ଠପୋଷକ ହୋଇ ସେ ସୁବିଦିତ ହେଲେ ।

ବିନୀତ, ଶାନ୍ତ, ସୁଧାର ଜଗନ୍ନାଥ ଦାସ ଆମ ସ୍କୁଲର ଜଣେ 'ଭଲ ପିଲା', ତାଙ୍କ କଥା ବି ଧୀର, ବଡ଼ପାଟିରେ କହନ୍ତି ନାହିଁ, ରାଗନ୍ତି ନାହିଁ । ଦିଶନ୍ତି ଭାବୁକ ପରି । ପାଠରେ ପ୍ରଗାଢ଼ ପରିଶ୍ରମ କରନ୍ତି । ତାଙ୍କଠୁଁ ମୁଁ ଗୋଟିଏ କଥା ଶିଖିଥିଲି । ପ୍ରତିଦିନ ଗୁଡ଼ାଏ ମିଶାଣ, ଫେଡ଼ାଣ, ଗୁଣନ କରୁଥିଲେ, ବେଳେ ବେଳେ କାହାରି କାହାରି ଯେଉଁ ମିଶାଣ ଗୁଣନ ଆଦିରେ ସାମାନ୍ୟ ଭୁଲ୍ ହେବାର ପ୍ରବଣତା ଥାଏ ସେ ରୋଗ ଛାଡ଼ିଯାଏ । ନ ହେଲେ ସବୁ ଅଙ୍କ ଜାଣି, ମିଶୋଉ ମିଶୋଉ କେଉଁଠି "ଛ ତିନି ଆଠ" କିମ୍ୱା "ନ ଆଠ ସତରରୁ ସାତ ରଖି ନେଲା ଦୁଇ" କିମ୍ୱା "ନ ନୂଆଁ ଏକାଅଶୀରୁ ଏକ ରଖି ନେଲା ଛ" । ଗୋଟାଏ ଗୋଟାଏ ଏଭଳି ଭୁଲ୍ ହୋଇଯାଏ, ଫଳରେ ସବୁ କରି ତଥାପି ଶୂନ । ସେ ବିଶ୍ୱାସ କରୁଥିଲେ ଯେ, ନିଜେ ପରିଶ୍ରମ କରି ଆଗରୁ ସବୁ ପ୍ରସ୍ତୁତ କରିବା ଉଚିତ୍ । ସେ ବି କ୍ଲାସ୍‌ରେ ସେକେଣ୍ଡ ଥାର୍ଡ଼ ହୁଅନ୍ତି । ପଛେ ସେ ଏମ୍.ବି.ବି.ଏସ୍. ଡାକ୍ତର ହେଲେ, ଚାକିରି ନ କରି ସେବା କାର୍ଯ୍ୟ କଲେ, ବଡ଼ଚଣାରେ ଡାକ୍ତରଖାନାଟିଏ ବସାଇଲେ, ବହୁତ ଜନପ୍ରିୟ ହେଲେ, ସୋସିଏଲିଷ୍ଟ୍ ପାର୍ଟିର ମେମ୍ବର ହୋଇ ଏମ୍.ଏଲ୍.ଏ. ହେଲେ ।

ମୋ ତଳ ଶ୍ରେଣୀରେ ପଢୁଥିଲା କ୍ଷେତ୍ରବାସୀ ଓଡା, ପାଠପଢ଼ାକୁ ବହୁତ ମନ । ପଛେ ସେ ଜେଲର୍ ହେଲାବେଳେ ମୁଁ ଦେଖିଛି । ସେହି ଶ୍ରେଣୀର ପିଲା କୃଷ୍ଣ ନନ୍ଦ, ମାଧବ ନନ୍ଦଙ୍କ ଭାଇ ।

ଷଷ୍ଠ ଶ୍ରେଣୀରେ ଥାଏ କୈଳାସ ତ୍ରିପାଠୀ, ଓଡ଼ିଆ ସାହିତ୍ୟରେ ଓ ଡିବେଟିଂରେ ସେ ଖୁବ୍ ଟାଣ । ମୁଁ ନବମ ଶ୍ରେଣୀରେ ପଢ଼ିଲାବେଳେ "ରାଧାନାଥଙ୍କ ଜୀବନୀ" ବିଷୟରେ ଓଡ଼ିଆ ସମାଜ ଗୋଟିଏ ପ୍ରବନ୍ଧ ପ୍ରତିଯୋଗିତା କରିଥିଲେ, ମୁଁ ପ୍ରଥମ ଓ ସେ ଦ୍ୱିତୀୟ ପୁରସ୍କାର ପାଇଥିଲୁଁ । ସେ ତା କ୍ଲାସ୍ ପରୀକ୍ଷାରେ ସେକେଣ୍ଡ ଥାର୍ଡ଼ ହେଉଥାଏ । ସେ ପଛେ ସ୍ୱାସ୍ଥ୍ୟ ବିଭାଗର ଜଏଣ୍ଟ ଡିରେକ୍ଟର ହେଲା । ତା ତଳ କ୍ଲାସ୍‌ରେ ତା ସାନ ଭାଇ ପଢୁଥାଏ, ସୁରେଶ୍ ତ୍ରିପାଠୀ । ପଛେ ସେ ମାଛକୁଣ୍ଡର ଚିଫ୍ ଇଞ୍ଜିନିୟର୍ ହେଲା । ତାଙ୍କର ମା ନ ଥିଲେ, ବାପା ଅଲେଖ ତ୍ରିପାଠୀ ପିଲା ଯୋଡ଼ିକର ବହୁତ ଯତ୍ନ ନେଉଥିଲେ । ନିଜେ ପାଠ ପଢ଼ାନ୍ତି । ତାଙ୍କ ଭାଇର ପୁଅ ଶଶୀଭୂଷଣ ତ୍ରିପାଠୀ ମୋ ଉପର

ଶ୍ରେଣୀରେ ଥିଲେ । ଭୈରା ଭାଇର ସାନଭାଇମାନେ କାହ୍ନୁ ଓ ଅମିକା ତଳ କ୍ଲାସ୍‌ରେ ପଢୁଥାନ୍ତି । ପ୍ରହ୍ଲାଦ ପଟେଲ ଥାଏ, ହରି ମହାନ୍ତି ଥାଏ, ଆଉ କିଏ ଓଡ଼ିଆ ପିଲା ଥିଲେ ନାଁ ମନେପଡୁ ନାହିଁ । ଛଅଶହ ଯାକେ ପିଲାଙ୍କ ଭିତରେ ସବୁ ମିଶି ଦଶ ଏଗାର ଜଣ ଓଡ଼ିଆ ପିଲା । ବର୍ଷେ ପରେ ସୁଭାଷ ପାତ୍ର ଆସିଲା, ମୋର ଦୁଇ କ୍ଲାସ୍ ତଳେ ନାଁ ଲେଖାଇଲା । ସ୍ପୋର୍ଟସ୍‌ରେ ଖୁବ୍ ଭଲ କରେ ବୋଲି ନାଁ ହେଲା । ବିଜନ ପାତ୍ର ପଛେ ଆସିଲା, ତା'ର ବି ଖେଳରେ ନାଁ ହେଲା ।

ସେତେବେଳେ ବଙ୍ଗଳା ଭାଷା ମତେ ଜଣା ନାହିଁ, ହିନ୍ଦୀ ଭାଷା ଜଣା ନାହିଁ, ପିଲାଙ୍କ ସଙ୍ଗେ ମୁଁ କଥାଭାଷା ହେଲି ଇଂରେଜିରେ । ଆମର ପରସ୍ପର ପ୍ରତି କୁତୂହଳ ହେଉଥାଏ । କିନ୍ତୁ ଇଂରେଜିରେ କଥାଭାଷା କଲେ ହାର୍ଦ୍ଦିକତା ଆସେ ନାହିଁ, ଖାଲି ବାଧ୍ୟରେ ପଡ଼ି କଥା କହିଲା ଭଳି । ସେମାନେ ମତେ ବଙ୍ଗଳାରେ କଥା କହନ୍ତି, ମୁଁ ବୁଝି ନ ପାରିଲେ ଇଂରେଜିରେ ବୁଝେଇ ଦିଅନ୍ତି । ଦେଖି ପାରିଲି, ଅନେକେ ଇଂରେଜି କହିବାକୁ କୁଣ୍ଠିତ, ଟାଣି ଓଟାରି କଥା କହିଲେ ବହୁତ ଭୁଲ୍ ହୁଏ, କେବେ କେବେ ଏମିତି ବି ହୁଏ, ଯାହା କହୁଥାନ୍ତି ତା'ର ଓଲଟା ଭାବ ପ୍ରକାଶ କରନ୍ତି । ଅନେକେ ତ ଆଶ୍ଚର୍ଯ୍ୟ ହେଲେ, ମୁଁ ବଙ୍ଗଳା ଜାଣେ ନାହିଁ କେମିତି ! ଭାବିଲେ, ବୋଧହୁଏ ମୁଁ ଛଟା ଗାଳୁଛି, ନ ହେଲେ ମୋ ଜ୍ଞାନର ବଡ଼େଇ ଦେଖାଉଛି । ସେମାନଙ୍କର ସେ ଭ୍ରମ ଖୁବ୍ ଚଞ୍ଚଳ ଦୂର ହେଲା । ମୁଁ ଓଡ଼ିଆରେ ଗୋଟିଏ ଗୋଟିଏ କରି କଥା କହିଲେ ସେମାନେ କିଛି କିଛି ବୁଝନ୍ତି, ମୁଁ ବି ତାଙ୍କ ବଙ୍ଗଳା କଥା କିଛି କିଛି ବୁଝିପାରେଁ । କେତେବେଳେ ଠାର ଠୁରରେ, କେତେବେଳେ ସେମିତି ନିଜ ନିଜ ଭାଷାରେ, କେତେବେଳେ ଇଂରେଜିରେ, କଥାଭାଷା ଟିକିଏ ଟିକିଏ ଚାଲେ, ପରସ୍ପର ପ୍ରତି ସ୍ନେହ ଶ୍ରଦ୍ଧା ବଢ଼ିବା ସଙ୍ଗେ ସଙ୍ଗେ ଭାବର ଆଦାନ ପ୍ରଦାନ ବଢ଼ିଗଲା । ମୁଁ ଅଳ୍ପ ଅଳ୍ପ ବଙ୍ଗଳା ଶିଖିଗଲି, ତା'ପରେ ଚଞ୍ଚଳ ଚଞ୍ଚଳ ଆସିଗଲା, ଆଉ ଅସୁବିଧା ହେଲା ନାହିଁ । ସଂସ୍କୃତ ଓ ସାହିତ୍ୟ କ୍ଲାସ୍ ଛଡ଼ା ଅନ୍ୟସବୁ କ୍ଲାସ୍‌ରେ ଇଂରେଜି ମାଧ୍ୟମରେ ପାଠପଢ଼ା ହୁଏ, ଶିକ୍ଷକମାନେ ଇଂରେଜିରେ ବକ୍ତୃତା ଦିଅନ୍ତି, ବୁଝାନ୍ତି, ମଝିରେ ମଝିରେ କେତେବେଳେ କେହି ତାଙ୍କ ନିଜ ନିଜ ଭାଷାରେ ଅର୍ଥାତ୍ ହିନ୍ଦୀରେ କି ବଙ୍ଗଳାରେ କିଛି କିଛି ବୁଝାଇ କହନ୍ତି ।

ପ୍ରଫୁଲ୍ଲଠୁଁ ବହି ମାଗି ମାଗି ପଢୁଥାଏ, କ୍ରମେ ମୋ ବହି ମଧ୍ୟ ବାଙ୍କିପୁରରୁ

କାହ୍ନୁଭାଇ କିଣି ଆଣି ଦେଲେ । ଘରେ ଅବସର ସମୟତକ ଦିନରାତି ପରିଶ୍ରମ କରି ମୁଁ ପଢ଼ା ହୋଇଥିବା ପାଠଯାକ ପଢ଼ୁଥାଏଁ । କଷ୍ଟ ସ୍ଥାନଗୁଡ଼ିକ କାହ୍ନୁଭାଇ ବୁଝେଇ ଦିଅନ୍ତି ଓ ଅଙ୍କ ବତେଇ ଦିଅନ୍ତି । କ୍ଲାସ୍‌ରେ ଯାହା ପଢ଼ା ହୁଏ ତାଙ୍କୁ ମୁଁ ମନଦେଇ ଶୁଣେଁ, ଖାତାରେ ଲେଖେଁ, ଘରେ ଆସି ପଢ଼ିଦିଏଁ ।

କ୍ଲାସ୍‌ରେ ଶିକ୍ଷକମାନେ ନିଜ ନିଜ ବିଷୟରେ ପିଲାଙ୍କୁ ପ୍ରଶ୍ନ ପଚାରନ୍ତି । ଜଣ ଜଣ କରି ପଚାରୁଥାନ୍ତି, ଯେ ନ କହିପାରେ ସେ ଠିଆହୋଇ ରହିଥାଏ, ଅନ୍ୟ ଜଣକୁ ପଚରା ହୁଏ । ମଝିରେ ଶେଷଆଡ଼କୁ ଥାଇ ମୋ ପାଳି ଆସିଲାବେଳେ ମୁଁ ଉତ୍ତର ଦିଏଁ । ଅନେକ ସମୟରେ ଶିକ୍ଷକ ପ୍ରଶ୍ନ ପଚାରନ୍ତି, ଉତ୍ତର ସେଠି ଲେଖିବାକୁ କହନ୍ତି । ତା'ପରେ ଖାତା ଦେଖିସାରି ଜଣ ଜଣ କରି ଡାକି ନିଜ ମନ୍ତବ୍ୟ ଦିଅନ୍ତି । ବଡ଼ ବିପଦ କଥା । ଭୁଲ୍ ହେଲେ ସମସ୍ତେ ହସିବେ । ଭଲ କଲେ ସମସ୍ତେ ପ୍ରଶଂସା କରିବେ ।

ଏମିତି ପାଠପଢ଼ା କଳା-କଳିରେ ମୋର ଆତ୍ମବିଶ୍ୱାସ ବଢ଼ିଗଲା, ଡର ଛାଡ଼ିଗଲା, କାରଣ ମୋର ଉତ୍ତର ଠିକ୍ ହୁଏ । କ୍ଲାସ୍‌ରେ କିଏ କେମିତି ପଢ଼େ ସେ ବିଷୟରେ ବି ମୋଟାମୋଟି ଧାରଣା ଆସିଗଲା । ପଛ ବେଞ୍ଚ ଆଡ଼କୁ ବେଶି ଫୁସୁରୁ ଫାସୁରୁ, ବେଶି ଗପ, ପାଠ ଭଲ ଶୁଭେ ନାହିଁ, ସେତେବେଳେ ମୋ ଆକାର ବି ସାନ । କ୍ରମେ ମୁଁ ଯାଇ ବସିଲି ଆଗ ବେଞ୍ଚରେ । କାହାରି ସେଥିରେ ଆପତ୍ତି ନ ଥାଏ । ମାଷ୍ଟରଙ୍କ ଆଖି ଆଗରେ ଥିରି ହୋଇ ବସିବାକୁ ପଡ଼ିବ, ସ୍ୱାଧୀନତା କମ୍ ।

ପଛେ ବଙ୍ଗାଳି ବିହାରୀ ଅନୁସାରେ ଭେଦ ଭାଙ୍ଗିଗଲା । ଆମ 'ଏ' ସେକ୍‌ସନ୍‌ରେ ବି କେତେ ହିନ୍ଦୀଭାଷୀ ଛାତ୍ର ରହିଲେ, କେତୋଟି ମୁସଲମାନ୍, ବେଶି ବିହାରି ।

ଏତେ ପିଲା, ବହୁତ । ପାଟ୍‌ନାରୁ ମୁଁ ୧୯୩୦ରେ ଚାଲିଆସିଛି । ଆଉ ସେମାନଙ୍କ ସଙ୍ଗେ ଦେଖା ହୋଇ ନାହିଁ । ଅଳ୍ପ କେତୋଟି ନାଁ ମନେଥିବ । ଅଳ୍ପ କେତେଜଣ ମୋର ବିଶିଷ୍ଟ ବନ୍ଧୁ ଥିଲେ, ତାଙ୍କ ସଙ୍ଗେ ମୋର ମନ ମିଳୁଥିଲା, ରୁଚି ମିଳୁଥିଲା, ପାଠପଢ଼ା ହେଉ ନ ଥିଲେ ଆମେ ଚୁପ୍‌ଚାପ୍ ହେଉଁ, କେବେ କେବେ ଏକାଠି ବୁଲିଯାଉଁ, କୌଣସି କୌଣସି ବିଷୟରେ ଆଲୋଚନା କରୁଁ । ଅନ୍ୟ ସମସ୍ତିଙ୍କ ସଙ୍ଗରେ ମୋର ବନ୍ଧୁତା ଥିଲା ।

ନାନା ବୟସର ନାନା ଆକାର ଓ ଆକୃତିର ପିଲା ଆମ ସଙ୍ଗେ ଥିଲେ । ମୋ ନିଜ ବୟସ ବାର ପୂରି ତେର, ଉଚ୍ଚତାରେ ମୁଁ ବୋଧହୁଏ

୪ ଫୁଟ୍ ହୋଇଥିବି, ମନେଅଛି ମୁଁ ସେତେବେଳେ ଖର୍ବ ଥିଲି, ହଠାତ୍ ଡେଙ୍ଗା ହେବାକୁ ଆରମ୍ଭ କଲି ୧୯୩୦ ପରେ । ସରୁ ସରୁ ହାତ ଗୋଡ଼, ଅଣଓସାର ଛାତି, ଛଡ଼ା ଛଡ଼ା ବେକ, ସାମ୍ନାରୁ ମୁହଁ ବୋଧହୁଏ ସରୁଆ ଦିଶେ, ଗାଲ ପୁଟୁକା ନୁହେଁ, ଥୋମଣି ଓ ଆଖିତଳର ହାଡ଼ର ଛାଞ୍ଚ ବାରିହୁଏ, କପାଳଟା ଟିକିଏ ଓସାରିଆ, ଦେହ ଅନୁପାତରେ ମୁଣ୍ଡଟା ଟିକିଏ ବଡ଼ ଦିଶେ, ବର୍ଣ୍ଣରେ କଳା, ଆଖି ଦି'ଟା ଡବ ଡବ କରି ଚାହେଁ, କ'ଣ ଭାବିଲା ପରି ଦିଶୁଥାଏ । ମୁଣ୍ଡରେ ବହୁତ ବାଳ, ବହଳ, ଅମାନିଆ ହୋଇ ବଙ୍କେଇ ହୋଇଯାଏ । ପିନ୍ଧିଥାଏ ଗୋଟାଏ ହାଫ୍ ପ୍ୟାଣ୍ଟ, ଅଧିକାଂଶ ଦିନ ଖାକିର, ତା ଭିତରେ କାମିଜ୍‌ର ତଳଟା ପଶିଥାଏ । ବୋଧହୁଏ ସୋନପୁରୀ ମୋଟା ଡୋରିଆ କନାର କାମିଜ୍, ପଛେ ସେ ହେଲା ଧଳା, ଡୋରିଆ, ଠିକ୍ ନାହିଁ କ'ଣ । ପାଦରେ ମୋଜା ନାହିଁ କି ଜୋତା କି ଚଟି ନାହିଁ । କେବେ କେବେ ଲୁଗା କାମିଜ୍ ପିନ୍ଧି ଯାଏ । ଖୁବ୍ ତରତର ହୋଇ ଲେଖେ, କଥା କହେ ଓ ଚାଲେ, ରାସ୍ତାରେ ଏକୁଟିଆ ଥିଲାବେଳେ ଅନେକ ସମୟରେ ନ ଚାଲି ଦୌଡ଼େ ।

ନିଜ ବିଷୟରେ ଏହିପରି ଧାରଣା ମୋର ମନେ ପଡ଼େ । ସେ କାଳର ଫଟୋରେ ବି ବୋଧହୁଏ ସେହିପରି ଦେଖିଛି ।

ଏଇ ଗୋଟାଏ 'ମୁଁ'କୁ ବୋହି ଆମେ ଜନ୍ମରୁ ମରଣଯାକେ ବାଟ ଚାଲୁଁ, କିନ୍ତୁ ପଗକୁ ପଗ କେତେ ଭିନେ ସେ ! ସେହି ଯେଉଁ 'ମୁଁ' ବୋଲି ପିଲାଟା, ମୁଁ ଜାଣିଚି ସେ ତା ବେଶଭୂଷା ପ୍ରତି ଉଦାସୀନ ଥିଲା । ତା ଛଡ଼ା ତା'ର ଅନ୍ୟ ଉପାୟ ବି ନ ଥିଲା । ସେ ବିଷୟରେ ସେ କେବେ ଭାବି ନାହିଁ । ସୋଡ଼ା ଦେଇ ବୋଉ ସବୁ କାଚି ସଫା ସୁତୁରା କରେ, ଲୁଗାକୁ କାମିଜ୍‌କୁ ସିଏଁ । ତାଳି ପକାଏ । ସେ କାମ ତା'ର । କ'ଣ ପିନ୍ଧିଲି କ'ଣ ଖାଇଲି ଚିନ୍ତା ନ ଥାଏ । ପାଟ୍‌ନାରେ ଶୀତଦିନେ ବଡ଼ ଶୀତ । ଉମ୍‌ହେଇଁ ଲାଗେ । ତଳେ ପରାହୁଏ ପରସ୍ତ ପରସ୍ତ ହୋଇ ଚାଉଳ ବସ୍ତାର ଅଖା, ତା ଉପରେ କନ୍ଥାର ଶେଯ ପଡ଼େ । ସୋନପୁରରୁ ଆସିଥାଏ ଗୋଟିଏ ରେଜେଇ, ସେଇଟି ଟିକିଏ ପାତଳ ହୋଇଯାଇଥାଏ । ତାକୁ ଘୋରି ହୋଇ ମୁଁ ସକାଳେ ଚଳପ୍ରଚଳ ହୁଏଁ, କେବେ କେବେ ସେହିପରି ଅବସ୍ଥାରେ ଜଗତ୍ ବାବୁଙ୍କ ଘରକୁ ତାଙ୍କ ପାଖରୁ ପାଠ ବୁଝିବାକୁ ଯାଇଛି । ସେ ମତେ ସେପରି ଦେଖିଲେ ଭାରି ପ୍ରଶଂସା କରନ୍ତି । ମୁଁ ସେ ପ୍ରଶଂସା ବି ବୁଝେ ନାହିଁ ।

ଆମ ସଙ୍ଗରେ ଯେଉଁମାନେ ପଢୁଥିଲେ ତାଙ୍କ ଭିତରେ ଅନେକେ, ବିଶେଷତଃ ମୋର ବିହାରି ସାଙ୍ଗ ପଢୁଆମାନେ ଆକାରରେ ଓ ବଳରେ ଖୁବ୍ ବଡ଼ ଥିଲେ, ଡେଙ୍ଗା ଡେଙ୍ଗା ନିଦା ନିଦା ପିଲା, ମୁଣ୍ଡରେ ଚୁଟି, କହନ୍ତି ଚୁର୍କି, ସେ ଚୁଟି ବିଷୟରେ କିଛି ପଚାରିଲେ ଚିଡ଼ନ୍ତି, ଚୁଟିକୁ ଟିକିଏ ଓଟାରିଦେଲେ ମାଡ଼ ଚଢ଼ାନ୍ତି । ସେମାନେ ବଙ୍ଗାଳି ପିଲାଙ୍କ ସଙ୍ଗରେ ବେଶି ମିଶନ୍ତି ନାହିଁ । କିନ୍ତୁ ବ୍ୟବହାର ଶାନ୍ତ, ଅମାୟିକ, ଭଦ୍ର । ନିଜ ନିଜ ଭିତରେ ଖୁସିରେ କୁସ୍ତି ଲଢ଼ନ୍ତି । ଖେଳପଡ଼ିଆରେ ଖୁବ୍ ଉତ୍ସାହରେ ଧାଁ'ଧପଡ଼ କରନ୍ତି, ଥୋଡ଼ାଏ ଧୁମ୍‌ଧାମ୍ କରି ବଳ ଦେଖାଇଲେ ତାଙ୍କୁ ଭଲ ଲାଗେ ।

ସେଥିରୁ ଶାନ୍ତ ସୁଶୀଳ ହାଜାରି ଖୋପ୍ ମୋର ମନେ ପଡ଼େ । ଡେଙ୍ଗା ହେବ ଛ ଫୁଟ୍ ଯାକେ, ନିଶ ଉଠିଥାଏ, ବୟସ ଏକୋଇଶି ହେବ । ଚୁପ୍‌ଚାପ୍ ପିଲା, ତୁଣ୍ଡ ମୁଣ୍ଡ ନାହିଁ, ମଫସଲରୁ ଆସେ, ବେଶି କଥା କହେ ନାହିଁ ।

ମନେପଡ଼େ ଆବିଦ୍ ଖାଁ, ଗୋରା, ମୋଟାସୋଟା, ହସିଲେ ପାଗଳ ପରି ହସେ । ସେ ବି ଛ' ଫୁଟିଆ । ସେ ସମସ୍ତଙ୍କ ସଙ୍ଗେ ବନ୍ଧୁତା କରିବାକୁ ଚାହେଁ, କିନ୍ତୁ ତା ମୁହଁକୁ ଆଖିକୁ ଚାହିଁଲେ ପିଲାଏ ଦୂରେଇ ଯାଆନ୍ତି । ମୁଁ ପାଟ୍‌ନାରୁ ଆସିଲା ପରେ ସେ ଗୋଟିଏ ନୂଆ ଫାଉଣ୍ଟେନ୍‌ରେ ମତେ ଚିଠିଟିଏ ଲେଖିଥିଲା, ଲେଖିଥିଲା ଯେ କଲମ କିଣି ଆଗ ସେ ମୋ ପାଖକୁ ଚିଠି ଲେଖୁଛି । ଆବିଦ୍ ପିନ୍ଧୁଥିଲା କନାର ଫୁଲପକା ଟୋପିଟିଏ, କେବେ କେବେ ଚୁଟିବାଲା କନାଟୋପି ।

ଅଠର ଉଣେଇଶି ବର୍ଷର ଟୋକା, ହଳଦିଆ ଗୋରା, କସରତିଆ ଚେହେରା, ପାଞ୍ଚଫୁଟ ସାତ ଇଞ୍ଚ ହେବ ହୁସେନ୍ । ପ୍ୟାଣ୍ଟ କୋଟ୍ ପିନ୍ଧି ନାଲିଆ ଡେଙ୍ଗା ଟୋପି ପିନ୍ଧି ଆସେ । ଚୁପ୍ ହୋଇ ବସେ । ସେ ଖେଳ ପଡ଼ିଆରେ ବି ଦିଶେ ନାହିଁ । ଶାନ୍ତ ପିଲାଟିଏ, ତା ଉପରେ ଯେ ଯେଉଁ ଅଦୋଉତି କରୁ ସେ ଛଳ କରେ ନାହିଁ, ହସିଦିଏ । କିଏ ବେଶି ଲାଗିଲେ କହେ "ତୁ ପିଲାଲୋକ, ତତେ ମୁଁ କ'ଣ କହିବି ?"

ଦିନେ ସରକାରଙ୍କ ଜଣେ ମନ୍ତ୍ରୀ ଫକୀରୁଦ୍ଦିନ ଆହମ୍ମଦ ଆମ ସ୍କୁଲ ଦେଖିବାକୁ ଆସିଲେ । ସେ ମୁସଲମାନ । ଆମ ଇତିହାସ ଶିକ୍ଷକ ମହମ୍ମଦ ଫଜଲ ଆଲିମ୍ ସାହେବ ସେଥିପାଇଁ ଉର୍ଦ୍ଦୁରେ ଗୋଟିଏ ଗଜଲ୍ ରଚନା କରିଥିଲେ । ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ ହୁସେନ୍ ସେ ଗଜଲ୍‌ଟି ବୋଲିଲା, କିଛି

ବୁଝି ହେଲା ନାହିଁ । କିନ୍ତୁ ଭଲ ଶୁଭୁଥାଏ । ତା'ଠୁଁ ଆହୁରି ଆଶ୍ଚର୍ଯ୍ୟର କଥା ଆମେ ସେତେବେଳେ ଦେଖିଲୁଁ, ହୁସେନ୍‌ର ଖେଳ କସରତ୍ । ସେ ତା କୋଟ୍ କାମିଜ୍ ଖୋଲିଦେଇ ଖାଲି ଦେହରେ ଠିଆ ହେଲା । ତା'ପରେ ଦୁଇଟା ଲମ୍ବା ଲମ୍ବା ଖଣ୍ଡା ଧରି ସେ ତାକୁ ନାନା ଉପାୟରେ ବୁଲେଇଲା, ଶେଷରେ ଆଗରେ ଗୋଟାଏ ପଛରେ ଗୋଟାଏ ଏଭଳି ଜୋର୍‌ରେ ବୁଲାଉଥାଏ ଯେ, ଲାଗୁଥାଏ ତା ଆଗରେ ଓ ପଛରେ ଦି'ଟା ଚକ ବୁଲୁଛି । ଆଉ ଜଣେ କିଏ ଗୋଟାଏ ଖଣ୍ଡା ଧରି ଠିଆ ହେଲା, ସେ ବି ମୁସଲ୍‌ମାନ୍ ପିଲା । ଦିହେଁ ଖଣ୍ଡା ଧରି କେଞ୍ଚାକେଞ୍ଚି ଭୁଷାଭୁଷି ହଣାହଣି ହେଉଥାନ୍ତି, ହୁସେନ୍ ବାରମ୍ବାର ଦେଖାଇ ହେଉଥାଏ କେମିତି ସେ ଇଚ୍ଛା କଲେ ତା ପ୍ରତିପକ୍ଷକୁ ଆଖି ପିଛୁଳାକେ ଦି'ଗର କରିଦିଅନ୍ତି । ତା'ପରେ ହୁସେନ୍ କେତେ ସାଧନ, ଭାଙ୍ଗଣ, ମାଂସପେଶୀ ନାଚ ଦେଖାଇଲା । ଚାରିଆଡ଼ ଧ୍ୱନି ଶୁଭୁଥାଏ । "ୱାଃ ପଠ୍ଠେ ! ୱାଃ ପଠ୍ଠେ" ହୁସେନ୍ ଖେଳ ସାରି ସଲାମ୍ କଲା । ମନ୍ତ୍ରୀ ଭାରି ଖୁସି ହୋଇ ତା ସଙ୍ଗେ ସେକ୍ ହ୍ୟାଣ୍ଡ୍ କଲେ, ସେ ବି କହିଲେ "ବାହାଦୂର !" ପୁଣି ହୁସେନ୍ ଚୁପ୍‌ଚାପ୍ ହେଲା । ଆଉ କେବେ ସ୍କୁଲ୍‌ରେ ତା ଖେଳ ଦେଖାଇ ନାହିଁ ।

ଆଉ ଜଣେ ପିଲା, ସିଉନନ୍ଦନ ପ୍ରସାଦ । ଆରା ଜିଲ୍ଲା ସ୍କୁଲ୍‌ରୁ ଆସିଲା, ନବମ ଶ୍ରେଣୀ ପରୀକ୍ଷାରେ ସେ ସେକେଣ୍ଡ୍ କି ଥାର୍ଡ୍ ହେଲା, ୧୦ମ ଶ୍ରେଣୀରେ ଓ ଟେଷ୍ଟରେ ସେକେଣ୍ଡ ହେଲା କିନ୍ତୁ ମ୍ୟାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାଶ୍ କଲେ ବି ସେ ଖାଲି ଡିଷ୍ଟ୍ରିକ୍ଟ ସ୍କଲର୍ସିପ୍ ଟ ୧୦ଙ୍କା ପାଇଲା ବୋଲି ଦେଖିଲି । ପଛେ ପୁଣି ତା ନାଁ ଦେଖିଲି ଇଂରେଜି ଏମ୍.ଏ. ପାଶ୍ ତାଲିକାରେ, ସେ ସେକେଣ୍ଡ କ୍ଲାସ୍‌ରେ ସେକେଣ୍ଡ ହୋଇଥାଏ ପାଟ୍‌ନା କଲେଜ୍‌ରୁ । ସ୍କୁଲରେ ଦେଖିଥିଲି ସେ ସବୁବେଳେ ପଢୁଥାଏ, ରାସ୍ତାରେ ଚାଲି ଚାଲି ଗଲାବେଳେ ସୁଦ୍ଧା ସେ ବହି ପଢ଼ି ପଢ଼ି ଚାଲିଥାଏ, ତାକୁ ବିପଦରୁ ଠେଲି ନିରାପଦ ରଖିବାକୁ ଅନ୍ୟାନ୍ୟ ସହପାଠୀ ତା ସହିତ ଥାଆନ୍ତି । ତା ବୟସ ଟିକିଏ ବେଶି ହୋଇପାରେ । ବିହାରି ପିଲାମାନେ ତା'ଠି ବହୁତ ଆଶା ରଖିଥାନ୍ତି । ସେମାନେ କହନ୍ତି ସେ ବହୁତ ଜାଣିଛି, ସାହିତ୍ୟରେ ଖୁବ୍ ଟାଣ ।

ତେୱାରି ଗୋରା, ନେଳିଆ ଆଖି, ସବୁ କିନ୍ତୁ ଖୁବ୍ ବଙ୍କୁଆ । ସେ ସ୍ପୋର୍ଟସ ଓ ଫୁଟ୍‌ବଲ୍‌ରେ ଖୁବ୍ ଭଲ, ସେଇଥିରେ ତା ଝୁଙ୍କ । ଚନ୍ଦ୍ରିକା ପ୍ରସାଦ, ଶିବକାନ୍ତ ସହାୟ, ଶ୍ୟାମଜୀ ଏମାନେ ଆମ ସାଙ୍ଗର । ଡେଙ୍ଗା,

ମୋଟା ମଥୁରା ପ୍ରସାଦ ଦିଶେ ସତେ ଯେମିତି ତିରିଶି ବର୍ଷର ପରି ।

କେତେ ପ୍ରସାଦ, ବର୍ମା, ଲାଲା, ଶର୍ମା ଆଉ କେତେ ସାକ୍ସା । ମୋ ତଳ କ୍ଲାସ୍‌ରେ ଥାଏ ବିନ୍ଧ୍ୟେଶ୍ୱରି ପ୍ରସାଦ ଶର୍ମା, ତା କ୍ଲାସ୍‌ରେ ଫାଷ୍ଟ ହୁଏ, ଡିବେଟିଂରେ ଭଲ, ସେ ବି ଟିକିଏ ସର୍ଦ୍ଦାରିଆ । ମୁଁ ଜାଣେ ନାହିଁ ସେହି ପିଲାଟି ପଛେ ସ୍ୱାଧୀନ ଭାରତରେ ବିହାରର ମନ୍ତ୍ରୀ ହେଲା କି କ'ଣ ।

ପୂଜ୍ୟ ରାଜେନ୍ଦ୍ର ପ୍ରସାଦ ଆରମ୍ଭ କରିଥାନ୍ତି, ଗୋଟିଏ "ୟଂ ବିହାର" ଆନ୍ଦୋଳନ । ବିହାରି ପିଲାଙ୍କ ଭିତରେ ଆନ୍ଦୋଳନ ପଡ଼ିଥାଏ । ବେଳେ ବେଳେ ବିହାରିମାନଙ୍କର ସଭା ହୁଏ, ପିଲାଏ ବି ତାଙ୍କ ସଭାକୁ ଯାଆନ୍ତି । କେମିତି ବିହାରର ଉନ୍ନତି ହେବ ସମସ୍ତେ ସମୃଦ୍ଧ ହେବେ ସେଇ ଚିନ୍ତା "ଆମେ ବିହାରି, ଏ ଦେଶ ଆମର, ବୁଦ୍ଧଦେବ ଆମର, ମଗଧ ସାମ୍ରାଜ୍ୟ ଆମର, ଆମର ଗୌରବ ରାଜେନ୍ଦ୍ର ପ୍ରସାଦ, ସାହିତ୍ୟରେ ମୁନସି ପ୍ରେମଚାନ୍ଦ" ଏହିପରି ସେମାନେ ଗର୍ବ କରୁଥାନ୍ତି । ସେମାନଙ୍କର ମନରେ ଖୁବ୍ କ୍ଷୋଭ ଥାଏ ଯେ, କେଉଁଠି ହେଲେ ସେମାନେ ପ୍ରାଧାନ୍ୟ ପାଇପାରୁ ନାହାନ୍ତି । ଚାକିରି ବାକିରିରେ ବହୁତ ବଙ୍ଗାଳି, ସେକ୍ରେଟେରିଏଟ୍‌ରେ, ବିଭିନ୍ନ ଶିକ୍ଷାନୁଷ୍ଠାନରେ ସେହିମାନଙ୍କର ବାହୁଲ୍ୟ ଓ ପ୍ରାଧାନ୍ୟ, ଡାକ୍ତର ଇଞ୍ଜିନିୟର ଆଦି ବେଶି ସଂଖ୍ୟାରେ ସେହିମାନେ, ସେମାନେ ଶୋଷକ ଓ ଶାସକ, ସେମାନେ ବିହାରିଙ୍କୁ ହେୟଜ୍ଞାନ କରି କହନ୍ତି "ମେଢ଼େ, ଛାତ୍ତୁ ଖୋଟ୍ଟା" ଇତ୍ୟାଦି । ହିଂସା ଓ ଅଶାନ୍ତିର ବିହନ ବୁଣା ଚାଲିଥାଏ କିନ୍ତୁ ଗଣ୍ଡଗୋଳ କଳିଦଙ୍ଗା ହୁଏ ନାହିଁ । ଭିତରେ ଭିତରେ ତୁଣ୍ଡେ ତୁଣ୍ଡେ ପ୍ରଚାର ହେଉଥାଏ "ଉଠ ବିହାରି, ଲାଗ୍", ପଦାରେ ଭଦ୍ରତା, ସୌଜନ୍ୟ କେବେ ଭାଙ୍ଗେ ନାହିଁ, ସାଧାରଣ ଭଦ୍ରଲୋକମାନେ ଏଭଳି ପ୍ରଚାର ପ୍ରତି ସତେ ଯେମିତି ଉଦାସୀନ । ଏତିକି ନିଘାରେ ପଡ଼େ ଯେ, ବିହାରି ଛାତ୍ରମାନଙ୍କର ମେଣ୍ଟ ଓ ଗୋଠ ଭିନ୍ନେ ।

ବିହାରି ପିଲାଙ୍କୁ ବିହାରୀ ବୋଲି ଭାବିବା କି ଭାବି ହତାଦର କି ତାଚ୍ଛଲ୍ୟ କରିବା ମୁଁ ମୋ ଚିହ୍ନା ଜଣା ବଙ୍ଗାଳି ପିଲାଙ୍କଠି ଦେଖିନାହିଁ । କ୍ଲାସ୍ ପିଲାଙ୍କୁ ଜାତି ଧର୍ମ ଭାଷା ଘେନି ଭିନ୍ନେ ଜନ୍ତୁ ବୋଲି ଭାବିବା ବୋଧହୁଏ ଛାତ୍ରମାନଙ୍କର ସ୍ୱାଭାବିକ ପ୍ରବୃତ୍ତିର ବାହାରେ । ସେମାନେ ନିଜ ଭାଷା ଛଡ଼ା ଅନ୍ୟ ଭାଷା ସେତେ ଭଲ କରି ଜାଣି ନ ଥିଲେ, ଯେ ତାଙ୍କ ଭାଷାରେ କଥା କହିଲା, ସେମାନେ ତା ସହିତ ଦୁଃଖସୁଖ ହେଲେ ମିଶିଲେ, ସ୍ୱଭାବ ଏହିପରି । ତେଣୁ ସହଜରେ ବଙ୍ଗାଳି ପିଲା ଅନ୍ୟ ବଙ୍ଗାଳି

ପିଲାଙ୍କ ସଙ୍ଗେ ମିଶୁଥିଲେ, ବୁଲୁଥିଲେ । ବିହାରି ପିଲାଙ୍କର ଓ ତାଙ୍କର ଲୁଗା ପିନ୍ଧିବା ବାଗ ଭିନ୍ନେ, ରୁଚି ବି ଭିନ୍ନେ ଜଣାପଡୁଥାଏ । ତାଙ୍କ ଭିତରେ ବି ନାନା ପ୍ରକାରର ପିଲା ଥିଲେ ।

ଥାଏ ବିଜନ ମଜୁମ୍‌ଦାର । ବୟସରେ ମୋଠୁ ପାଞ୍ଚ ଛ' ବର୍ଷ ବଡ଼ ହେବ, ଖୁବ୍ ଡେଙ୍ଗା, ଗୋରା, ଲମ୍ବା ପଞ୍ଜାବୀ ପିନ୍ଧେ, ଖୁବ୍ ଭଦ୍ର ବ୍ୟବହାର । ତା ପାଖରେ ସବୁବେଳେ ନାସ-ଡବାଟିଏ ଥାଏ । ସେ ମଝିରେ ମଝିରେ ନାସ ଶୁଙ୍ଘେ, ପାଠପଢ଼ା ହେଲାବେଳେ ପଛ ବେଞ୍ଚରୁ ତା'ର ଛିଙ୍କ ଶୁଭେ । ବେଳେ ବେଳେ ଅନ୍ୟମାନେ ତାଠୁଁ ନାସ ଟିକିଏ ଟିକିଏ ନିଅନ୍ତି । ଦିନେ ଦିନେ ଶିଖାଶିଖି ହୋଇ ଅନେକେ ଏକା ସମୟରେ ନାସ ଶୁଙ୍ଘନ୍ତି ଓ କ୍ଲାସଯାକ ହାଁଛୋ ହାଁଛୋ ଶବ୍ଦ ଶୁଭୁଥାଏ ।

''ବିଜନ୍‌ଦା ଏକ ଟିପ୍ ନସ୍ୟ !'' ସେ ଡବା ବଢ଼େଇ ଦିଏ । ସେ ନାସର ନାଁ 'ପରିମଳ' । ରାତି ଉଜାଗର ହୋଇ ପରୀକ୍ଷା ପଢ଼ା ପଢ଼ିବାକୁ 'ପରିମଳ' ମୋର ଖୁବ୍ କାମରେ ଲାଗିଥିଲା ।

ବିଜନର ହସ ହସ ମୁହଁ ଦିଶି ଯାଉଛି । ତା ଫରଚା ମୁହଁଟି ଆଲୁଅ ହୋଇଯାଏ । ଜହ୍ନ ଆଲୁଅ ପରି ସ୍ନିଗ୍ଧ ହସ । ସେ ସମସ୍ତିଙ୍କର ଶୁଭାକାଂକ୍ଷୀ । ବେଳେବେଳେ ବଙ୍ଗଳା ଉପନ୍ୟାସ ଆଣେ, ଦିଏ ।

ସେତିକି ଉଞ୍ଚ ବଙ୍କାଇ ଚାଟାର୍ଜିର ଦେହରେ ମୁହଁରେ ସତେ ଯେମିତି ଆବଶ୍ୟକ ଅପେକ୍ଷା ଅଧିକ ଚମଡ଼ା । ସେ ଗୋଟିଏ ଭଲ ଫୁଟ୍‌ବଲ୍ ଖେଳାଳୀ ।

ଡେଙ୍ଗା ଶୈଳେନ୍ ବାନାର୍ଜି ଆମ ସ୍କୁଲ ଫୁଟ୍‌ବଲ୍ ଟିମ୍‌ର ଗୋଲ୍‌କିପର୍ । ସେ ଖୁବ୍ ଭଲ ଗୋଲ୍‌କିପର୍, ଫୁଟବଲ୍ ମ୍ୟାଚରେ ପ୍ରାଣପଣେ ଗୋଲ୍ ରୋକେ, ନାନା କୌଶଳ ଦେଖାଏ । ଥରେ ଦେଖିଥିଲି କାହାର ଗୋଟାଏ ଲଂ କିକ୍‌ରେ ବଲ୍ ଆସି ତା ପେଟରେ ବାଜିଲା ଓ ସେ ବେହୋସ ହୋଇ ପଡ଼ିଲା । ଖୁବ୍ ହୋ ହୋ ପଡ଼ିଗଲା ।

ଆମର ନାମଜାଦା ସେଣ୍ଟର ଫରଓ୍ୱାର୍ଡ଼ ଥିଲା ଶିବେନ୍ ରାୟ । ବୟସ ସତର ଅଠର ହେବ । ଡେଙ୍ଗା, ଗୋରା ମଜବୁତ—ଗଢ଼ଣ, କୁଞ୍ଚକୁଞ୍ଚିଆ ମୁଣ୍ଡବାଳ ମଝିରୁ ଦି'ଫାଳ କରି କୁଣ୍ଡାଏ । ସେ ଫୁଟ୍‌ବଲ୍ ଖେଳରେ ଅନ୍ୟମାନଙ୍କୁ ତାଲିମ୍ କରେ ।

ଅତୁଲର ଚେକା ମୁହଁ, ସାନ ସାନ ଆଖି, ଯେ ଯାହା କହୁ ଛଳ

କରେ ନାହିଁ । ବଡ଼ ପିଲାଟିଏ ।

ଅନିଲ ରାୟ ଅଷ୍ଟାବକ୍ର ପରି ଚାଲେ, ତା ଗୋଡ଼ ଦୋ'ଟି ଦୁର୍ବଳ, ଗୋଟିଏ ଗୋଡ଼ ଛୋଟା, କିନ୍ତୁ ସେ ପ୍ୟାରେଲାଲ୍ ବାର୍ କରେ, ତା'ର ହାତ ଦି'ଟାରେ ଖୁବ୍ ବଳ ।

ଫିଟ୍ ଫାଟ୍ ପୋଷାକ ପିନ୍ଧି ଖୁବ୍ ଫୁର୍ତ୍ତିରେ ଛାତି ଫୁଲେଇ ଚାଲି ଚାଲି ଆସେ ସୁନୀଲ୍ ସେନ୍ । ବୟସ ସତର ଅଠର ହେବ, ଦମ୍ଭିଲା ଗଢ଼ଣ, ବଡ଼ ମୁହଁ, ଚଟା, ସାନ ସାନ ଆଖି, ଗୋଟାଏ ଶୁଆଥଣ୍ଟିଆ ନାକ, ଉଞ୍ଚ କପାଳ ଢଙ୍କି ପଡ଼ିଛି ସାନ ସାନ କୁଞ୍ଚୁକୁଞ୍ଚିଆ ବାଳ ଭିତରେ । ବର୍ଣ୍ଣରେ ଖୁବ୍ ଗୋରା । ସେ କୁଆଡ଼େ କେଉଁ ବଡ଼ ଅଫିସରର ପୁଅ, ତା'ର ବହୁତ ଟିଉସନ୍ ମାଷ୍ଟର । ସେ ସବୁ କଥାକୁ ହସରେ ଉଡ଼ାଇଦିଏ । କ୍ୟାରିକେଚର କରେ, ବେଳେ ବେଳେ ଯାକୁ ତାକୁ ଥଟ୍ଟା କରେ । ଅଭିନୟ କଳାପରି ମୁହଁର ଭଙ୍ଗୀ ଓ ହାବଭାବ ବଦଳାଇ ଦିଏ । ସେ ବି ଡେଙ୍ଗା ପିଲାଟିଏ । ଶାନ୍ତ ଓ ଧୀର, କାହା ସହିତ ତା'ର କେବେ କଳିଗୋଳ ନ ଥାଏ । ସେ ଆମ ପଡ଼ାରେ ଥାଏ, ପ୍ରଫୁଲ୍ଲ ଦେ' ର ସାଙ୍ଗ ।

ସେମାନଙ୍କର ଆଉ ଗୋଟାଏ ସାଙ୍ଗ ସୁରେଶ ଦତ୍ତ । ହାଡୁଆ ହୋଇ ମୋରି ବୟସର ପିଲାଟିଏ । ତା ଘରେ ବ୍ୟାଡ଼ମିଣ୍ଟନ୍ ନେଟ୍ ଥାଏ ଓ ତାଙ୍କ ହତାରେ ଖେଳ ହୁଏ, ସେଠିକି ମୁଁ, ପ୍ରଫୁଲ୍ଲ ଓ ଅମିୟ ବି ଯାଉଁ । ସେ ଇଞ୍ଜିନିୟରିଂ ପାଶ୍ କଲାପରେ ଥରେ ତାକୁ କଟକରେ ଦେଖିଥିଲି, ତା ବାପା ବୋଧହୁଏ ଓଡ଼ିଶା ସେକ୍ରେଟେରିଏଟ୍‌କୁ ବଦଳି ହୋଇଥିଲେ ।

ସେମିତି ଆଉ ଗୋଟିଏ ସାଙ୍ଗ ବିରେନ୍ ଦେ, ଡାକ ନାଁ ରୁପା । ତା ସାନ ଭାଇ ସୋନା । ତାଙ୍କ ବାପା ରମେଶ ଦେ ମୋ ବଡ଼ ଭାଇଙ୍କର ସହକର୍ମୀ ଥିଲେ । ବୀରେନ୍‌ର ମୋର ଖୁବ୍ ପଟୁଥିଲା । ଏକାଠି ଖେଳୁଥିଲୁଁ । ପଛେ ୧୯୪୭ରେ କି କେବେ କଟକରେ ଦେଖିଥିଲି, ସେ କଟକରେ ଚାକିରିଟିଏ କରୁଥାଏ, କଟକରେ ବିଭା ହୋଇଥାଏ । ପରିଷ୍କାର ଓଡ଼ିଆ କହୁଥାଏ । ତା'ପରେ କୁଆଡ଼େ ଗଲା ।

ମନୋରଞ୍ଜନ ମୁଖାର୍ଜୀ ମୋର ଆଉ ଗୋଟିଏ ସାଙ୍ଗ, ତା'ର ଉଚ୍ଚାଶା ଥାଏ, ସେ ତା ବାପା ପରି ରେଲ୍‌ରେ ଗାର୍ଡ଼ ସାହେବ ହେବ । ପଛେ ଆମେ ବସା ବଦଳାଇଲା ପରେ ଠିକ୍ ତା ବସା ପାଖେ ରହିଲୁଁ, ରେଲ୍

ଲାଇନ ସାମ୍ନା ।

ସମରେନ୍ଦ୍ର ମିତ୍ର ପଛେ ଓଡ଼ିଶାରେ ଚାକିରି କରି ରହିଲା । ସେତେବେଳେ ସେ ଓଡ଼ିଆ ଜାଣି ନ ଥିଲା ।

ସାନ ଗୌରୀ ବଡ଼ ଗୌରୀ ବୋଲି ଦି'ଜଣ ଥିଲେ, ଶାନ୍ତ ପିଲା ଯୋଡ଼ିଏ ।

ସୁନୀଲ ସେନ୍ ବ୍ରାହ୍ମଣ । ଜ୍ୟାକବ୍ ସରକାର ଖ୍ରୀଷ୍ଟିଆନ । ପୂରା ନାଁ ଜ୍ୟାକବ୍ ନିଖିଲ୍ କାନ୍ତି ସରକାର । ମୋଟା ପିଲାଟିଏ, ତେଣୁ ଥଟ୍ଟାର ଶରବ୍ୟ ହୁଏ । ତା ବାପା ପାଦ୍ରୀ । ଜ୍ୟାକବ୍ ପୂରା ପ୍ୟାଣ୍ଟ୍ କୋଟ୍ ଆଦି ପିନ୍ଧି ଆସେ, ସେ ଟରଟର ହୋଇ ଚାଲିଲେ ଦେଖିଲେ କୌତୁକ ଲାଗେ । ତା ସାନ ଭାଇ ଜେମ୍ସ୍ ଆମ ତଳ କ୍ଲାସ୍‌ରେ ପଢ଼େ ।

ଚଣ୍ଡୀଦାସ ମୁଖାର୍ଜୀ ଖୁବ୍ ଖୁଦୁବୁଦିଆ ପିଲା ଥିଲା । ଫୁଟ୍‌ବଲ ଖେଳେ, କଳିଗୋଳ ଯୁଦ୍ଧ ଆଦିକୁ ସବୁବେଳେ ଆଗୁସାର ବୋଲି ପିଲାଏ କୁହନ୍ତି । ତା'ର ଯାହା 'ଦାବି' ସେ ତା କରାଇବାକୁ ଝୁଙ୍କ ଲଗାଏ । ବୟସରେ ଓ ଆକାରରେ ବଡ଼ ।

ବିମଲ ବି ଗୋଟିଏ ବଡ଼ ପିଲା, ଉପନ୍ୟାସ ଖୁବ୍ ପଢ଼େ, କ୍ୟାରମ୍ ଆଦି କେତେ ପ୍ରକାର ଖେଳରେ ସେ ନାଁ କରିଥିଲା । ବୋଧହୁଏ, କବିତା ବି ଲେଖୁଥିଲା ।

ମୋର ଆହୁରି ଘନିଷ୍ଠତା ଥିଲା ଅନ୍ୟ କେତୋଟି ପିଲାଙ୍କ ସହିତ । ଜଣେ ଅନିଲାନନ୍ଦ ସାହା ମୋରି ବୟସର ପିଲାଟିଏ । ଆଖିରେ କଳା ଫ୍ରେମର ଗୋଲ ଗୋଲ ଚଷମା, ମୁହଁଟି ଗୋଲ, ଅଳ୍ପ ହସେ, ଖୁବ୍ ହାର୍ଦ୍ଦିକ ମିଠା ହସ । ବ୍ୟବହାରରେ ସଂଯମ, ରୁଚି ଶାଳୀନତା, ମୁହଁଟି ସବୁବେଳେ ଗମ୍ଭୀର, କ'ଣ ଭାବୁଥାଏ, ମନଦେଇ କଥା ଶୁଣେ, ତା'ର ଆଲୋଚନା ଖୁବ୍ ଯୁକ୍ତି-ଯୁକ୍ତ । ସେ ଖୁବ୍ ବଡ଼ଲୋକର ପୁଅଟିଏ । ବାପା ଜଣେ ବଡ଼ କର୍ମଚାରୀ । ବଡ଼ଭାଇ ବିଖ୍ୟାତ ପଣ୍ଡିତ । କିନ୍ତୁ ତାଠିଁ କୌଣସି ପ୍ରକାର ଛଇ କି ଅଭିମାନ ନ ଥାଏ । ଅତି ସାଧାସିଧା । କ୍ଲାସ୍‌ରେ ସେ ଗୋଟିଏ ଖୁବ୍ ବୁଦ୍ଧିମାନ ଛାତ୍ର । ଭଲ ପଢ଼େ, ନାନା ସଦ୍‌ଗୁଣ ଓ ନୀତି ଅଭ୍ୟାସ କରେ, ସେ ବିଷୟରେ ସେ ଆଲୋଚନା କରେ । ତା'ର ଗୋଲ ଗୋଲ ସ୍ପଷ୍ଟ ଅକ୍ଷର, ସ୍ପଷ୍ଟ ଭାବ, ଥଣ୍ଡା ମୁଣ୍ଡ, ଶାନ୍ତ ସ୍ୱଭାବ । ଭାରତର ଆଦର୍ଶ ଭାରତର ସ୍ୱାଧୀନତାର ପନ୍ଥା । ସ୍ୱାମୀ ବିବେକାନନ୍ଦ ଆଦି ପ୍ରାତଃସ୍ମରଣୀୟ ଗୁରୁମାନଙ୍କ ନୀତିଶିକ୍ଷା

ଏ ସବୁଥିରେ ସେ ପିଲାଟି ବହୁତ ଆଗ୍ରହୀ ଥିଲା । ପାଠରେ ସେ ଓ ମୁଁ ପ୍ରାୟ ପାଖ ପାଖ ଥିଲୁଁ । ଗୋଟାଏ ଖଣ୍ଡେ ପରୀକ୍ଷାରେ ସେ କେତେ ପାହାଚ ତଳକୁ ଚାଲିଗଲା, କିନ୍ତୁ ମାଟ୍ରିକ୍ୟୁଲେସନ୍‌ରେ ବିହାର ଡିଭିଜନରେ ପ୍ରଥମ ସ୍ଥାନ ପାଇ ଟ ୧୫ ଙ୍କା ବୃତ୍ତି ପାଇଲା । ତା'ପରେ ତା ଖବର ମୁଁ ପାଇନାହିଁ ।

ସୁରେଶ ରାୟ ଗୋଲଗାଲ ଶାନ୍ତ ଶିଷ୍ଟ ଭଦ୍ର ପିଲାଟିଏ, ତା'ର ନୀରବ ସୌଜନ୍ୟ, ଭଦ୍ରତା ଓ ବିନୟ ମୁଗ୍ଧ କରେ । ତା ବାପା ବି ସେକ୍ରେଟେରିଏଟ୍‌ରେ ଜଣେ ବଡ଼ କର୍ମଚାରୀ । ତା ଘରେ ଆଲମାରିରେ ଦାମୀ ଦାମୀ ଇଂରେଜି ବହି, କେତେଥର ମୁଁ ସେଠୁ ବହି ମାଗି ଆଣିଛି । ଶୁଣିଲି ପଛେ ସେ ଡାକ୍ତର ହେଲା, ମେଡ଼ିକାଲ୍ କଲେଜରେ ଅଧ୍ୟାପକ ହେଲା ।

ଗୋରା ପାତଳ ହସହସ ସୁହାସ ରାୟ ଗୁଲୁରୁ ଗୁଲୁରୁ କରି କଥା କହେ, ଖୁବ୍ ଶାନ୍ତ ଓ ସଂଯତ । ସେ ଚୁପ୍‌ଚାପ୍ ପିଲାଟିଏ, ଭଲ ଗୀତ ଗାଏ । ଅନେକ ଥର ମୋ ସାଙ୍ଗରେ ଖେଳେ । ପଛେ ଶୁଣିଲି, କଲିକତାରେ ସେ ଜଣେ ବହୁ ଲକ୍ଷପତି ବଡ଼ ବ୍ୟବସାୟୀ ହେଲା ।

ସୁକୁମାର ରାୟ ବହୁତ ଦୂରରୁ ଆସେ । ଭଲ ପଢ଼େ । ହାଇକୋର୍ଟରେ ତା ବାପା ଜଣେ କର୍ମଚାରୀ । ବହୁତ ଦିନଯାକେ ସେ ଓ ମୁଁ ପାଖ ପାଖ ବସୁଥିଲୁଁ । ବୁଦ୍ଧିଆ ପିଲାଟିଏ ।

ଗୋଟିଏ ଆଶ୍ଚର୍ଯ୍ୟ ପ୍ରକାର ପିଲା ଥିଲା କେଷ୍ଟୋ ଲେଖା ନାଁ କୃଷ୍ଣଚନ୍ଦ୍ର ଦାସଗୁପ୍ତ । ଅନିଲ ଓ ସୁରେଶ ରାୟଙ୍କ ବାପାଙ୍କ ପରି ତା ବାପା ବି ସେ କାଳର ଜଣେ ଉଚ୍ଚପଦସ୍ଥ ଅଧିକାରୀ । ମୁଁ ତାଙ୍କୁ ଦେଖିଥିଲି, ଗମ୍ଭୀର ପାତଳ ମଣିଷଟିଏ, ବୁଲି ବାହାରିଥାନ୍ତି । ନିଜେ ସେ ସ୍ୱାସ୍ଥ୍ୟରେ ଦୁର୍ବଳ ବୋଲି କି କ'ଣ, ସେ ଚାହୁଁଥିଲେ କେଷ୍ଟୋ ପହିଲ୍‌ମାନ ହେଉ । ତାକୁ ପ୍ରଚୁର ଦୁଧ ପିଇବାକୁ ଦିଆହୁଏ ଓ ଦୁଇଜଣ ପହିଲ୍‌ମାନ ଆସି ତାକୁ କୁସ୍ତି କସରତ୍ ଶିଖାନ୍ତି । ସେ କ୍ଲାସ୍‌ରେ କୁସ୍ତି ପହିଲ୍‌ମାନି କଥା ଗପେ । ଟେବୁଲ୍ ବି ବାଡ଼ାଏ, ବଳ ଦେଖାଇହୁଏ । ସେ ଆକାରରେ ଖର୍ବ ଥିଲା, ତା ସାନ ଦେହ ଟାଣ କିନ୍ତୁ ମୋଟା ନୁହେଁ, ଖାଲି ବେକଟା ମୋଟା, ତାଠିଁ ପହିଲ୍‌ମାନର କୌଣସି ଚିହ୍ନ ବର୍ଣ୍ଣ ନ ଥିଲା, ସେ ବର୍ଣ୍ଣରେ ଗୋରା, ରାଗିଗଲେ ମୁହଁ ନାଲି ପଡ଼ିଯାଏ, ସେ ହାତ ଉଞ୍ଚେଇ ମାଡ଼ ଲାଗିବାକୁ ଚମକି ଆସେ । ପାଠପଢ଼ାରେ ସତେ ଯେମିତି ତା'ର ମନ ନ ଥାଏ, ପଛେ ଆବିଷ୍କାର

କରାଗଲା, ଖାଲି ପହିଲମାନି ନୁହେଁ, ଓସ୍ତାଦୀ ହିନ୍ଦୀ ଗୀତ ଶିଖିବାକୁ ବି ତା'ର ଖୁବ୍ ଆଗ୍ରହ । ମୁଁ ପାଟନାରୁ ଚାଲି ଆସିବା ପରେ ସେ ଓସ୍ତାଦ ଗାୟକ ବୋଲି ନାଁ ଅର୍ଜିଲା ବୋଲି ବି ମୁଁ ଶୁଣିଛି । ଭାରି ଝୁଙ୍କି ପିଲା ଯେଉଁଥିରେ ଝୁଙ୍କ୍ ହେବ ସେଥିରେ ମାତିଯିବ । ନବମ ଶ୍ରେଣୀରେ ହଠାତ୍ ତାର ଝୁଙ୍କ୍ ହେଲା ସେ ଭଲ ପାଠ ପଢ଼ିବ । ଶୁଣାଗଲା ତା ପାଇଁ ତିନି ଚାରିଜଣ ପ୍ରାଇଭେଟ୍ ଟିଉଟର ରହିଲେଣି, ବ୍ୟବହାରର ପରିବର୍ତ୍ତନ ବାରିହେଲା, ସେ ଆଉ ଗୋଳମାଳ କରୁନାହିଁ, ଆଗ ବେଞ୍ଚରେ ବସୁଛି, ପାଠପଢ଼ା ହେଲାବେଳେ ମନଦେଇ ଶୁଣୁଚି । କହିଲା–''ଫକ୍ଡାମି ବହୁତ କଲି, ଆଉ ନ କଲେ ଭଲ ।'' ବାର୍ଷିକ ପରୀକ୍ଷାରେ ସେ କାହିଁ କେଉଁ ତଳୁ ଉଠି ପାଞ୍ଚ କି ସାତ ସ୍ଥାନ ହେଲା ଭଳି ନମ୍ବର ପାଇଲା । କ୍ଲାସ୍ ଟେନ୍‌ର ବାର୍ଷିକ ପରୀକ୍ଷାରେ ବି ସେହିପରି । ଛାତ୍ର ହିସାବରେ ତା ପରିବର୍ତ୍ତନ ବିସ୍ମୟକର । ମାଟ୍ରିକ୍ୟୁଲେସନ୍‌ରେ ଅଙ୍କ ପରୀକ୍ଷା ଉତ୍ତାରୁ ଦେଖିଲି, କେଷ୍ଟୋ ଭାରି ରାଗିଛି, ପ୍ରଶ୍ନ କାଗଜକୁ ବୋଧହୁଏ ଟିକି ଟିକି କରି ଚିରିଦେଲା, ବୋଧହୁଏ ସେତେ ଭଲ ହେଲା ନାହିଁ । ପୂର୍ବେ ଯେଉଁ ପିଲାଟି କୌଣସିମତେ ପାଶ୍ କରିଯାଉଥିଲା, ମ୍ୟାଟ୍ରିକ୍ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀ ପାଇ ପାଟନା ଜିଲ୍ଲାରେ ଦ୍ୱିତୀୟ ସ୍ଥାନ ରଖି ଟ ୧୦ ଙ୍କା ସ୍କଲର୍ସିପ୍ ପାଇଲା ।

ପାଟନା ହାଇସ୍କୁଲରେ ପଢ଼ିଲାବେଳେ ମୋର ଅତି ଅନ୍ତରଙ୍ଗ ବନ୍ଧୁ ଥିଲା ରବି ସିହ୍ନା, ସେ ପଛେ ହେଲା କ୍ୟାପ୍‌ଟେନ୍ ଆର୍. ଏନ୍. ସିହ୍ନା, ଏଫ୍.ଆର୍.ସି.ଏସ୍. ଓ ପାଟନା ମେଡ଼ିକାଲ୍ କଲେଜର ପ୍ଲାଷ୍ଟିକ୍ ସର୍ଜରିର ଅଧ୍ୟାପକ । ସେ ମୋର ଖାଲି ସହପାଠୀ ଥିଲା ସେତିକି ନୁହେଁ, ସେ ମୋର ସୁହୃତ୍, ପରମ ଆତ୍ମୀୟ, ସତେ ଯେପରି ଆମେ ଦୁହେଁ ଏକା ଘରେ ଜନ୍ମ ହୋଇଛୁଁ । ଏକା ସୁଖ ଦୁଃଖ ଭିତରେ ଏକାଠି ବଢ଼ିଛୁଁ, ଜଣେ ଆର ଜଣଙ୍କର ସୁଖରେ ଅତି ଆନନ୍ଦ ପାଏ, ଆରଜଣଙ୍କର ଦୁଃଖରେ ମର୍ମାହତ ହୁଏ । ଆମେ ପରସ୍ପରର ଛାଇ ପରି ଏକାଠି ବୁଲୁ । ଅନେକଥର ଏକାଠି ରହୁଁ, ଏକାଠି ପଢୁଁ, ଭବିଷ୍ୟତ ଓ ବର୍ତ୍ତମାନ ବିଷୟରେ ଏକାଠି ଭାବୁଁ ଓ ସ୍ୱପ୍ନ ଦେଖୁଁ ।

ମୋରି ବୟସର ମୋରି ଉଚ୍ଚତାର ପିଲାଟିଏ ରବୀନ୍ଦ୍ର ନାରାୟଣ ସିହ୍ନା, ଗୋରା, ସରୁଆ ମୁହଁଟି ଲମ୍ବାଳିଆ, ଲମ୍ବା ନାକ, ବଡ଼ ବଡ଼ ଭାବପ୍ରବଣ ଆଖି, ଦାନ୍ତ ଟିକିଏ ଲମ୍ବା ଓ ଗୋଜିଆ, ବଡ଼ ବଡ଼ କାନ, କପାଳ ଓସାର ଓ ସିଧା, ତା'ର ହାବଭାବରେ ସବୁବେଳେ ଚଞ୍ଚଳ, ତରଳ ଭାବ, ଯେପରିକି

ନାନା କଥାରେ ସେ କୁତୂହଳୀ, କୌଣସିଥିରେ ଗମ୍ଭୀର ନୁହେଁ । ସେ ତା ଜୀବନକୁ ଖୁବ୍ ହାଲୁକା ଭାବେ ନେଉଥିଲା, ଅତି ଚଞ୍ଚଳ ହସେ ଓ ହସାଏ । ମଝିରେ ମଝିରେ ସେ ତନ୍ମୟ ହୋଇ କ'ଣ ଭାବୁଥାଏ, କେତେବେଳେ ଗମ୍ଭୀର ହୋଇଯାଏ ।

ଏତେ ପିଲାଙ୍କ ଭିତରୁ ଆମେ ଦୁହେଁ କେମିତି ପରସ୍ପରକୁ ଏଡ଼େ ଆପଣାର କଲୁଁ ମୁଁ ଜାଣେ ନାହିଁ । କେତେ ଦିନେ ତା ଘରକୁ ଡାକି ନେଇଗଲା । ସେ ମୋତେ ଲୋଭ ଦେଖାଉଥିଲା, ତା ଘରେ କ୍ୟାରମ୍ ବୋର୍ଡ଼ ଅଛି । ମୁଁ ଗଲେ ଆମେ ଖେଳନ୍ତୁ, ତା'ର ବ୍ୟାଡ୍‌ମିଣ୍ଟନ ନେଟ୍ ବ୍ୟାଟ୍ ବି ଅଛି, ଆଉ ତା ଘରେ ବହୁତ ବହୁତ ବହି ଅଛି, ମୋ ମନ ହେଲେ ମୁଁ ପଢ଼ିବାକୁ ନେଇପାରେଁ ।

ଖ ଗୋଲ୍ ରୋଡ୍ ଉପରେ ସେ ଘରଟି । ଘର ନମ୍ବର ୨୪ । ବଡ଼ ହତା, ଅନିଲ୍ ସାହା ସୁରେଶ୍ ରାୟଙ୍କ ଘର ହତା ପରି ଏଡ଼େ ପ୍ରକାଣ୍ଡ ନୁହେଁ, କିନ୍ତୁ ଖୁବ୍ ମେଲା ଫରଚା । ବହୁତ ବଡ଼ ବଡ଼ ଫୁଲ ଗଛ, ବାଁ ପାଖେ ଖୁବ୍ ଝଙ୍କା ଝଙ୍କା କାମିନିଆଁ ଗଛ ଗୁଡ଼ିଏ, ବାସ୍ନା ଫୁଲ ଭର୍ତ୍ତି ହୋଇଥାଏ । ତା ସେ ପାଖେ ବ୍ୟାଡ୍‌ମିଣ୍ଟନ୍ କୋର୍ଟ୍, ସେଇଠି ଆମର ଖେଳ ହୁଏ । ପାହାଚରେ ଚଢ଼ିଗଲେ ଓସାର ପିଣ୍ଡାଟିଏ, ବସାଉଠା ଓ କ୍ୟାରମ୍ ଖେଳ ପାଇଁ ଖୁବ୍ ଉପଯୁକ୍ତ ସ୍ଥାନ ।

ଆଗ ଦାଣ୍ଡଘର । ଆଲମାରି ଆଲମାରି ବହି ଥୁଆ ହୋଇଛି, ବେଶି ଇଂରେଜି ଉପନ୍ୟାସ, ପ୍ରବନ୍ଧ ଆଦି । ଦେଖିଲେ ପଢ଼ିବାକୁ ଲୋଭ ହେବ । ସାମ୍ନା କାନ୍ଥରେ ଗୋଟିଏ ବଡ଼ ଫଟୋ; ସେ ଜଣେ ବୁଢ଼ାଙ୍କର, ତାଙ୍କ ମୁହଁ ସଂଗେ ରବି ମୁହଁର ଖୁବ୍ ସାଦୃଶ୍ୟ ଦିଶେ । ତାଙ୍କ ଘରୁ ଶୁଣିଛି ସେ ରବିର ଜେଜେ । କଲିକତା ଆଡ଼େ କେଉଁ 'ବାଁଶ୍-ବାଡ଼ି'ର ସେମାନେ ଖାନ୍ଦାନି ଜମିଦାର ପରିବାରର ବଂଶଧର । ତା'ପରେ ଭାଗ୍ୟ ବିପର୍ଯ୍ୟୟ ହେଲା । ଯାହାଙ୍କ ଫଟୋ ମୁଁ ଦେଖିଲି ସେ ମରିଗଲେ । ରବିର ବାପା ଶିବ ନାରାୟଣ ହେଲେ ଡାକଘରେ ଚିଠିବିଛାଳି ଚପରାଶି । ଦିନଯାକ କାମ କରି ସେ ଅବସରବେଳେ ଓ ରାତିରେ ଘରେ ପଢ଼ନ୍ତି, ବାପାଙ୍କଠୁଁ ଚରିତ୍ରବଳ ଶିଖିଥିଲେ, ବହି ପଢ଼ି ସେ ପାଠ ଶିଖିଲେ । କ୍ରମେ ତାଙ୍କର ଜ୍ଞାନ ବଢ଼ିଲା, ସେ ଡାକ ବିଭାଗରେ ଗୋଟିଏ ଯୋଡ଼ିଏ ପରୀକ୍ଷା ଦେଇ ଉପରକୁ ଉଠିଗଲେ; କିରାନି ହେଲେ । ସେମିତି ନିଜ ଯୋଗ୍ୟତା ଦେଖାଇ ସେ ବିହାର ଓଡ଼ିଶା

ସେକ୍ରେଟେରିଏଟ୍‌ରେ ନିଯୁକ୍ତି ପାଇଲେ, ଘରେ ବହି ପଢ଼ା ଚାଲୁ ରଖିଥାନ୍ତି, ଉପରକୁ ଉଠିଗଲେ, ମୁଁ ଦେଖିଲା ବେଳକୁ ସେ ଜଣେ ସେକାଳର ହେଡ୍ ଆସିଷ୍ଟାଣ୍ଟ, ନିଶାମଣି ମଉସାଙ୍କ ସହକର୍ମୀ । ଦୁହେଁ ଏକା ଅର୍ଥ ବିଭାଗରେ ଥିଲେ ।

ଶିବ୍ ନାରାୟଣ ସିନ୍‌ହାଙ୍କ ତୁଣ୍ଡରୁ ବି ମୁଁ ଏ କାହାଣୀ ଶୁଣିଛି, ଯତ୍ନ ସହକାରେ ପାଠ ପଢ଼ିବ, ଚରିତ୍ର ଠିକ୍ ରଖିବ, ମଝିରେ ମଝିରେ ଏଭଳି ସଦୁପଦେଶ ଶୁଣାଇଲା ବେଳେ ସେ ଥରେ ନିଜ ଇତିହାସ କହିଥିଲେ ।

ରବି ପରି ଚେହେରା, ଖୁବ୍ ଡେଙ୍ଗା, ହସି ହସି ମିଠା କଥା କହନ୍ତି, ରାଗିବାର ଦେଖିଛି, କ୍ୱଚିତ୍ । ସେ ରବିକୁ କଟକଣା କରନ୍ତି ଅଭିମାନ ଦ୍ୱାରା । ସେ ଖୋଜନ୍ତି ସେ ପଢୁ, ଶିଖୁ, ତା ଆଚାର ବ୍ୟବହାର ଏପରି ହେଉ ଯେପରି କେହି ନିନ୍ଦା ନ କରିବେ । ପର କଥାରେ ମୁଣ୍ଡ ଖେଳା ନାହିଁ, କାହାରିକି ନିନ୍ଦା କର ନାହିଁ, କାହାରି ମନରେ କଷ୍ଟ ଦିଅ ନାହିଁ, ଚିନ୍ତା ଓ କାମ ସବୁଥିରେ ସତ୍ ଓ ମହତ୍ ହୁଅ, ଏହିଭଳି ତାଙ୍କର ଉପଦେଶ । ସେ ମତେ ପଢ଼ିବାକୁ ଦେଇଥିଲେ,''Lord Chesterfkield's advice & his son'',ଭାରି ସୁନ୍ଦର ଉପଦେଶଗୁଡ଼ିଏ ତହିଁରେ ଅଛି । କେଉଁ ବହି ପଢ଼ିବି, କେଉଁ ବହି ଆମେ ପଢ଼ିବା ଅନାବଶ୍ୟକ ସେ ବାଛି ଦିଅନ୍ତି । ସେ ଖୁବ୍ ବନ୍ଧୁସ୍ନେହୀ, କିନ୍ତୁ ବହୁତ ଗୁଡ଼ିଏ ବନ୍ଧୁ ତିଆରି କରିବା ସେ ଭଲ ପାଉ ନଥିଲେ । କହନ୍ତି ''ମୋର ଯେଉଁ ଅଳ୍ପ କେତୋଟି ବନ୍ଧୁ ମୁଁ ତ ତାଙ୍କୁ ସଂଖୁଳି ପାରୁ ନାହିଁ, ତାଙ୍କ ପ୍ରତି ମୋର କର୍ତ୍ତବ୍ୟ କରି ପାରୁ ନାହିଁ, ଆଉ ବେଶି ବନ୍ଧୁ ଅର୍ଜିବି କାହିଁକି ?'' ସେହି ଅଳ୍ପ କେତେ ଜଣଙ୍କ ଭିତରେ ତାଙ୍କର ଜଣେ ପ୍ରଧାନ ବନ୍ଧୁ ଥିଲେ ଡକ୍ଟର ଅଖିଲ୍ ସରକାର, ସେ ଐତିହାସିକ ଯଦୁନାଥ ସରକାରଙ୍କ ଭାଇ ଓ ପାଟ୍‌ନା ଡାକ୍ତରି କଲେଜ୍‌ରେ ଜଣେ ପ୍ରସିଦ୍ଧ ଡ଼ାକ୍ତରି ଅଧ୍ୟାପକ ।

''ହେଇଟି ମା,ଯେ ମୋର ବନ୍ଧୁ ।''

ମା'ଙ୍କ ନାଁ ମୃଣ୍ମୟୀ । ମନ୍ଦିରରେ କଳା ମୁଗୁନିର ନିଖୁଣ ମାତୃମୂର୍ତ୍ତି ଦେଖିଲେ ତାଙ୍କ ମୁହଁଟି ମନେପଡ଼େ । ସେମିତି ପାଲିସି ଚିକ୍କଣ ଶ୍ୟାମଳ ବର୍ଣ୍ଣ, ସେମିତି ପୂରିଲା ପୂରିଲା, ସୁନ୍ଦର ଗଢ଼ଣ । ସ୍ନେହ ଶରଧାର ପ୍ରତିମୂର୍ତ୍ତି । ଯେତେବେଳେ ଗଲେ ଖାଇବାକୁ ଦିଅନ୍ତି, ଖୁବ୍ ସ୍ନେହ ଆଦର କରନ୍ତି । ମୋଠୁଁ ରବିଠୁଁ, ସେ କୋଡ଼ିଏ ବର୍ଷ ବଡ଼ । ଖରାଦିନେ ଭାଇ ପାଟ୍‌ନାରୁ

କେତେ ମାସ ପାଇଁ ରାଞ୍ଚି ଯାଆନ୍ତି ।

ପିଲାମାନେ ସମସ୍ତେ ଯାଆନ୍ତି । ଅଫିସ୍ ଉଠିଯାଏ । ପାଟ୍‌ନା ବସାରେ ରହୁଁ ମୁଁ ଓ ବୋଉ । ମୋର ଦଶମ ଶ୍ରେଣୀ ବେଳକୁ ବୋଉ ଗାଁକୁ ଗଲା, ଧୃଳଭାଇଙ୍କ ବିଭାଘର ପାଇଁ । ଅନ୍ୟମାନେ ରାଞ୍ଚି ଗଲାବେଳେ ଘରେ ମୁଁ ଏକୁଟିଆ ରହିଲି । ଅନ୍ୟ ବନ୍ଦୋବସ୍ତକୁ ରାଜି ହେଲି ନାହିଁ । ବାହାର ଘରେ ଘର ପଛଆଡ଼େ ଗୋଟିଏ ମୂଲିଆ ପରିବାର ଥାନ୍ତି, ସ୍ୱାମୀ, ସ୍ତ୍ରୀ, ଝିଅ ଯଶିଆ ଓ ସାନ ପିଲାଟିଏ । ସେମାନେ ଅନ୍ୟଠି ମୂଲ ଲାଗନ୍ତି । ଆମ ଘର ଜଗନ୍ତି । ମୁଁ ମୋ ହାତରେ ରାନ୍ଧେ । ଆଗରୁ ନିଜେ ରାନ୍ଧି ନଥିଲି । ମୋ ବଂଗୀୟ ସାଙ୍ଗମାନେ ନାନା ପ୍ରକାର ପରାମର୍ଶ ଦେଲେ । ଅମିୟ କହିଲା, ସବୁ ଏକାଠି ସିଝେଇ ଦେଲେ ଖେଚେଡ଼ି ହୋଇଯିବ, ହଳଦୀ ଓ ଲୁଣ ଦେବାକୁ ପଡ଼ିବ । ପ୍ରଫୁଲ୍ଲ କହିଲା, ଥୋଡ଼ାଏ ଚିନି ଓ କିସ୍‌ମିସ ଦେଲେ ଆହୁରି ଭଲ, ବେଶି କରି ପୋସ୍ତ ଦେବ । ସୁରେଶ ଦତ୍ତ କହିଲା, ଭାତ ହାଣ୍ଡିରେ ଏକାଠି ଡାଲି ଓ ଆଳୁ ସିଝି ପାରିବ, ଅଲଗା ଅଲଗା କନା ପୁଟୁଳିରେ ବାନ୍ଧି ପକାଇ ଦେଲେ ମିଶିବ ନାହିଁ । ପ୍ରକାର ପ୍ରକାର ହେଲା । ସବୁ ପ୍ରକାର ପରିବା, ଡାଲି, ଚାଉଳ, ହଳଦି, କିସ୍ମିସ୍, ଚିନି ମିଶି ବିଚିତ୍ର ଖେଚେଡ଼ି ହୁଏ, ପୋଇ ଓ ଭେଣ୍ଡି ପଡ଼ିଥିଲେ ନାଳୁଆ ଲାଗେ । ଗୋଟିଏ ବହିରେ ପଢ଼ିଥିଲି, ବଂଗଳାର ପ୍ରସିଦ୍ଧ ପହିଲ୍‌ମାନ୍ ଗୋବର ବାବୁ କୁଆଡ଼େ ସେମିତି ରାନ୍ଧି ଖାଆନ୍ତି । ପୋଟଳ ଭଜାକୁ ଫୁଟିଲା ତେଲରେ ଛାଣିଦିଏଁ, ମୂଲିଆଟି ବତାଇଥିଲା । ବେଳେବେଳେ ରୋଷେଇ ବସାଇଦେଇ ପଢୁ ପଢୁ ପାଣି ମରିଯାଏ, ତଳୁ ତଳୁ ଲାଗିଯାଏ ବା ପୋଡ଼ିଯାଏ । ସେଥିରେ ମୋର ଅସୁବିଧା ହୁଏ ନାହିଁ ।

କେବେକେବେ ସାଙ୍ଗମାନଙ୍କୁ ଡାକି ମୋ ରୋଷେଇ ଚଖାଏ, ସେମାନେ ନିଶ୍ଚୟ ତାଙ୍କ ଜୀବନରେ କେବେ ଏପରି ରୋଷେଇ ଖାଇ ନଥିବେ । ମୁହଁ ଆମିଳା କରି ସେମାନେ କହନ୍ତି "ବେଶ୍ ! ବେଶ୍ !"

ଦିନେ ରବି ବୁଲି ଆସି ମୋ ହାଲ୍‌ଚାଲ୍ ଦେଖିଗଲା । ସେଉଠୁ ଆଉ ଦିନେ, ମୁଁ ତାଙ୍କ ଘରକୁ ବୁଲି ଯାଇଛି, ସେ ତା ମା'କୁ କହିଲା, "ଜାଣିଛ ମା, ଯେ ତା ହାତରେ ରୋଷେଇ କରି ଖାଉଛି !"

ମା ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଅନାଇଲେ, ମତେ କୁଣ୍ଢେଇ ପକେଇ ଆଖି ଛଳ ଛଳ କରି କହିଲେ, "କାହିଁକି ପୁଅ ! ଆମେ ବଞ୍ଚି ଥାଉ

ଥାଉ ହାତରେ ରାନ୍ଧି ତୁମେ ଖାଇବ । ସେ କଥା ହେବ ନାହିଁ । ତୁମେ ଏଇଠି ଖାଇବ ।''

ଚିନ୍ମୟୀଙ୍କ ମାତୃସ୍ନେହ ତାଙ୍କ ମୁହଁରେ ଓ ଲୁହ ଛିକି ଛିକି ଆଖିରେ ଫୁଟି ଉଠିଥିଲା । ସେ କାହାରି କଷ୍ଟ ସହି ପାରନ୍ତି ନାହିଁ ।

ସେ କହିଲେ, ''ଏକୁଟିଆ ସାନ ପିଲାଟିଏ ଗୋଟିଏ ଖାଲି ଘରେ ରହିବା ବି ଠିକ୍ ନୁହେଁ । ତୁମ ଭାଇଙ୍କି ଲେଖ, ତାଙ୍କର ଆପତ୍ତି ନଥିଲେ ରାତିରେ ବି ତୁମେ ଏଠି ରହ, ସେ ଆସିଲେ ଯିବ, ମଝିରେ ମଝିରେ ଘର ଦେଖି ଆସୁଥିବ । ସେ ପର୍ଯ୍ୟନ୍ତ ରାତିରେ ଏଠୁ ଖାଇ ପିଇ ସାରି ତୁମ ସଂଗରେ ରବି ବି ଯାଇ ସେଠି ରହୁ ।''

ଆଉ କିଏ ମତେ ଜଗିବାକୁ ଆସିବ ମୁଁ ଚାହିଁଲି ନାହିଁ । କେତୋଟି ବଖରାରେ ତ ତାଲା ପଡ଼ିଥାଏ । ବାହାର ଘରେ ରହୁଥିବା ମୂଲିଆ ପରିବାର ବି ଭାଇଙ୍କର ଚିହ୍ନା, ସେମାନେ ଘର ଜଗିଥାନ୍ତି । ତଥାପି ଭାଇଙ୍କି ଲେଖିଲି, ସେ ରାଜି ହେଲେ ।

ତେଣୁ ରବି ଘରେ କେବଳ ଖାଇବାପିଇବା ହିଁ ନୁହେଁ, ମୁଁ ସେଠି ରହିଗଲି । ଭାଇ ହେରିକା ରାଞ୍ଚି ଯିବା ସମୟରେ ମୁଁ ଏପରି ଥରେ କି ଦିଥର ରହିଥିବି, ଥରେକେ ଏକାଠି ବହୁତ ଦିନ ।

ସେ ଘରେ ରବି ଯେମିତି, ମୁଁ ସେମିତି । ପରିବାରର ବ୍ୟବହାର ଆମ ଦୁହିଙ୍କ ପ୍ରତି ଅଭିନ୍ନ । ଏକା ସଂଗରେ ଏକା ଜିନିଷ ଖାଉଁ, ଚା, ଜଳଖିଆ, ଭାତ । ଥରେ ଦିଥର ଘରର ପରିବାରର ଲୁଗାପଟା ହେଲାବେଳେ ମୋ ପାଇଁ ବି ଲୁଗାପଟା ହୋଇଛି । ବାଇସ୍କୋପ୍, ଥିଏଟର, ପୂଜା, ଯାତ୍ରା, ଯୁଆଡ଼େ ଗଲେ ଆମେ ସମସ୍ତେ ।

ରବି ତଳେ ତାଠୁଁ ଦିବର୍ଷ ସାନ ଆଉ ଗୋଟିଏ ଭାଇ, ସୁରଜି, ଡକା ହୁଏ ସୁରଜି, ନାଁ ଲେଖେ ରମେନ୍ଦ୍ର ନାରାୟଣ ସିଂହ । ସେ ଦି କ୍ଲାସ୍ ତଳେ ପଢ଼େ, ଅଝଟ ହୁଏ, ତା'ର କେତେବେଳେ କଳି କେତେବେଳେ ସ୍ନେହ । ବହୁତ ଖେଳ ପ୍ରିୟ । ପଢ଼ା ପଢ଼ି କରେ, କିନ୍ତୁ ପଢ଼ାରୁ ଉଠି ଖୁଞ୍ଚୁବୁଲୁ ହେଉଥାଏ, ଖେଳୁଥାଏ ଅନେକ ସମୟରେ । ହାଡୁଆ, ପାତଳ ହୋଇ ପିଲାଟିଏ, ଟିକିଏ ଶ୍ୟାମଳ ବର୍ଣ୍ଣ । ଶୁଣିଲି ପଛେ ସେ ଆକାରରେ ଖୁବ୍ ଢେଂଗା ଓ ହୃଷ୍ଟପୁଷ୍ଟ ହେଲା, ସେ ହେଲା ବିହାର୍‌ରେ ଗୋଟିଏ ଆଇ. ପି.ଏସ୍. ଅଫିସର୍ ।

ତା ତଳେ ସାନ ଭଉଣୀଟିଏ, ତା ନାଁ ରେଖା, ସମସ୍ତେ ଡାକନ୍ତି 'ରେଖୁନ' । ତା ବୟସ ୩/୪ ବର୍ଷ ହୋଇଥିବ, କଥା କହିବା ଆରମ୍ଭ କରିଥାଏ । ନାଲିଆ ଗୋରା ହୋଇ ଗୋଲାପ ଫୁଲ ପରି କଣ୍ଢେଇଟିଏ ସେ, ସମସ୍ତେ ତାକୁ ଗେହ୍ଲା କରନ୍ତି ।

କିଏ ସ୍ତ୍ରୀଲୋକଟିଏ ବାସନ ମାଜି ଦେଇଯାଏ, ବୋଧହୁଏ ପଣ୍ଡିମା ପୂଝାରିଟିଏ ବି ଥାଏ, ମନେ ପଡୁନାହିଁ । କିନ୍ତୁ ମନେ ପଡୁଛି ଗୁର୍ଖା ଚାକରଟି, ତା ନାଁ ବାହାଦୁର, ବୋଧହୁଏ, ଡାକନ୍ତି ''ଦରଓ୍ୱାନ୍'' ବୋଲି, ସେ ତା ଗୁର୍ଖା ପୋଷାକ ପିନ୍ଧି ଅନେକ ସମୟରେ ଏକର ସେକର ହୁଏ । ତା ଗାଁ କଥା, ହିମାଳୟ ପାହାଡ଼ କଥା ଓ କେତେ ଦୁଃସାହସିକ ଘଟନାର କାହାଣୀ ସେ ଆମ ଆଗରେ ହିନ୍ଦି ଭାଷାରେ କହେ ।

ସେ ଘରର ବାତାବରଣ ଖୁବ୍ ଶାନ୍ତିପ୍ରଦ । ମା' କାମରେ ଲୋଚୁଥାନ୍ତି, ସବୁ ଜିନିଷ ଝକ୍‌ଝକ୍ ସଫା ରଖିବା, ସଜେଇ ସଜେଇ ଥୋଇବା, ସମସ୍ତିଙ୍କ ପାଇଁ ଠିକ୍ ସମୟରେ ସବୁ ବନ୍ଦୋବସ୍ତ କରିଦେବା, ରୋଷେଇ ତଦାରଖ କରିବା, କେତେ କାମ । ବେଳ ପାଇଲେ ସେ ସିଲେଇ କଳ ଖଟଖଟ କରି କେତେ କଣ ସିଲେଇ କରି ପକାନ୍ତି, ଉଲ୍ ଓ ସୂତାରେ ବୁଣାବୁଣି କରନ୍ତି, ପୁଣି ଦେଖିଛି, ଶୋଇ ଶୋଇ ବହି ପଢ଼ନ୍ତି, ବଂଗଳା ଉପନ୍ୟାସ, କବିତା ଓ ମାସିକପତ୍ର । କେତେବେଳେ ବଗିଚାରେ ଲାଗିଥାନ୍ତି ।

ଲୁଗାପଟା କି ବିଛଣା ମଇଳା ହେଲେ ଧୋବା ଘରକୁ ଯିବା ପୂର୍ବରୁ ଆଗ ଚାଲିଯାଏ ମଇଳା ଲୁଗା ବାକ୍ସକୁ । ଘରେ କେଉଁଠି ହେଲେ ମଇଳା ଲୁଗା ଦିଶେ ନାହିଁ । ଛିଣ୍ଡା ପାଇଁ ବି ଅଲଗା ବାକ୍ସ । ଶୀତଦିନେ ବ୍ୟବହାର ହେଉଥିଲା ଶେଯ, ରେଜେଇ, କମ୍ବଳ ଆଦି, ଶୀତ ସରିଲେ ଗୁରିଆ ହୋଇ ସାଇତା ହୋଇ ଠାଏ ଟଂଗା ହୋଇ ରଖାହୁଏ ।

ବାପ ମା ଘରର ହାନିଲାଭ କଥାଭାଷା ହେଲାବେଳେ ସେଠି ପିଲାଏ ନଥାନ୍ତି । ତାଙ୍କର ତେଣେ ତୁନିତାନି କଥାଭାଷା । କେବେ କଦବା ବାଦାନୁବାଦ ଲାଗିଲେ ବି ସେ ଚର୍ଚ୍ଚା ସ୍ଥାନରେ ପିଲାଙ୍କୁ ରହିବାକୁ ଦିଆଯାଏ ନାହିଁ । ପିଲାଏ କେବେ ପଚାରିଲେ କହନ୍ତି, ''ଏସବୁ କଥା ପିଲାଙ୍କ ଶୁଣିବା ପାଇଁ ନୁହେଁ ।'' ପର ଘର କଥା ଚର୍ଚ୍ଚା ନ କରିବାକୁ ପିଲାଙ୍କୁ ବାରମ୍ବାର କଡ଼ା ନିର୍ଦ୍ଦେଶ । ପିଲାଏ ହୁମ୍‌ଦୁମ୍ ନ ହେଲାବେଳେ, ପାଟିତୁଣ୍ଡ ନ କଲାବେଳେ ଘରେ କୌଣସି ପ୍ରକାର ଘୋ'ଘା ନଥାଏ । ଟାଣ କଥା କି ବଡ଼ପାଟିରେ

କଥା ବି କେହି କହନ୍ତି ନାହିଁ । ଘରେ ଏତେ କାମ ହୁଏ, ଚହଳ ନାହିଁ, ବ୍ୟସ୍ତତା ନାହିଁ । ବାପ ମା ପିଲାଙ୍କୁ କିଛି କହିବାକୁ ମନ କଲେ ଡାକି ନିଅନ୍ତି । ଡରେଇବାକୁ ମନ କଲେ କହନ୍ତି "ଛି, ଏମିତି କରୁଛୁ, ତୋ ମା ମନରେ କେଡ଼େ କଷ୍ଟ ହେବ !" "ତୋ ବାପା କଣ ଭାବିବେ !", ନହେଲେ,–"ଏଡ଼େ ଦୁଷ୍ଟ ! ଏଡ଼େ ଅଭଦ୍ର ।" ରାଗ-ଗରଗର ରୁକ୍ଷ କଥା, ଗାଳି, ଗାଳି ସୂଚାଇବାକୁ ଏତେ ଶବ୍ଦ,– ସେସବୁ ସେଠି ନାହିଁ । ବାପ ମା ମୁହଁ ଶୁଖାଇଲେହିଁ ପିଲାଙ୍କ ମନରେ କଷ୍ଟ ହୁଏ । ମା ଯଦି କାନ୍ଦି ପକାଏ ସେହି ସବୁଠୁ ବଡ଼ ଦଣ୍ଡ । ପିଲାଏ ନକହି କୁଆଡ଼େ ଯାଆନ୍ତି ନାହିଁ, ସଞ୍ଜ ଉତ୍ତାରୁ ପଦାରେ ରହନ୍ତି ନାହିଁ ।

ପିଲାଏ ରାତିରେ ଶୋଇବା ଆଗରୁ ବାପ ମାଆଙ୍କ ଗୋଡ଼ତଳେ ପଡ଼ନ୍ତି । ଘରେ ଆରାମ ଥାଏ, କିନ୍ତୁ ଆଡ଼ମ୍ବର ନଥାଏ । ମା ଗହଣା ଗାଣ୍ଠି ପିନ୍ଧନ୍ତି ନାହିଁ, ସରୁ ସରୁ ସୁନାକାଚ, ସୁନା ହାରଟିଏ ଛଡ଼ା ଅନ୍ୟ ରଙ୍ଗଢ଼ଙ୍ଗିଆ ବେଶ ହୁଅନ୍ତି ନାହିଁ । ବାପ ଯେତିକି ପୋଷାକ ପିନ୍ଧନ୍ତି, ସେଗୁଡ଼ିକର କାଟ ଭଲ, କନା ଦାମୀ, କିନ୍ତୁ ଆଖିକୁ ଢ଼ଙ୍ଗ ଢ଼ଙ୍ଗିଆ ନୁହେଁ । ତାଙ୍କର ଗୋଟିଏ ବ୍ୟସନ ଥାଏ,–ବେଳେବେଳେ ଚୁରୁଟ୍, ମଝିରେ ମଝିରେ ପାଇପ୍ ।

ଦି ପୁଅଙ୍କ ପଢ଼ାଘର ଅଲଗା । ପାଠ ପଢ଼ାବେଳେ ଚୁପ୍‌ଚାପ୍ ବସି ପଢ଼ି ହୁଏ, କୌଣସି ପ୍ରକାର ଗୋଳମାଳ ନାହିଁ । ଭୋର ପାହନ୍ତାରୁ ଉଠି ରବିର ବାପାଙ୍କ ସଙ୍ଗେ ବୁଲିଯିବାକୁ ପଡ଼େ । ବାଟରେ ସେ ନାନା ଶିକ୍ଷଣୀୟ କଥା କହନ୍ତି । ବେଳେବେଳେ ଅଫିସ୍‌ରୁ ଆସି ସେ ପିଲାଙ୍କ ସଙ୍ଗେ ବ୍ୟାଡ଼ମିଣ୍ଟନ୍ ଖେଳନ୍ତି । ଘରେ ବସିଥିଲେ ସେ ବହି ପଢୁଥାନ୍ତି । ସକାଳେ ବେଳେବେଳେ ବଗିଚାରେ କାମ କରନ୍ତି । ଛୋଟ ଝିଅକୁ କାଖେଇ ବୁଲାଉଥାନ୍ତି, ତା ସଙ୍ଗରେ ଖେଳୁଥାନ୍ତି ।

ଘରକୁ ପ୍ରତିଦିନ ଇଂରେଜି ଖବରକାଗଜ ଆସେ, ସେ କହନ୍ତି ଷ୍ଟେଟ୍‌ସମ୍ୟାନ୍ କାଗଜର ସଂପାଦକୀୟ ଲେଖାକୁ ବୁଝିବୁଝି ପଢ଼ିଲେ ଭଲ ଇଂରେଜି ଶିଖି ହେବ । ଇଂରେଜି ଓ ବଂଗଳା ମାସିକ ପତ୍ର ବି ସେ ମଗାନ୍ତି । ପିଲାଙ୍କ ପାଇଁ ସେ ବହୁତ ଇଂରେଜି ବହି କିଣି କିଣି ରଖିଥିଲେ । ତା ଭିତରେ ଥିଲା ବୁକ୍ ଅଫ୍ ନଲେଜ୍ ଓ ବୁକ୍ ଅଫ୍ ନେସନସ୍‌ର ସବୁ ଖଣ୍ଡ । ସେ ସବୁ ବହି ମୁଁ ପଢୁଥିଲି, ସେଥିରୁ ବହୁତ ଉପକାର ପାଇଛି ।

ଆଉ, ସେଠି ମୁଁ ପଢୁଥିଲି ରବୀନ୍ଦ୍ରନାଥଙ୍କ ବହି । ସେମାନେ ରବୀନ୍ଦ୍ରନାଥଙ୍କ

ଲେଖାକୁ ବହୁତ ଆଦର ଓ ସମ୍ମାନ ସହକାରେ ପଢୁଥିଲେ । ସେତେବେଳକୁ ବଂଗଳା କହିବା, ପଢ଼ିବା ଓ ବୁଝିବା ମୁଁ ଖୁବ୍ ଭଲ କରି ଶିଖି ଯାଇଥିଲି, ବଂଗଳା ଉଚ୍ଚାରଣ ବି ସ୍ୱାଭାବିକ ହୋଇଯାଇଥିଲା ।

ଆମ ସମସ୍ତିଙ୍କର ସୁବିଧା ଅସୁବିଧାକୁ ମା'ଙ୍କର ନିଘା ଥାଏ । ସେ କତିରେ ବସି ବଳେଇ ବଳେଇ ଖୁଆନ୍ତି । "ହଁ, ସୁନାପୁଅ, ଏତକ ଖାଇଦିଅ ।"–ହଁ, ଏଇ ଟକିଏତ । ଏ ଦୁଧ ଟିକକ ପିଇ ଦିଅ । " ଖୁବ୍ ସୁଆଦିଆ ରୋଷେଇ । ପାଗ ଅନୁସାରେ ସୁଆଦିଆ ଜଳଖିଆ । ପିଠି ଆଉଁସନ୍ତି, ମୁଣ୍ଡ ଆଉଁସନ୍ତି, ବେଳେବେଳେ କେତେ ସ୍ନେହ ଆଦରମୟ କଥାଗୁଡ଼ିଏ କହନ୍ତି । ପିଲାଙ୍କୁ ଗେଲ କରନ୍ତି । "ମା, ତାକୁ ଗେଲ କରିବ ନାହିଁ ?" "ଆରେ ତାକୁ ତ ଆଗ, ତତେ ସିନା କେବେ ପେଟରେ ଧରିଥିଲି, ତାକୁ ଧରିଚି ମୋ ହୃଦୟ ଭିତରେ । ଆ ବାପା-"

ମା' ମତେ ଗେଲ କଲେ ।

ମୁଁ ଆଖି ବୁଜି ଦେଲି ।

"ଭାଇ-ଫୌଁଟା" ପର୍ବ ବେଳେ ଟିକି ରେଖୁନ୍ ମୋ କପାଳରେ ଚନ୍ଦନ ଟୋପା ମାରିଛି ।

ଦଶରା ଦିନ 'ବିଜୟାର୍ କୋଲାକୁଲି' କରିବାକୁ ମୁଁ ମୋର ବଂଗାଳି ସ୍କୁଲ୍ ଭାଇଟିମାନଙ୍କ ଦଳରେ ମିଶି ଏଘର ସେଘର ବୁଲିଛି, କୁଣ୍ଢାକୁଣ୍ଢି କରିଛି ଓ ପାଇଛି । ସେଥର ଖୁବ୍ ମଜା ହେଲା । ପିଲାଏ ଠିକଣା କଲେ କେତୋଟି ଶିକ୍ଷକଙ୍କ ଘରକୁ ଯିବେ । ଆମେ ପ୍ରାୟ ଶହେ ପିଲା । ରାତି । ଆଗ ଗଲୁଁ ସତ୍ୟେନ୍ଦ୍ରନାଥ ଦାସଗୁପ୍ତ ବାବୁଙ୍କ ଘରକୁ, ତାଙ୍କର ପ୍ରକାଣ୍ଡ ଶରୀର, ଉଚ୍ଚ ଯେମିତି ବଳିଲାବାଳିଲା ହୋଇ ମୋଟା ସେମିତି । ସେ ଜଣେ ଅତି ବିଚକ୍ଷଣ ଅଙ୍କ ଶିକ୍ଷକ । ଖୁବ୍ ଜନପ୍ରିୟ । ପ୍ରାୟ ଦଶସେର ଲଡୁ ଗୋଟିଏ ଥାଳିରେ ସଜେଇ ରଖି ସେ ମାଡ଼ି ଆସିଲେ । ଖାଲି ଦେହ, କଳା, ଲୋମଶ । ହାତୀ ଶୁଣ୍ଢ ପରି ବାହା ଯୋଡ଼ିକ ବଢ଼େଇ ଦେଲେ ଭାଲୁଆ ଛାତି ଉପରେ ଥରେ ବାଁ ପଟେ ଥରେ ଡାହାଣ ପଟେ ଆଉଜି ପଡ଼ିବୁଁ ବୋଲି । ସେଠି 'କୋଲାକୁଲି ପର୍ବ' ଖୁବ୍ ଚଞ୍ଚଳ ସରିଗଲା, ଡରରେ ଡରରେ । ତା'ପରେ ଗଲୁଁ ଆସିଷ୍ଟାଣ୍ଟ୍ ହେଡ୍‌ମାଷ୍ଟର ବଙ୍କିମ ବାବୁଙ୍କ ଘରକୁ । ସେ କବାଟ କିଳି ଲୁଚିଲେ । ପିଲାଏ ହୋ ହା କଲେ । ସେ ଟିକିଏ କବାଟ ଫାଙ୍କ କରି ଥୋଡ଼ାଏ ମିଠେଇ ଗୋଟିଏ ଥାଳିରେ ବଢ଼େଇ ଦେଇ କହିଲେ "ବାପାମାନେ,

ମୁଁ ଗରିବ ଲୋକ, ଆଉ କିଛି ନାହିଁ ।'' କବାଟ କିଳି ଦେଲେ । ପିଲାଏ ସେ ମିଠେଇକୁ ଢେଲାପରି ତାଙ୍କ କବାଟକୁ ଫୋପାଡ଼ି ଫୋପାଡ଼ି ପାଟି କରି କରି ଚାଲିଗଲେ । କହୁଥାନ୍ତି ''ଛ୍ୟା ! ବଂଙ୍କ୍ୟା !'' ସେମାନଙ୍କ ଭିତରୁ ନିଶ୍ଚୟ କେହି କେହି ପିଇଥିଲେ ଟୋପିଏ ଟୋପିଏ 'ସିଦ୍ଧି', ଅର୍ଥାତ୍ ଦୁଧରେ ମିଶ୍ରି ମିଶାଇ ଗୋଳା ହୋଇଥିବା ଗଞ୍ଜେଇବଟା । ବଛୟା ରାତିରେ 'ସିଦ୍ଧି' ପିଇବା ବିଧି ।

ଯୋଡ଼ିଏ ପିତଳ ବଇଁଶି ଥାଏ, ଟିକିଏ ସାନ, 'ସି' ଫ୍ଲୁଟ୍ । ତାକୁ କାମୁଡ଼ି କାମୁଡ଼ି ରବି ଓ ସୁଭ୍ରଜି ଚେପା କରିଥାନ୍ତି । ସେମାନେ ବେଳେ ବେଳେ ସେଥିରୁ ସ୍ୱର କାଢ଼ନ୍ତି । ଦି'ଟା ଗୋଟାଏ ସୁର୍ ତାଙ୍କୁ ବଜେଇ ଆସେ । କେବେ କେବେ ଅକସ୍ମାତ୍ ତାଙ୍କ ବାପା ବଇଁଶି ବଜାନ୍ତି, ଭାରି ସୁନ୍ଦର ବଜାନ୍ତି । ବୋଧହୁଏ ତିନି ଚାରିଥର ଆମେ ଶୁଣିଥିବୁ ।

ସୁଭ୍ରଜି କହେ ''ଲଢ଼ ମୋ ସଙ୍ଗରେ'' । ବାଡ଼ି ଧରି ପିଟାପିଟି କରିବା, ଏଇଟା ସେଇଟା ଭାଙ୍ଗିବା ତାକୁ ଭଲ ଲାଗେ । ବେଳେ ବେଳେ ଦି ଭାଇ ''ବକ୍ସିଂ'' ଲଢ଼ନ୍ତି, ସେ ବିଷୟରେ ତାଙ୍କ ଘରେ ଗୋଟାଏ ଇଂରେଜି ବହିଥାଏ, କିନ୍ତୁ ସେମାନେ ସେଥିରୁ କିଛି ଜାଣିନଥିଲେ ।

ଘରେ ଟେନିସ୍ ବ୍ୟାଟ୍ ଥାଏ । ରବି କାନ୍ଥକୁ ବଲ୍ ମାରି ମାରି 'ପ୍ରାକ୍ଟିସ୍' କରେ । ତା ପାଖେ କେତୋଟି ଛବିବହି ଥାଏ, ଗୋଟିଏ ଟେନିସ୍ ଖେଳାଳି ବ୍ୟାଟ୍ ଉଠାଇ ବଲ୍ ମାରିଦେବା ପର୍ଯ୍ୟନ୍ତ ତାର ବିଭିନ୍ନ ଅବସ୍ଥାର ଫଟୋଗୁଡ଼ିଏ ଏକାଠି ସିଲେଇ ହୋଇଛି । ତା'ର ମୋଟା ମୋଟା ପୃଷ୍ଠା ଗୁଡ଼ିକୁ ହାତରେ ଏକାଠି ଫର୍ରକରି ତଳୁ ଉପରଯାକେ ଟିପିଟିପି ଛାଡ଼ିଦେଲେ ଦିଶେ ସତେ ଯେମିତି ଆମ ଆଖି ଆଗରେ ଖେଳୁଆଡ଼୍‌ଟି ବ୍ୟାଟ୍ ଉଠାଇ ବଲ୍ ମାରିଲା । ସେ କହେ, ସେହି ଉପାୟରେ ଖେଳର ସୂକ୍ଷ୍ମତା ଶିଖିହେବ । ସେ ସବୁଥିରେ ଖୋଜେ ସୂକ୍ଷ୍ମତା, ସୂକ୍ଷ୍ମ ଉପାୟ, ସୂକ୍ଷ୍ମ ବାଗ ।

ସେ କବିତା ପଢ଼େ, ପଢ଼ିବାକୁ ଭଲ ପାଏ, ପଢୁ ପଢୁ ତା ସ୍ୱର ଭାବପ୍ରବଣତା ହୋଇଯାଏ । କବିତାର ବର୍ଣ୍ଣନାକୁ କଳ୍ପନାର ଆଖିରେ ଦେଖିବାକୁ ଚେଷ୍ଟା କରେ, ତା ମୁହଁ ଡ଼େରି ହୋଇ ରହେ, ହୃଦୟରେ ଭାବର ଲହଡ଼ି ଖେଳେ, ବେଳେବେଳେ ଦୀର୍ଘଶ୍ୱାସ ଛାଡୁଥାଏ । ତାପରେ ସେ ସ୍ୱପ୍ନରେ ବିଳିବିଳେଇଲା ପରି କଥା କହେ ।

କହେ ''ମୋର ମନ ହେଉଛି, ମୁଁ ଏଇ ଆକାଶ ଭିତରକୁ ଦୂରକୁ

ଚାଲିଯିବି, ତାପରେ ଜହ୍ନ ଆଲୁଅରେ ମିଶି ଝରି ପଡୁଥିବି ଦୁନିଆଁସାରା, ପବନରେ ମିଶି ଚାରିଆଡ଼େ ଖେଳୁଥିବି ।''

ମୋର ମନ ହେଉଛି, ମୁଁ ଏକ ତାରା ଧରି ବାଉଲ୍ ହୋଇ ଗୀତ ବୋଲି ବୋଲି ବୁଲୁଥିବି ଜଗତ ସାରା ।

ଓଃ ! ଏ ପୃଥିବୀକୁ, ଏ ସୃଷ୍ଟିକୁ, ମଣିଷଙ୍କୁ ମୁଁ କେଡ଼େ ଭଲ ପାଏଁ ! ମୁଁ ମରିବାକୁ ଚାହେଁ ।''

ଆଉ ସୁଜିତ୍ କୁଆଡ଼ୁ ପଛଆଡ଼ୁ ଆସି କହେ ''ବେଶ୍, ଦାଦା ତୁମି ମର ।''

ସେ ସେଭଳି ଭାବରେ ଥିଲାବେଳେ ରାଗେ ନାହିଁ, ଉଦାସ ହୋଇ ହସିଦିଏ । ତାପରେ ଗୁଣୁ ଗୁଣୁ ହୋଇ ସଂକୀର୍ତ୍ତନ ଗୀତ ଗାଏ, ଦଗାଇ ମାଧାଇ ଶ୍ରୀ ଚୈତନ୍ୟଙ୍କୁ ଭଙ୍ଗା ଖପରା ଫୋପାଡ଼ିଲେ, ତାଙ୍କ କପାଳ ଫାଟି ଧାର ଧାର ରକ୍ତ ବୋହିଲା, ଶ୍ରୀ ଚୈତନ୍ୟଙ୍କ ତୁଣ୍ଡରେ ସେ ଗୀତ:-

''ମରେଛ କଲସୀର କାନା
ତାଇବଲେକି ପ୍ରେମ୍ ଦେବ ନା ?
ଓରେ ଜଗାଇ,
ଓରେ ମାଧାଇ.....''

ତା ସ୍ୱଭାବ ବି ଖୁବ୍ ଉଦାର ଥିଲା, ସେ ପରକୁ ସାହାଯ୍ୟ କରିବାକୁ ଓ ଦେବାକୁ ଭଲ ପାଏ । ମା'ଠୁ ମାଗି ମାଗି କାହାକୁ ପଇସା, କାହାକୁ ଲୁଗା ବି ଦେଇ ଦିଏ । ସେଥିରେ ତା ବାପ ମା'ଙ୍କର ବି ଆଗ୍ରହ ଥାଏ ।

ସେ ବୟସ ନିର୍ବିଶେଷରେ ସହଜରେ ସମସ୍ତିଙ୍କ ସଙ୍ଗେ ମିଶିପାରେ । ପୁଣି କେତେବେଳେ ନିଜ ଭିତରକୁ ନିଜକୁ ଓଟାରିନିଏ, ଦିଶେ ନିହାତି ନିଛାଟିଆ ।

ଖୁବ୍ ସାନ ହୋଇଥିବାବେଳେ ପାଟ୍‌ନାରେ ଥରେ ମୁଁ ବୋଧହୁଏ ବାଇସ୍କୋପ୍ ଦେଖିଥିଲି । ମନେ ନଥିଲା । ତାପରେ ମୋ ସ୍କୁଲ୍ ଜୀବନରେ ପ୍ରଥମ ଥର ସିନେମା ଦେଖିଗଲି ରବି ସଙ୍ଗରେ । ରବି, ମୁଁ, ସୁଜିତ୍, ରବିର ଟିଉସନ୍ ମାଷ୍ଟର ବିମଳ୍ ବାବୁ, ବୋଧହୁଏ ଏଇ ଚାରିଜଣ । ସିନେମା ଥିଲା ''ସ୍ୱାଭେଣ୍ଡା ଦି ଇନଭିନ୍‌ସିବ୍ଲ ।'' ଖୁବ୍ ମାରକାଟ୍ ଦୁଃସାହସିକତାପୂର୍ଣ୍ଣ ମୂକ ଛବି ।'' ସିନେମା ଉତ୍ତାରୁ ଆମେ 'ରେସ୍ତରାଁ'ରେ ଜଳଖିଆ ଖାଇଲୁଁ । ସେ ଥର ମୁଁ 'କେକ୍' ଖାଇଲି, ମତେ ଆଇଁଷିଆ ଗନ୍ଧ ହେଉଥାଏ । ତାପରେ ଆଉ ଥରେ ଦିଥର

ବି ଆମେ ସିନେମା ଯାଇଛୁଁ, ''କିଂ-କଂ' 'ଟାର୍ଜାନ୍' ଆଦି ଦେଖିବାକୁ । ସିନେମା ଯାଇ ବାଙ୍କିପୁର୍‌ରେ, ପାଞ୍ଚମାଇଲ ଦୂର ।

ମଝିରେ ମଝିରେ ବଙ୍ଗାଳି ଆସୋସିଏସନ୍ ଥିଏଟର୍ କରନ୍ତି, ଦେଖିବାକୁ ଭଲ ଲାଗେ । ବିଶେଷତଃ ଦୁର୍ଗା ପୂଜାକୁ ନିଶ୍ଚୟ ଥିଏଟର୍ ହେବ । ଆମେ ଦେଖିବାକୁ ଯାଉଁ । ଆଗ ବୋଧହୁଏ ଦେଖିଲି ''ହରିଶ୍ଚନ୍ଦ୍ର ଓ ଶୈବ୍ୟା'' । ତା ପରେ ବହୁତ ଦେଖିଛି । ଭାରି ଭଲ ଲାଗେ । ସାର୍ବଜନୀନ ଦୁର୍ଗୋତ୍ସବ ସେମାନେ ଯେପରି ଭାବରେ କରନ୍ତି ସେ ଖୁବ୍ ମନମତାଣିଆ । ଭୋଜି ଲାଗିଥାଏ । ପରିବା କାଟନ୍ତି ରାନ୍ଧନ୍ତି ପରଶନ୍ତି ସ୍ଥାନୀୟ ବଙ୍ଗୀୟ ଭଦ୍ରଲୋକମାନଙ୍କ ସ୍ତ୍ରୀମାନେ । ସତେ ଯେମିତି ସମସ୍ତିଙ୍କର ଏକାଠି ମିଶି ଗୋଟିଏ ଘର, ସବୁ ପିଲା ସମସ୍ତିଙ୍କର ପିଲା, ପ୍ରତି ପିଲାଙ୍କୁ ଆଦର ଯତ୍ନ ଓ ସ୍ନେହ, ଭେଦ ନାହିଁ, ପାତର ଅନ୍ତର ନାହିଁ । ପୂଜା ବି ଖୁବ୍ ଧୁମ୍‌ଧାମ୍‌ରେ ହୁଏ । ସମସ୍ତେ ସେଇଠି ରୁଣ୍ଡ ହୋଇଥାନ୍ତି । ବିଜୟା ଦଶମୀ ଦିନ ଆଗ କଳିଗୋଳ ତୁଟାଯାଏ, ଶତ୍ରୁକୁ ଯାଇ କୁଣ୍ଢେଇବା ଆଗ ଦରକାର, ''ଭାଇ, ସବୁ ପଛ କଥା ଭୁଲିଯାଅ, ଦୋଷ ମୋର, କ୍ଷମା କର ।''

''ନାଇ ଭାଇ, ଦୋଷ ମୋର ମତେ କ୍ଷମା କର ।''

ରବିର ବାପା ଶ୍ରୀ ଶିବେନ୍ଦ୍ର ନାରାୟଣ ସିଂହ ଡାକଘରେ ଚାକିରି କରିବା ସମୟରେ ପୁରୀରେ କେବେ ବର୍ଷେ ଖଣ୍ଡେ ଥିଲେ । ଅତୀତର ସେହି ସ୍ମୃତିକୁ ମନେ ପକାଇ ସେ ଓଡ଼ିଶାକୁ ଓ ଓଡ଼ିଆ ଲୋକଙ୍କୁ ଖୁବ୍ ପ୍ରଶଂସା କରୁଥିଲେ । ଓଡ଼ିଶାର ଗୌରବମୟ ଇତିହାସ ଆଶ୍ଚର୍ଯ୍ୟ କାରୁକାର୍ଯ୍ୟ , ଓଡ଼ିଆଲୋକଙ୍କ ସରଳତା, ଉଦାରତା, ସ୍ନେହ ସୌଜନ୍ୟ, ଧର୍ମ ପରାୟଣତା, କେତେ କଥା ସେ କହନ୍ତି । ତାଙ୍କର ଧାରଣା ଯେ, ସେତେବେଳେ ବି ଓଡ଼ିଶାରେ ଅନେକ ଗୁପ୍ତବିଦ୍ୟା ଥିଲା । ସେ କହୁଥିଲେ, ପୁରୀରେ ଜଣେ ପଣ୍ଡା ତାଙ୍କୁ ପଲମ ବୁଲେଇ ହଜିଥିବା ଜିନିଷ କି ମଣିଷକୁ ଠାବ କରିବା ବିଦ୍ୟା ଶିଖେଇ ଥିଲେ ଓ ସେଥିରେ ପ୍ରକୃତରେ ଫଳ ହୁଏ ସେ ଦେଖିଛନ୍ତି ।

ମୁଁ ଥିବାବେଳେ ଥରେ ନିଜେ ସେ ବାଧ୍ୟରେ ପଡ଼ି ପଲମ ବୁଲେଇବା ବିଦ୍ୟାକୁ ସ୍ମରଣ କରିଥିଲେ । ଥରେ ତାଙ୍କର ଡାକ୍ତର ବନ୍ଧୁଙ୍କର ପୁଅ ରଘୁ ରାଗିଯାଇ ଘରୁ ଚାଲିଗଲା ବୋଲି ଖବର ଆସିଲା । ଯୋଡ଼ିକଯାକ ପରିବାର ମନଦୁଃଖରେ ବହୁତ ଛଟପଟ ହେଲେ, ଖୋଜି ଖୋଜି ଖବର ମିଳିଲା ନାହିଁ । ରଘୁ ପାଟ୍‌ନାରୁ ଯଦି ଚାଲିଯାଇଥିବ କୁଆଡ଼େ କୁଆଡ଼େ ଯିବା ସମ୍ଭବ ଭାବିଚିନ୍ତି

ତା'ର ଗୋଟିଏ ତାଲିକା କରାଗଲା । ତା'ପରେ ରାତିରେ ପଲମଟିଏ ଯୋଗାଡ଼ କରାଗଲା । ତା ଭିତରେ ଜଣେ କିଏ ପିଲା ବସିଲା । ଘରଯାକ ବେଢ଼ି ବସିଥାନ୍ତି । ରବିର ବାପା କ'ଣ ମନ୍ତ୍ର ପଢ଼ିଲେ । ପଲମ ଆଡ଼କୁ ଅନାଇ ପ୍ରଶ୍ନ ପଚାରୁଥାନ୍ତି , ''ରଘୁ କ'ଣ ଏଠିକି ଯାଇଛି ?'' ''ଏଠିକି ଯାଇଛି ?'' ''-ଘରକୁ ଯାଇଛି ?'' ଜାଗା ଓ ଲୋକମାନଙ୍କ ନାଁ କୁହା ହେଉଥାଏ । କେଉଁ ଗୋଟିଏ ନାଁ କହିଲା ପରେ ପଲମଟି ବୁଲିଲା । ସେହି ସ୍ଥାନଟି ଧାର୍ଯ୍ୟ ହେଲା । ସଙ୍ଗେ ସଙ୍ଗେ ଲୋକ ପଠାହେଲା ବନ୍ଧୁଙ୍କୁ ପଲମବୁଲାର ଫଳ କହିବାକୁ, ସେ ରେଲ୍‌ରେ ସେଠିକି ଲୋକ ପଠାନ୍ତୁ ରଘୁ ମିଳିବ । କିଛିଦିନ ପରେ ରଘୁ ମିଳିଲା, ପଲମ-ବୁଲାରୁ ଯେଉଁ ଠିକଣା ମିଳିଥିଲା ସେହି ଠିକଣାରୁ ମିଳିଲା କି ନାହିଁ ମତେ ଜଣା ପଡ଼ିଲା ନାହିଁ ।

ବେଳେବେଳେ ରବି ଓ ମୁଁ ନିଜ ଭିତରେ ଖୁସିରେ ତର୍କ କରୁଁ, କିଏ ବଡ଼ କିଏ ବେଶି ଉନ୍ନତ,-ଓଡ଼ିଶା ନା ବଙ୍ଗଦେଶର ଲୋକେ । ତର୍କରେ କେତେ କଥା ପଡ଼େ, ଅତୀତରୁ ଆମ ଜାଣତା ପର୍ଯ୍ୟନ୍ତ କେତେ ନାଁ, କେତେ ଘଟନା, ଆମେ ନିଜ ନିଜ ପଟର ବଡ଼ତି ପ୍ରମାଣ କରିବାକୁ ଲାଗିପଡ଼ୁଁ । କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଛି, ଆମେ ବ୍ୟଙ୍ଗ ସମାଲୋଚନା କରାକରି ହେଲେ ବି ରାଗୁନାହିଁ, ସେଥିରେ ତିକ୍ତତା ନ ଥାଏ, ପୁଣି ଅନେକ ବିଷୟରେ ଆର ପକ୍ଷର ବଡ଼ତି ସ୍ୱୀକାର କରିନେଉଁ, ଶ୍ରଦ୍ଧା ଓ ସମ୍ଭ୍ରମ ଜଣାଉଁ ।

''ଏଇଟା ସତ ଯେ, ଓଡ଼ିଶାର ଶିଳ୍ପଚାତୁରୀ ବଙ୍ଗଳାରେ ନାହିଁ,'' ରବି କହେ, ''ସମସ୍ତେ ପ୍ରଶଂସା କରନ୍ତି । ଦେଉଳ ତ ଅଦ୍ୱିତୀୟ, କହନ୍ତି ତା'ର ତୁଳନା ନାହିଁ, ବାପା କହନ୍ତି ଏବେ ବି କଟକର ତାରକସି କାମ ଦେଖିଲେ ଆଖି ଖୋଷି ହୋଇଯିବ । କିନ୍ତୁ ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀ ଅରବିନ୍ଦ, କି ସାହିତ୍ୟରେ ବଙ୍କିମ୍, ଶରତ୍, ରବୀନ୍ଦ୍ରନାଥ, ହଁ ରବୀନ୍ଦ୍ରନାଥ । କ'ଣ କହୁଛ ?''

''ସେମାନେ ଭାରତ ଯାକରେ ଶ୍ରେଷ୍ଠ, କିଏ ଅସ୍ୱୀକାର କରିବ ?'' ମୁଁ କହେ, ''କିନ୍ତୁ ଶାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ରାଧାନାଥ, ଫକୀରମୋହନ, କେଡ଼େ ବିରାଟ ସେମାନେ ! ମୁଁ ସ୍ୱୀକାର କରୁଛି, ଇଂରେଜି ଶିକ୍ଷା ଆଗ ବଙ୍ଗଦେଶରେ ପଶିଲା, ତେଣୁ ଆଧୁନିକତାରେ ବଙ୍ଗଦେଶ ବେଶି ଆଗକୁ ମାଡ଼ିଲା । ବହୁତ ପ୍ରତିଭାମନ୍ତ ମଣିଷ ବାହାରିଲେ । ତେବେ ତା କାରଣ ବି ତୁମେ ବୁଝ । ଓଡ଼ିଶା କେତେ କାଳ କେତେ କଷ୍ଟ ସହି ତା

ସ୍ୱାଧୀନତା ଅତୁଟ ରଖିଥିଲା ।''

କୁଆଡ଼ୁ କୁଆଡ଼ୁ ହୋଇ ଶେଷରେ ଆମେ ପହଞ୍ଚୁ ଗୋଟିଏ ବିରାଟ ଏକତାର ପତ୍ତନରେ । ଆମେ କହୁ, ସମସ୍ତେ ଆମେ ଗୋଟିଏ ପରିବାରର ଲୋକ । ସେ ପରିବାରର ନାଁ ଭାରତ । ସେଠି ଯେଉଁ ଭାଇ କୀର୍ତ୍ତି ଅର୍ଜିଲା ସେ କୀର୍ତ୍ତି ସମଗ୍ର ପରିବାରର, ଏକା ଜଣଙ୍କର ନୁହେଁ । କେତେବେଳେ କିଏ କିପରି କୀର୍ତ୍ତି ରଖିଗଲା, କେତେବେଳେ କିଏ ଅବା ଟିକିଏ ପଛେଇଗଲା, ସେ ପୁଣି ଉଠିବ । ମୂର୍ଖମାନେ କଳି କରନ୍ତି ଜାତି ଓ ଭାଷାକୁ ଭିତ୍ତିକରି, ତେବେ ଏ ସଂସାରରେ ମୂର୍ଖ ବି ବହୁତ ।

ବେଳେବେଳେ ମା' ଶୁଣନ୍ତି । ସେ ଭାରି ଖୁସି ହୁଅନ୍ତି । କହନ୍ତି ''ତୁମେ ଏଇ ଯାହା ବୁଝିଛ ଠିକ୍ କଥା ବୁଝିଛ । ତୁମେ ଦୁହେଁ ଦୁଇଭାଇ । କେଉଁଠି କିଏ କେଡ଼େ ବଡ଼ ହେଲା ଖାଲି ଆମର ଆମର କରି ତର୍କ କରି ମୁଣ୍ଡ ଖରାପ କର ନାହିଁ, ସବୁ ତମର, ସମସ୍ତେ ତମର, ଯେ ବଡ଼ ହେଲା ତୁମେ ତା'ର ସେ ଗୁଣକୁ ଗ୍ରହଣ କରି ଶିଖ, ଚେଷ୍ଟାକର ତୁମେ ଯେମିତି ବଡ଼ ହେବ, ଦଶ ଲୋକଙ୍କର ଉପକାର କରିବ । ଯେ ମନ୍ଦ ହେଲା ତୁମେ ତାକୁ ଅନୁକରଣ କର ନାହିଁ, ତୁମେ ହୁସିଆର ରହ, ତୁମଠିଁ ସେ ଦୋଷ ଯେମିତି ନ ବାହାରେ ।''

ଆମେ ସ୍ୱପ୍ନ ଦେଖୁଁ, ଆମର ଭାରତ ସ୍ୱାଧୀନ ହୋଇଛି । ଏକ ଅଖଣ୍ଡ ଭାରତ, ସୁନାର ଦେଶ । ଆମେ ତା'ର କାରିଗର ।

ରବି ସୁନ୍ଦର ସ୍ୱରରେ ଗୀତ ବୋଲେ—

''ମାୟେର୍ ଦେଓଆ ମୋଟା କାପଡ଼୍
ମାଥାୟ୍ ତୁଲେ ନେ ରେ ଭାଇ—''

ଆଉ କେତେବେଳେ ସ୍ୱର ଛାଡ଼ିଦିଏ—

ଧନଧାନ୍ୟ ପୁଷ୍ପେ ଭରା
ଆମାର୍ ଏଇ ବସୁନ୍ଧରା
ତାର ମାଝେ ଆଛେ ଦେଶେକ୍
ସକଲ୍ ଦେଶର୍ ଦେରା

ନ ହେଲେ—

''ଯେଦିନ୍ ସୁନୀଲ୍ ଜଲଧି ହଇତେ
ଉଠିଲ ଜନନୀ ଭାରତବର୍ଷ-''

ଦେଶ-ଦେଶ-ଦେଶ —

ସେ ଦେଶ ସ୍ୱାଧୀନ ହେଉ । ସମୃଦ୍ଧ ହେଉ । ସେହି ଚେତନାର ଢେଉ ଖେଳୁଥାଏ ଛାତ୍ର ସମାଜ ଭିତରେ । ଭାରତ ଅତୀତରେ ସମୃଦ୍ଧ ଥିଲା, ପୃଥିବୀରେ ତା'ର ଶ୍ରେଷ୍ଠ ଆସନ ଥିଲା, ସେ ମା ବନ୍ଦିନୀ । ସେ ଦେଶ ଅଧଃପତିତ । ତାକୁ ଉଠେଇବାକୁ ପଡ଼ିବ । ପ୍ରତ୍ୟେକେ ନିଜ ନିଜ କ୍ଷେତ୍ରରେ ସେହି ଆଦର୍ଶକୁ ଆଖି ଆଗରେ ରଖି କାମ କରିଯିବେ । ଆଗ ସେଥିପାଇଁ ଦରକାର ନିଜକୁ ପ୍ରସ୍ତୁତ କରିବା । ଖାସ୍ ସେହି ଉଦ୍ଦେଶ୍ୟରେ ଛାତ୍ର ନିଜର ଚରିତ୍ରବଳ ବଢ଼ାଇବ, ଆଧ୍ୟାତ୍ମବଳ ବଢ଼ାଇବ, ଦେହକୁ ଟାଣ କରିବ, ପୁଣି ଖାସ୍ ସେହି ଉଦ୍ଦେଶ୍ୟରେ ସେ ଖୁବ୍ ଭଲକରି ପାଠ ପଢ଼ିବ, ଜ୍ଞାନ ଅର୍ଜନ କରିବ ଓ ଦକ୍ଷତା ଅର୍ଜନ କରିବ । ବିଚାରଟା ମୋଟାମୋଟି ଏହିଭଳି ଥିଲା । ଆଖି ଆଗରେ ଥିଲା ପ୍ରାତଃ ସ୍ମରଣୀୟ ଦେଶନାୟକମାନଙ୍କ ତ୍ୟାଗ ତପସ୍ୟାର ଆଦର୍ଶ । ମହାତ୍ମାଜୀଙ୍କ ନାଁ ପଡ଼ିଲେ ଛାତ୍ର ବିହ୍ୱଳ ହୋଇଯାଉଥିଲା । ସୁଭାଷ ଚନ୍ଦ୍ର ବୋଷ୍ ଏଡ଼େ ଉଜ୍ଜ୍ୱଳ, କୃତୀ ଛାତ୍ର ହୋଇ ଆଇ.ସି.ଏସ୍.ରେ ପ୍ରଥମ ସ୍ଥାନ ପାଇ ପରୀକ୍ଷାରେ ଭାରତୀୟ ଉତ୍କର୍ଷର ଟେକ ଦେଖାଇସାରି କେମିତି ଆଇ.ସି.ଏସ୍. ଛାଡ଼ି ଦେଶ କାମରେ ମିଶିଥିଲେ ସେ ଦୃଷ୍ଟାନ୍ତ ଛାତ୍ରମାନଙ୍କ ମନରେ ଗର୍ବ ଆଣୁଥିଲା । ଗର୍ବ ଆସୁଥିଲା, ରବୀନ୍ଦ୍ରନାଥ ନୋବେଲ୍ ପ୍ରାଇଜ୍ ପାଇଲେ ବୋଲି, ଜଗଦୀଶ୍ ଚନ୍ଦ୍ର ବୋଷ୍ ଏଡ଼େ ବଡ଼ ବୈଜ୍ଞାନିକ ବୋଲି, ବିବେକାନନ୍ଦ ପୃଥିବୀଯାକ ଲୋକଙ୍କର ସମ୍ମାନ ପାଇଲେ ଭାରତର ଧର୍ମ ଓ ଦର୍ଶନର ପରାକାଷ୍ଠା ବୁଝାଇ ସମସ୍ତିଙ୍କୁ ଅଭିଭୂତ କଲେ ବୋଲି, ସାର୍ ଆଶୁତୋଷ୍ ମୁଖର୍ଜି ଏଡ଼େ କୃତୀ ଛାତ୍ର ହେଲେ, ଚିଫ୍ ଜଷ୍ଟିସ୍ ଓ ଭାଇସ୍ ଚ୍ୟାନ୍‌ସେଲର୍ ହେଲେ ବୋଲି, ଲର୍ଡ଼ ସିହ୍ନା ଲାଟ୍‌ସାହେବ ହେଲେ ବୋଲି, ଏମିତି କେତେ କେତେ କଥା ପାଇଁ । ଆମେ ଏକାଠି ହେଲେ ସେହିସବୁ ଆଲୋଚନା ପଡୁଥିଲା । କେତେ ବଡ଼ ବଡ଼ ଲୋକଙ୍କ ବିଷୟରେ ଆଲୋଚନା ହେଉଥିଲା,-ମୋତିଲାଲ୍ ନେହେରୁ, ରାଜାଜୀ, ଲଜ୍‌ପତ୍ ରାୟ, ସର୍ଦ୍ଦାର ପଟେଲ୍, ତିଲକ୍, ଗୋଖ୍‌ଲେ, ସି. ଆର୍. ଦାସ, ପ୍ରଫୁଲ୍ଲ ଚନ୍ଦ୍ର ରାୟ ।

ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ ଆମେ ସେହି ଚେତନା ଖେଳାଇ ଦେଉଥିବା ବହିସବୁ ପଢୁଥିଲୁଁ । ବହିଗୁଡ଼ିକ କୁଆଡୁ କୁଆଡୁ ଆସି ହାତକୁ ହାତ ହୋଇ ଖେଳି ବୁଲୁଥିଲା । ଅନେକ ଦେଶନାୟକଙ୍କ ଜୀବନୀ ତ ପଢୁଥିଲୁଁ, ତା ଛଡ଼ା ସେତିକିବେଳେ ପଢ଼ିଲି ବଙ୍ଗଳାରେ ରମେଶ ଦତ୍ତଙ୍କ ''ମହାରାଷ୍ଟ୍ର ଜୀବନୀ ପ୍ରଭାତ'', ''ରାଜପୁତ୍ ଜୀବନ ସନ୍ଧ୍ୟା'', ବଙ୍କିମ୍ ଚନ୍ଦ୍ରଙ୍କ ''ଆନନ୍ଦ

ମଠ'', ନବୀନ ସେନଙ୍କ ''ପଲାସୀର୍ ଯୁଦ୍ଧ'', ନାଟକ ''ନୀଲ୍ ଦର୍ପଣ'', ଶରତ ଚନ୍ଦ୍ରଙ୍କ ।

ଆଉ ଲୁଚେଇ ଲୁଚେଇ ପଢୁଥିଲୁଁ ବଙ୍ଗଳା ସନ୍ତ୍ରାସବାଦୀ ଓ ବିପ୍ଳବୀମାନଙ୍କ ବିଷୟରେ ଲେଖା ହୋଇଥିବା ଅତି ଉତ୍ତେଜନାପୂର୍ଣ୍ଣ ବହିଗୁଡ଼ିଏ । ଉପରେ ଗୋଟାଏ ରିଭଲଭରର ଛବି ଥାଏ, ''ଖୁଦୀରାମ'', ''କାନାଇଲାଲ୍'', ''ବାରିନ୍ ଘୋଷ୍'', କାହାର 'ଫାସି', ଏମିତି କେତେ ବହି । ସେସବୁ ବହି ବାପ ଭାଇଙ୍କି ଦେଖାଇବାକୁ ବି ମନା । ଆଲୋଚନା ପଡ଼େ ବନ୍ଦେ ମାତରଂ, ନୂଆ ଆସିଥିବା ଲୋକଙ୍କୁ ପରୀକ୍ଷା କରୁଥିଲେ, ଗୀତା ଖଣ୍ଡିଏ ପଢ଼ିବାକୁ ଦେବେ, ଦେହ ଉପରେ କଙ୍କଡ଼ା ବିଛାଟାଏ ଛାଡ଼ିଦେବେ, କଙ୍କଡ଼ା ବିଛା କାମୁଡ଼ିବ ଅଥଚ ସେ ଦେହକୁ କାଠ କରି ବସି ରହିବ । ତା ପରେ ଦେହରେ ଠାଏ ଖଣ୍ଡିଆ କରି ରକ୍ତ ବାହାରିଲେ ସେ ରକ୍ତକୁ ଦେବୀଙ୍କୁ ଦେବ, ସେହି ରକ୍ତରେ ପ୍ରତିଜ୍ଞା ଲେଖିବ, ଏମିତି କେତେ କଥା ।

ଦରମା ପାଇଁ ବିଦେଶରେ ଚାକିରି କରି ବସା କରି ରହିଥିବା ଚାକିରିଆଙ୍କ ପିଲାଏ ବିପ୍ଳବ ଓ ସ୍ୱାଧୀନତାର କଳ୍ପନାରେ ଉତ୍ତେଜିତ ହୋଇଉଠନ୍ତି । ଆଖି ଝିକିଝିକି ଦିଶେ, ବେକ ଫୁଲିଯାଏ । ସତେ ଯେମିତି ଦେଶ ପାଇଁ କାମ କରିବାକୁ, ଜେଲ ଯିବାକୁ, ଫାସି ଯିବାକୁ ସମସ୍ତେ ରାଜି, ସମସ୍ତେ ଗୋଟିଏ ଗୋଟିଏ ଜୀବନ-ଦାନୀ ବୀର । କିନ୍ତୁ ବହି ପଢ଼ିବା, ଆଲୋଚନା କରିବା ଓ ସ୍ୱପ୍ନ ଦେଖିବା ଛଡ଼ା ସେ ଭାବ ଆଉ କୌଣସି ବାଟ ଧରେ ନାହିଁ । ସେମାନେ ଯେପରି କୌଣସି ସଙ୍ଗଠନ କି ଆନ୍ଦୋଳନ କରୁ ନ ଥିଲେ, କେହି ତାଙ୍କୁ ସେପରି କାମରେ ଲଗାଇବାକୁ ଆସି ନ ଥିଲା । ଖାଲି ଗୋଟାଏ ଚେତନା ଖେଳୁଥିଲା – ସେତିକି ।

ସମସ୍ତେ ବିଶ୍ୱାସ କରୁଥିଲେ ଭାରତ ସ୍ୱାଧୀନ ହେବ, ଇଂରେଜ୍ ଯିବେ । ବେଶି ଡେରି ନାହିଁ ।

ସେତେବେଳେ ଆସିଥିଲେ ସ୍ୱାମୀ ପ୍ରଣବାନନ୍ଦ, ଖୁବ୍ ବଡ଼ ସଭା ହୋଇଥିଲା, ତାଙ୍କର ଭକ୍ତମାନେ ଖୁବ୍ ସୁନ୍ଦର ସ୍ୱରରେ ସ୍ୱାମୀ ପ୍ରଣବାନନ୍ଦଙ୍କ ଗୀତଗୁଡ଼ିକ ଗାଇଥିଲେ । ଗୋଟିଏ ଗୀତରୁ ଦି ଧାଡ଼ି ମନେ ପଡୁଛି-

''କୋଥାୟ ଧର୍ମ କୋଥାୟ ପୁଣ୍ୟ
କୋଥାୟ ସତ୍ୟ—କୋଥାୟ ଦାନ୍''

ଆଉ ମନେ ପଡୁଛି—

"କିସେର୍ ଦୁଃଖ କରିସ୍‌ରେ ଭାଇ
ଆବାର୍ ତୋରା ମାନୁଷ୍ ହ"

ତାଙ୍କର 'ବ୍ରହ୍ମଚର୍ଯ୍ୟ' ବହିଟି ଅନେକେ କିଣି ପଢ଼ିଲେ । ଦିନା କେତେ ତାଙ୍କ ପ୍ରଭାବ ପବନରେ ରହିଗଲା ।

ଥରେ ରାଜେନ୍ଦ୍ର ପ୍ରସାଦ ସଭା କରିଥିଲେ, ସମସ୍ତେ ଗଦା ହୋଇ ପଡ଼ିଥିଲେ । ଛାତ୍ରମାନଙ୍କୁ ସେ ଉଦ୍‌ବୋଧନ ଦେଇଥିଲେ ।

ଥରେ ଶରତ ଚନ୍ଦ୍ର ଚଟ୍ଟୋପାଧ୍ୟାୟ ଆସି ବକ୍ତୃତା ଦେଇଥିଲେ । ବହୁତ ଦିନର କଥା ହେଲାଣି, ଅଳ୍ପ ଟିକିଏ ଟିକିଏ ମନେ ପଡ଼ୁଛି, ପୁରୁଷ, ସ୍ତ୍ରୀ ପିଲା ସମସ୍ତେ ଉଠି ଆସିଥାନ୍ତି । ସେ କଥାଭାଷା ହେଲାପରି କହି ଯାଉଥାନ୍ତି, କ'ଣ କେତେ ଘରୋଇ କଥା କହି ହସୋଉଥାନ୍ତି ।

ଆଉ ଥରେ ବୈଜ୍ଞାନିକ ଆଚାର୍ଯ୍ୟ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟ ବକ୍ତୃତା ଦେଇଥିଲେ । ସେଥର ବହୁତ ଭିଡ଼ । ମନେ ପଡ଼ୁଛି ସେ ବିଶ୍ଳେଷଣ କରି କହିଯାଉଥିଲେ, ଖାଲି ଚାକିରିକି ଆଶ୍ରା କରି ବଙ୍ଗାଳିମାନେ କେମିତି ହଟହଟା ହେଉଛନ୍ତି, କେମିତି ନିଜସ୍ୱ ସଂସ୍କୃତି ବି ଭୁଲିଯାଉଛନ୍ତି । ଯାହା ମନେ ପଡ଼ୁଛି ସେ ବଙ୍ଗଦେଶ ଓ ବଙ୍ଗାଳୀମାନଙ୍କ ଅବସ୍ଥା ବିଷୟରେ ବେଶି କହିଥିଲେ, ଆଉ କହିଥିଲେ, "ଭାରତର ସବୁ ପ୍ରଦେଶ ସେ ପ୍ରଦେଶର ଲୋକଙ୍କ ପାଇଁ ରହିଛି, ଖାଲି ବଙ୍ଗଦେଶଟା ଯେ, ସେ ରହିଛି ସବୁଆଡ଼ର ଲୋକଙ୍କ ପାଇଁ । Bihar for Biharies, Punjab for Punjabi, Orissa for Oriyas, ଇତ୍ୟାଦି, Bengal for everybody."

ତାଙ୍କ କଥା ମୁଁ ଠିକ୍ ବୁଝିଲି କି ଭୁଲ୍ ବୁଝିଲି ମୁଁ ଜାଣେ ନାହିଁ, କିନ୍ତୁ ସେଦିନୁ ଆଜିଯାକେ ଯେ ବୟାଳିଶି ତେୟାଳିଶି ବର୍ଷ ଭିତରେ ମୁଁ ଯେତେଥର ସେ କେତେ ପଦ କଥା ଭାବିଛି ମୋ ପାଟିରେ କ'ଣ ଅସୁଆଦିଆ ଅରୁଚି ଜିନିଷ ଲାଗିଗଲା ଭଳି ଅନୁଭବ କରିଛି । ଆମେ ଖୋଜୁଥିଲୁଁ ଏକ ଅଖଣ୍ଡ ଭାରତବର୍ଷ, ବଙ୍ଗଳା ଓ ଓଡ଼ିଶା, ବିହାର ବୋଲି ଅଲଗା ଅଲଗା ଧାରଣା ନୁହେଁ, ହିନ୍ଦୁ ମୁସଲ୍‌ମାନ୍ ବୋଲି ଅଲଗା ଅଲଗା ଧାରଣା ନୁହେଁ । ଆମେ ଖୋଜୁଥିଲୁଁ ସର୍ବଭାରତୀୟ ନେତାଙ୍କ ତୁଣ୍ଡରୁ ଶୁଣିବୁଁ ସେହି ଏକ ଦେଶ, ଏକା ରକ୍ତର ଡାକ ।

ସେମିତି ମୋ ମୁହଁ ଆମ୍ବିଳା ପଡ଼ିଯାଇଥିଲା ଯେତେବେଳେ ଆମ ସହପାଠୀ ବଙ୍ଗାଳି ପିଲାଙ୍କ ପାଠ ବହିରେ ରବୀନ୍ଦ୍ରନାଥଙ୍କର ନାନା କବିତା ପଢ଼ି ଆନନ୍ଦରେ

ମୁଁ ବିଭୋର ହେଲାବେଳେ, ''ପଞ୍ଚନଦୀର୍ ତୀରେ-ବେଣୀ ପାକାଇଆ ଶିରେ-ଜାଗିଆ ଉଠିଲ ଶିଖ୍-ନିର୍ମମ ନିର୍ଭିକ୍'' ଆବୃତ୍ତି କରି ମାତି ଉଠିଲା ପରେ 'ଦୁଇବିଘା ଜମି' କବିତାଟି ପଢ଼ିଲି,

''ହେନ କାଲେ ହାୟ୍ ଯମ ଦୂତ ପ୍ରାୟ
କୋଥା ହତେ ଏଲୋ ମାଲି
ଝୁଣ୍ଟି ବାଁଧା ଉଡ଼େ ପଞ୍ଚୀ ସୁରେ
ପାଡ଼ିତେ ଲାଗିଲେ ଗାଲି ।''

ମାଳୀଟିର ମୁଣ୍ଡବାଳ ଗଣ୍ଠି ପଡ଼ିଥିଲା, ମଫସଲିଆ ଲୋକେ ସେମିତି ଆଗେ ରଖୁଥିଲେ । ମାଳୀ ଗାଳି ଦେଲା, ଭଲ କଲା । ତାର ଖୁବ୍ ଗୁଣ୍ଡା ଷଣ୍ଢା ଚେହେରା, ତେଣୁ ସେ ଯମଦୂତ ପରି ଦିଶେ । ଭଲ ତ, ସମସ୍ତେ ସେପରି ହୋଇଥିଲେ ତ ଆହୁରି ଭଲ ।

କିନ୍ତୁ 'ଉଡ଼େ' । ଅଡୁଆ ସେଇଠି । ଭାବି ଦେଖିଲେ ଅଡୁଆ କିଛି ନାହିଁ ମୁଁ ଜାଣେ । ଗୋଟାଏ ଭାଷାଭାଷୀଙ୍କ ଉଚ୍ଚାରଣ ଅନ୍ୟ ଭାଷାଭାଷୀଙ୍କ ତୁଣ୍ଡରେ ସହଜରେ ହୁଏ ନାହିଁ । ଆମ ଇଂରେଜି ଉଚ୍ଚାରଣ ସାହେବ୍ ବୁଝିବା କଷ୍ଟ । ଉଚ୍ଚାରଣ କଲାବେଳେ 'ଙ୍ଗ' ଉତ୍ତାରୁ କି 'ଙ୍କ' ଉତ୍ତାରୁ ଆମେ 'ଲ' କହିବା ପରିବର୍ତ୍ତେ 'ଳ' କହିବା ସୁବିଧା ମଣୁଁ । ଆମେ ସେମାନଙ୍କୁ 'ବାଙ୍ଗାଲୀ' ନକହି 'ବଙ୍ଗାଳୀ' କହୁଁ, ସେମାନେ ବୋଧହୁଏ ଛକ କରନ୍ତି ନାହିଁ । ସେମିତି ତାଙ୍କ ତୁଣ୍ଡକୁ ଶବ୍ଦ ଆରମ୍ଭରେ 'ଓ' ଉଚ୍ଚାରଣ ସୁବିଧା ଲାଗେ ନାହିଁ, 'ଓ' ପରିବର୍ତ୍ତେ 'ଉ' ହୋଇଯାଏ । ଦେହକୁ ମନକୁ କାଟିଲେ ଆମେ କହୁ ''ଓଃ !'' ସେମାନେ କହନ୍ତି ''ଉଃ !'' ସେମିତି, ଆମେ କହୁ 'ଓଡ଼ିଆ', ସେମାନେ କହନ୍ତି ''ଉଡ଼ିଆ'', ସଂକ୍ଷେପରେ 'ଉଡ଼େ' । ତେଣୁ ସାଧାରଣ କଥାଭାଷାରେ,—'ଉଡ଼ିଷ୍ୟା, 'ଉଡ଼ିଆ ଭାଷା', ''ଉଡ଼େ'' । ସେଥିରେ ମତଲବ୍ ନଥିଲା ।

କିନ୍ତୁ ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ 'ଉଡ଼େ' ଶବ୍ଦଟି ସତେ ଯେମିତି ଗୋଟିଏ ରୁଢ଼ି ଅର୍ଥ ପାଇଗଲା । କେତେକ କାରଣରୁ କେତେଠି ତିକ୍ତତା ଜାତ ହୋଇଥିଲା, ଆଧୁନିକ ବୋଲାଉଥିବା ସହରିଆ ବାବୁମାନେ କଲିକତାରେ ବହୁସଂଖ୍ୟାରେ କୁଲି ମଜୁରିଆ କାମ କରୁଥିବା ମଫସଲିଆ ଗରିବ ଓଡ଼ିଆମାନଙ୍କୁ କେତେକେତେ ବେଳେ ତୁଚ୍ଛ ତାଚ୍ଛଲ୍ୟ କଲେ, ନିଜ ଭଳିଆ ଲୋକଙ୍କୁ ଛାଡ଼ିଦେଲେ ଅନ୍ୟ ଜାତିର ଲୋକଙ୍କୁ ନାନା ପ୍ରକାରେ ଥଟ୍ଟା କରିବା କେତେ ଲୋକଙ୍କର

ଗୋଟାଏ ମଉଜ ହେଲା । ଓଡ଼ିଆଙ୍କୁ ପଛରୁ 'ଉଡ଼େ ଉଡ଼େ' ବୋଲି ଡାକନ୍ତି, ଜଣାଗଲା 'ଉଡ଼େ' ବୋଲି କହିଲେ ଓଡ଼ିଆ ଚିଡ଼ନ୍ତି । ତେଣୁ ଦ୍ବିଗୁଣେଇ ହୋଇ 'ଉଡ଼େ ଉଡ଼େ' ରଡ଼ନ୍ତି । ସହରର ବଜାରି ଲଫଙ୍ଗାମାନଙ୍କର ସେଭଳି ବ୍ୟବହାର, ଦାୟିତ୍ୱପୂର୍ଣ୍ଣ ଲୋକଙ୍କର ନୁହେଁ ।

ସେହିମାନେ ଛନ୍ଦ ଯାନ୍ଧିଥିଲେ,

"ବାଙ୍ଗାଲ୍ ମନୁଷ୍ୟ ନହେଁ, ଉଡ଼େ ଏକ୍ ଜନ୍ତୁ
ଲାଫ୍ ଦିଏ ଗାଛେ ଉଠେ, ଲ୍ୟାଜ୍ ନେଇ କିନ୍ତୁ ।"

ଅଥଚ 'ବାଙ୍ଗାଲ୍' ଅର୍ଥାତ୍ ପୂର୍ବ ବଙ୍ଗର ବଙ୍ଗାଳୀ ଖେଳରେ ଜ୍ଞାନବିଜ୍ଞାନରେ ଅନେକ ବିଷୟରେ ହୋଇଥିଲେ ବଙ୍ଗଳାର ଗୌରବ । ବଙ୍ଗଦେଶରେ ମେଦିନପୁର ସାମିଲ୍ ହେଲାଦିନୁଁ ଅନେକ 'ଉଡ଼େ' ବଙ୍ଗଦେଶର ଗୌରବ ବଢ଼ାଇଥିଲେ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ନିଜେ ତହିଁରୁ ଜଣେ, ଶ୍ରୀ ଚୈତନ୍ୟଙ୍କ ପୂର୍ବପୁରୁଷ ଯାଜପୁରରୁ ଯାଇଥିଲେ, ଅସଂଖ୍ୟ ଉଦାହରଣ ।

ପାଖେ ଦାୟିତ୍ୱହୀନ ସଂକୀର୍ଣ୍ଣମନା ଲୋକମାନଙ୍କର ନିର୍ଦ୍ଦୟ ଥଟ୍ଟା, ପାଖେ 'ଉଡ଼େ' କହିଲେ ସେହିସବୁ କଥା ମନେ ପଡ଼ିଯାଇ ଓଡ଼ିଆଙ୍କର ଚିଡ଼ା—ଏ ଦୁଇଟା ମିଶି 'ଉଡ଼େ' ଶବ୍ଦକୁ ଆମ କାନକୁ ଦୋଷଯୁକ୍ତ କରିଥିଲା । କିନ୍ତୁ ବୋଧହୁଏ ଏକଥା ଏବେବି ଅନେକ ବଙ୍ଗାଳୀ ଜାଣନ୍ତି ନାହିଁ । ବାହାରୁ କେହି ବକ୍ତୃତା ଦେବାକୁ ଓଡ଼ିଶାକୁ ଆସିଲେ ତାଙ୍କୁ ଗୁପ୍ତରେ ବୁଝେଇ ଦିଆହୁଏ, "ଉଡ଼େ ବୋଲି ଆପଣ କହିବେ ନାହିଁ, ଅଡୁଆ ହେବ, କହିବେ ଓଡ଼ିଆ ।"

ମୋର ମନେ ପଡୁଛି, ଥରେ ମୁଁ ସଉଦା ଘେନି ଚିତ୍‌କୋରା ହାଟରୁ ବସାକୁ ଫେରୁଥାଏଁ । ପଛରୁ କିଏ ଗୋଟାଏ "ହେଇ, 'ଉଡ଼େ' ଜଣେ ଯାଉଛି । ପାଟି କର୍, ଅ ଉଡ଼େ, ଅ ଉଡ଼େ," ପଛକୁ ଅନାଇଁ ଦେଲି । ଦେଖିଲି ଗୋଟାଏ ତେର ଚଉଦ ବର୍ଷର ଝିଅଟିଏ, ଗୁଡ଼ାଏ ସାନ ସାନ ଟୋକା । ଟୋକାଗୁଡ଼ାକ "ଅ ଉଡ଼େ ! ଅ ଉଡ଼େ !"ବୋଲି ଘୋଷା ବୋଲୁଥାନ୍ତି । ଟୋକୀଟା ହସୁଥାଏ । ମୁଁ ବୁଲିପଡ଼ି ଗୋଡ଼େଇଲି । ସେମାନେ ପଳାଇଲେ । ସେମାନେ ଗୋଟାଏ ଘର ଭିତରେ ପଶିଲେ । ମୁଁ ବି ଚାଉଳ ବୁଜୁକା, ପରିବା ବୋଝ ବୋହି ତାଙ୍କ ପଛେ ପଛେ ପାଟି କରି କରି ସେ ଘର ଭିତରେ ପଶିଲି । କିଏ ସବୁ ଦାଣ୍ଡ ଘରକୁ ଆସିଲେ । ବୋଧହୁଏ ବାପା ମା । ମୁଁ ସେମାନଙ୍କ ଆଗରେ ଫେରାଦ ହେଲି, କହିଲି "ଆପଣ ଆପଣଙ୍କ ଝିଅକୁ, ଆପଣଙ୍କ ସାନ ସାନ ପିଲାଙ୍କୁ ଆଟକ କରନ୍ତୁ । ସେମାନେ ଥାଉ

ଦିନେ ଏମିତି ଅଭଦ୍ର ବ୍ୟବହାର କରିବେ ନାହିଁ । ଅଚିହ୍ନା ବାଟୋଇ ପଛରେ କୁକୁର ଭୁକି ଭୁକି ଗୋଡ଼େଇଲାପରି ଉଡ଼େ ଉଡ଼େ କହି ଗୋଡ଼େଇବେ ନାହିଁ, ପୁଣି ସେମିତି କଲେ ବଡ଼ ଭୟଙ୍କର ପରିଣାମ ହେବ, ଏଠି ବହୁତ ଓଡ଼ିଆ ଭଦ୍ରଲୋକ ଅଛନ୍ତିଟି, ଜାଣିଥା ।''

ନ୍ୟାୟ ଥାଏ ମୋ' ପଟେ, ଆଉ ମୁଁ ରାଗରେ ନିଆଁ ହୋଇ ଥାଏ, ସେମାନେ ଥକ୍କା ହୋଇ ଠିଆ ହୋଇଥାନ୍ତି । ମୁଁ ବାହାରି ଚାଲିଗଲି, ପଛରୁ ଗର୍ଜନ ଶୁଭୁଥାଏ, ''ଖୁକି ! ଅ ଖୁକି !''

ତା ଉତ୍ତାରୁ ସେବାଟେ ମୁଁ ଯେତେଥର ଯା'ଆସ କରିଛି ଆଉ ସେମାନଙ୍କୁ ଦେଖି ନାହିଁ । ଆଉ ସେପରି କେହି ମତେ ଚିଡ଼େଇ ନାହିଁ ।

ଘରେ ଭାଇ ମତେ କହିଲେ, ''ସେ ଘରର ନମ୍ବରଟା ଟିପି ଆଣି ପାରିଲୁ ନାହିଁ ?'' ଏତେ ମୁଁ ଲକ୍ଷ୍ୟ କରି ନାହିଁ ।

ମତେ ଜାବା ଲାଗିଲା, କେମିତି ସେ ଝିଅଟା ଜାଣିଲା ମୁଁ ଓଡ଼ିଆ ? ବୋଧହୁଏ ମୁଁ କେଉଁ ସାଙ୍ଗ ସଙ୍ଗରେ କଥାଭାଷା ହୋଇ ଗଲାବେଳେ ସେ ଆମ ଓଡ଼ିଆ କଥା ଶୁଣିଥିବ, ତେଣୁ ଜାଣିଥିବ । କିନ୍ତୁ ଉଡ଼େ ଉଡ଼େ କହି ଚିଡ଼େଇବା କଳ୍ପନା ବି ତା ମୁଣ୍ଡକୁ ଆସିଲା କେମିତି ? ଆଗରୁ ଆଉ କାହାଠୁଁ ସେ ଶୁଣିଥିବ, କିମ୍ୱା ଆଗରୁ ଦେଖିଥିବ ଏମିତି ଲୋକେ ଚିଡ଼ାନ୍ତି । ଅଚିହ୍ନା ଲୋକ ଦେଖିଲେ ତାଚ୍ଛଲ୍ୟ କରିବା ଉଚିତ୍ ବୋଲି ସେ ଝିଅର ଜୀବନର ଅଭିଜ୍ଞତା ତାକୁ ଆଗରୁ ଶିଖାଇଥିବ । ସେ ଅଭିଜ୍ଞତା ଆସେ ଆପଣା ପରିବାରଠୁଁ ବା ଆପଣା ଗୋଷ୍ଠୀଠୁଁ । ଯେ ଯେଉଁ ପରିବେଷ୍ଟନୀ ଭିତରେ ବଢ଼େ ସେ ସେହି ପରିବେଷ୍ଟନୀରୁ ନାନା ଧାରଣା ପାଏ । ଏତେ ତାତ୍ପର୍ଯ୍ୟ ସେ ଝିଅଟି ବୁଝି ନଥିବ କେଭେ, ଅତି ସହଜରେ ସେ ଧାରଣାଟା ତା ମୁଣ୍ଡକୁ ଆସିଥିବ । ଧାରଣାଟା ଥିଲା ଦ୍ୱେଷ ଓ ହିଂସାର, ତା'ର ପ୍ରବର୍ତ୍ତକ ନିଶ୍ଚୟ ଆଉ କେହି ।

ଥୋଡ଼ାଏ ଖଳ ଲୋକ ଥାଆନ୍ତି, ଯେଉଁମାନେ ଦ୍ୱେଷ, ହିଂସା, ଶତ୍ରୁତାର ମଞ୍ଜି ଛାଟିବାରେ ଲାଗିଥାନ୍ତି ।

ରବି ଶୁଣିଲା, ଅନିଲ୍ ଶାହା ଶୁଣିଲା, ଅନ୍ୟାନ୍ୟ ବନ୍ଧୁମାନେ ଶୁଣିଲେ, ସେମାନେ ଖୁବ୍ ନିନ୍ଦା କଲେ । ଅନିଲ୍ କହିଲା ''ଦୁଷ୍ଟ ଲୋକଙ୍କ କଥାକୁ କାନ ନ ଦେବା ଭଲ । ଦୁଷ୍ଟ ଲୋକ କେଉଁଠି ନଥାନ୍ତି ? ତୁଚ୍ଛାକୁ ଟେକାଟିଏ ଫୋପାଡ଼ି ଦେଇ ଅନ୍ଧାରେ ଅନ୍ଧାରେ ଦୌଡ଼ି ପଳାନ୍ତି ।''

ରବି କହିଲା, ''ହାତୀ ଚଲେ ବଜାର୍, କୁକୁର ଭୁକେ ହଜାର୍ ।''

ରବି ଘରେ ଗ୍ରାମୋଫୋନ୍ ଥାଏ, ବହୁତ ଗୁଡ଼ିଏ ରେକର୍ଡ଼ ଥାଏ । ବେଳେବେଳେ ଅନ୍ୟାନ୍ୟ ଗ୍ରାମୋଫୋନ୍ ମାଲିକଙ୍କ ସଙ୍ଗେ ଦିଆନିଆ ହୋଇ ନୂଆ ରେକର୍ଡ଼ ଆସେ । ସେମିତି ଥରେ ପୁଳିଏ ନୂଆ ରେକର୍ଡ଼ ଆସିଥିଲା, ସେଥିରୁ ଗୋଟିକରେ ଓଡ଼ିଆ ଗୀତ ବୋଲି ଲେଖା ହୋଇଥିବା ଶୁଣି କୁତୂହଳରେ ରବି ତାକୁ ମୋ ଆଗରେ ବଜାଇବାକୁ ମନ କଲା । ରେକର୍ଡ଼ଟାକୁ ଟେକି ନେଇ ପଢ଼ିଲି, ଏଚ୍.ଏମ୍.ଭି. କମ୍ପାନୀର । ପାଖେ ଶିରୋନାମା ଥାଏ, ''ମତେ କାଇଁକିଡ଼ି ଡାକୁଚୁ କଲା ମାଙ୍କଡ଼,'' ଆର ପାଖେ ''ରସବତୀ ଛୌଁଡ଼ୀ ।'' କାଇଁକିଡ଼ି କ'ଣ ? ଛୌଁଡ଼ୀ କ'ଣ ? କି ଭାଷା ଯେ ? ରବି କହିଲା—''ଦେଖ, ଓଡ଼ିଆ ଗୀତ ବୋଲି ତ ଲେଖା ହୋଇଛି ।

ରେକର୍ଡ଼ ଶୁଣିଲୁଁ । ଗୀତର ଭାବରେ ଅସନା ଇଙ୍ଗିତ । ଅନେକ ଶବ୍ଦ ଓଡ଼ିଆ ଶବ୍ଦ ନୁହେଁ, 'କାଇଁକିଡ଼ି', 'ଛୌଁଡ଼ୀ' ଆଦି କାନକୁ ଅଡୁଆ ଶୁଭୁଛି । ଉଚ୍ଚାରଣ ଓଡ଼ିଆ ନୁହେଁ । ସେ ଗୀତ ଶୁଣିଲେ ଓଡ଼ିଆ ଭାଷା ଓଡ଼ିଆ ଗୀତ ବିଷୟରେ ଭଲ ଧାରଣା ଆସିବ ନାହିଁ । ଲାଗିବ, କିଏ ଯେମିତି ଜାଣି ଜାଣି ଥଟ୍ଟା କରି ଗାଇଛି । ମୁଁ ରବିକୁ ମୋର ମନୋଭାବ କହିଲି । ରବିର ମା କହିଲେ, ''ଏ ରେକର୍ଡ଼ ଶୁଣି ମୋର ବି ସେଇ ଧାରଣା ହେଲା । ଯେ କୌଣସି ମୂର୍ଖ ଲୋକର କାମ, ଯାକୁ ଜଲ୍‌ଦି ଫେରେଇ ଦେଇ ଆ ।'' ସେ ରେକର୍ଡ଼ ଆଉ ବାଜି ନାହିଁ ।

ବହୁତ ବଙ୍ଗଳା ବହି ତ ହାବୁଡ଼ୁ ଥାଏ, ଥରେ ଗୋଟାଏ ହାବୁଡ଼ିଲା, ଜଣେ ଲେଖିଛି ଓଡ଼ିଶା ବିଷୟରେ, ବହି ନାଁ 'ଉଡ଼ିଷ୍ୟାର କଥା' କି କ'ଣ । ଦେଖିଲି, ସେଥିରେ କେତେଠି ଓଡ଼ିଶା ଲୋକଙ୍କୁ ଥଟ୍ଟା କରା ହୋଇଛି । ପୁଣି ସେ ବିଷୟରେ ଆଲୋଚନା ହେଲା । ମା' ଗମ୍ଭୀର ହୋଇ କହିଲେ, ''ଖରାପ ବହି ପଢ଼ନା ।'' ସମସ୍ତେ ନିନ୍ଦାକଲେ ।

ମନେ ପଡ଼ୁଛି, ରବିର ବାପା ଯାହା କହିଥିଲେ, ''ଥୋଡ଼ାଏ କାଣ୍ଡଜ୍ଞାନଶୂନ୍ୟ ଇତର ଲୋକ ଅନ୍ୟମାନଙ୍କୁ ଏଣୁତେଣୁ କହନ୍ତି, ଚିଡ଼ାନ୍ତି, କଳିଆ ଲଗାନ୍ତି । ସେମାନେ କିଏ କୁଆଡ଼େ ଲୁଚନ୍ତି, କିନ୍ତୁ ତାଙ୍କ ଦୁଷ୍ଟାମି ଲାଗି ନିରୀହ ଭଦ୍ରଲୋକମାନେ ନିନ୍ଦା ପାଆନ୍ତି । ସେହି ଦୁଷ୍ଟ ଲୋକଗୁଡ଼ାକ ଲାଗି ସମଗ୍ର ବଙ୍ଗାଳୀ ଜାତିକୁ ଅପବାଦ ଆସେ, ଅନ୍ୟ-ମାନଙ୍କର ଗୋଟାଏ ଖରାପ ଧାରଣା ହୁଏ । ଓଡ଼ିଶାର ଲୋକ କେଡ଼େ ଭଦ୍ର, କେଡ଼େ ଭଲ, କେଡ଼େ ବନ୍ଧୁସ୍ନେହୀ । ମଣିଷର ମଣିଷ-ପଣିଆ

ହିଁ ଅସଲ, ଆଉ କେଉଁଥିପାଇଁ କି ବଡ଼େଇ ?''

ପାଟ୍‌ନାରେ ବଙ୍ଗାଳୀ, ବିହାରୀ, ଓଡ଼ିଆଙ୍କ ଭିତରେ ସ୍ନେହ ସମ୍ପର୍କ ଥିଲା । ସମସ୍ତେ ନିଜ ନିଜ ବାଗରେ ଚଳନ୍ତି, କିନ୍ତୁ ପରସ୍ପରଙ୍କ ସଂସ୍କୃତିକୁ ଶ୍ରଦ୍ଧା ସମ୍ମାନ କରନ୍ତି । ଅନେକ ବଙ୍ଗାଳୀ ଓଡ଼ିଆ ପରସ୍ପରର ବନ୍ଧୁ ।

କିନ୍ତୁ ତଥାପି, ସେଠି କେତେ ଶିକ୍ଷିତ ବୟସ୍କ ଓଡ଼ିଆ ମୁରବିମାନଙ୍କ ମନରେ ସାଧାରଣ ଭାବରେ ବଙ୍ଗାଳି ମାନଙ୍କ ଉପରେ ସନ୍ଦେହ ଥାଏ । ତାଙ୍କ ବିରୁଦ୍ଧରେ ଅଭିଯୋଗ ଥାଏ । ସେମାନେ ନିଜେ ଯେଉଁ ସମୟରେ ପାଠ ପଢ଼ିଥିଲେ, ବଢ଼ିଥିଲେ, ଯେଉଁ ଅଭିଜ୍ଞତା ଭିତର ଦେଇ ଆସିଥିଲେ ତା ଭିତରେ ସେଭଳି ତିକ୍ତତା ଲାଗି କାରଣ ଥିବ । ସେମାନଙ୍କର ସେ ଅଭିଜ୍ଞତା ମୋର ନଥିଲା, ଆମର ନଥିଲା । ତାଙ୍କ ତୁଣ୍ଡରେ ସତେ ଯେମିତି ଅତୀତର ଇତିହାସ ଆମର କଅଁଳିଆ ବର୍ତ୍ତମାନ ଓ ଭବିଷ୍ୟତ ଆଡ଼କୁ ଶୁଖିଲା ଗଣ୍ଠିଗଣ୍ଠିଆ ହାତଟିଏ ବଢ଼ାଇଦେଇ ସତର୍କ ହେବାକୁ ନିର୍ଦ୍ଦେଶ ଦିଏ, ମୁଁ ଶୁଣେ—

''ତାଙ୍କୁ ବିଶ୍ୱାସ କରିବ ନାହିଁ । ମିଶ, ବନ୍ଧୁତା କର, କିନ୍ତୁ ସାବଧାନ ଥିବ । ସେମାନେ ତୁମଠି ଯାହା ଯାହା ଭଲ କଥା ଦେଖିବେ ତାକୁ ନେଇଯିବେ, ନିଜର କରିବେ, ତୁମକୁ କିଛି ଦେବେ ନାହିଁଟି ! ତୁମକୁ ଭାଁ ବୁଲେଇବେ, ବିପଥଗାମୀ କରେଇବେ, ନିଜେ ଠିକ୍ ଥିବେ, ତୁମକୁ ଜିଣି ଆଗକୁ ମାଡ଼ିଯିବା ତାଙ୍କର ସ୍ୱଭାବ । ସେମାନେ ବଡ଼ତି ପାଇଲେ ତୁମକୁ ଆଉ ପଚାରିବେ ନାହିଁ, ଚିହ୍ନିବେ ନାହିଁ ।

ଓଡ଼ିଆକୁ ସେମାନେ ଘୃଣା କରନ୍ତି । ନିଜ ଗୋଷ୍ଠୀ ଛଡ଼ା ଆଉ କାହା ବଡ଼ପଣ ସ୍ୱୀକାର କରନ୍ତି ନାହିଁ, ଆଉ ସମସ୍ତେ ତାଙ୍କ ଆଖିରେ ସାନ । ଇଂରେଜ ଆଗ ସେଇଠି ଗାଦି ମାଡ଼ି ବସିଲେ । ଓଡ଼ିଶା ତ ଇଂରେଜ ଅଧୀନକୁ ଆସିଲା ଦେଢ଼ଶ ବର୍ଷ ପରେ, ସେ ପର୍ଯ୍ୟନ୍ତ ତାର ସେ ସ୍ୱାଧୀନ ଥିଲା । ଦେଢ଼ଶ ବର୍ଷ ଆଗରୁ ସେମାନେ ଇଂରେଜି ପଢ଼ିଲେ, ତେଣୁ ଚାକିରି ବାକିରି ପାଇଲେ, ଆଧୁନିକ ଶିକ୍ଷାରେ ଆଗୁସାର ହେଲେ । ଆମେ ସେ ବିଷୟରେ ପଛରେ ପଡ଼ି ରହିଲୁଁ । ଫଳରେ କ'ଣ ହେଲା ? ଚାକିରିଆ ହୋଇ ଓଡ଼ିଶାକୁ ଆସି କୂଟ୍ରିମ କରି ସେମାନେ ବହୁତ ବହୁତ ଜମିଦାରି ନେଲେ, ଜମି ନେଲେ, ସଂପତ୍ତି ବାଡ଼ି କଲେ, ବଡ଼ଲୋକ ହେଲେ । ସେଉଠୁ ଭାବିଲେ, ଓଡ଼ିଆ ଭାଷାଟାକୁ ବି ଉଠେଇ ଦେଲେ ଯିବ । ସେଥିପାଇଁ ସେମାନେ ଫନ୍ଦି ଫିକର କଲେ । ପାରିଲେ ନାହିଁ ସିନା, ଚେଷ୍ଟା କରିଥିଲେ । ସେମାନେ

ମେଦିନିପୁରଟା ନେଇଗଲେ । ଆଉ ବହୁତ ଓଡ଼ିଆ ଅଞ୍ଚଳ ବଙ୍ଗଳାରେ ରହିଗଲା । ନିଜେ କଲିକତା କ'ଣ ଥିଲା ? ତିନିଟା ଓଡ଼ିଆ ଗାଁ, କଲିକତା, ସୂତାନଟୀ, ଗୋବିନ୍ଦପୁର । ଗଙ୍ଗାଠୁଁ ଗୋଦାବରୀଯାକେ ପରା ଓଡ଼ିଶା, ଗଲା କୁଆଡ଼େ ?

ଖାଲି କ'ଣ ସେତିକି ? ସେମାନେ ଏଠି ଯାହା ଦେଖିଲେ କହିଲେ ଆମ ପୂର୍ବପୁରୁଷଙ୍କ କୀର୍ତ୍ତି ଯେ, ଏ ଦେଉଳ ସବୁ ଆମେ କରିଛୁଁ, କବି ଜୟଦେବ ଆମର, ସେ ବଙ୍ଗାଳି ।

ସେମାନେ ଓଡ଼ିଶା ଦେଶରୁ ଏତେ ଉପକାର ପାଇଲେ, କିନ୍ତୁ କୃତଜ୍ଞତା ଅଛି ? ନାହିଁ ! ଭିତରେ ଭିତରେ ଓଡ଼ିଆଙ୍କ ଗୋଛି କାଟ, ଏଇଆ ।''

ଏଁ ! ଏତେ କଥା ! ଏମିତିଆ ଲୋକ ସେମାନେ ! ଏଇଆ କଲେ ଓଡ଼ିଶାକୁ !

କିଏ 'ସେମାନେ' ? କାହାନ୍ତି ?

ଆଖି ଆଗରେ ଭାସି ଉଠେ ସ୍ନେହ ଢଳଢ଼ଳ ହୋଇ ମୋର ବଙ୍ଗାଳୀ ସାଙ୍ଗସାଥୀଙ୍କ ହସହସ ମୁହଁଗୁଡ଼ିକ, ସେମାନଙ୍କ ଅକପଟ ହୃଦୟର ଛବି । ସେମାନଙ୍କ ହସ, ଖେଳ, କୌତୁକ । କ୍ଲାସରେ ସ୍ନେହୀ ବଙ୍ଗାଳି ଶିକ୍ଷକମାନଙ୍କ ବ୍ୟବହାର, କେଡ଼େ ଭଲ ଲୋକ ସେମାନେ, କେତେ ଆନ୍ତରିକତା ତାଙ୍କଠି । ରବିର ବାପ ମା' ଭାଇ, ସତେ ଯେମିତି ମୋର ଆପଣାର । ଯେତେଠିଁ ଦୁର୍ଗାପୂଜା ବେଳେ, ଅନ୍ୟ ଯାତ୍ରା ପର୍ବରେ ମୁଁ ବଙ୍ଗାଳୀ ସ୍ତ୍ରୀପୁରୁଷଙ୍କୁ ଦେଖିଛି, ଯେତେ ଘରେ ମୋର ଚିହ୍ନା ଅଛି । ବୀରେନ୍ ଦେ ଘର, କେଡ଼େ ସ୍ନେହୀ ତା ବାପାମା', ଆଉ କେତେ ସାଙ୍ଗମାନଙ୍କ ବାପାମା' । କାହିଁ, ଯାହା ମୁଁ ଶୁଣିଲି ମୋ ନିଜ ଅଭିଜ୍ଞତା ଆଗରେ ସେଗୁଡ଼ାକ ତ ଆଦୌ ସତ ବୋଲି ଲାଗେ ନାହିଁ । ମୁଁ ବି ତ ବଙ୍ଗାଳିଙ୍କୁ ଚିହ୍ନିଛି, କାହିଁ ମୋ ଧାରଣା ତ ସେ ଶୁଣା କଥା ପରି ନୁହେଁ ।

ଭାବେଁ, ତେବେ ଯେଉଁମାନେ ମତେ ଭିନେ କଥା କହନ୍ତି, ତାଙ୍କର ସେପରି ଧାରଣା ହେଲା କାହିଁକି ? ନିଶ୍ଚୟ ସେମାନେ ସେଭଳି ଖରାପ ଲୋକଙ୍କୁ, କୁଚକ୍ରୀ ଲୋକଙ୍କୁ ଦେଖିଥିବେ, ନିଜେ ତିକ୍ତ ଅନୁଭୂତି ପାଇଥିବେ । ଅତୀତର ଇତିହାସରେ ବି ଘଟିଥିବ ଏପରି କଥାମାନ । ଭାବେଁ, ଅତୀତରେ ଯାହା ଘଟି ଯାଇଛି ତା ଘଟିଯାଇଛି । କେଉଁ ଶତାବ୍ଦୀରେ କେଉଁ ଦେଶର କେଉଁ ଲୋକ କାହାର କ'ଣ କ୍ଷତି କରିଥିଲା, ଆଜି ତା ମନେ ପକାଇ ସେ ଦେଶର ଅନ୍ୟ କୌଣସି ଲୋକକୁ ଦେଖିଲେ ରାଗରେ କୁହୁଳିବା କେଉଁ

ବୁଧିଆ କାମ ? ବିବେକ ତା କହେ ନାହିଁ ।

ଥୋଡ଼ାଏ ଦୁଷ୍ଟ ଲୋକଙ୍କୁ ଦେଖି ସେହି ଭାଷା କହୁଥିବା ଅନ୍ୟ ସମସ୍ତେ ବି ସେହିପରି ବୋଲି ଭାବିବା ଭୁଲ୍ ।

କାହାର ଅଠର ପୁରୁଷ ତଳେ କେଉଁ ପୂର୍ବପୁରୁଷ କ'ଣ କରିଥିଲା ସେ କ'ଣ ତା ଖବର ରଖିଛି ?

ଯେଉଁମାନଙ୍କଠୁଁ ଶୁଣେଁ ତାଙ୍କ ସଙ୍ଗେ ମୁଁ ସେହି ଯୁକ୍ତି କରେଁ, ସେମାନେ କହନ୍ତି "ଏ ଉଦାରତାର କୌଣସି ମୂଲ୍ୟ ନାହିଁ । ତୁମେ ଚେଙ୍ଗେ ପାଇବ, ପାଇବ ଯେ ।"

ଆଉ ମୁଁ ଦେଖିଛି, ଭଲପଣ ସବୁଠି ସମାନ, ମଣିଷ ମଣିଷ ଏକାଠି ହୁଅନ୍ତି, ପରସ୍ପରକୁ ଭଲପାଇବା ମଣିଷର ସ୍ୱଭାବ, ମଝିରେ ଅନ୍ତରାୟ ହୁଏ ସ୍ୱାର୍ଥ । ସ୍ୱାର୍ଥ ଲାଗି ଜଣେ ଆଉ ଜଣକୁ ଶୋଷଣ କରେ । ଦୁର୍ବଳକୁ ସବଳ ଶୋଷଣ କରେ । କ୍ଷମତାର ସୁବିଧା ନେଇ କାହାକୁ ଦୁର୍ବଳ ଦେଖି ତାକୁ ଶୋଷଣ କରିବା, ନିଜର ଚେର ଲମ୍ୱେଇବା ଘଟି ଆସିଛି ଏ ପୃଥିବୀରେ ଯୁଗେ ଯୁଗେ ସବୁଠି । ସେଥିପାଇଁ ନାନା ପତ୍ତନରେ ନାନା ମେଣ୍ଟ ହୁଏ, ପୁଣି ଭାଙ୍ଗେ, ସେଇଟା ମଣିଷର ପଶୁ ପ୍ରବୃତ୍ତି ।

ବଙ୍ଗାଳୀ ପିଲାମାନଙ୍କ ସଙ୍ଗେ ମୋର ବନ୍ଧୁତା ଥିଲା । କିନ୍ତୁ ମୁଁ ଦେଖିଥିଲି, ସେମାନେ ନିଜ ଭାଷାକୁ ଖୁବ୍ ଭଲ ପା'ନ୍ତି; ସେ ଭାଷାର ବହି, ସେ ଭାଷାର ଗୀତ, ସେ ଭାଷା କହୁଥିବା ନାଁ ଡାକ ଲୋକ, ଏମାନଙ୍କର ପ୍ରଶଂସା କହନ୍ତି, ସେଥିପାଇଁ ଗର୍ବ ଅନୁଭବ କରନ୍ତି । ବଙ୍ଗଦେଶ ସେମାନଙ୍କ ଆଖିରେ ସବୁଦିନେ 'ସୋନାର ବାଂଲା', ସତେ ଯେମିତି ସେ ପାଣି କାଦୁଅ ନୁହେଁ, ସେ ଗୋଟିଏ ମଣିଷ, ଗୋଟିଏ ସ୍ତ୍ରୀ ଲୋକ, ମା'ଠୁଁ ବଳି ଆଉ ଗୋଟିଏ ମା' । ସମସ୍ତେ ଆପଣା ଆପଣା ଦେଶକୁ ମା' କହିଥାନ୍ତି, କିନ୍ତୁ ସେମାନେ ସତେକି ତାଙ୍କର ସେ ମା କଥା ପଡ଼ିଲେ ଭାବପ୍ରବଣ ହୋଇ ଅଭିଭୂତ ହୋଇ ପଡ଼ନ୍ତି । ବଙ୍ଗ ଦେଶରେ ନଈ ବଢ଼ି ହୁଏ । ଚାନ୍ଦା ଉଠେଇବାକୁ ଦଳ ଦଳ ଲୋକ ଆସନ୍ତି, ଗୀତ ଗାଇଗାଇ ଯାଆନ୍ତି—"ସୋନାର୍ ବାଂଲା ଭେସେ ଯାୟ୍ !" ସେ ଗୀତ ଶୁଣି ଲୋକେ କାନ୍ଦିବାର ମୁଁ ଦେଖିଛି, ପଇସା ତ ଖୁବ୍ ଦିଅନ୍ତି । ପାଟ୍ନାର ରାସ୍ତାଏ ରାସ୍ତାଏ ଖେଳି ବୁଲେ ସ୍ୱରର ଲହଡ଼ି "ସୁନାର ବାଂଲା ଭେସେ ଯାୟ୍ !" ସେହି ପ୍ରାଦେଶିକା ଦେଶ-ମା'ର ଚେତନା ସେମାନଙ୍କ ମେଣ୍ଟର ଗଣ୍ଠି ।

ସେମାନଙ୍କର ସମସ୍ତଙ୍କର ଧାରଣା ଥାଏ, ସବୁ ମା'ଠୁଁ ସେହି ମା'ଟି ସବୁଗୁଣରେ ବଡ଼, ସୌଜନ୍ୟ ଦେଖାଇ କିଏ କିଏ ସେପରି ବଡ଼େଇ କରେ ନାହିଁ, କିନ୍ତୁ ମନ ଭିତରେ ସେ ବିଶ୍ୱାସ ଥାଏ । ସେମାନେ ଅନେକେ ଭାବନ୍ତି, ସେହି ବଡ଼ପଣର ମର୍ଯ୍ୟାଦାକୁ ଆପଣାର ବ୍ୟବହାରରେ ଦେଖାଇବାକୁ ହେବ । ଜଣେ ଆଉ ଜଣକୁ ଭର୍ତ୍ସନା କଲାବେଳେ କହିବାର ମୁଁ ଶୁଣିଛି, "ତୁମି ନା ବଙ୍ଗାଲୀ ?" ଅର୍ଥାତ୍ "ତୁମେ ପରା ବଙ୍ଗାଳି, ବଙ୍ଗାଳି ହୋଇ ଏପରି କରୁଛ ?" ସତେ ଯେମିତି କୌଣସି ଲଜ୍ଜାକର କାର୍ଯ୍ୟ ବଙ୍ଗାଳୀ କରନ୍ତି ନାହିଁ, କଲେ ତାଙ୍କ ଜାତୀୟ ଚରିତ୍ରକୁ ନିନ୍ଦା ଆସିବ !

ମୁଁ ଭାବୁଥାଏ ଓଡ଼ିଶା କଥା । ଆମ ଲୋକେ ଓଡ଼ିଶା ଓଡ଼ିଶା ବୋଲି ତୁଣ୍ଡରେ କହନ୍ତି, କିନ୍ତୁ ଅନ୍ତର ଭିତରେ ଉତ୍କଳମାତା ପ୍ରତି ସେ ଅନୁରକ୍ତି କାହିଁ ? ଓଡ଼ିଆ—ଓଡ଼ିଆ ଭିତିରେ ସ୍ନେହ ମମତା ଥାଏ, କିନ୍ତୁ ସେତିକି ପରିମାଣରେ କାହିଁ ? ଆମେ ଯେତେବେଳେ ଗର୍ବ ଅନୁଭବ କରୁଁ ଯେ ଆମେ ଓଡ଼ିଆ, ସେତେବେଳେ ଅତୀତ କଥା ମନେ ପକାଇ ସିନା ଗର୍ବ କରୁଁ, କେବେ କ'ଣ ହୋଇଥିଲା ବୋଲି କେଉଁ ଇତିହାସ ବହିରେ କ'ଣ ଲେଖା ଅଛି, ସେଥିପାଇଁ କେଉଁ ପୋଥି ପୁରାଣପାଇଁ, କେଉଁ ଦେଉଳ ପାଇଁ, ସେ ସବୁତ କାହିଁ କେବକାର କଥା । ଆମେ କ'ଣ ନିଜେ ଯାହା ଅଛୁଁ ସେଥିପାଇଁ ଗର୍ବ କରୁଁ ? କାହାନ୍ତି ଆମ ଭିତରେ ରବୀନ୍ଦ୍ରନାଥ, କାହାନ୍ତି ଜଗଦୀଶ୍ ବୋଷ୍, ମେଘନାଦ ସାହା ? ଆମର ସ୍ୱତନ୍ତ୍ର ପ୍ରଦେଶଟିଏ ବି ନାହିଁ, ଏ ଦେଶର ମୁଣ୍ଡ, ହାତଗୋଡ଼, ଗଣ୍ଡିରୁ କେତେଭାଗ, ସବୁ ରହିଲାଣି ଅନ୍ୟ ପ୍ରଦେଶରେ, ଆମର କ'ଣ କିଛି ଉପାୟ ନାହିଁ ପୁଣି ସବୁ ପୁରାତନ ଓଡ଼ିଶା ଦେଶକୁ ଏକାଠି କରିବାକୁ, ପୁଣି ଏ ଦେଶକୁ ସମୃଦ୍ଧ ଆଉ ଉନ୍ନତ କରିବାକୁ ? ସତେ କ'ଣ ଓଡ଼ିଶାରେ କେହି ସେପରି ପୁଅ ନାହିଁ ?

ସେମାନଙ୍କର କେତେ ବହି, କେଡ଼େ ସୁନ୍ଦର ସୁନ୍ଦର ବହି, କେଡ଼େ ସୁନ୍ଦର ସୁନ୍ଦର ମ୍ୟାଗାଜିନ୍ — ଭାରତବର୍ଷ, ବସୁମତୀ, ପିଲାଙ୍କ ପାଇଁ ମୌଚାକ୍, ଖୋକାଖୁକୁ, ପୁଣି ଡିଟେକ୍‌ଟିଭ୍ ଉପନ୍ୟାସ ଓ ମ୍ୟାଗାଜିନ୍, ଭୂତ ଗପର ମ୍ୟାଗାଜିନ୍, ଆଉ ଶନିବାରେର୍ ଚିଠି । ବହୁତ ପଢ଼ିଥିଲି ସେସବୁ । ହିନ୍ଦୀରେ ହଂସ, ସରସ୍ୱତୀ, ବିଶ୍ୱମିତ୍ର ଆଦି ବଡ଼ ବଡ଼ ମ୍ୟାଗାଜିନ୍, କେତେ ବହି, ସେସବୁ ବି ପଢୁଥିଲି । ଆମର କାହିଁ ?

କାହାନ୍ତି ଆମର ଭାରତ-ପ୍ରସିଦ୍ଧ ହେଲା ଭଳି ଲୋକେ ଯାହାଙ୍କ ନାମ

ଶୁଣିଲେ ଶତ୍ରୁ ଶଙ୍କିଯିବେ, ଦେଶର ଗୌରବ ବଢ଼ିବ ?

କ'ଣ ଦେଖାଇ ପରକୁ ବୁଝାଇବା "ଆମେ ତୁମଠୁଁ ଆହୁରି ବଢ଼ିଆ, ହେଇ ଦେଖ ?" ନା ଖାଲି ଗାଇବା ଅଜା ପଣ, ଅଜା କେବେ ତାମ୍ରଣ ଅଗରେ ଘିଅ ଖାଉଥିଲେ ?

ଅତୀତ ଆଉ ବର୍ତ୍ତମାନକୁ ତୁଳନା କରି କରି ଭାବେ, ମନରେ ଘୋର ଦୁଃଖ ହୁଏ । ଯେତେଥର ଭାବିଲେ ବି ସମାଧାନର ଉପାୟ ଦିଶେ ସେହି ଗୋଟିଏ—ଦଶ ଜଣଙ୍କ ଆଗରେ ଓଡ଼ିଶା ଓ ଓଡ଼ିଆ ମର୍ଯ୍ୟାଦା ପାଇପାରିବ, ନିଜେ ସବୁକ୍ଷେତ୍ରରେ ଉନ୍ନତି କରିପାରିଲେ, ଅନ୍ୟ ଉପାୟ ନାହିଁ । ତୁଚ୍ଛା ଡମ୍ଫାମି କଲେ କେହି ବିଶ୍ୱାସ କରିବେ ନାହିଁ । ପରକୁ ହିଂସା କଲେ ନିଜେ ମଣିଷ ସାନ ହୋଇଯିବ । ବୁଦ୍ଧିକୁ କେବଳ ଆହୁରି ବୁଦ୍ଧିରେ ଟପି ହେବ । ଜ୍ଞାନକୁ ଜ୍ଞାନରେ ।

ଆଗ ଦରକାର ପ୍ରସ୍ତୁତି । ଯେ ଯେଉଁ କାମ କରୁଛି ସେଥିରେ ସେ ଅନ୍ୟମାନଙ୍କୁ ଟପି ସମ୍ମାନ ପାଉ । ଓଡ଼ିଶାର ଗୌରବ ବଢ଼ିବ ।

ବଦ୍‌ନାମ୍ ହେଲାଭଳି କାମ ଯେମିତି କେହି ନ କରୁ । କାମ ଏମିତି ହେବା ଦରକାର ଯେମିତି ସମସ୍ତେ ପ୍ରଶଂସା କରିବେ । ପରସ୍ପର ଭିତରେ ଏକତା ତ ଥିଲା, ସେ ଏକତା ରହିଥିବ । ଆମେ ଓଡ଼ିଆ ପିଲାମାନେ ଏକାଠି ହୋଇ ଏମିତି ଭାବୁଥିଲୁଁ ।

ଆମେ ବାଙ୍କିପୁର୍ ଯାଉଁ ଓଡ଼ିଶାର ନେତାମାନଙ୍କୁ ଦେଖିବା ପାଇଁ । ଗୋଦାବରୀଶ ବାବୁଙ୍କ ବକ୍ତୃତା ଶୁଣି ମନରେ ଖୁବ୍ ଗର୍ବ ହୁଏ । ସ୍ୱତନ୍ତ୍ର ପ୍ରଦେଶ ବିଷୟରେ ବହୁତ ଲେଖାଲେଖି ଚାଲିଥାଏ, ସେସବୁ ବହି ବି ପଢ଼ୁଁ । କେବେ ନେତାମାନେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରାଇ ପାରିବେ ? ବିଚ୍ଛିନ୍ନ ଅଞ୍ଚଳ ସବୁ ପୁଣି ଓଡ଼ିଶାରେ ମିଶିବଟି ? ମେଦିନିପୁର ଆସିବ ନା ? ଆମେ ନେତାମାନଙ୍କୁ ପଚାରୁଁ ।

ଆଉ ସ୍ୱପ୍ନ ଦେଖୁ, ଓଡ଼ିଶା ପୁଣି ଉଠିବ, ଗୌରବ ଅର୍ଜିବ, ଯଶରେ, ଧନରେ, ସୁଖ ଶାନ୍ତିରେ ସମସ୍ତଙ୍କୁ ବଳିପଡ଼ିବ, ସେ ନାଁ କରିଥିଲା, ନାଁ କରିବ ।

ଆମେ ବଙ୍ଗାଳୀ ବିହାରୀ ପିଲାଙ୍କ ଆଗରେ ଅନେକ ସମୟରେ ଆମ ନିଜ ଭାଷାରେ ଅର୍ଥାତ୍ ଓଡ଼ିଆରେ କଥା କହିଲୁଁ, କାହାକୁ କାହାକୁ ଓଡ଼ିଆ

ଅକ୍ଷର, ଓଡ଼ିଆ ଭାଷା ଶିଖାଇବାକୁ ବି ଚେଷ୍ଟା କଲୁଁ । ଅଥଚ ଆମେ ନିଜେ ଭଲ ହିନ୍ଦୀ ବଙ୍ଗଳା ବି ଜାଣୁଁ । ଓଡ଼ିଆ ଗୀତ ବି ଗାଇଲୁଁ । ଇସ୍କୁଲ୍‌ରେ ପୁରସ୍କାର ଦେବା ସଭାରେ ଅନ୍ୟାନ୍ୟ ଭାଷାରେ ଆବୃତ୍ତି ହେଲାବେଳେ ଓଡ଼ିଆରେ ବି ଆବୃତ୍ତି ହେବାର ମୋର ବି ମନେ ଅଛି । ଇସ୍କୁଲ୍‌ର ହସ୍ତାକ୍ଷର ପ୍ରତିଯୋଗିତାରେ ଓଡ଼ିଆ ହସ୍ତାକ୍ଷରର ବି ପ୍ରତିଯୋଗିତା ହୋଇ ପୁରସ୍କାର ଦିଆଗଲା । ଆମେ ଓଡ଼ିଆ ପିଲାଏ ଭୋଜି ମଉଛବ ସହିତ ସରସ୍ୱତୀ ପୂଜା ଗଣେଶ ପୂଜା କଲୁଁ, ସେଠି ଓଡ଼ିଆ ଗୀତ ଆବୃତ୍ତି, ଅଭିନୟ ଆଦି ହୁଏ । ଆଉ, ଆମେ ବାହାର କଲୁଁ ହାତଲେଖା ମାସିକ ପତ୍ରିକାଟିଏ । ତା ନାଁ ଆଜି ମୋର ମନେ ନାହିଁ । ତାର ପ୍ରଧାନ ଉଦ୍ୟୋକ୍ତା ଆମର ପୂଜ୍ୟ ଶିକ୍ଷକ ଶ୍ରୀ ଅଧିରାଜ ମୋହନ ସେନାପତି ।

ଅଧିରାଜ ମୋହନ ସେନାପତି ସେତେବେଳେ ପାଟ୍‌ନା ହାଇସ୍କୁଲ୍‌ରେ ଓଡ଼ିଆ ଶିକ୍ଷକ ଥିଲେ । ସ୍ୱୟଂ ଫକୀରମୋହନ ସେନାପତିଙ୍କର ସେ ନାତି ବୋଲି ଆମେ ଶୁଣିଥିଲୁଁ, ତେଣୁ ତାଙ୍କ ପ୍ରତି ବହୁତ ସମ୍ମାନ ଥିଲା । ତାଙ୍କର ଜ୍ଞାନ, ଛାତ୍ରଙ୍କ ପ୍ରତି ସ୍ନେହ, ଚମତ୍କାର ହସ୍ତାକ୍ଷର, ଉନ୍ନତ ଚରିତ୍ର, ଶାନ୍ତ ସ୍ୱରରେ ନାନା ସଦୁପଦେଶ, ଏସବୁ ତାଙ୍କୁ ଜନପ୍ରିୟ କରିଥିଲା । ସେଇ ମତେ ସ୍ୱପ୍ନ ଦେଖାଇଥିଲେ,—"ଓଡ଼ିଆରେ ଲେଖକ ହୁଅ । ଅଭ୍ୟାସ କଲେ ତୁମେ ବି ପାରିବ ।" ଆମେ ସମସ୍ତେ ଲେଖୁଁ, ସାର୍ ସଂଶୋଧନ କରି ଦିଅନ୍ତି । ଚାଲିଲା ଆମ ମ୍ୟାଗାଜିନ୍ । ସେ ବଦଳି ହେଲେ । କାନ୍ଦି କାନ୍ଦି ତାଙ୍କୁ ମେଲାଣି ଦେଲୁଁ । ମନେ ପଡୁଛି, ଆମେ ସମସ୍ତେ ତାଙ୍କୁ ଅତି ସ୍ନେହରେ ଦେଇଥିଲୁ ଶିଂଘ ବାଡ଼ିଟିଏ, ବୋଧହୁଏ ଗୋଟିଏ ପାନଡ଼ବା, ଗୋଟିଏ ମାନପତ୍ର ।

ଆଉ ଜଣେ ଓଡ଼ିଆ ଶିକ୍ଷକ ବି ଥିଲେ, ସମ୍ବଲପୁର ଆଡ଼ର ଲବଣୀଧର ବାବୁ, ସେ ଭାରି ସାଧାସିଧା ମଣିଷ । ବଦଳି ହେଲେ ।

ଅଧିରାଜ ମୋହନ ସେନାପତିଙ୍କ ପରେ ଆସିଲେ ଶ୍ରୀ ରାମଚନ୍ଦ୍ର ମହାପାତ୍ର, ସେ ଖୁବ୍ ପଣ୍ଡିତ, ସଂସ୍କୃତରେ ଓଡ଼ିଆରେ ଇଂରେଜିରେ ସବୁଥିରେ ତାଙ୍କର ଦକ୍ଷତା, ଖୁବ୍ ସୁନ୍ଦର ଚେହେରା, ସବୁ ବେଳେ ହସ ହସ, ପିଲାଙ୍କ ସଙ୍ଗେ ମିଶିଯାନ୍ତି, ବହୁତ ସଦୁପଦେଶ ଦିଅନ୍ତି । ଆମେ ଯେତେବେଳେ ଜାଣିଲୁଁ ଯେ, ସେ ନିଜେ ଜଣେ ଲେଖକ, ତାଙ୍କର 'ସୁଦାମା' ନାଟକ ପଢ଼ିଲୁ, ଆମ ମନରେ ଖୁବ୍ ଗର୍ବ ଆସିଲା । ଆମେ କହି ବୁଲିଲୁଁ,—ଏତେ ଶିକ୍ଷକ ତ ଅଛନ୍ତି, ଯାଙ୍କ ଛଡ଼ା ଆଉ ଲେଖକ କିଏ ? ସେ 'ଚିଲିକା' ଓ 'କାଳିଦାସ

ସନ୍ଦର୍ଭ' ତ କହିବାକୁ ଗଲେ ଓଡ଼ିଆ ଅକ୍ଷରରେ କାଳିଦାସୀ ସଂସ୍କୃତର ଗଦ୍ୟରୂପ । ମନେପଡୁଛି, 'ହୟଂଗବୀନ' ମାନେ 'ଗୁଆଘିଅ', 'ଆକବାଳ' ମାନେ ଗଛ ଚାରିକରେ 'ମନ୍ଦା' । ସେକେଣ୍ଡ୍ କ୍ଲାସ୍‌ରେ ଓ ଫାଷ୍ଟ୍‌କ୍ଲାସ୍‌ରେ ମୁଁ ଜଣେ ବୋଲି ଓଡ଼ିଆ ଛାତ୍ର, ସେଥିପାଇଁ ଗୋଟିଏ ସ୍ୱତନ୍ତ୍ର 'ଓଡ଼ିଆକ୍ଲାସ୍' ହୁଏ, ଜଣେ ଛାତ୍ରକୁ ପଢ଼ାନ୍ତି ଜଣେ ଶିକ୍ଷକ, ସେ ଶ୍ରୀ ରାମଚନ୍ଦ୍ର ମହାପାତ୍ର, ଏମ୍.ଏ.ବି.ଟି., କାବ୍ୟତୀର୍ଥ । ଅନ୍ତତଃ ଆମର ଉଚାଙ୍ଗ ଗଦ୍ୟଭାଷାମୟ ଓଡ଼ିଆ ପାଠ୍ୟପୁସ୍ତକ ଅନ୍ୟମାନଙ୍କ ଆଗରେ ବଢ଼ାଇ ଦେଖାଇବା ପାଇଁ ଉପାଦାନ ହୁଏ । ବଙ୍ଗାଳି ଛାତ୍ରମାନେ ତାକୁ ବୁଝି ପାରନ୍ତି ନାହିଁ । କିନ୍ତୁ ତାଙ୍କ ପାଠ୍ୟପୁସ୍ତକମାନଙ୍କୁ ମୁଁ ସହଜରେ ଅର୍ଥ କରିପାରେଁ । ଥରେ ଥରେ ଏପରି ବି ଘଟିଛି ଯେ, ଆମର ଓଡ଼ିଆ ଶିକ୍ଷକ ଅନୁପସ୍ଥିତ ଅଛନ୍ତି ଓ ମୁଁ ବଙ୍ଗଳା କ୍ଲାସ୍‌ରେ ବସିପଡ଼ିଛି । ବଙ୍ଗଳା ଶିକ୍ଷକ ପ୍ରଶ୍ନ ପଚାରିଲାବେଳେ ମୁଁ ଉତ୍ତର ଦେଇଛି । ଭାରି କୌତୁକ ଲାଗେ । ଭୁବନେଶ୍ୱରର ପଣ୍ଡିତ ଚିନ୍ତାମଣି ମିଶ୍ର ଆମର ଆଉ ଜଣେ ଓଡ଼ିଆ ଶିକ୍ଷକ । ସେ ମଧ୍ୟ ଖୁବ୍ ଜନପ୍ରିୟ । ସେ ବହୁତ ନିଷ୍ଠାପର ଆଚାରମନ୍ତ ବ୍ରାହ୍ମଣ । ଆମର ସରସ୍ୱତୀ ପୂଜା,ଗଣେଶପୂଜାରେ ସେ ପୁରୋହିତ ହୁଅନ୍ତି । ଦୁର୍ଗାପୂଜାରେ ବି ବୋଧହୁଏ ପୁରୋହିତ ହୋଇଥିଲେ । ସ୍କୁଲ୍‌ରେ ଓଡ଼ିଆ ଛାତ୍ରମାନଙ୍କର ଭଲ ନାଁ ଥିଲା ।

ପାଟ୍‌ନାରେ ଗୋଟିଏ 'ଓଡ଼ିଆ କ୍ଲବ୍' ବି ଥାଏ । ବଙ୍ଗାଳି ବିହାରିମାନଙ୍କ କ୍ଲବ ସହିତ ତା'ର ତୁଳନା ହୋଇ ନପାରେ । ବଂଗାଳି କ୍ଲବରେ ପିଂ ପିଂ ଟେବ୍ଲ, ବିଲିଆର୍ଡ୍ ଟେବ୍ଲ ବି ଥାଏ । ଚେସ, କ୍ୟାରମ୍ ତ ସହଜେ । ଖୁବ୍ ଭଲ ଲାଇବ୍ରେରୀ, ପାଖେ ଦଳେ ବସି ବେହେଲା, ସୀତାର, ବଂଶୀ, ନାନା ବାଦ୍ୟଯନ୍ତ୍ର ବଜାଇ କନ୍‌ସାର୍ଟ କରନ୍ତି, ତାଙ୍କ କନ୍‌ସାର୍ଟ ଖୁବ୍ ପ୍ରସିଦ୍ଧ, ଗୀତ ବୋଲାହୁଏ, ଅନେକଥର ଥିଏଟର ହୁଏ ।

'ଓଡ଼ିଆ କ୍ଲବ' ଗୋଟିଏ ସାନ 'ସି' ଟାଇପ୍ ଘର । ଗୋଟିଏ ଯୋଡ଼ିଏ ସାନ ସାନ ଆଲମାରୀରେ ଥୋଡ଼ାଏ ପୁରୁଣା ବହି, ଅଳ୍ପ କେତେକ ଖଣ୍ଡ ବହିକୁ ଛାଡ଼ିଦେଲେ ବାକିଗୁଡ଼ିକର ମଲାଟ ଚିରା ବା ମଇଳା । ଖାତାରେ କେତେ ବହିର ନାଁ ଥାଏ, ବହି ହଜିଯାଏ, ଖାତାରେ କେତେ ଲୋକଙ୍କ ଚାନ୍ଦା ଲେଖା ହୋଇଥାଏ ; ଅସୁଲ ହୁଏ ନାହିଁ । ସତରଞ୍ଜି ଖଣ୍ଡେ ଥାଏ, କେହି କେହି ତାସ୍ ଖେଳନ୍ତି । ତଥାପି କେବେ କେବେ ସେଠି ବୈଠକ ବସେ, ବଡ଼ ବଡ଼ ଆଲୋଚନା ପଡ଼େ ।

ଥରେ ବଙ୍ଗଳା କ୍ଲବ ଠିକ୍ କଲେ ବଙ୍ଗାଳି 'ଜୟଦେବ' ନାଟକ କରିବେ । ବୋଧହୁଏ ମୋର ସେକେଣ୍ଡ କ୍ଲାସ୍; ୧୯୨୮-୨୯ । ତାଙ୍କ ଛପା 'ଜୟଦେବ' ବହିରେ ଅଛି ଯେ, ଜୟଦେବ ବଂଗ ଦେଶର କବି, ସେ ପୁରୀ ଯାଇଥିଲେ, ରାଜା ଲକ୍ଷ୍ମଣ ସେନ୍ ପୁରୀ ଯାଇଥିଲେ । ତାଙ୍କୁ ଓଡ଼ିଶା ରାଜା ପ୍ରତାପରୁଦ୍ର ବହୁତ ସମ୍ମାନ ଦେଖାଇଥିଲେ, ଇତ୍ୟାଦି । ସେଥିରେ ଭୁଲ୍ ଓ ବିକୃତ ଓଡ଼ିଆରେ ଗୁଡ଼ାଏ ସଂଳାପ ଅଛି । ଓଡ଼ିଆମାନେ ଖବର ପାଇଲେ, ସେମାନେ ବଙ୍ଗାଳି କ୍ଲବକୁ ଅନୁରୋଧ କଲେ, ସେମାନେ 'ଜୟଦେବ' ନକରି ଅନ୍ୟକିଛି କରନ୍ତୁ । ବଙ୍ଗଳା କ୍ଲବ୍ ରାଜି ହେଲେ ନାହିଁ । ପୁଣି ଖବର ଗଲା, ''ତା'ହେଲେ ଓଡ଼ିଆରେ ଯେଉଁ ସଂଳାପତକ ଅଛି, ତାକୁ କୌଣସି ଓଡ଼ିଆ ଭଦ୍ରଲୋକ କହନ୍ତୁ, ନହେଲେ ଓଡ଼ିଆ ଜାଣିଥିବା କୌଣସି ବଙ୍ଗାଳି ଭଦ୍ରଲୋକ କହନ୍ତୁ । ସେହିପରି ବାଛି ପାର୍ଟ ଦିଆଯାଉ । ଓଡ଼ିଆ ସମାଜକୁ କହିଲେ ସେମାନେ ବି ଲୋକ ବାଛିଦେଇ ପାରିବେ । ଆହୁରି ବୁଝାଇ ଦିଆଗଲା ଯେ, ତା ନକଲେ ବୃଥା ଓଡ଼ିଆ ବଙ୍ଗାଳିଙ୍କ ଭିତରେ ମନାନ୍ତର ଲାଗିବ, କାରଣ 'ସ୍ପୀଚ୍'ଗୁଡ଼ାକ ଏପରି ଭାଷାରେ ଲେଖାହୋଇଛି ଯେ, ଅବିକଳ ସେମିତି କହିଗଲେ ତାକୁ ଶୁଣିଲେ ଓଡ଼ଆଙ୍କ ମନରେ ରାଗ ହେବ । ସେମାନେ ନିଶ୍ଚୟ ଭାବିବେ ଯେ, ଜାଣି ଜାଣି ଓଡ଼ିଆ ଭାଷାକୁ ଥଟ୍ଟା କରାଯାଉଛି । ଓଡ଼ିଆ କହି ଜାଣି ନଥିବା କୌଣସି ବଙ୍ଗାଳି ଓଡ଼ିଆ 'ଣ' ଓ 'ଳ' ଉଚ୍ଚାରଣ କରି ପାରିବ ନାହିଁ ।

ବଙ୍ଗାଳି କ୍ଲବ ଏ ପ୍ରସ୍ତାବ ଉପରେ ଆଲୋଚନା କରି ତାକୁ ଗ୍ରହଣ କଲେ, ରାଜି ବୋଲି କହି ପଠାଇଲେ । କିନ୍ତୁ ପାର୍ଟ ବଣ୍ଟା ହେଲା, କୌଣସି ଓଡ଼ିଆକୁ ଡକାଗଲା ନାହିଁ, ରିହାର୍ସେଲ୍ ହେଲା, ବହିରେ ଯେମିତି ଲେଖାହୋଇଛି ସେମିତି ଉଚ୍ଚାରଣ କରାଗଲା । ସେକ୍ରେଟେରିଏଟ୍‌ର ଓଡ଼ିଆମାନଙ୍କ ମନରେ ବହୁତ କ୍ଷୋଭ ହେଲା । ସେମାନେ ଜରୁରି ମିଟିଂ ଡାକିଲେ । ଆଜ୍ଞା ପତ୍ରିକା ବୁଲିଲା । ସମସ୍ତେ ରୁଣ୍ଡ ହେଲେ ।

ସେମାନଙ୍କ ଭିତରେ ଥିଲେ ଓଡ଼ିଆ ସମାଜର ପୁରୁଖା ଲୋକମାନେ । ସେମାନେ ଗମ୍ଭୀର, ଶାନ୍ତ, ବିବେକୀ ମଣିଷ, ମାନ୍ୟତା ମଣିଷ, ବଡ଼ ବଡ଼ ମୁରବି, କିଏ ବୁଢ଼ା, କିଏ ଦରବୁଢ଼ା । ଚାକିରି କ୍ଷେତ୍ରରେ ବି ସେମାନେ ଟିକିଏ ଉପର ପାହିଆରେ ଥିଲେ, ଥିଲେ ଜଗତ୍ ବଲ୍ଲଭ ଦାସ, ପ୍ରକାଣ୍ଡ ଆକାର, ଡେଙ୍ଗା, ମୋଟା ମଣିଷ, ଅତି ଭଦ୍ର, ଶାନ୍ତ । ସେ କ୍ୱଚିତ୍ ସଭାସମିତିକୁ

ଯାଆନ୍ତି । ସତ୍ୟବାଦୀ ସେନାପତି, ଡେଙ୍ଗା, ଗୋରା, ଠୋ ଠା କଥା, ନିଡରୁଆ ମଣିଷ, ସବୁଥିରେ ସିଧା ସଳଖ । ନିଶାମଣି ମହାନ୍ତି, ମୋଟାସୋଟା, ଗେଧେକା, ବଡ଼ମୁଣ୍ଡ, ଖୁବ୍ ଅଳ୍ପ କହନ୍ତି, ଯାହା କହନ୍ତି ସେ ମପାଚୁପା କଥା, ସ୍ୱର ଖୁବ୍ ଧିର ଓ ଥଣ୍ଡା, ବୁଦ୍ଧିର ଅବତାର । ଶ୍ୟାମସୁନ୍ଦର ଦାସ୍, ଟିକିଏ ବୟସ୍କ, ଡେଙ୍ଗା, ଧେଡ଼େଙ୍ଗା, ଛଡ଼ା ବେକ, ଭାରି ଭଦ୍ର, ତୁନିତାନି ମଣିଷ । ଅର୍ଜୁନ ମହାପାତ୍ର, ଖୁବ୍ ସାନ ଆକାର, ଶାନ୍ତ, ବିନୟୀ ମୁହଁଟିଏ । ଦାମୋଦର ନାଏକ, ନରସିଂହ ଦାସ, ବୃଦ୍ଧ ଭିକାରୀଚରଣ ଓ ଡାଂ ଇନ୍ଦ୍ରମଣି ମହାନ୍ତି, ନବଘନ ସାମନ୍ତରାୟ, ନାରଣ ମହାପାତ୍ର, ବହୁତ ଏପରି । ସେମାନେ ଖୁବ୍ ବିଚାରବନ୍ତ ଲୋକ, କେହି ଟୋକାଟାକଳିଆ ନୁହନ୍ତି ।

ଗମ୍ଭୀର ହୋଇ ସେମାନେ ବସିଥାନ୍ତି । ସମସ୍ତଙ୍କୁ ଧୀର, ଶାନ୍ତ ରହିବାକୁ ଅନୁରୋଧ କରି ପୁରୁଖା ଲୋକମାନେ ସବୁ ଘଟନା ବୁଝାଇ କହିଲେ । ସେମାନେ କହିଲେ, ''କେହି ଉତ୍ତେଜିତ ହୁଅନ୍ତୁ ନାହିଁ । ଯେଉଁମାନେ ବଙ୍ଗଳା 'ଜୟଦେବ' ନାଟକ ଦେଖାଇବାକୁ ଯାଉଛନ୍ତି, ସେମାନେ ବୋଧହୁଏ ଜାଣିଶୁଣି ଓଡ଼ିଆ ଭାଷାକୁ ଓଡ଼ିଆ ଜାତିକୁ ଅପମାନ ଦେବା ସକାଶେ ଏପରି ବ୍ୟବହାର କଲେ । ତା ଆମେ କରେଇ ଦେବା ନାହିଁ । ଯାହା ହେବାର ହେଉ, ଆମ ଦେହରେ ପ୍ରାଣ ଥିବାଯାକେ ଆମେ ତାଙ୍କର ସେ ମତଲବ୍‌କୁ ଦବୁ ଫସର ଫଟେଇ, ଆମର ମହତ ଆଗ, ଜୀବନ ପଛ, ନହେଲେ ଆମେ କି ଓଡ଼ିଆ ?''

''ସେମାନେ ଏଡ଼େ ଚଲାଖ ପଡ଼ିଛନ୍ତି । ଆମକୁ ଗୋଟାଏ ଜବାବ୍ ଦେଇ ଭିତରେ ଭିତରେ ଆଉ ଗୋଟିଏ ପ୍ରକାର କରିବାକୁ ବସିଛନ୍ତି ! ସେମାନଙ୍କର ଏଡ଼େ ସାହସ ! ହଉ ଦେଖିବା ।''

ଅଳ୍ପ କଥା କହୁଥିବା ନିଶାମଣି ମହାନ୍ତିଙ୍କ ଥଣ୍ଡା ଆଖି କେମିତି ଜଳି ଉଠୁଥିଲା ମୋର ମନେ ପଡ଼ିଯାଉଛି । ଗୋଟି ଗୋଟି ହୋଇ ସବୁ ମୁହଁ ଦିଶିଯାଉଛି; ସବୁ ମୁହଁ ରାଗରେ ଗରଗର, ଗମ୍ଭୀର, ଥମ ଥମ ।

ସେଠି ନିଷ୍ପତ୍ତି ହେଲା, କାଲି ଜୟଦେବ ଥିଏଟର ହେଲାବେଳେ କେହି ସ୍ତ୍ରୀ ପିଲା ନେଇ ଯିବେ ନାହିଁ, ଏକୁଟିଆ ଯିବେ । ଥିରିହୋଇ ବସି ନାଟକ ଦେଖିବେ । ଯେମିତି ଆପତ୍ତିଜନକ ଦୃଶ୍ୟଟା ଆରମ୍ଭ ହେବ, ସେମିତି ଠିଆ ହୋଇପଡ଼ି ପାଟିକରି ପ୍ରତିବାଦ କରିବେ । ତା'ପରେ ଯାହା ହେବାର ହେବ ।

ତହିଁଆରଦିନ ସଞ୍ଜ । ଥିଏଟରଠି ଲୋକାରଣ୍ୟ । ବାଙ୍କିପୁରରୁ, ପାଟନା ସିଟିରୁ, ଦିନାପୁରରୁ, ଦିଘାରୁ, କୁଆଡୁ କୁଆଡୁ ଦର୍ଶକ ଆସିଥାନ୍ତି, ଗର୍ଦ୍ଦନିବାଗରୁ

ତ ସହଜେ । ପଦାରେ ପୋଲିସ ପହରା ଦେଉଥାନ୍ତି । ସଂଗୀତ ହେଲା । ପର୍ଦ୍ଦା ଉଠିଲା । ଚାଲିଲା ଦୃଶ୍ୟ ଉତାରୁ ଦୃଶ୍ୟ । ଅଭିନୟ ସୁନ୍ଦର ଚାଲିଥାଏ; ସେମାନେ ଭଲ କରନ୍ତି ।

ତା'ପରେ ଆସିଲା ଗୋଟାଏ ଦୃଶ୍ୟ । ଲକ୍ଷ୍ମଣ ସେନ୍ ଗୋଟାଏ ଭଲ ସିଂହାସନରେ ବସିଛନ୍ତି । ପ୍ରତାପରୁଦ୍ର ବି ଅଛନ୍ତି । ବେଶଭୂଷା ଓ ହାବଭାବ ଅତି ନିକୃଷ୍ଟ । ଜଣେ କିଏ ବସି ଭାଗବତ ପଢୁଛି, ବୋଧହୁଏ ଗଞ୍ଜେଇ ବି ମକାହେଉଛି । ଓଡ଼ିଆରେ କଡ଼ମଡ଼ ହୋଇ କଥା କୁହା ଆରମ୍ଭ ହେଲା, ପରିବେଶ ଓ ସେ ଭାଷା ବଡ଼ ବିରକ୍ତିକର ଲାଗିଲା । ପଛରୁ ବଡ଼ପାଟିରେ ଶୁଭିଲା, "ଓଡ଼ିଆ ହଉନାହିଁ, ବନ୍ଦକର ।" ପଛକୁ ଅନାଇଲି । ଦୀର୍ଘକାୟ ସତ୍ୟବାଦୀ ସେନାପତି ଠିଆ ହୋଇଛନ୍ତି । ହାତଟେକି ପ୍ରତିବାଦ କରୁଛନ୍ତି "ଓଡ଼ିଆ ହଉନାହିଁ, ବନ୍ଦ କର ।"

ଦର୍ଶକଙ୍କ ଭିତରୁ କିଏ ଜଣେ ଦି'ଜଣ ତାଙ୍କ ଉପରକୁ ପାଟି କଲେ । ଥିଏଟର ଅଟକିଲା ନାହିଁ । ବିକୃତ ଓଡ଼ିଆରେ ସଂଳାପ ଚାଲିଲା । ବାଁ ପଟେ, ଡାହାଣ ପଟେ, ମଝିରେ, ପଛରେ ଆହୁରି ଜଣେ ଜଣେ ଓଡ଼ିଆ ମୁରବି ମଣିଷ ଠିଆ ହୋଇପଡ଼ିଲେ, ପାଟିକଲେ, "ଯେ ଓଡ଼ିଆ ଭାଷା ନୁହେଁ, ଯେ ଓଡ଼ିଆ ଭାଷାକୁ ଅପମାନ, ଓଡ଼ିଆ ଜାତିକୁ ଅପମାନ, ବନ୍ଦ କର, ଯାକୁ ବନ୍ଦ କର ।"

ତଥାପି ଥିଏଟର ବନ୍ଦ ହେଲାନାହିଁ, ଖାଲି ଦର୍ଶକମାନଙ୍କ ଭିତରୁ କେହି କେହି ସେମାନଙ୍କୁ ଗାଳି ଦେବାକୁ ଲାଗିଲେ ।

ହାତ ହଲେଇ ହଲେଇ "ଓଡ଼ିଆ ହଉନାହିଁ", "ବନ୍ଦ କର", "ଯେ ଓଡ଼ିଆ ଜାତିକୁ ଅପମାନ" । ଏମିତି ନାଦ ଟେକି ଟେକି ଆଗକୁ ମାଡ଼ି ଚାଲିଛନ୍ତି ସେମାନେ, ସେହି ପୌଢ଼, ସୁସ୍ଥ, ଶାନ୍ତ ମୁରବିମାନେ, ଚାଲିଛନ୍ତି ଷ୍ଟେଜ୍ ଆଡ଼କୁ । ହେଇ ଷ୍ଟେଜ୍ ଉପରକୁ ଡେଇଁଲେଣି, ଲାଗିଗଲାଣି ଗୋଳମାଳ, ହେଇ ଉପରେ ଭୂମିକମ୍ପ ହେଉଛି, ଫର୍ ଫାର୍ ସୀନ୍ ଚିରାଚିରି, ନିଶଦାଢ଼ୀ ଓଟରା ଓଟରି, ଧରାପରା, ଗୁମ୍‌ଗାମ୍, ଡାକ୍ତର ପ୍ରଫୁଲ୍ଲ ରାୟ ଆଦି ଓଡ଼ିଶାର ବଙ୍ଗାଳିମାନେ ବେଶୀ ରାଗି ରାଗି ପାଟ୍‌ନାର ବଙ୍ଗାଳିମାନଙ୍କ ଉପରେ ପ୍ରତିଶୋଧ ନେଉଛନ୍ତି । ଅଡ଼ିଟୋରିଅମ୍‌ରେ କୋକୁଆ ଭୟ, ଚେଁ ଭେଁ, ପାଟିତୁଣ୍ଡ । "ଅ ପୁଲିସ୍ ଓ ବାବା ପୁଲିସ୍ !" ପଦାରେ କିଏ ପାଟି କରୁଛି, ବିହାର ଏଣ୍ଡ୍ ଓଡ଼ିଶା । ଶୁଭୁଛି ପଦାରେ କିଏ ଦେହାତି ହିନ୍ଦି ବୋଲିରେ ବୁଝେଇ

ଦେଉଛି, ''ଆପଣମାନେ ବଡ଼ବଡ଼ିଆମାନେ ବାବୁମାନେ ତ ଲଢୁଛନ୍ତି, ସେଠି ଆମେ କ'ଣ କରିବୁ ?''

ସୀନ୍ ଚିରା ହୋଇଛି, କେତେ କ'ଣ ନଷ୍ଟ ହୋଇଛି । ଗୋଟାଏ ନାହିଁ ନ ଥିବା ଗୋଳମାଳ ଘଟିଯାଇଛି । ଦର୍ଶକମାନେ ଫାଟି ଚାଲିଯାଇଛନ୍ତି ।

ତହିଁଆରଦିନ ପୁଣି ଓଡ଼ିଆ ସମାଜର ଜରୁରି ମିଟିଂ ବସିଲା । ନିଷ୍ପତ୍ତି ହେଲା, ''ଯା ଭିତରେ ପୁଣି ଆମେ 'କ୍ଷମା ମାଗ' ବୋଲି ଦାବୀ କରିବା, ନହେଲେ ଆଗ ଲାଟ୍ ସାହେବଙ୍କ ପାଖକୁ ଦରଖାସ୍ତ ହେବ । ଦେଖିବା ସେ କେମିତି ନ୍ୟାୟ ନ ଦେବେ ।

ଆଉ ତୁମେ ପିଲାଏ ସାବଧାନ, ତୁମ ସଙ୍ଗରେ କେହି ଲାଗିଲେ ତୁମେ ସିଧା ଯାଇ ହେଡ୍‌ମାଷ୍ଟରଙ୍କୁ କହ ।

ଇସ୍କୁଲ୍ ପିଲାଏ ଏ ବିଷୟରେ ଚୁପ୍‌ଚାପ୍ ହୋଇ ରହିଥାନ୍ତି, ଆଲୋଚନା ହେଲେ ମୁହଁ ପୋତି ଫୁସ୍ ଫୁସ୍ କରି ଏଣେତେଣେ ଅନାଇଁ ଅନାଇଁ, ହେଡ୍‌ମାଷ୍ଟର ମଝିରେ ମଝିରେ ପିଣ୍ଡାରେ ବୁଲି ଯାଉଥାନ୍ତି । କେହି କିଛି ନ କହିଲେ ବି ଲାଗୁଥାଏ ଗୋଟାଏ ଅସ୍ୱାଭାବିକ, ଗମ୍ଭୀର ପରିବେଶ ।

ପଦାରେ କଥା ପଡ଼ିଲା । ଅନେକେ ଛଟା ଗାଳିରେ ସେମାନେ କିଛି ଜାଣନ୍ତି ନାହିଁ କହିଲେ । ଆଉ କେତେଜଣ ସତ୍‌ସାହସୀ ବଙ୍ଗାଳି ପିଲା ସ୍ୱାଧୀନ ଭାବେ ନିଜର ମତ ବଖାଣି କହିଲେ, ''ଘୋର ଲଜ୍ଜାର କଥା । ଘୋର ଦୁଃଖର ବିଷୟ । ବଡ଼ ବଡ଼ ଲୋକଙ୍କର ବୁଦ୍ଧି ନାହିଁ ? ନାଟକଟା ରିହାର୍ସାଲ ଚାଲାବେଳେ ତ ଜାଣିପାରିଥିବେ ଯେ, ଏଥିରେ କିଛି କିଛି ଓଡ଼ିଆ ଭାଷା ଅଛି । ସେଇଟା ଠିକ୍ କି ଭୁଲ୍ କାହାକୁ ପଚାରିଥିଲେ ତ ହୋଇଥାନ୍ତା । ପଢ଼ିଲେ ତ ବୁଝିପାରିଥିବେ ଏଥିରେ ଟିକେ ବ୍ୟଙ୍ଗ ବିଦ୍ରୂପ ଅଛି, ସେଇଟା ନହେଲା କାହିଁକି ? ଥିଏଟର କରାହୁଏ ଖୁସି ମଉଜ ପାଇଁ ନା ପର ମନରେ କଷ୍ଟ ଦେବା ପାଇଁ ? ଆଉ ଯେଉଁମାନେ ଉତ୍‌କ୍ଷିପ୍ତ ହୋଇ ଷ୍ଟେଜ୍ ଉପରକୁ ଉଠିଯାଇ ଗୋଳମାଳ ବି କଲେ, ସେଇଟା ବି ଅତିଶୟ ହୋଇଗଲା । ଉତ୍‌କ୍ଷିପ୍ତ ହେବା କଥା, ହେଲେ ସେଥିପାଇଁ ପଛେ ଅନ୍ୟ ଉପାୟ କରାଯାଇ ପାରିଥାନ୍ତା, ପ୍ରତିବାଦ ସଭା, ଖବର କାଗଜରେ ଲେଖି ଆନ୍ଦୋଳନ, ଲେଖାଲେଖି କରି ଆପତ୍ତି ଜଣାଇଦେବା ଓ କୈଫିୟତ ମାଗିବା, ଦରକାର ଭାବିଲେ ଆଇନ ଅଦାଲତ । ତା ନକରି ସାଧାରଣ ସଡ଼କ କଳି ପରି ନିଜେ ଏଥିରେ ମାତିବାଟା ଯୁକ୍ତିଯୁକ୍ତ ହେଲାନାହିଁ । ଛାଡ଼, ଆମେ ଏ ସବୁଥିରୁ ଅଲଗା ରହିବା ଉଚିତ୍ ।''

ଆମେ ଶୁଣିଲୁ, ବଙ୍ଗାଳି କ୍ଲବ୍‌ର କର୍ମକର୍ତ୍ତାମାନେ ଓଡ଼ିଆ ସମାଜ ପାଖରେ କ୍ଷମା ମାଗିଲେ, ଦୁଃଖ ପ୍ରକାଶ କଲେ, ଆଉ ସେ ବିଷୟରେ ଲେଖାଲେଖି କରି ତିକ୍ତତା ନ ବଢ଼ାଇବାକୁ ଅନୁରୋଧ କଲେ । ଓଡ଼ିଆମାନଙ୍କ ରାଗ ଶୀତଳ ହେଲା ।

କିନ୍ତୁ ତା ସଙ୍ଗେ ସଙ୍ଗେ ଓଡ଼ିଆ କ୍ଲବ୍‌ରେ ବସିଗଲା ଆଉ ଗୋଟିଏ ମିଟିଂ । ସ୍ଥିର ହେଲା, ଓଡ଼ିଆ ନାଟକ 'ଗୌଡ଼ ବିଜେତା' ଅଭିନୀତ ହେବ, ଲାଗୁ ଯେତେ ଟଙ୍କା, ଖୁବ୍ ବଢ଼ିଆ କରି ଆଡ଼ମ୍ବର ଦେଖାଇ କରିବାକୁ ପଡ଼ିବ । ତା'ହେଲେ ଓଡ଼ିଶାର ଗୌରବ ବଢ଼ିବ । ଅନ୍ୟମାନେ ଜାଣିବେ, ଥିଏଟର ବି ଅତି ଉଚ୍ଚକୋଟୀର, ଓଡ଼ିଶାର ଇତିହାସ ଏଡ଼େ ଗାରିମାମୟ ।

ଓଡ଼ିଆମାନେ ମାତିଉଠିଲେ । ନିଜେ ଆଗ୍ରହରେ ଯାଚି ଯାଚି ଚାନ୍ଦା ଦେଲେ, କିଏ ଷାଠିଏ ଟଙ୍କା ଦରମା ପାଏ ସେ ଦେଲା କୋଡ଼ିଏ ଟଙ୍କା, କିଏ ଦେଢ଼ଶ ଟଙ୍କା ଦରମା ପାଏ ସେ ଦେଲାଣି ପଚାଶ କି ଷାଠିଏ ଟଙ୍କା, ଚାନ୍ଦାର ପରିମାଣ ଏହିପରି । ଜିଦି ଲାଗିଛି, ପାଟ୍‌ନାରେ ଆଖିଦୁରୁଣିଆ ଓଡ଼ିଆ ଥିଏଟର ହେବ । ସେହିମାନେ କରିବେ ।

ବୋଧହୁଏ ସେତିକିବେଳେ ଆସିଲେ ଯାଜପୁରର ଶ୍ରୀ ଦେବେନ୍ଦ୍ରନାଥ ସିଂହ, ସଂକ୍ଷେପରେ ଦେବେନ୍ ସିହ୍ନା । ସେ ଏମ୍.ଏ. ପଢୁଥାନ୍ତି । ସେ ଭଲ ଗାଆନ୍ତି, ନିଜେ କବି, ଖୁବ୍ ନାଁ ଡାକ ଅଭିନେତା, ଭଲ କ୍ୟାରିକେଚର ବି କରନ୍ତି, ଭାରି ଥଟ୍‌ଲି ଲୋକ । ପଛେ ସେ ନାଟ୍ୟକାର ବୋଲି ଖ୍ୟାତି ପାଇଲେ । ତାଙ୍କର ପ୍ରସିଦ୍ଧ ନାଟକ "ଉପେନ୍ଦ୍ର ଭଞ୍ଜ" । ସେ ଓଡ଼ିଶା ଓଡ଼ିଶା ବୋଲି ଉତ୍ତେଜିତ ହୋଇଯାଆନ୍ତି, ଅନ୍ୟମାନଙ୍କୁ ବି 'ବାଇ' ଲଗାନ୍ତି । ସେ କାହା ଘରେ ବସି ହାର୍ମୋନିୟମ୍ ବଜାଇ ଗୀତ ଗାଉଥିଲେ ବଙ୍ଗାଳି ଓ ବିହାରି ଶ୍ରୋତାମାନେ ବି ଶୁଣିବାକୁ ଆସି ରୁଣ୍ଡ ହୁଅନ୍ତି । ତାଙ୍କୁ ଭଲ ଲାଗେ ଓଡ଼ିଶୀ ଛାନ୍ଦ ଗାଇବା ଓ ରଚନା କରିବା ।

ଗୋଟିଏ ଗୀତରେ ଓଡ଼ିଶାର କିଛି ଅତୀତର ଗୌରବ ଓ ପ୍ରାକୃତିକ ବୈଭବ କଥା କହିସାରି ସେ ବିଳାପ କରିଛନ୍ତି ।

"ଆମେ ପରା ସେହି ଓଡ଼ିଆ
ବିଦେଶୀ ଦୁଆରେ ଆଜି କୁଲି ମୂଲିଆ"

ଚୋଖି ରାଗିଣିରେ ଏ ବିଫଳତାମୟ କରୁଣ ବିଳାପ ଅତି ମର୍ମନ୍ତୁଦ ଶୁଭେ, ଦେବେନ୍ ସିହ୍ନା କାନ୍ଦନ୍ତି, କନ୍ଦାନ୍ତି ।

ଦେବେନ୍ ସିହ୍ନା ବି 'ଗୌଡ଼ ବିଜେତା'ରେ ଅଂଶ ନେଲେ । କଟକରୁ ଆସିଲେ ତାଲିମ୍ ଦେବା ଲୋକ । ପୋଷାକପତ୍ର ସାଜସଜ୍ଜା ବି ଆସିଲା । କଲିକତାରୁ କ'ଣ ଅଣାହେଲା କି ନାହିଁ, ମୋର ମନେ ନାହିଁ ।

ଦି' ମାସରୁ ବେଶୀ ଚାଲିଲା ପ୍ରାକ୍ଟିସ୍, ଥିଏଟର ଶିଖା । ଜଣେ ପ୍ରତିଦିନ ଅଭ୍ୟାସ କରୁଥାନ୍ତି ସେହି ଗୋଟିଏ ବୋଲି ଗୀତ, ରାତି ଆଠଟା ସରିକି ସେ ଆରମ୍ଭ ହୁଏ ।

''ଛୁ...ଇଁ...ଦେ...ଇ...ଛି
କ...ନ...କ...କା...ଠି
ପେଁ...ପେଁ...ପେଁ...ପେଁ...ପେଁ
ପେଁ...ପେଁ...ପେଁ...ପେଁ...ପେଁ
ଛୁ...ଇଁ...ଦେ...ଇ...ଛି
ପେଁ...ପାଁ
ଛୁ...ଇଁ...ଦେ...ଇ...ଛି...''
ଘଣ୍ଟାଏ ପରେ ବି ଚାଲିଛି
''ଛୁ...ଇଁ...ଦେ...ଇ...ଛି...
ପେଁ...ପାଁ...
''ଛୁ...ଇଁ...ଦେ...ଇ...ଛି...''

ଆଉ ଘଣ୍ଟାଏ ପରେ ବି ସେ ଅକ୍ଳାନ୍ତ, ସ୍ୱର ଆହୁରି ତୀବ୍ର, ଆହୁରି ଚଢ଼ା,

''ଛୁ...ଇଁ...ଦେ...ଇ...ଛି...
କ...ନ...କ...କା...ଠି...
ଛୁ...ଇଁ...ଦେ...ଇ...ଛି...
ପେଁ...ପାଁ...
ଛୁ...ଇଁ...ଦେ...ଇ...ଛି...
ପେଁ...ପାଁ...

କେଉଁ କାଳର ହଜିଲା କୈଶୋରର ହାର୍ମୋନିୟମ୍ ଅଭ୍ୟାସ ସହଜରେ ଲେଉଟୁ ନଥାଏ, ହାର୍ମୋନିୟମ୍ ବିଦ୍ରୋହ କରୁଥାଏ, ତଣ୍ଟି ବୋଲ ମାନୁ ନଥାଏ, କିନ୍ତୁ ଛାତିରେ ଅସମ୍ଭାଳ ଆବେଗ, ସେ ନାକର ସାହାଯ୍ୟ ବି ନେଉଥାନ୍ତି । ଯାଉ କେତେ ଘଣ୍ଟା, ଲାଗୁ ଯେତେ ଦିନ ଲାଗିବ, ପ୍ରତି ରାଗରେ ଲାଗିରହେ ତାଙ୍କ ସାଧନା ।

ତା'ପରେ ଦିନେ ହଠାତ୍ ସମସ୍ତଙ୍କୁ ଚମତ୍କୃତ କରିଦେଇ ରାତିରେ ଫୁଟିଲା ଗୋଟିଏ କଅଁଳିଆ ପିଲାଳିଆ ସ୍ୱରରେ ଭାରି ସୁନ୍ଦର ଗୀତଟିଏ, – "ତୁଇଁ ଦେଇଛି କନକ କାଠି" ଖୁବ୍ ସଜ ସରସ ତା ଭଙ୍ଗୀ, ହାର୍ମୋନିୟମ୍ ବି ସୁନ୍ଦର ଭାବରେ ମିଶିଯାଉଥାଏ । ସେ ଅଭ୍ୟାସ କରି କରି ଜିତିଲେ । ତହିଁଆରଦିନ ସକାଳେ ମୁଁ ତାଙ୍କୁ ଯାଇ ପ୍ରଶଂସା କରି ଆସିଲି, କହିଲି "ମାମୁଁ, ଭାରି ଭଲ ଗାଉଥିଲ କାଲି–" । ମୁଁ ତାଙ୍କୁ ମାମୁଁ ବୋଲି ଡାକେ, କାହିଁକି ମୁଁ ଜାଣେନାହିଁ । ସେ ଲାଜରା ହୋଇ କହିଲେ, "ଧେତ୍, କେବେ ପିଲାଦିନେ ଗାଉଥିଲି ନା, ଆଉ ସେ ଅଭ୍ୟାସ ଅଛି !"

କ୍ଲବ୍ ଘରେ କବାଟ କିଳି ବଡ଼ ବଡ଼ମାନେ ସ୍ପିଚ୍ ରିହର୍ସାଲ୍ କରୁଥାନ୍ତି । ଆମେ ପିଲାଏ କେବେ କେବେ ଲୁଚି ଲୁଚି କାନେଇଥାଉଁ ।

"ହୁଁ, କହ ମନ୍ତ୍ରୀ",

"କହ ମନ୍ତ୍ରୀ"

"ନାଇଁ ନାଇଁ ହେଲାନାହିଁ, କହ ମନ୍ତ୍ରୀ"

"ଆହୁରି ଗମ୍ଭୀର ହେବ, ବେକଟା ସିଧା, କହ ମନ୍ତ୍ରୀ"

"କହ ମନ୍ତ୍ରୀ",

"କହ ମନ୍ତ୍ରୀ," ଯେମିତି କିଏ ଲୋଟା ଭିତରେ ମୁହଁ ଗଳାଇ କଥା କହୁଛି । ହସିଲେ ବିପଦ, ଧରା ପଡ଼ିଗଲେ କ'ଣ ଯେ ହେବ ! ପଳେଇବା ଭଲ ।

ସେମାନେ ଅଫିସ୍‌ରେ ଫାଇଲ୍ କାମ କରି କରି ପୋଖତ ହେଲେଣି । ଘରେ ଗୃହସ୍ଥ, ମୁରବି, ଅନେକ ଗମ୍ଭୀର, ହସି ହସି ହାଲୁକା ବ୍ୟବହାର କରିବାର କେହି ଦେଖିନାହିଁ । ହଠାତ୍ ସେମାନେ ଦୃଢ଼ପ୍ରତିଜ୍ଞ ହୋଇଛନ୍ତି, ଅଭିନେତା ହୋଇ ବାହାରିବେ ।

ଶିଖେଇବା ଲୋକ, ନିର୍ଦ୍ଦେଶ ଦେବା ଲୋକ ଆସିଗଲେ । ବୟସ୍କ ଗମ୍ଭୀର ଭଦ୍ରଲୋକମାନେ ବାଧ ନିଷ୍ଠାପର ଶିକ୍ଷାର୍ଥୀ ହୋଇ ତାଲିମ ନେଲେ, ପରିଶ୍ରମ କଲେ ।

ସେମାନେ ବୁଝିଥିଲେ, ସେ କାମ ଦେଶକାମ, ଓଡ଼ିଶାର ଇଜ୍ଜତ୍ ବଢ଼ାଇବା ସକାଶେ ସେମାନେ ଅଭିନୟ ଶିଖୁଛନ୍ତି ।

"ଗୌଡ଼ ବିଜେତା" ଅଭିନୟ କରାଗଲା । ବହୁତ ଲୋକ । ଗର୍ଦ୍ଦନିବାଗ୍‌ର ସବୁ ଓଡ଼ିଆ ପରିବାର ଯାଇଥିଲେ, ବାଙ୍କିପୁରରୁ, ପାଟ୍‌ନା କଲେଜରୁ, ପାଟ୍‌ନା ସାଇନ୍‌ସ କଲେଜରୁ, ଗୁଲ୍‌ଜରିବାଗ୍ ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରୁ ସବୁଠୁ ଓଡ଼ିଆମାନେ

ଆସିଥିଲେ । ତା'ଛଡ଼ା ଓଡ଼ିଆ ଥିଏଟର କିପରି ହୁଏ, ତା ଦେଖିବେ ବୋଲି ବହୁତ ବଙ୍ଗାଳି ଓ ବିହାରି ଭଦ୍ରଲୋକ ଓ ଭଦ୍ରମହିଳା ବି ଆସିଥିଲେ । ଅଭିନୟ ଭଲ ହୋଇଥିଲା । ମହାରାଜା ସବୁବେଳେ ବେକକୁ ସିଧା ରଖିଲେ ଓ ମୁହଁକୁ ଉପରକୁ ଟେକିଥିଲେ । ଅଭିନୟ ଦେଖି ପ୍ରଶଂସା କରି ଅନେକ ବଙ୍ଗାଳି ଭଦ୍ରଲୋକ ଅଭିନେତାମାନଙ୍କୁ ମେଡାଲ୍ ଦେଲେ, କେତେକ ବିହାରି ଭଦ୍ରଲୋକ ଓ ଅନେକ ଓଡ଼ିଆ ଭଦ୍ରଲୋକ ମେଡ଼ାଲ ଘୋଷଣା କଲେ । ନାଟକର ସାଜସଜ୍ଜା ଓ ଅଭିନୟ ଇତ୍ୟାଦିକୁ ବଙ୍ଗାଳିମାନେ ବହୁତ ପ୍ରଶଂସା କରି କୁହାକୁହି ହେଲେ । ମୋର ମନେପଡୁଛି, ତାଙ୍କ ଭିତରୁ କେହି କେହି ମଞ୍ଚ ଉପରେ ଠିଆହୋଇ ଓଡ଼ିଆ ଅଭିନେତାମାନଙ୍କ କୃତିତ୍ୱ ଓ ଉତ୍କର୍ଷକୁ ପ୍ରଶଂସା କରି ବକ୍ତୃତା ଦେଇଥିଲେ ।

ବଙ୍ଗଳା 'ଜୟଦେବ' ନାଟକ ଅଭିନୟ କରି ଯେଉଁ ମତାନ୍ତର ଆରମ୍ଭ ହୋଇଥିଲା, ଓଡ଼ିଆ ''ଗୌଡ଼ ବିଜେତା'' ନାଟକ ଅଭିନୟ ଉତ୍ତାରୁ ତା'ର ସମାପ୍ତି ଘଟିଥିଲା ।

କାମପାଳ ମିଶ୍ରଙ୍କ 'ସୀତାବିବାହ' ଅଭିନୟ ହୋଇଥିଲା, ଖୁବ୍ ପ୍ରସିଦ୍ଧ ନାଟକ, ଭଲ ହୋଇଥିଲା । ତା'ପରେ ଆହୁରି ଥରେ ନାଟକ ଅଭିନୟ ହେଲା, ରାମଚନ୍ଦ୍ର ମହାପାତ୍ରଙ୍କ 'ସୁଦାମା' ଭଲ ହୋଇଥିଲା ।

ଥରେ ଗୋଟିଏ ପ୍ରବନ୍ଧ ପ୍ରତିଯୋଗିତା ସେଠି ହୋଇଥିଲା, ବିଷୟ – ରାଧାନାଥ ରାୟଙ୍କ ଜୀବନୀ । ମୁଁ ପ୍ରଥମ ପୁରସ୍କାର ଓ କୈଳାସ ତ୍ରିପାଠୀ ଦ୍ୱିତୀୟ ପୁରସ୍କାର ପାଇଥିଲୁଁ ।

ଘର ସାମ୍ନା ହତାରେ ଜାତି ଜାତି ବିଲାତି ଫୁଲ, ବାସ୍ନା ହୁଏ ନାହିଁ, କିନ୍ତୁ ବର୍ଣ୍ଣ-ପ୍ରକର୍ଷ ଚମତ୍କାର । ବେଶୀ ଭଲ ଲାଗେ ଫୁଲ-ମଟର ଛୁଇଁ ଲତାଗୁଡ଼ିକ । ତିନିହାତ ଓସାର ଖନ୍ଦକ ଲମ୍ବ ହୋଇ ଖୋଳାହୋଇଛି ଏପାଖେ ସେପାଖେ, ତାହାରି ଭିତରେ ବହଳ ହୋଇ ସେ ଗଛ ଲାଗିଛି, ଅଳ୍ପ ଉଞ୍ଚ ଭାଡ଼ି ଉପରେ ଘଞ୍ଚ ହୋଇ ଲଟେଇଛି, ଖାଲି ନାନା ବର୍ଣ୍ଣର ମଟର ଫୁଲ, ତା ନାଁ ସ୍ୱିଟ୍ ପୀଜ୍ ।

ବଗିଚାଯାକ ଫୁଲ, ଫାଟକ ପାଖରୁ ଘରର ଜାଫ୍ରିଯାକେ ଖାଲି ଫୁଲ ଓ ପତ୍ରରେ ସଜ୍ଜା ହୋଇଛି । ପ୍ରଜାପତି ବେଢ଼ିଛନ୍ତି ।

ମଝିରେ ଅରାଏ ଛନଛନିଆ ଘାସ ପଡ଼ିଆ, ଲମ୍ବାଳିଆ ଗୋଳେଇ ଦୁବଘାସରେ ପାଣି ମଡ଼ାହୁଏ, ତାକୁ ସମାନ କରି କଟାହୁଏ । ସେ ଦିଶେ ଖଣ୍ଡେ ଶାଗୁଆ ମଖମଲ୍‌ର ଗାଲିଚା ପରି ।

ଫାଟକ ପାଖରୁ ମୁଣ୍ଡର ସିନ୍ଦୁରଲଗା ସୁନ୍ଥାପରି ଗୋଟିଏ ନାଲି ଟହଟହ ସଡ଼କ ପିଣ୍ଡା ତଳଯାକେ ଯାଇଛି । ସେହି ସଡ଼କେ ସଡ଼କେ ସାଇକଲ ଛୁଟାଇ ଚାଲିଆସନ୍ତି ଏ ଘରର ଗୋଟିଏ ବୋଲି କୁଣିଆ, ମିଷ୍ଟର ଗ୍ରିଫିଥ୍, ତିରିଶ ବର୍ଷର ଜଣେ ଯୁବକ, ସାଇକେଲ ରଡ଼୍ ଉପରେ ବସିଥାନ୍ତି ତାଙ୍କ ଭାରୀଜା, ଜଣେ ସୁନ୍ଦରୀ ଯୁବତୀ ।

''ହ୍ୟାଲୋ ! ହ୍ୟାଲୋ ! ହ୍ୟାଲୋ !'' ହସଖୁସିରେ ହାଉ ହାଉ ପଡ଼ିଯାଏ । ବାହାରି ଆସନ୍ତି ମିଷ୍ଟର୍ ସରକାର, ଗୋରା ତକତକ, ଓସାର କାନ୍ଧ, ଡେଙ୍ଗା, ସୁନ୍ଦର ଗଢ଼ଣ, ସେ ବି ଆଙ୍ଗ୍ଲୋ-ଇଣ୍ଡିଆନ । ବାପା ପଞ୍ଜାବର ଆଙ୍ଗ୍ଲୋ-ଇଣ୍ଡିଆନ, ବାପାଙ୍କ ବାପା ବୋଧହୁଏ ବଙ୍ଗଦେଶର 'ସରକାର' ପଦଧାରୀ କେହି । ବଙ୍ଗଦେଶ ବା ବଙ୍ଗଳା ସଙ୍ଗେ ସେମାନଙ୍କର ସମ୍ବନ୍ଧ ନାହିଁ । ଆସନ୍ତି ମିସେସ୍ ସରକାର । ସାହେବାଣୀ ପୋଷାକ ପିନ୍ଧିଥାନ୍ତି, ମୁହଁଟି ଗମ୍ଭୀର । ସରକାରଙ୍କ ବୟସ ଚଉରାଳିଶି ହୋଇପାରେ, ମିଲିଟେରି ଅଫିସର ପରି ଦିଶନ୍ତି, ଠିଆ ଠିଆ ପୂରା ନିଶ । ଆଖି ଯୋଡ଼ିକ ସବୁବେଳେ ହସୁଥାଏ । କି କାମ ସେ କରନ୍ତି ମୁଁ ଜାଣେନାହିଁ । ମୋ କାମ ତାଙ୍କ ପୁଅଝିଅଙ୍କ ସଙ୍ଗରେ । ହ୍ୟାରଲଡ଼୍ ମୋ'ଠୁଁ ୩ ବର୍ଷ ସାନ, ପଢ଼େ ବି ୩ କ୍ଲାସ୍ ତଳେ । ବାପ ପରି ସେତେ ସୁନ୍ଦର ନୁହେଁ, କିନ୍ତୁ ସୁନ୍ଦର, ଟିକିଏ ଧଡ଼ିଆ ଚେହେରା, ଭାରି ଖେଳ କୌତୁକପ୍ରିୟ, ବ୍ୟବହାର ଭାରି ଶାନ୍ତ, ଭଦ୍ର, ସଂଯତ । ଲାଜକୁଳା ମୁହଁଟିଏ, କିନ୍ତୁ ରାଗିଗଲେ ସେ ଆଉ ପ୍ରକାରେ, ଭୀଷଣ, ଅସମ୍ଭାଳ, ପିଲାଏ ତା ସଙ୍ଗରେ ଲାଗିଲେ ସେ ସେହି ଅବତାର ହୁଏ, ତା କାମିଜ୍ ଚିରେ, ମୁହଁ ଖଣ୍ଡିଆ ହୁଏ, କିନ୍ତୁ ସେ ତା ହାଦୁଆ ହାଦୁଆ ହାତରେ ଖୁବ୍ ମାଡ଼ ଚଢ଼ାଏ, ଡାକ ଛାଡ଼େ, ''ଡରଫୁକ୍ ଲୋଗ୍, ଚଲେ ଆଓ ।'' ବହୁ କଷ୍ଟରେ ମୁଁ ତାକୁ ଧରାଧରି କରି ଘରକୁ ଆଣେ । ତା ମା' କାବା ହୁଏ । ବାପ ହସି ହସି ସମର୍ଥନା ଜଣାଏ – ''ତା'ହେଲେ ବଢ଼ିଆ ଲଢ଼େଇଟାଏ ଲଢ଼ି ଆସିଲୁ ତ ପୁଅ, ଭଲ କଲୁ । ଯା ମୁହଁ ଧୋ, ଲୁଗା ବଦଳ, ଖେଳିବୁ ଆ ।''

ତା'ଠୁ ଦି'ବର୍ଷ ସାନ ହେବ ତା ଭଉଣୀ, ସୁନ୍ଦର ଶୁଭେ, ତା' ମା' ଯେତେବେଳେ ଡାକନ୍ତି ''ଆଇରିନ୍'' । ତା ମୁଣ୍ଡରେ ସୁନେଲି ବାଳ, ଢେଉଢେଉକା, ଆଖି ଡୋଳା ଦୋ'ଟି ନେଳି ଅପରାଜିତା ଫୁଲ ପରି, ଓଠ, ହାତପାପୁଲି ନାଲି, ବର୍ଣ୍ଣ ଗୋରା, ଗଢ଼ଣ ଗୋଟିଏ କାନ୍ଦି ରଜନୀଗନ୍ଧା ଫୁଲ ପରି । ବାଇବଲ୍ ଧର୍ମଗ୍ରନ୍ଥର କାହାଣୀମାନଙ୍କ ବିଷୟରେ ମୁଁ କେତେଗୁଡ଼ିଏ ଛବି ଦେଖିଥିଲି,

ଆଲ୍ଫରିନ୍ ଦିଶେ ସେମିତି ଗୋଟିଏ ଛବି ପରି । ମୁହଁରେ ଗୋଟିଏ ବିଚିତ୍ର ପବିତ୍ରତା । ଚାହାଣୀ ଖୁବ୍ ସରଳ, ସହଜ, କିନ୍ତୁ ହଠାତ୍ ସେ କେଉଁ ସ୍ୱପ୍ନରେ ହଜିଯାଏ, ଦୂରେଇଯାଏ । ଲାଗେ ସେ ଘରର ଆଲୁଅ ଟିକକ ସେ, ନୀରବରେ ଥାଏ, କିନ୍ତୁ ସବୁଠି ତା ପ୍ରଭାବ, ସେ ପ୍ରଭାବ ସ୍ନେହ, ଶାନ୍ତି, ସନ୍ତୋଷ ଓ ନମ୍ରତାର ।

ହ୍ୟାରଲନ୍ ସଙ୍ଗରେ ମୁଁ କେବେ ବୁଲି ଯାଇଥିଲି । ମିଷ୍ଟର ସରକାର ମୋ ସଙ୍ଗେ ଗପସପ କଲେ । ତାଙ୍କ ଘରେ ସେମାନେ କଥା କହନ୍ତି ଇଂରେଜିରେ । ମିଷ୍ଟର ସରକାର ମୋ ସଙ୍ଗେ ଇଂରେଜି ବ୍ୟାକରଣ ଚର୍ଚ୍ଚା ଆରମ୍ଭ କଲେ । ମନେପଡୁଛି, ସେ ମତେ ପଚାରିଲେ ଇଂରେଜି 'ଜିରଣ୍ଡ' ଓ 'ପାଟିସିପ୍ଲ' ବିଷୟରେ । ମୁଁ ସବୁ ଠିକ୍ ଠିକ୍ କହିଲି । ନେସ୍‌ଫିଲ୍‌ଡ୍ ଚାରିଭାଗ ମୁଁ ପଢ଼ିଥିଲି । ତା'ପରେ ପୁଣି ଗ୍ରାମାର ପ୍ରଶ୍ନ, ପୁଣି ଗ୍ରାମାର, ସେ ପଚାରୁଛନ୍ତି, ମୁଁ କହୁଛି । ତା'ପରେ କ'ଣ ମୋଟ ମୋଟ ବହିସବୁ ଆଣି ଦେଖାଇଲେ, ଗୋଟାଏ ଅଧେ ଠାଏ ଠାଏ ପଢ଼ିଲି, ବୁଝେଇଲେ । ମୋ ପ୍ରତି ତାଙ୍କର, ତାଙ୍କ ପ୍ରତି ମୋର କୁତୂହଳ ବଢ଼ିଲା । ସେ ଜିଗର କରନ୍ତି ମୁଁ ଯେମିତି ଘରକୁ ବୁଲିଯାଏଁ ।

ମଝିରେ ମଝିରେ ଯାଏଁ, ମିସେସ୍ ସରକାର୍ ଚା ଓମ୍‌ଲେଟ୍ ଖୁଆନ୍ତି । ଆମେ ଏକାଠି ୱାର୍ଡ୍ ମେକିଂ ଖେଳୁଁ, ଯୁଡ଼ୋ ଖେଳୁଁ, ବ୍ୟାଡ୍‌ମିଣ୍ଟନ୍ ଖେଳୁଁ, ଗପ କରୁଁ, ଘଣ୍ଟା ଘଣ୍ଟା ବିତିଯାଏ ।

ବେଶି ଆନନ୍ଦ ଦିଏ ତାଙ୍କ ଘରର ସୁନ୍ଦର ସୁରକ୍ଷିତ ଦାମୀ ଦାମୀ ଇଂରେଜି ବହିଗୁଡ଼ିକ, ପିଲାଙ୍କ ବହି, ବଡ଼ଙ୍କ ବହି, ଛବି ବହି, ଉପନ୍ୟାସ, କାବ୍ୟ କବିତା, ଦାମୀ ଦାମୀ ଇତିହାସ, ଭୂଗୋଳ, ବିଜ୍ଞାନ, ଅଙ୍କ ବହି । ଅନେକ ଏପରି ବହି ଥିଲା, ଯାହା ଅନ୍ୟତ୍ର ମିଳେ ନାହିଁ । ବୋଧହୁଏ ଡେକ୍‌ମଟର୍ ଗାର୍ଲିକ୍ କୃତ ଆରିଥ୍‌ମେଟିକ୍ ବହି ମୁଁ ସେଇଠୁ ଆଣି ଅଙ୍କ କଷିଥିଲି, ସେ ଷ୍ଟାଣ୍ଡାର୍ଡ୍‌ର ଅଙ୍କ ମୁଁ ଅନ୍ୟଠି ଦେଖିନାହିଁ । ସେଇଠି ମୁଁ ପ୍ରଥମେ ଦେଖିଲି ଓ ପଢ଼ିଲି ବି ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା ।

ମିଷ୍ଟର ସରକାର ମତେ ବହୁତ ଉତ୍ସାହ ଦିଅନ୍ତି, କହନ୍ତି, ''ତୁମଦ୍ୱାରା ହେବ, ତୁମେ ପଢ଼, ଯେତେ ପାରୁଛ ପଢ଼ ।''

କଥାବାର୍ତ୍ତା, ଆଚାର ବ୍ୟବହାରରେ ତାଙ୍କ ଘରେ କଟକଣା ବହୁତ । ସେମାନେ ନିଜ ଧନ୍ଦାରେ ବ୍ୟସ୍ତ ଥା'ନ୍ତି । ସମସ୍ତେ କିଛି ହେଲେ ଗୋଟାଏ

କରୁଥାନ୍ତି । ଦୁମ୍‌ଦୁମ୍ ନାହିଁ, ସୁରୁଚିପୂର୍ଣ୍ଣ ପରିବେଶ, ପରଚର୍ଚ୍ଚା ନାହିଁ, ଚର୍ଚ୍ଚା ହେଲେ ହିଁ ଜ୍ଞାନ ଚର୍ଚ୍ଚା ।

ମିଷ୍ଟର ସରକାର ତାଙ୍କର ସବୁ ବହି କୁଢ଼, ବହିଥାକ ଦରାଣ୍ଡିବା ଅଧିକାର ମତେ ଦେଇଥିଲେ, ଯେଉଁ ବହି ଇଚ୍ଛା ସେ ବହି ମୁଁ ସେଠୁ ଆଣି ପାରୁଥିଲି । ଖଣ୍ଡିଏ ବହି ମୋର ଜୀବନଯାକ ମନେ ରହିଗଲା । ବହିଟି ଲେଖା ହୋଇଥିଲା ଇଂରେଜି ହସ୍ତାକ୍ଷର ଲେଖି ଶିଖିବା ବିଷୟରେ । ବାଁ ହାତ କେମିତି ଥୋଇବ, ବେକ, ମୁହଁ, ଅଣ୍ଟା କେମିତି ଭଙ୍ଗୀରେ ରହିବ, ଡାହାଣ ହାତରେ କଲମ କେମିତି ଧରିବ, କେଉଁଠୁ ଧରିବ, କଲମ ଉପରେ କେଉଁ ଟିପ କେଉଁଠି ଥୋଇବ, ଲେଖିଲାବେଳେ ହାତକୁ କେମିତି ଝାଙ୍କିବ, ଏସବୁ କଥା ବିଭିନ୍ନ ଫଟୋଦ୍ୱାରା ସେଥିରେ ବୁଝେଇ ଶୁଝେଇ ଲେଖା ହୋଇଥିଲା । ପୃଥିବୀର ବହୁ ଯୁଗରେ ବହୁ ପ୍ରସିଦ୍ଧ ହସ୍ତାକ୍ଷରର ନମୁନା ଛପା ହୋଇଥିଲା, ଇଂରେଜି ଲେଖା ଅକ୍ଷରର କାଇଦା ଓ ବାଗ ବୁଝାଇ ଦିଆହୋଇଥିଲା । ସେ ବହିର ଉପଦେଶ ମାନି ସାଧିଲେ ଅକ୍ଷର ସୁନ୍ଦର ହେବ ଓ ବହୁତ ତରତର କରି ଲେଖିହେବ । ମୁଁ ତାକୁ ସାଧିଥିଲି । ବହୁତ ଉପକାର ପାଇଲି । ଆଉ ସେପରି ବହି ମୁଁ ଦେଖିନାହିଁ ।

୧୯୩୦ ପରେ ଆଉ ସେମାନଙ୍କ ଖବର ମୁଁ ପାଇନାହିଁ ।

ହରି ମୋର କେତେ କ୍ଲାସ୍ ତଳେ ପଢ଼େ । ଗୁଡୁରି ଗାଡ଼ିରି ହୋଇ ଗୁଡ଼ିଏ ସାନ ସାନ ଭଉଣୀ, ବଡ଼ ଭଉଣୀଟି ନାଁ ଗୁଣ୍ଡି, ଗୁଣ୍ଡି ବୋଧହୁଏ ବିଭା ହୋଇ ଯାଇଥାଏ । ବାପା ରାଧାନାଥ ମହାନ୍ତି ଜଣେ ଟାଇପିଷ୍ଟ । 'ସି' ଟାଇପ୍ ଘରଟିଏ ମିଳିଥାଏ, ସେଇଠି ସେ ପରିବାରଟି ଥାଆନ୍ତି । ଘରେ ଗୁଣ୍ଡି ବୋଉଙ୍କ ଛଡ଼ା ରାଧାନାଥଙ୍କ ବିଧବା ବୁଢ଼ୀ ଭଉଣୀଟି ମଧ୍ୟ ଥାଆନ୍ତି, ବୋଧହୁଏ ରାଧାନାଥଙ୍କ ମା ବୁଢ଼ୀ ବି ଥାଆନ୍ତି ।

ପାଟ୍‌ନାରେ ଚଳେଣି, ଏତେଗୁଡ଼ିଏ କୁଟୁମ୍ବ, ସେମାନେ କଷ୍ଟେ ମଷ୍ଟେ ତାଙ୍କ ସଂସାର ଚଳାଉଥାନ୍ତି । ସମସ୍ତେ ସେମାନଙ୍କୁ ଭଲ ପାଆନ୍ତି । ସେମାନେ ସ୍ନେହୀ ବିନୟୀ ଲୋକ ବୋଲି ।

ହରିଟି ସ୍ୱାସ୍ଥ୍ୟବାନ୍ ପିଲା, କିନ୍ତୁ ତା ବାପା ବୋଉ ଦୁଃଖ କରନ୍ତି ଯେ, ସେ ଭଲ ପଢ଼େ ନାହିଁ, ପଢ଼ାରେ ମନ ଦିଏନାହିଁ ବୋଲି । ମୁଁ ତା ପଢ଼ାପଢ଼ିରେ ସାହାଯ୍ୟ କରିବାକୁ ସବୁବେଳେ ପ୍ରସ୍ତୁତ, କିନ୍ତୁ ଘରେ ବି ତାକୁ କାମ ପଡ଼େ, ତା'ର ବହୁତ ସମୟ ତେଣେ ଯାଏ ।

କାଲି ପରି ଦିଶିଯାଉଛି । ମୋଟେ ଚାଳିଶି ବର୍ଷ ତଳର କଥା । ଦିନେ କାହିଁକି ତାଙ୍କ ଘରକୁ ଯାଇଥିଲି, ତାଙ୍କର ଢାବଲ କାଠ-ପଟାର ଆଲମାରୀ ଉପରେ ମୋର ଦୃଷ୍ଟି ପଡ଼ିଗଲା । ପ୍ୟାକିଂ ବାକ୍ସର ପଟାକୁ କାଢ଼ି ସେଇଥିରେ ଆଲମାରୀ ତିଆରି ହୋଇଛି, ତିନିଫୁଟ୍ ଉଚ୍ଚ ହେବ । ତା ଭିତରେ କ'ଣ ଖାଇବା ଜିନିଷ କି ରୋଷେଇଘର ଜିନିଷ, ଶୁଖୁଆ କି ବଡ଼ି ଆଦି ଥାଏ । ପିମ୍ପୁଡ଼ି ଲାଗିବେ ବୋଲି ଗୋଟିଏ ଉପାୟ କରା ହୋଇଥାଏ । ଢାବଲ ଆଲମାରୀର 'ଚାରିଟା ଗୋଡ଼ ବାହାରିଥାଏ, ଗୋଡ଼ ତଳେ ଘର ଚଟାଣ ଉପରେ ଫୁଟେ ଫୁଟେ ଉଚ୍ଚର ବଇଠା ରଖା ହୋଇଥାଏ, ଯେମିତି ବଇଠାରେ ଉଇ ଲାଗୁ ପଛେ ଆଲମାରୀରେ ଉଇ ଲାଗିବ ନାହିଁ । ପ୍ରତି ବଇଠା ଉପରେ ଗୋଟାଏ ଲେଖାଁ ଅସନା ରସତାଟିଆ, ତାଟିଆରେ ପାଣି ପଶିଥାଏ, ତା'ହେଲେ ଆଲମାରୀରେ ପିମ୍ପୁଡ଼ି ଲାଗିବ ନାହିଁ ।

ସେଦିନ ସେ ଘର ଚଟାଣରେ ବସି ଗପ କରୁ କରୁ ନିଘା ଲାଖି ରହିଲା ସାମ୍ନାର ବଇଠା ଦୁଇଟା ଉପରେ । କ'ଣ ସେ ? କଳା କୋଚଟ ଦିଶୁଛି, ଅଳିଆ ଧୂଳି ବୋଳି ହୋଇଛି, କିନ୍ତୁ କି ପଦାର୍ଥ ସେ ? ଇଟା କି ପଥର କି କାଠ କି ଆଉ କ'ଣ ? ଚଉଖୁଣ୍ଟିଆ ଦିଶୁଛି, ତା କରରେ କ'ଣ ଯେମିତି ଲେଖା ହେଲାଭଳି ।

ପାଖକୁ ଗଲି, ପରୀକ୍ଷା କରି ଦେଖିଲି, ବଇଠା କାଠ ପଥର ନୁହେଁ, ମୋଟା ମୋଟା ବହି ।

ପଦାକୁ ଯାଇ ଖୋଜି ଖୋଜି ଇଟା କେତେଖଣ୍ଡ ଗୋଟେଇ ଘର ଭିତରକୁ ଆଣିଲି । ଆଲମାରୀ ତଳୁ ବହି ବଇଠା କାଢ଼ି ସେଠି ଇଟା ବଇଠା ଥୋଇଦେଲି । ବହି କେତେଖଣ୍ଡି କାନିରେ ଝାଡ଼ିଝୁଡ଼ି କୋଡ଼ରେ ପୂରେଇ ବସିଲି । ବହି ମତେ ଭଲ ଲାଗେ । ଖୋଲି ଦେଖିଲି କି ବହି ସେ ।

ମନେପଡୁଛି, ଖଣ୍ଡେ ଥିଲା କବି ୱାର୍ଡ୍‌ସ୍‌ୱାର୍ଥ୍‌ଙ୍କ କବିତାସଂଗ୍ରହ । ଆହା କବି ୱାର୍ଡ୍‌ସ୍‌ୱାର୍ଥ୍ ! ଏଇଆ ଥିଲା କପାଳରେ ! ଆଉ ଖଣ୍ଡିଏ ଥିଲା ମ୍ୟାକ୍‌ଲେଙ୍କ ପବନ୍ଧାବଳୀ, ଅତି ପ୍ରସିଦ୍ଧ । ଆଉ ଖଣ୍ଡିଏ ଷ୍ଟାନ୍‌ଲି ଲେନ୍‌ପୁଲ୍‌କୃତ ଭାରତ ଇତିହାସର ପଠାଣ ଓ ମୋଗଲ ଯୁଗ । ଖଣ୍ଡିଏ ବୋଧହୁଏ ଏଲ୍‌ଫିନ୍‌ଷ୍ଟୋନ୍‌କୃତ ଭାରତ ଇତିହାସ । ବୋଧହୁଏ ଆଉ ଖଣ୍ଡିଏ ରାଇସ୍ ଡେଭିଡ୍‌ସ୍‌କୃତ ବୌଦ୍ଧ ଭାରତର ଇତିହାସ । ପ୍ରତି ବହି ଇତିହାସପ୍ରସିଦ୍ଧ କହିଲେ ଚଳେ ।

ଟାଇପିଷ୍ଟ ଶ୍ରୀ ରାଧାନାଥ ମହାନ୍ତିଙ୍କ ଘରେ କିରାସିନି ଡାବଲ ପଟାର ଶୁଖୁଆ ଓ ଅନ୍ୟ ଖାଦ୍ୟ ଆଲମାରୀର ବୈଠା ହୋଇ ଏସବୁ ବହି । ତା'ହେଲେ କ'ଣ ରାଧାନାଥ ବାବୁ ନିଜେ ଏସବୁ ପଢ଼ିଥିଲେ ?

ପଚାରି ବୁଝିଲି, ଏସବୁ ବହି ସେ ବ୍ୟବହାର କରିନାହାନ୍ତି । ସରୁ ସରୁ ସୁନ୍ଦର ପାଠୁଆ ଅକ୍ଷରରେ ଅନ୍ୟ ଜଣଙ୍କର ନାଁ ସେ ବହିରେ ଲେଖା ହୋଇଥିଲା । ସେ ରାଧାନାଥ ବାବୁଙ୍କ ବାପା । ସେ ତାଙ୍କ ଅମଳର ଉଚ୍ଚଶିକ୍ଷିତ କଲେଜ୍ ପାଠ ପଢ଼ିଥିବା ବିଦ୍ୱାନ୍ ଥିଲେ, ତାଙ୍କର ବହୁତ ବହି ଥିଲା, କ'ଣ ଖୁବ୍ ବଡ଼ ଚାକିରି କରୁଥିଲେ, ତା'ପରେ ମରିଗଲେ । ରାଧାନାଥ ବାବୁଙ୍କ ବୋଉ ଓ ତାଙ୍କ ସ୍ତ୍ରୀ କହିଲେ ।

''ଆଉ ଏମିତି ବହି ଅଛି ?''

''କେଜାଣି ? ଭଡ଼ା ଭଡ଼ା ଥିଲା । କୋଇଲା ସାଙ୍ଗରେ କାଠ ସାଙ୍ଗରେ କୁରୁହା ହୋଇଥିଲା । ଆଉ ଏଠି ସେଠି କେତେ ଖଣ୍ଡ ଥିଲା । କିଏ ପଚାରୁଛି ସେଗୁଡ଼ାକୁ ? କାହା କୁଟୁମ୍ବ ପୋଷିବ ଯେ ବହି ?''

ବହି କେତେଖଣ୍ଡି ପଢ଼ିବାକୁ ଆଣିଥିଲି । ମୋର ବହୁତ କାର୍ଯ୍ୟରେ ଲାଗିଥିଲା । ସେତେବେଳେ କୌଣସି ବିଷୟରେ ପାଠ୍ୟ ବାହାରର ଅନ୍ୟାନ୍ୟ ବହି ପଢ଼ି ତଥ୍ୟ ସଂଗ୍ରହ କଲେ ପରୀକ୍ଷାରେ ଭଲ କରିହୁଏ ବୋଲି ମୋର ଧାରଣା ଥିଲା । ଆମ ସାମ୍ନା ବସାରେ ପ୍ରଫୁଲ୍ଲର ବଡ଼ଭାଇ ଶୌରିନ୍-ଦା ଥିଲେ, କଲେଜ୍‌ରେ ବି.ଏ. ପଢୁଥିଲେ । ତାଙ୍କଠୁ ତାଙ୍କର ଭାରତ ଇତିହାସ, ବିଲାତି ଇତିହାସର ବିବିଧ ପାଠ୍ୟ ବହି ଆଣି ପଢ଼ି ମୁଁ ଟିପି ରଖୁଥିଲି । ସେହି ପର୍ଯ୍ୟାୟରେ ଏ ବହିଗୁଡ଼ିକ ବି ମୋର କାର୍ଯ୍ୟରେ ଆସିଲା ।

କିନ୍ତୁ ସେ ଘଟନାର ତାତ୍ପର୍ଯ୍ୟ ଭାବିଲେ ମନ ଦୁଃଖରେ ଉଦାସ ହୋଇଯାଏ ।

ସେ ବହି ଯେ କିଣିଥିଲେ, ପଢ଼ିଥିଲେ, କେଡ଼େ ଯତ୍ନରେ ତାକୁ ସାଇତି ରଖିଥିବେ ! ଗୋଟିଏ ପୃଷ୍ଠା ବି ଟିପିରୁ ଭାଙ୍ଗ ପଡ଼ିନାହିଁ । ବହି କରରେ ସରୁ ସରୁ ଚିହ୍ନ ଦିଆହୋଇଛି, ମୋଟ ଗାରଟିଏ ବି ପଡ଼ିନାହିଁ । ମଣିଷ ମରିଗଲେ ତା'ର ପ୍ରିୟ ବସ୍ତୁଗୁଡ଼ିକର ଅବସ୍ଥା ଏହିପରି ହୁଏ ।

ମୋ ନିଜ ଲେଖା ଥିବା ଖାତା, କାଗଜ, ଲେଖା ସଂଗ୍ରହ ଓ ଛପା ବହି, ମୁଁ ନିଜେ ସାଇତି ରଖିଥିବା ଟିପାଖାତା ଓ ବହିଗୁଡ଼ିକ, ସେସବୁ କଥା ଭାବିଲେ ବେଳେ ବେଳେ ମୋର ମନେପଡ଼େ ହରିର ଅଚ୍ଚାଙ୍କର ସେ

ବହିଗୁଡ଼ିକର କଥା । କିଏସେ କହିବ ଯାର ବି ସେ ଦଶା ନ ହେବ ବୋଲି ।

ନିଶାମଣି ମଉସା ବି ବହୁତ ବହି ରଖୁଥିଲେ । ପ୍ରାୟ ପ୍ରତି ମାସରେ ସେ ଗୁଡ଼ିଏ ନୂଆ ନୂଆ ଇଂରେଜି ବହି କିଣି ଆଣନ୍ତି । ସେଗୁଡ଼ିକ ଖୁବ୍ ଯତ୍ନରେ ଥାକରେ ସାଇତି ରଖୁଥାନ୍ତି । ମୁଁ ଖଣ୍ଡେ ଖଣ୍ଡେ ମାଗିନେଇ ପଢ଼େଁ, ପଢ଼ିସାରି ଫେରାଇଦେଇ ଆଉ ଖଣ୍ଡିଏ ନିଏଁ । ମୋର ମନେପଡ଼ୁଛି, ଜୁଲସ୍ ଭର୍ଣ୍ଣ, ଦୁଇ ବ୍ରଁତେ ଭଉଣୀ, ମେରି କରେଲି ଇତ୍ୟାଦିଙ୍କ ବହି ମୁଁ ସେଉଠୁ ନେଇ ପଢ଼ିଥିଲି । ଶେର୍ଲକ୍ ହମ୍‌ସ୍‌ଙ୍କ ଡିଟେକ୍‌ଟିଭ୍ ଗଳ୍ପ ବି ମୁଁ ସେଉଠୁ ନେଇ ପଢ଼ିଥିଲି ।

ବହି ଆସୁଥିଲା ନାନାଆଡୁ । ସୁରେଶ୍ ରାୟ ଘରେ ତ ପ୍ରକାଣ୍ଡ ଲାଇବ୍ରେରି ଥିଲା, ସେ ବି ବହି ଦିଏ ।

ମୋର ମନେପଡ଼ୁଛି, ମୁଁ କାଉଣ୍ଟ୍ ଅଫ୍ ମଣ୍ଟିକ୍ରିଷ୍ଟୋ ପଢ଼ିବା ଦିନ କଥା । ଯୋଡ଼ିଏ ଭଲ୍ୟୁମ୍ । ବହିଟି ଧରିଲି ତ ଆଉ ଛାଡ଼ି ପାରୁନାହିଁ । ରାତିଯାକ ମୁଁ ସେ ବହି ପଢୁଛି, ସେ ବହିରେ ହିଁ ରହିଛି, କେତେବେଳେ ସକାଳ ହେଲା, ଜାଣି ପାରିଲି ନାହିଁ । ଲାଗି ପାଗି ପଢ଼ିଦେଲି । ଡୁମାଙ୍କର ଅନ୍ୟାନ୍ୟ ବହି ବି ପଢ଼ିଲି । ଭିକ୍ଟର୍ ହୁଗୋଙ୍କ ଲେ ମିଜାରେବ୍‌ଲ ପଢ଼ିବା ଅନୁଭୂତି ବି ମନେପଡ଼ୁଛି, ମନେପଡ଼ୁଛି କସେଟେର ଦୁର୍ଦ୍ଦଶା ଦେଖି କାନ୍ଦିବା କଥା । ସେମିତି ଅଭିଭୂତ ହୋଇଥିଲି ଅଂକ୍ଲ ଟମ୍‌ସ୍ କେବିନ୍ ପଢ଼ି, ଆହୁରି ଅଭିଭୂତ ହୋଇଥିଲି, ଯେତେବେଳେ ବାଂକିପୁରରେ ଯାଇ ତା'ର ନୀରବ ଫିଲ୍ମ ଦେଖିଥିଲି । ନୀରବ ଫିଲ୍ମର ଗଭୀର ଅନୁଭୂତି କଥାକୁହା ଫିଲ୍ମରେ ଆଉ ମିଳିଲା ନାହିଁ ।

ସବୁ ଓଡ଼ିଆଙ୍କ ଘରକୁ ବି ମୋର ଯିବା ଆସିବା ଥାଏ, ପାଟ୍‌ନାରେ ଓଡ଼ିଆମାନେ ଯେ ଯେଉଁଠି ଥାଉନ୍ତୁ, ସେମାନଙ୍କର ପରସ୍ପର ପ୍ରତି ସ୍ନେହ ସହାନୁଭୂତି ଥାଏ । 'ଓଡ଼ିଆ' ବୋଲି ପରସ୍ପର ପ୍ରତି ଗୋଟାଏ ମମତା ଥାଏ, ସବୁ ପିଲା ଅନ୍ୟ ସମସ୍ତିଙ୍କ ଘରେ ବି ଆପଣାର ପିଲା ପରି ଚଳନ୍ତି । ପଛେ ସ୍ୱତନ୍ତ୍ର ଓଡ଼ିଶା ହେଲାପରେ ସେମାନେ ବି କଟକ ଭୁବନେଶ୍ୱର ଆସିଲେ । କିନ୍ତୁ ସେ ପୁରୁଣା ସଂପର୍କ ରହିଲା ନାହିଁ ।

ଠିକ୍ ଆମ ଘର ପାଖେ ଥିଲେ ଶାନ୍ତମୂର୍ତ୍ତି ଦାମୋଦର ନାଏକ, ସବୁବେଳେ ହସହସ, ଡେଙ୍ଗା, ମୋଟାସୋଟା । ତାଙ୍କର ପଡ଼ିଶା ହୋଇ ଦଉହରି ବାବୁ ଓ ଶ୍ରୀ ହୃଷିକେଶ ପରିଡ଼ା । ହୃଷିବାବୁ ଖୁବ୍ ଥଟ୍‌ଲି । ସେ ବାରମ୍ବାର

କହନ୍ତି, କେମିତି ମ୍ୟାଟ୍ରିକୁଲେସନ୍ ପରୀକ୍ଷା ବେଳେ 'ଛେଳିଛୁଆ' ଇଂରେଜି ତାଙ୍କର ମନେପଡ଼ିଲା ନାହିଁ ବୋଲି 'ଛେଳିର ସନ୍ତାନ' ବୋଲି ଇଂରେଜି ଅନୁବାଦ କରିଦେଇ ଆସିଲେ । ଭଗବାନ ବାବୁ ମୋର ସେକେଣ୍ଡ କ୍ଲାସ୍ ବେଳେ ଆସିଲେ । ତାଙ୍କ ସଙ୍ଗରେ ଚାଲି ଚାଲି ବାଙ୍କିପୁର ବୁଲିଯାଇଛି । ସେ ଟିକିଏ ଟିକିଏ ହିନ୍ଦୀ ଶିଖୁଥାନ୍ତି । ଶୁକଦେବ ସାହୁ ଖୁବ୍ ଥଟ୍ଟା ନକଲ ହୁଅନ୍ତି । ହସ ହସ ମଣିଷ । ଇନ୍ଦ୍ରମଣି ମହାନ୍ତି ପ୍ରସିଦ୍ଧ ଭୁବନାନନ୍ଦ ଦାସଙ୍କ ଝିଆରି ଜ୍ୱାଇଁ, ତାଙ୍କ ସ୍ତ୍ରୀ ଦେବହୂତି ଦେଇ କବିତା ଲେଖୁଥିଲେ । ତାଙ୍କର ଗୋଟିଏ ଯୋଡ଼ିଏ କବିତା ବହି ଛପା ହୋଇ ରହିଥାଏ, ବଣ୍ଟାହୁଏ । ନରସିଂହଚରଣ ଦାସ ଦେଖାହେଲେ ପଚାରନ୍ତି, "କେମିତି ପଢୁଚ ?" ବିଷ୍ଣୁଚରଣ ମହାପାତ୍ର ଓ ନାରାୟଣଚନ୍ଦ୍ର ପାତ୍ର ଯୋଡ଼ିଏ ଘନିଷ୍ଠ ବନ୍ଧୁ । ରାମଚନ୍ଦ୍ର ଦାସ ସେତେବେଳେ ବି ଚୈତନ୍ୟ ଭକ୍ତ, ସେ ଅନେକ ସମୟରେ ସଂକୀର୍ତ୍ତନ କରନ୍ତି । ତାଙ୍କ ସ୍ତ୍ରୀଙ୍କର ଅକାଳ ବିୟୋଗ ହେଲା । ସେଦିନ ଏତେ ଦୁଃଖରେ ସ୍ତ୍ରୀଙ୍କ ପାଖରେ ବି ସେ ସଂକୀର୍ତ୍ତନ କରି ଭଗବାନଙ୍କୁ ଡାକିଥିଲେ । ତାଙ୍କର ଯୋଡ଼ିଏ ପୁଅ ଗୋପାଳ ଓ ଗୋବିନ୍ଦ, ସେତେବେଳେ ଖୁବ୍ ସାନ ସାନ । ପଛେ ସେ ଦୁହେଁ ଜଙ୍ଗଲ ବିଭାଗରେ କନ୍‌ଜରଭେଟର୍ ହେଲେ । ଶ୍ୟାମସୁନ୍ଦର ଦାସ ବୟସ୍କ ଭଦ୍ରବ୍ୟକ୍ତି, ଖୁବ୍ ଧୀର କଥା, ଅତି ଅଳ୍ପ କହନ୍ତି । ବ୍ରହ୍ମାନନ୍ଦ ଦାସ ଆମ ବଡ଼ ଭାଉଜଙ୍କର ସଂପର୍କୀୟ ଭାଇ ।

ସେମିତି ତାଙ୍କର ଆଉ ଜଣେ ଭାଇ ସାରଦାଚରଣ ଦାସ । ତାଙ୍କର ନିରୀହ ନିରାଡ଼ମ୍ବର ଭଲପଣିଆ ପାଇଁ ସେ ଖୁବ୍ ଜଣାଶୁଣା । ସେ ଅନ୍ୟମାନଙ୍କୁ ଡାକି ଡାକି ଖୁଆଇବାକୁ ଭଲ ପାଆନ୍ତି, ବହୁତ ଭୋଜି କରନ୍ତି । ସେ ନିଜେ ଅନେକ ସମୟରେ ଖାଲି ଦେହରେ ବୁଲନ୍ତି, କାନ୍ଧରେ ଖଣ୍ଡେ ଗାମୁଛା, ଦର୍ଶନଶାସ୍ତ୍ର ସମ୍ବନ୍ଧୀୟ ବହି ପଢ଼ନ୍ତି । ବହୁବର୍ଷ 'ନେଚରୋପ୍ୟାଥି' କଲେ । ଲୁଇ କହ୍ନିଙ୍କ ବହିରେ ଲେଖା ହୋଇଥିବା ନିର୍ଦ୍ଦେଶ ଅନୁଯାୟୀ ଚଳିଲେ । ସେଇଥିପାଇଁ ସେ ଗୋଟିଏ ପାଣି ଟବ୍ ଭିତରେ ବସି ବହୁତ ବେଳଯାକେ ଅଣ୍ଟାପାଣି କରନ୍ତି, ଔଷଧ ଖାଆନ୍ତି ନାହିଁ । ଦେହ ଅସୁସ୍ଥ ହେଲେ କାଦୁଅ ଲଦି ହୁଅନ୍ତି ଓ କଞ୍ଚା ଚାଉଳ, କଞ୍ଚା କଖାରୁ, ସାରୁ, କଦଳୀ, ଅନ୍ୟାନ୍ୟ ପନିପରିବାକୁ ନ ସିଝେଇ ସେମିତି ଚୋବେଇ ଚୋବେଇ ଖାଆନ୍ତି । ମାଛ ମାଂସ ପିଆଜ ରସୁଣ କେବେ ଖାଆନ୍ତି ନାହିଁ । ସେ ସବୁବେଳେ ହସହସ । କାହାପାଇଁ କି ଉପକାର କରିପାରିବେ, ସେଇଆ ଖୋଜି ବୁଲୁଥାନ୍ତି । ସଦାପ୍ରସନ୍ନ, ସବୁବେଳେ ହସହସ ସାରଦା ବାବୁଙ୍କୁ ଦେଖିଲେ ମନରେ ଆନନ୍ଦ ଓ ଉତ୍ସାହ

ଆସେ । କେବେ ଧାରଣା ହୁଏନାହିଁ ଯେ, ତାଙ୍କର କିଛିହେଲେ ବ୍ୟକ୍ତିଗତ ଦୁଃଖ ଦୁର୍ଦ୍ଦଶା ଥାଇପାରେ, କିନ୍ତୁ ସେସବୁ ବି ବୋଧହୁଏ ଥିଲା । ତାଙ୍କର ଯୋଡ଼ିଏ କି ତିନୋଟି ସ୍ତ୍ରୀ ଗୋଟିକ ପରେ ଗୋଟିଏ ହୋଇ ମରିଥିଲେ, ସେ ଉଦାସୀ, ବାବାଜୀ ପରି ଦିଶୁଥିଲେ ବି ପୁଣି ବିଭା ହୋଇଥିଲେ, ତାଙ୍କର ବହୁତଗୁଡ଼ିଏ ପିଲା । ସେହିମାନଙ୍କ ଯତ୍ନ ନେବାପାଇଁ ବିଭା ହୁଅନ୍ତି, ପୁଣି ସନ୍ତାନ ହୁଅନ୍ତି । ସଂସାରର ଜଞ୍ଜାଳ ଭିତରେ ରହି ସେ ଜଞ୍ଜାଳରୁ ନିଜ ମନକୁ ମୁକ୍ତ ରଖି କର୍ତ୍ତବ୍ୟ କରିଯିବାର କିମିଆଁ ଅଭ୍ୟାସ କରିଥିଲେ । କାହାରି ପ୍ରତି ରାଗ ନ ଥିଲା, ଟାଣ କଥା କହନ୍ତି ନାହିଁ, ସବୁବେଳେ ଶାନ୍ତ ସଂଯତ, କାହାରି କୁତ୍ସା ସେ କରନ୍ତି ନାହିଁ କି ଶୁଣନ୍ତି ନାହିଁ । ପାଟ୍‌ନାକୁ ଅଚିହ୍ନା ଓଡ଼ିଆ ଲୋକ ଆସିଲେ ସାଧାରଣତଃ ସେ ସାରଦାବାବୁ ବା ଜଗତ୍ ବାବୁଙ୍କ ସଙ୍ଗେ ଆଗ ସମ୍ପର୍କ ପ୍ରତିଷ୍ଠା କରେ । ସାରଦା ବାବୁଙ୍କ ତୁଣ୍ଡରେ ସବୁବେଳେ ନୀତି ଆଦର୍ଶର କଥା, ସେ ସେହି କଥା ଭାବୁଥିଲେ । ଘରେ ସବୁବେଳେ ପିଠାପଣା, ଅନ୍ୟମାନଙ୍କୁ ଡାକି ଆଣି ଖୁଆଇବେ ବୋଲି । ତାଙ୍କର ବ୍ୟକ୍ତିଗତ ଦୁଃଖ ଶୋକ ସେ ନିଜ ମନେ ମନେ ରଖନ୍ତି ।

ଯେଉଁ ଲୋକେ ସଂସାରି ପଣରେ ଚତୁର ଓ ହିସାବୀ, ତାଙ୍କ ଭିତରୁ କେହି କେହି କୁହାକୋହି ହୁଅନ୍ତି, କେମିତି ସାରଦାବାବୁ ଭୂତ ଖୋଉଛନ୍ତି, ନିଜର ସବୁ ଉଜାଡ଼ି ଦେଉଛନ୍ତି, ପିଲାଙ୍କ ପାଇଁ କିଛି ରଖୁନାହାନ୍ତି, ଇତ୍ୟାଦି । ତାଙ୍କୁ କେହି ହିତୋପଦେଶ ଦେଲେ ସେ ହସନ୍ତି । କହନ୍ତି "ଯେ ସଂସାରରେ କ'ଣ ସ୍ଥିର ଯେ, ଆମେ ଛୁଆପିଲାଙ୍କ ପାଇଁ ରଖିଦେଇ ଯିବା ! ସ୍ଥିର ଖାଲି କେତୋଟି କଥା, ସେ ଟଙ୍କା ସୁନା ନୁହେଁ । ସବୁଠୁ ବଡ଼ ଧନ ଈଶ୍ୱରକୃପା । ଭଲ କାମ କଲେ ଭାଗ୍ୟ ଥିଲେ ସେ ମିଳିବ । ଯେ ଜନ୍ମ ଦିଏ, ସେ ବ୍ୟବସ୍ଥା ବି କରେ । ପିଲାଙ୍କୁ ଆମେ ଦେଇଯାଇ ପାରିବା ଭଲ ବୁଦ୍ଧି, ଉତ୍ତମ ଚରିତ୍ର ଓ କାର୍ଯ୍ୟର ଆଦର୍ଶ, ସେମାନେ ସେତିକି ଶିଖିଲେ ନିଜ ଶିଂଘରେ ମାଟି ଖୋଳିବେ ।"

ଲୋକେ କହନ୍ତି; "ଆପଣ ଯେତେ ଯାହା କହୁଛନ୍ତି, କରୁଛନ୍ତି; ସେସବୁ ଶାସ୍ତ୍ର କହିଛି, ମାହାତ୍ମାଗାନ୍ଧୀ କହୁଛନ୍ତି, ଋଷି ମୁନିମାନେ କହିଛନ୍ତି । କିନ୍ତୁ ସଂସାରରେ ସେପରି କଥା ଖଟେ ନାହିଁ । ଅବାସ୍ତବ, ଇମ୍‌ପ୍ର୍ୟାକ୍‌ଟିକାଲ୍ ।"

ହସିଦେଇ ସାରଦାବାବୁ କହନ୍ତି, "ଶାସ୍ତ୍ର ଯାହା କହିଛି, ଋଷିମୁନିମାନେ ଓ ମହାତ୍ମାଗାନ୍ଧୀ ଯାହା କହିଛନ୍ତି, ସେସବୁ ଯଦି ଖାଲି ଅବାସ୍ତବ ଭୁଲ୍

କଥାଗୁଡ଼ାଏ ହୋଇଥାନ୍ତା, ତେବେ ସେ କଥାକୁ ଯୁଗ ଯୁଗର ଲୋକେ ସବୁଠୁ ଶ୍ରେଷ୍ଠ କଥା, ସବୁଠୁ ବୁଧିଆ କଥା ବୋଲି କହନ୍ତେ କାହିଁକି ? ଭୁଲ୍ ହୁଏ ଆମର, ଆମେ ଯେତେବେଳେ ଭାବୁଁ ଯେ, ସେସବୁ ଯେଉଁ ବହିରେ ଅଛି, ସେ ବହିକି ଖାଲି ଖଟୁଲିରେ ଥୋଇ ପୂଜା କରି ପାଦୁକ ପାଇଲେ ଆମର ସୁଖଶାନ୍ତି ଧନ ଦରବ ବଢ଼ିଯିବ । ସେଥିରେ ଛୁଆଁ-କିମିଆଁ ଅଛି । ସେସବୁ ପଢ଼ିବା ବୁଝିବା କରିବା ଲାଗି ଲେଖା ହୋଇନାହିଁ । ସେହି ଧାରଣାଟା ଭୁଲ୍ । ଗୀତା ଭାଗବତ କ'ଣ ? ସେ ପରା ମଣିଷର ନିତିଦିନିଆ ଜୀବନର କଥା । ଲୋକେ କେମିତି ଚଳିଲେ ସେଇଟା ହବ ସବୁଠୁ ବୁଧିଆ ଚଳଣି, ସେହି କଥା ସେଥିରେ ଲେଖା ହୋଇଛି ।''

''ଆପଣ ପାଗଳ ।''

ସେ ଆହୁରି ହସନ୍ତି ।

କେତେ ଲୋକ କେତେ ବାବାଜୀଙ୍କଠୁ ଦୀକ୍ଷା ନେଇଥିଲେ, ସାରଦା ବାବୁ ସେଥିରୁ ମୁକ୍ତ ଥିଲେ । ଅନେକ ଘଣ୍ଟା ବଜେଇ ଧୂପ ଦୀପ ଥୋଇ ଚିତା ଚଇତନ ହୋଇ ବଡ଼ ପାଟିରେ ମନ୍ତ୍ର ବୋଲି ବୋଲାଇ ପୂଜା କରୁଥିଲେ । ସାରଦାବାବୁ ତା କରୁ ନ ଥିଲେ । ସେ କେତେବେଳେ ଚୁପ୍‌ଚାପ୍ ହୋଇ ବସି କ'ଣ ଭାବନ୍ତି । କେହି କେହି କହନ୍ତି; ''କି ବାବାଜୀ ସେ ?'' କିନ୍ତୁ ତଥାପି ତ ସାରଦା ବାବୁଙ୍କ କଥା ପଡ଼ିଲେ ସେମାନେ ତାଙ୍କୁ ବାବାଜୀଟିଏ ପରି ଭାବନ୍ତି । ତାଙ୍କ ନାଁ ପଡ଼ିଲେ ଯେ ହେଲେ ଆଗ କହେ, ''ଭାରି ଭଲ ଲୋକ ।''

ସ୍ପଷ୍ଟବାଦୀ, ନିଜ ବିଚାରକୁ ଯାହା ଆସିବ ତା କହିବେ । କଳିଗୋଳ ଭାଙ୍ଗିବାକୁ ତାଙ୍କୁ ଡକରା ହୁଏ, ସେ ଚେଷ୍ଟା କରନ୍ତି ବୁଝେଇ ଶୁଝେଇ ମିଶେଇଦେବେ ।

ତାଙ୍କ ବିଷୟରେ ଗୋଟିଏ କାହାଣୀ ମୁଁ ଶୁଣିଛି । କେହି ଜଣେ ଭଦ୍ର ମହିଳା ମରିଗଲା ପରେ କେତେଜଣ ଲୋକ ତାଙ୍କୁ କ'ଣ ନିନ୍ଦା କରି କୁହାକୋହି ହେଲେ ବୋଲି ସାରଦା ବାବୁଙ୍କ କାନରେ ପଡ଼ିଗଲା । ସେମାନେ ସମସ୍ତେ ଏକାଠି ବସିଥିଲାବେଳେ ଶାନ୍ତ ସ୍ୱରରେ ସେ ଗୋଟି ଗୋଟି କରି ସେମାନଙ୍କ ନାଁ ଧରି ତାଙ୍କୁ କହିଲେ—''ମୁଁ ଶୁଣିଛି, ତୁମେ ଏପରି କ'ଣ ସବୁ କହିଲ ! ଯଦି କହିଥିବ, ତୁମେ ଜାଣ, ମୁଁ ଶୁଣିନାହିଁ । ଯଦି ନ କହିଛ, ତେବେ କେହି ମିଛରେ ଉଠାଇଛି । ମୁଁ ଯାହାଠୁ ଶୁଣିଲି ତାକୁ ଡାକିଦେବି, ତୁମେ

ପଚାରି ବୁଝ । ଯଦି ପ୍ରକୃତରେ ନିନ୍ଦା ଅପବାଦର କଥା କହିଛ, ତେବେ କ'ଣ କ'ଣ କହିଲ, କେତେ କଥା କହିଲ, ସେଗୁଡ଼ାକ ମୁଁ ତୁମକୁ ପଚାରୁନାହିଁ, ମତେ ଆଦୌ ଶୁଣାଅନାହିଁ । ସେଗୁଡ଼ାକ ଘାଣ୍ଟି ନିଜ କାନ ନିଜ ମୁଣ୍ଡ ଖରାପ ହେବ ସିନା, ଲାଭ କ'ଣ ? ତୁମେ କେହି ସାନ ପିଲା ନୁହଁ, ଗୋଟିଏ ଗୋଟିଏ ଘରର ମୁରବି । କେତେ ଲୋକଙ୍କର ତୁମ ଉପରେ ଭରସା ଅଛି । ତୁମେ ସବୁ ପାଠୁଆ ଲୋକ; ବୁଧିଆ ଲୋକ । ତେଣୁ ମୁଁ ଭାବୁଛି, ତୁମେ ଯାହା କହିଥିବ ବୋଧହୁଏ ସେଥିପାଇଁ କିଛି କାରଣ ଦେଖିଥିବ କି ଜାଣିଥିବ ବୋଲି କହିଥିବ, ତା ନ ହେଲେ ତ ଆହୁରି ଭୁଲ୍ ।

ତେବେ ଶୁଣ, ମୁଁ ଖାଲି ଗୋଟିଏ କଥା କହୁଛି—(ତାଙ୍କ ମୁହଁରେ ସେହି ହସ, ମହାତ୍ମାଗାନ୍ଧୀଙ୍କ ହସ ପରି ସ୍ୱଚ୍ଛ ହୃଦୟର ହସ ସେହି ସାତ୍ତ୍ୱିକ ମୁହଁରେ ଓଠରେ ଫୁଟି ଉଠିଥାଏ, ଆଖିରେ ଅପାର କରୁଣା ।) ଶୁଣ, ଆରେ ଅମୁକ, ଆରେ ଅମୁକ, ଆଉ ତୁମେ ଅମୁକ, ଆଉ ତୁମେ ଅମୁକ—ମୁଁ କହୁଛି ଶୁଣ, କଥାଟା ବୁଝ । ସେ ତ ମଲେଣି । ସେ କ'ଣ ଆଉ ଫେରିବେ ?

ଏକେ ତ କାହାରିକି ନିନ୍ଦା କରିବା ଖରାପ, ମଲା ଲୋକକୁ ନିନ୍ଦା କରିବା ତ ପାପ, ଆଉ, —କୌଣସି ମାଇକିନିଆକୁ ନିନ୍ଦା କରିବା ତ ଖାଲି ପାପ ନୁହେଁ, କାପୁରୁଷତା ।

ଆଉ, ତୁମେ ନିନ୍ଦା ବି କରିପାରିଲ କେମିତି ? କେମିତି ତୁମ ତୁଣ୍ଡରେ ନିନ୍ଦା ପଦ ଧରିଲା ! ଆଚ୍ଛା କହିଲ, ସେ ବଞ୍ଚିଥିଲାବେଳେ ତୁମର କ'ଣ କେବେ କିଛି ଉପକାର କରିନାହିଁ ? କେବେ ତା ହାତରୁ ପାନ ଖଣ୍ଡେ ବି ତୁମେ ଖାଇ ନ ଥିବ ? ତୁମର କାହାରି ବିପଦ ଆପଦ ହେଲେ କେବେ ତା ତୁଣ୍ଡରୁ ଆହା ପଦେ ବାହାରି ନ ଥିବ ? ହଇରେ, ତମ୍ଭକୁ ସବୁ ଦେଖିଲେ ପରା ସେ କୋଟିନିଧି ପାଇଲା ପରି ହୁଏ ମୁଁ ତ ଦେଖିଚି, କେତେଥର ଦେଖିଛି, ତେମେ ତା ଘରେ କ'ଣ ଟିକିଏ ଖାଇବ ବୋଲି ତା'ର କେତେ ଉତ୍କଣ୍ଠା, ନିଜ ପାଇଁ ଭଲ ଖୋଜେ ନାହିଁ, ଖଟି ମରୁଥାଏ କେମିତି ତମ୍ଭକୁ ସବୁ ସନ୍ତୋଷ କରି ଦିନେ ଦିନେ କ'ଣ ଖୁଆଇ ପାରିବ । ତା'ର ସେତିକି ବୋଲି ସଉକ, ସେତିକି ବୋଲି ଶରଧା । ଆଉ ମଣିଷ ହୋଇ ତୁମେ ପୁଣି ତାକୁ ନିନ୍ଦା କରିପାରିଲ ? ମୁଁ ତ ପାରନ୍ତି ନାହିଁ ।''

ଏତିକି ଶୁଣେଇ ସେ ସେମାନଙ୍କୁ ଭୋ ଭୋ କନ୍ଦେଇ ଦେଇ ପାରିଥିଲେ, ସେମାନଙ୍କ ହୃଦୟ ତରଳେଇ ଦେଇ ପାରିଥିଲେ । ନିଜେ ଅଧୀର ହୋଇ ନାହାନ୍ତି, କାନ୍ଦି ନାହାନ୍ତି ।

ଜାଣିବା ଲୋକେ କହନ୍ତି "ସାରଦାବାବୁ ମଣିଷ ନୁହଁନ୍ତି, ଦେବତା ।"

ସେ ବି ପଛେ ଓଡ଼ିଶା ବଦଳି ହୋଇ ଆସିଲେ, ପେନ୍‌ସନ୍ ନେଲେ; କେଉଁଠି କେମିତି ବଞ୍ଚିଗଲେ ତାଙ୍କ ନିରୀହ ନିସ୍ପୃହ ଜୀବନ, ମଲେ । ତାଙ୍କ ପିଲାଏ ବି ମଣିଷ ହେଲେ । କେହି ଭାସିଯିବାର ମତେ ଜଣା ନାହିଁ ।

ସତ୍ୟବାଦୀ ସେନାପତି ଖୁବ୍ ଚେହେରାବନ୍ତ ଟାଣୁଆ ମଣିଷ, ବଡ଼ପାଟି, ସବୁ ପରିଷ୍କାର ଖୋଲା ଖୋଲା କଥା । କଥା, ଚାଲି ଓ ଆକାର, ସବୁ ଜଣାଇଦିଏ—ସେ ନିଡରୁଆ, ସ୍ପଷ୍ଟବାଦୀ ।

ଶ୍ରୀକୃଷ୍ଣ ମହାନ୍ତି, ଡାକ ନାଁ ଫକୁ ବାବୁ, ଜଣେ ଯୁବକ, ନୂଆ ନୂଆ ଚାକିରି କରିଥାନ୍ତି । ସେ ମ୍ୟାଟ୍ରିକୁଲେସନ୍‌ରେ ସ୍କଲାରସିପ୍ ପାଇଥିଲେ ଓ କଲେଜ୍‌ରେ ବି ଖୁବ୍ ନାଁ ଡାକ ଛାତ୍ର ଥିଲେ ବୋଲି ଖ୍ୟାତି ଥିଲା । ଜଗତ୍‌ବାବୁଙ୍କ ଘରେ ସେ ଅନେକଥର ମୋର ପାଠ ଦେଖିଛନ୍ତି, ବୁଝେଇଛନ୍ତି ଓ ବତେଇଛନ୍ତି । ଜଗତ୍‌ବାବୁ ତାଙ୍କୁ ଖୁବ୍ ପ୍ରଶଂସା କରନ୍ତି । ସେ ସବୁବେଳେ ହସଖୁସି । ଖୁବ୍ ଖେଳନ୍ତି । ତାଙ୍କ ବିଷୟରେ ଧାରଣା ଥିଲା, "ସେ ଖୁବ୍ ବୁଧିଆ ।" ପଛେ ଓଡ଼ିଶା ସେକ୍ରେଟେରିଏଟ୍‌ରେ ଜଣେ ପ୍ରସିଦ୍ଧ କର୍ମଚାରୀ ହୋଇ ଅବସର ନେଲେ ।

ଗୋପାଳ ଦାସ ଜଗତ୍‌ବାବୁଙ୍କ ପାଖକୁ ମଝିରେ ମଝିରେ ଆସୁଥିଲେ । ସେ ତାଙ୍କର ବନ୍ଧୁବାନ୍ଧବ, ଓକିଲାତି ପଢୁଥିଲେ କି ଆରମ୍ଭ କରିଥିଲେ । ତାଙ୍କ ସହିତ ମୁଁ ବେଶି ମିଶିବାର ଅବକାଶ ପାଇନାହିଁ । ପଛେ ସେ ହେଲେ ମାନ୍ୟବର ହାଇକୋର୍ଟ୍ ଜଷ୍ଟିସ୍ ।

ଗୋପାଳ ପଟ୍ଟନାଏକ ବି ଯୁବକ ଥିଲେ । ସେ କାହ୍ନୁଭାଇଙ୍କ ସହପାଠୀ । ସେ ସରଳ, ନିରାଡ଼ମ୍ବର, କଷ୍ଟସହିଷ୍ଣୁ, ଶାନ୍ତ, ଧୀର, ବିଦ୍ୟୋତ୍ସାହୀ ମଣିଷ । ତାଙ୍କର ବହୁତ ଉଚ୍ଚାଭିଳାଷ ଥିଲା । ସେ ସବୁବେଳେ ନାନା ବିଷୟରେ ତାତ୍ତ୍ୱିକ ଆଲୋଚନା କରୁଥିଲେ । ଯୁକ୍ତି କରିବାକୁ ଭଲ ପାଆନ୍ତି । ସେ ଡାକ୍ତରୀ ପଢ଼ିଲେ, ପଛେ ବିଖ୍ୟାତ ହେଲେ, ପ୍ରିନ୍‌ସିପାଲ୍ ଓ ଡାଇରେକ୍ଟର୍ ବି ହେଲେ ।

ନିମାଇଁଚରଣ ଦାସ ବି ସେତେବେଳେ ଯୁବକ, ଉଦୀୟମାନ କର୍ମଚାରୀ, ଖୁବ୍ ମେଳାପୀ । ପଛେ ପି.ଏମ୍.ଜି. ହେଲେ । ସେ ଟିକିଏ ଦୂରରେ ବସା ପାଇଥିଲେ ।

ବୈଷ୍ଣବଚରଣ ଦାସ ଡି.ଏସ୍.ପି. । ଖୁବ୍ ଖ୍ୟାତନାମା ପୋଲିସ୍ କର୍ମଚାରୀ । ଆକାରରେ ପ୍ରକାଣ୍ଡ, ଟେନିସ୍ ଖେଳରେ ଭଲ, ସଂଗୀତ ଚର୍ଚ୍ଚା, ଶିକାର, ଫଟୋଗ୍ରାଫି, ମାଛଧରା, ଦୁଃସାହସିକତା, ଅନେକ ଗୁଣ ତାଙ୍କର ସୁବିଦିତ ହୋଇଥାଏ । ସେ ଇଂରେଜି ସାହିତ୍ୟରେ କୃତି ଏମ.ଏ. । କଲେଜ୍‌ରେ ଭଲ ଛାତ୍ର, ମ୍ୟାଟ୍ରିକୁଲେସନ୍‌ରେ ସ୍କଲାର୍ । ନିଜ ମଟର ଗାଡ଼ିରେ ଚଢ଼ି ଆସନ୍ତି । ଜଗତ୍‌ବାବୁ ତାଙ୍କର ବିଶିଷ୍ଟ ବନ୍ଧୁ । ଆମ ଆଖିରେ ସେ ଜଣେ ବିସ୍ମୟକର ପ୍ରତିଭାବାନ୍ ମଣିଷ ବୋଲି ଦିଶୁଥିଲେ । କାରଣ ସେତିକିବେଳେ ବାହାରିଥାଏ ତାଙ୍କର ମନସ୍ତାତ୍ତ୍ୱିକ ଉପନ୍ୟାସ, ଓଡ଼ିଆରେ ସେ ଶ୍ରେଣୀର ପ୍ରଥମ ଉପନ୍ୟାସ, "ମନେମନେ" । ପଛେ ତାଙ୍କ ଉତ୍ତର କାଳରେ ବି ଦେଖିଛି, ଅତି ଉଚ୍ଚ ପୁଲିସ୍ କର୍ମଚାରୀ ଥିଲାବେଳେ । ସେତେବେଳେ ବି ପୃଥିବୀର ଅତି ଆଧୁନିକ ସାହିତ୍ୟ ଓ ସାହିତ୍ୟିକ ସମାଲୋଚନା ଆଦି ସହିତ ସେ ଘନିଷ୍ଠ ସଂପର୍କ ରଖିଥାନ୍ତି । ବହୁତ ପଢ଼ିଥିଲେ ଓ ଜାଣିଥିଲେ । ପଛେ ଭୁବନେଶ୍ୱରରେ ତାଙ୍କର ଅନ୍ତିମ ଯାତ୍ରା ସହିତ ଖଣ୍ଡିଏ 'ମନେମନେ' ବହି ବି ଯାଇଥିଲା । ବହୁତ ଲୋକ ଶ୍ରଦ୍ଧାଞ୍ଜଳି ଦେଇଥିଲେ । ପାଟ୍‌ନାର ଓଡ଼ିଆମାନେ ତାଙ୍କୁ ଘେନି ଗର୍ବ ଅନୁଭବ କରୁଥିଲେ ।

ଓଡ଼ିଆମାନଙ୍କର ଆଉ ଜଣେ ଗର୍ବର ମଣିଷ ହୋଇଥିଲେ ନାରଣ ତ୍ରିପାଠୀ, ସେକ୍ରେଟେରିଏଟ୍‌ର ଜଣେ ଆସିଷ୍ଟାଣ୍ଟ୍ । ସେ ବି.ଏ. ପାଶ୍ କରିଥିଲେ, କିନ୍ତୁ ବେଶଭୂଷା ଓ ବ୍ୟବହାରରେ ଏଡ଼େ ସରଳ ନିରାଡ଼ମ୍ବର ଲୋକଟିଏ କ୍ୱଚିତ୍ ଦିଶନ୍ତି । ସେ ପିଲାଙ୍କ ସଙ୍ଗରେ ବି ପିଲାଙ୍କ ପରି କଥା କହନ୍ତି । ଘରେ ଥାକ ଥାକ ଇତିହାସ ବହି, ତାଳପତ୍ର ପୋଥି, ଲେଖା ଖାତା ଓ ତମ୍ବାପଟା । ସେ ଓଡ଼ିଶା ଇତିହାସ ବିଷୟରେ ଗବେଷଣା କରୁଥିଲେ, ଇଂରେଜିରେ ପ୍ରବନ୍ଧ ଲେଖି ଛାପୁଥିଲେ । ସେଥିପାଇଁ ତାଙ୍କର ବହୁତ ଖ୍ୟାତି । ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପିର ସେ ଅର୍ଥ କରିଥିଲେ । ସେ ଆହୁରି ମଧ୍ୟ ଦର୍ଶାଇଥିଲେ ଯେ, ଶ୍ରୀ ବିଜୟ ମଜୁମ୍‌ଦାର୍ ଯେଉଁ ଲିପିକୁ ଯଯାତିଙ୍କ ରାଜଧାନୀ ମହାନଦୀ ଓ ତେଲ୍‌ନଦୀ ସଙ୍ଗମସ୍ଥଳ ସୋନ୍‌ପୁର ବୋଲି ମତ ଦେଲେ, ତା ଠିକ୍ ନୁହେଁ । ଶିଳାଲିପିର ଅର୍ଥ ମହାନଦୀ ଓ ଚିତ୍ରୋତ୍ପଳାର ସଙ୍ଗମସ୍ଥଳରେ ଯଯାତିଙ୍କ ରାଜଧାନୀ ଥିଲା । ଡକ୍ଟର ରମେଶ ଚନ୍ଦ୍ର ମଜୁମ୍‌ଦାର ତାଙ୍କ ଓଡ଼ିଶା ଇତିହାସରେ ଶ୍ରୀଯୁକ୍ତ ନାରାୟଣ ତ୍ରିପାଠୀ, ବି.ଏ.ଙ୍କ ନାଁ ନାନା ସ୍ଥାନରେ ଲେଖିଛନ୍ତି ଓ ପରବର୍ତ୍ତୀ ଐତିହାସିକମାନେ ବି ତାଙ୍କ କଥା ଲେଖିଛନ୍ତି । ତାଙ୍କୁ ଦେଖିଲେ ଲାଗୁଥିଲା, ବିଦ୍ୱାନ୍ ମଣିଷ ଏମିତି ହୁଅନ୍ତି, ଏମିତି ବେଳ କଟାନ୍ତି । ଦିନେ ବାଙ୍କିପୁରର

ବିଖ୍ୟାତ ବାରିଷ୍ଟର ଓ ଭାରତର ଜଣେ ପ୍ରସିଦ୍ଧ ଐତିହାସିକ ଡକ୍ଟର କେ. ପି. ଜୟସ୍ୱାଲ୍ ଗାଡ଼ିରେ ଚଢ଼ି ଗର୍ଦ୍ଦନିବାଗ୍‌ର ବିଭିନ୍ନ ରାସ୍ତାରେ ନାରାୟଣ ତ୍ରିପାଠୀଙ୍କ ଘର ଖୋଜି ଖୋଜି ବୁଲିଲେ, ଶେଷରେ ପାଇଲେ । ସେ ଜୟସ୍ୱାଲ୍‌ଙ୍କ ମତକୁ ଖଣ୍ଡନ କରି ପ୍ରବନ୍ଧ ଲେଖିଥାନ୍ତି । ଜୟସ୍ୱାଲ୍ ତାଙ୍କୁ ଶ୍ରଦ୍ଧା ଜଣାଇବାକୁ ଆସିଥାଚି । ଓଡ଼ିଆଙ୍କ ଭିତରେ ଚହଳ ପଡ଼ିଗଲା । ସେ ବି ଆଉ ନାହାନ୍ତି । ସେ ଓ ତାଙ୍କ ସ୍ତ୍ରୀ ମତେ ଖୁବ୍ ଭଲ ପାଉଥିଲେ । ଆଗ ସେ ରହୁଥିଲେ ଆମରି ଘର ଧାଡ଼ିରେ ୧୦ ନମ୍ବର ରୋଡ୍‌ରେ ଆମ ଘରଠୁ ଯୋଡ଼ିଏ ଘର ଛାଡ଼ି ।

ଦୁର୍ଗାଚରଣ ଦାସଙ୍କର ଯୋଦ୍ଧା ପରି ଚେହେରା, ଚାଲି, ସ୍ୱର ବି ସେମିତି ମନଖୋଲା, ବଳୁଆ, ହସଖୁସିର ମଣିଷ । ତାଙ୍କ ବଡ଼ଭାଇ ଶ୍ରୀ ଉମାଚରଣ ଦାସ, ଡିପୋଟି, ପାଟ୍‌ନାରେ ନ ଥାନ୍ତି ।

ଆଉ ଜଣେ ଡିପୋଟିଙ୍କ ଭାଇ ବିପିନ୍ ପାତ୍ର ଖୁବ୍ ସୁନ୍ଦର । ଚେହେରା ଗୋରା, ଡେଙ୍ଗା, ଭାରି ଅମାୟିକ ମଣିଷ ।

ପାଟ୍‌ନାରେ ମୁଁ ଥିଲାବେଳେ ଆମ ନିଜ ଘର ଛଡ଼ା ଆଉ ଯେ ମତେ ସବୁଠୁ ବେଶି ଭଲ ପାଉଥିଲେ, ମୋ ଖବର ବୁଝୁଥିଲେ, ମତେ ଆପଣାର ମଣି ମୋର ଶୁଭ ହେଉ ବୋଲି ଚିନ୍ତା କରୁଥିଲେ, ଚେଷ୍ଟା କରୁଥିଲେ, ଯେ ମତେ ପାଠ ବୁଝାଉଥିଲେ, ବାଟ ଦେଖାଉଥିଲେ, ଉତ୍ସାହ, ପ୍ରେରଣା, ସାହସ ଦେଉଥିଲେ, ସାହାଯ୍ୟ କରୁଥିଲେ, ମୁଁ କେତେବେଳେ ପଢ଼ାରେ ଟିକିଏ ଉନ୍ନତି କଲେ ଯାହାଙ୍କ ଛାତି କୁଣ୍ଢେମୋଟ ହୋଇଯାଉଥିଲା, ମୋଠୁଁ କୌଣସି ପ୍ରତିଦାନର ପ୍ରତ୍ୟାଶା ନ ରଖି ଯେ ମତେ ମଣିଷ କରୁଥିଲେ, ସେ ମୋ ଜାଣିବାରେ ଏ ଯୁଗରେ ଜଣେ ଶ୍ରେଷ୍ଠ ଆଦର୍ଶ ମଣିଷ, ଖୁବ୍ ବଡ଼ ମଣିଷ । ତାଙ୍କର ବଡ଼ ଆଭିଜାତ୍ୟ, ବଡ଼ ଆକାର, ବଡ଼ ନଜର, ବଡ଼ ମନ, ବଡ଼ ହୃଦୟ, ବଡ଼ ଦୃଷ୍ଟିଭଙ୍ଗୀ, ଖୁବ୍ ବଡ଼ ସ୍ୱପ୍ନ ଓ ଆଦର୍ଶ । ସେ ବାରମ୍ବାର ଇଂରେଜି କବିତାରୁ, ଉକ୍ତିରୁ ଉଦ୍ଧୃତାଂଶ ଗାଆନ୍ତି, ତା ଅର୍ଥ—

''ମଣିଷ ଗଣ୍ଡିଏ ଖାଏ, ବଞ୍ଚିବ ବୋଲି, ଖାଇବା ସକାଶେ ବଞ୍ଚେ ନାହିଁ ।''

''ଯଶକୀର୍ତ୍ତିମୟ ଘଣ୍ଟାଏ ଜୀବନ, ନାଁ ନଥାଇ ଯୁଗେ ବଞ୍ଚିବାଠୁଁ ବେଶି ତାତ୍ପର୍ଯ୍ୟପୂର୍ଣ୍ଣ ।''

''ଏ ଜୀବନରେ ଯଦି ଭଲ କାମ କରି ନ ହେଲା, ଯଦି କାହା ଉପକାରରେ ଲାଗି ନ ହେଲା, ସେମିତି ଜୀବନର ପ୍ରୟୋଜନ କ'ଣ ? ମରିବା ଭଲ ।''

ଉଚ୍ଚତା ଛଅଫୁଟ୍ ହେବ, ଶ୍ୟାମଳ ବର୍ଣ୍ଣ, ଏ କାନ୍ଧରୁ ସେ କାନ୍ଧ ତିନିଫୁଟ୍ ଓସାର ହେବ, ହାତ ଗୋଡ଼ ମୋଟ ମୋଟ, ପେଟ ବାହାରି ଆସୁଥାଏ । ଦେହ ଯେକୌଣସି ତଗଡ଼ା ବିହାରୀ ମଣିଷର ଦେହ ସଙ୍ଗେ ସମାନ । ସେ କହନ୍ତି, ସେ ପୁରୀ ହରଚଣ୍ଡୀ ସାହି 'ଜାଗାଘର' ଆଖଡ଼ାର ମାଲ ହୋଇଥିଲେ । କେମିତି ପିଲାଦିନେ ଅନ୍ଧାରୁଆରୁ ଉଠି କୁସ୍ତି କସରତ୍ କରିବାକୁ ଯିବାକୁ ପଡ଼େ, ମହାବୀରଙ୍କ ପାଖେ ଦଣ୍ଡ ବୈଠକ, ମୁଦ୍‌ଗର ବୁଲା କୁସ୍ତି,– ଏସବୁ କରି ରାତି ଥାଉଣୁ ଗାଧୋଇବାକୁ ପଡ଼େ, ଦେହରେ ବଳ ହେବ ବୋଲି କ'ଣ କ'ଣ ସେ ଖାଆନ୍ତି ଇତ୍ୟାଦି । କୁଜୀ ଅସରପାକୁ ଘିଅରେ ଭାଜି, କେତେ ଚେରମୂଳି, ମସଲା, କନ୍ଦ ସଙ୍ଗରେ ଢିଙ୍କିରେ କୁଟି ଗୁଳି ବଳି ସେ କେତେ ଖାଇଚନ୍ତି, ଆମେ ଛି କହିଲେ ସେ କହନ୍ତି, ''ଆରେ ଛି କ'ଣ, ଏ ଦେହଟା ଅସୁରଟି । ଗୋଲାପ ଗଛର ଫୁଲ କେମିତି ? ଆଉ ତା ଗଛଟା ଖାଏ କ'ଣ ? ଘୁଅ ପରି ଗନ୍ଧୋଉଥିବା ସଢ଼ା ପିଡ଼ିଆ, ଗୋବର, ନଳା ପଙ୍କ, ପୋଖରୀ ପଙ୍କ, ଶୁଖୁଆ ଗୁଣ୍ଡ, ହାଡ଼ ଗୁଣ୍ଡ, ଏଇସବୁ ।'' ସେ ଭାରି ଗୋଲାପ- ପ୍ରିୟ । ବାରିଯାକ ଜାତି ଜାତି ରଙ୍ଗ ରଙ୍ଗର ବଡ଼ ବଡ଼ ଗୋଲାପ ଫୁଲ ଫୁଟେ, ସେ ଗୋଟାଏ ଦୃଶ୍ୟ । ସେହି ପ୍ରକାଣ୍ଡ ଆକାର ଦେହର ଗୋଟାଏ ପ୍ରକାଣ୍ଡ ମୁଣ୍ଡ, ଗୋଟାଏ ପହିଲ୍‌ମାନ୍ ବେକ ପରି ଦମ୍ଭ ସଳଖ ବେକ ଉପରେ ସେ ଖଞ୍ଜା ହୋଇଥାଏ । ନାକଟି ଟିକିଏ ଶୁଆଥଣ୍ଟିଆ ହେବାକୁ ମନ କରିଥିଲା, କିନ୍ତୁ ଶରୀର ଅନୁପାତରେ ଛୋଟ ଦିଶେ । ଛୋଟ ଛୋଟ ଆଖି ଯୋଡ଼ିଏ, ଛଡ଼ା ଛଡ଼ା, ହାତୀ ମୁହଁରେ ଆଖିପରି । ସିଧା ଅନେଇଁଦେଲେ ସେ ଦୃଷ୍ଟି ଗଳିଯାଏ, ତା ଆଗରେ କିଛି ଲୁଚାଇ ରଖି ହୁଏନାହିଁ । ମାଉଁସିଆ ଥୋଡ଼ି, ମାଉଁସିଆ ମୁହଁ । ସବୁବେଳେ ତଣ୍ଟା ହୋଇ ସଫା ଥାଏ । ଆକାରରେ ଏଡ଼େ ହେଲେ ବି ମୁହଁଟି ଗୋଟିଏ ସରଳିଆ ପିଲା ମୁହଁ ପରି, ଅତିକାୟ ହୋଇଥିବାରୁ କି କ'ଣ, ସେ ମୁହଁ କଉତୁକିଆ ଦିଶେ । ସବୁବେଳେ ଯେମିତି କ'ଣ କୌତୁକ ଅନୁଭବ କରୁ କରୁ ମୁହଁର ଭଙ୍ଗୀ ସେହିପରି ହୋଇଛି । ସବୁବେଳେ ସରସ, ବେପରୁଆ, ନିଶ୍ଚିନ୍ତ, ନିଧଡ଼କ । ସେ ମୁହଁ ମନରେ ଦମ୍ଭ ଦିଏ । ଠିଆ କପାଳ ଉପରେ ଗୋଲ ମୁଣ୍ଡ, ଛୋଟ ଛୋଟ କରି ବାଳ କାଟିଥାନ୍ତି, ଆଗଆଡୁ ପଛକୁ ସିଧା କୁଣ୍ଡାନ୍ତି, ଫିରେଇ ନାହିଁ । ବେକରେ

ସରୁ କାଠ-ମାଳିଟିଏ, ମୁଣ୍ଡରେ ବୋଧହୁଏ ସାନ ଚୁଟିଟିଏ । ସେ କହନ୍ତି, ଏତକ ମୋ ଓଡ଼ିଆତ୍ୱ ।

ଘରେ ଅନେକ ସମୟରେ ଖାଲି ଦେହରେ ଥାଆନ୍ତି, ଖାଲି ଲୁଗା ଖଣ୍ଡିଏ । କେତେବେଳେ ଅଣ୍ଟାରେ ଗାମୁଛା ଗୁରା ହୋଇଥାଏ । ପଦାକୁ ଗଲେ ଖୁବ୍ ଦାମୀ ପୋଷାକ, କିନ୍ତୁ ପୁରୁଣାକାଳିଆ କାଟ, ରଙ୍ଗଢଙ୍ଗିଆ ନୁହେଁ, ଯଦିଚ କାଟ ନିଖୁଣ । ପ୍ୟାଣ୍ଟ, କୋଟ୍ ଯେ ତା ବେକଯାକେ ବୋତାମ । ଢିକିଢିକି ଫିତା-ବନ୍ଧା ଜୋତା, ମୋଜା, କୋଟ୍ ତଳେ ବୋତାମ-ହାତ କାମିଜ୍ । ଛାତି ପକେଟ୍‌ରେ ଘଣ୍ଟା, ଚେନ୍ ବନ୍ଧା ।

ହତା ଭିତରେ ଦେଖିଲେ ମାଟି ହାଣୁଥାନ୍ତି, ଫୁଲଗଛ ମୂଳ କୋଡୁଥାନ୍ତି, ହାତୀ ପରି ଗାଈ କେତୋଟି, ତାଙ୍କ ସେବା କରୁଥାନ୍ତି, ବଡ଼ ବାଲ୍ଟିରେ ଦୁଧ ଦି ବାଲ୍ଟି ଦୁହାଁ ହୁଏ, ସେଥିରୁ ପ୍ରଚୁର ଦହି, ଛେନା, ଘିଅ । ନ ହେଲେ ଆରାମ ଚୌକିରେ ବସି ପିଲାଙ୍କୁ ପଢ଼ାଉଥାନ୍ତି । ନ ହେଲେ ନିଜେ ପଢୁଥାନ୍ତି ।

ସବୁବେଳେ ପାନ ଚୋବୋଉଥାନ୍ତି, ବିଡ଼ି ସିଗାରେଟ୍ ଛୁଅନ୍ତି ନାହିଁ, ଚାହା ଖାଆନ୍ତି ନାହିଁ ।

ଦୂରରୁ ମୁହଁଟି ଦିଶେ ଶାନ୍ତ, ଗମ୍ଭୀର । ପାଖରୁ ଦିଶେ ମାଦଳା, ଭାବଶୂନ୍ୟ, ଯେମିତି ସିଳଟ୍ ବର୍ଣ୍ଣର ଶାନ୍ତ ସମୁଦ୍ର । ହଠାତ୍ ସେଠି ଆଲୁଅ ଖେଳେ, ସ୍ୱପ୍ନ ଜିକିଜିକି ଭାବ, ଆଖିରେ ଅପାର ସହାନୁଭୂତି ।

ପାଟ୍‌ନାକୁ ଯେକୌଣସି ଓଡ଼ିଆ ଆସିଲେ ସେ ତାଙ୍କର ଅତିଥି ହୋଇ ପାରୁଥିଲେ । 'ଏକ୍କା' କି ଦୁଇ ଘୋଡ଼ାର ଗାଡ଼ି ଫାଟକ ପାଖେ ଅଟକେ । ବିଛଣା ବିଛିଣି ଧରି କୁଣିଆ ପହଞ୍ଚନ୍ତି, ରହିଯାନ୍ତି କେତେଦିନ, ତାଙ୍କୁ ଉପଯୁକ୍ତ କୁଣିଆ-ଚର୍ଚ୍ଚା କରାଯାଏ, ବିପୁଳ ପରିମାଣର ଦାମୀ ଦାମୀ ଖାଦ୍ୟ । ଦରକାର ପଡ଼ିଲେ ଅନ୍ୟ ସାହାଯ୍ୟ ବି ଦିଆହୁଏ । ତା'ପରେ ସେ ଯାଆନ୍ତି । ଯେତେବେଳେ ଦେଖିଲେ ଘରେ ବହୁତ ମଣିଷ, ବହୁତ ପିଲା । ଯେ ଆଇଲା ସେ ଖାଇକରି ଯିବ ।

ଭିତର ପିଣ୍ଡାରେ ବଡ଼ ବଡ଼ ପନିକି ପଡ଼ିଥାଏ । ପରିବା ଗଦା ହୋଇଥାଏ, ଯେମିତି ଗୋଟିଏ ସାନ ଭୋଜି ଲାଗି ପରିବା । ଗୋଟିଏ ପନିକିର କାଠ ଉପରେ ବସି ପରିବା କାଟୁଥାନ୍ତି ତାଙ୍କ ସ୍ତ୍ରୀ । ଓସାର, ହୃଷ୍ଟପୁଷ୍ଟ ମାତୃମୂର୍ତ୍ତି । ବର୍ଣ୍ଣରେ ସଫା, ଫରଚା କପାଳରେ ଗୋଲ ହୋଇ ସିନ୍ଦୂର ଅରାଏ, ଅଙ୍ଗ

କୁଣ୍ଢକୁଣ୍ଢିଆ ଢେଉ ପରି ବହଳ କଳା ବାଳ, ଆଖି ଦୋ'ଟି ସ୍ନେହରେ ଢଳଢଳ । କାମ କରୁଥିଲେ ବି ସବୁବେଳେ ନିଘା ପିଲାମାନଙ୍କ ଆଡ଼କୁ, କିଏ କିଏ କଳି ଲାଗିଲେଣି, କିଏ କେଉଁଠି ଅଝଟ ହେଲାଣି, କାହାର ପଢ଼ା ସରିଲା ଏଥର ସେ ଖାଇବାକୁ ମାଗିବ । ସମସ୍ତିଙ୍କ ଦାଉ ତ ତାଙ୍କରି ଉପରେ । ପୁଣି ଘର ଗୋଟାକର ଚଳାଚଳର ଭାର ।

ଖାଇବା ପିଇବା ଖାଲି ଯେକୌଣସି ପ୍ରକାରର ନୁହେଁ । ମାଛ, ନିରାମିଷ, ଏସବୁ ତ ନାନା ପ୍ରକାରର ହେବ, ଜଳଖିଆ ହେବ ନାନା ପ୍ରକାରର । ବଜାରକିଣା ରୁଚିବ ନାହିଁ । ଲଡୁ, ଜଲ୍‌ବି, ପାନତୁଆ, ଲବଙ୍ଗଲତା, ମଗଜଲଡୁ, ବଡ଼ ବଡ଼ ଫେଣି, ଖାଜି, ମାଲପୁଆ, ରସାବଳି, ସରପୁଳି, କାକେରା, ଆରିସା, ବରା, ଦହିବରା, ଛୁଞ୍ଚିପତର, ଚକୁଳି, ଚିତୋଉ, ଅମାଲୁ, ପୋଡ଼ପିଠା, ଗଇଁଠା, ମଣ୍ଡା, ଏଣ୍ଡୁରି, ମୁଆଁପିଠା, – ଏଥିରୁ ଦୁଇପ୍ରକାର ବା ବେଶି । ତରକାରିରେ ମହୁର, ଶାକର, ରାଇ, ପତ୍ରପୋଡ଼ା, ଭଣ୍ଡା ତରକାରି, ଭଜା, ସନ୍ତୁଳା, ଶାଗ, ବିଭିନ୍ନ ପ୍ରକାରର । ଜାତି ଜାତି ବଡ଼ି ଥାଏ । ଶୁଖୁଆ ଓ ଶୁଖୁଆ-ମଞ୍ଜି ବି ପ୍ରଚୁର ଥାଏ । ଆମ୍ବ ଦିନେ ଦୁଆରଯାକ ଆମ୍ବୁଲ ଶୁଖୁଥାଏ, ଆମ୍ବସଢ଼ା ଶୁଖୁଥାଏ, ବହୁତ ତିଆରି ହୋଇ ରହେ । ଶୀତଦିନେ କାଞ୍ଜିପାଣି ହାଣ୍ଡି ବସିଥାଏ । ସବୁ ଓଡ଼ିଆ ଓଷାବାର ହୁଏ, ସବୁ ପିଲାଙ୍କ ଜନ୍ମଦିନ ହୁଏ, ହୁଳହୁଳି ପଡ଼େ ।

ଯେ ଆଇଲା 'ଖାଇ ଯା', ନିଶ୍ଚୟ ଏଭଳି କିଛି ଥିବ, ଯାହା ସାଧାରଣତଃ ଅନ୍ୟଠିଁ ମିଳେନାହିଁ, ଆଉ, ମିଳିବ ପେଟପୂରା ।

ଘରର ଚାକର ବାକରଙ୍କ ପାଇଁ ମଧ ପ୍ରଚୁର ଥିବ, ଯେଉଁ ମେହେନ୍ତର ମେହେନ୍ତାଣୀ ଅସନା ସଫା କରନ୍ତି, ଯେଉଁ ଗଉଡ଼ ଗୁହାଳ ସଫା କରେ, ଗାଈ ଦୁହେଁ, ତା ପାଇଁ ବି ପ୍ରଚୁର, ଯେଉଁ ଦୁଃଖୀ ରଙ୍କୀ ଭିକ ମାଗି ଆସନ୍ତି, ସେମାନେ ବି ଅନେକ ସମୟରେ ଖାଇବାକୁ ପାଆନ୍ତି ।

ଶ୍ରୀମନ୍ତ ହତାଟିଏ, ଖାଲି ଗୋଲାପ ଫୁଲ ନୁହେଁ, ସାମ୍ନାରେ ଫୁଲବଗିଚା, କରରେ ଓ ପଛପଟେ ପରିବା ବଗିଚା, କଦଳୀବାରି । ସବୁ ସୁଶ୍ରୀ, ସବୁଠିଁ ମଣିଷର ହାତ ଲାଗେ, ଯତ୍ନ କରାହୁଏ । ପ୍ରଚୁର ପରିବା ଫଳେ, କଦଳୀଗଛମାନଙ୍କରେ ଠେକ ଦିଆହୁଏ, ବଡ଼ ବଡ଼ କାନ୍ଦି ଓହଳେ, ଅମୃତଭଣ୍ଡା ଗଛରେ ଫଳ ଲଦି ହୋଇଥାଏ । କଲମି ଆମ୍ବଗଛମାନଙ୍କରେ ଜାତି ଜାତି ଆମ୍ବ ଫଳେ ।

ପଢ଼ାବେଳେ ସମସ୍ତେ ଚୁପ୍ ।

ଅନ୍ୟ ସମୟରେ, ବିଶେଷତଃ ଗୃହସ୍ୱାମୀ ନ ଥିଲାବେଳେ, ଲାଗିଥାଏ ପିଲାମାନଙ୍କର ହାଉଯାଉ । ସୁବେଶ, ସ୍ୱାସ୍ଥ୍ୟବନ୍ତ ପରିଚ୍ଛନ୍ନ, ସବୁବେଳେ ପ୍ରଫୁଲ୍ଲ ପିଲାଗୁଡ଼ିଏ । ବହୁତ ଯତ୍ନ ବହୁତ ନିଘା ପାଇ ପାଇ ବଢୁଛନ୍ତି । ସେମାନଙ୍କର ଲୁଗାପଟା ଖୁବ୍ ଭଲ ଓ ଦାମିକା, ଅଭାବ କ'ଣ ସେମାନେ ଜାଣନ୍ତି ନାହିଁ । କାହାରି ମନରେ କିଛି ଓରମାଣ ନାହିଁ । ମୁରବି ଘରକୁ ଲେଉଟିଲେ, ବେଢ଼ିଗଲେ ପିଲାଏ, ନାନା ଅଳି, ନାନା ଫେରାଦ୍ ଅଛି ।

ଘର ହସିଉଠିଲା ।

ପିଲାଏ ଦୁଷ୍ଟାମି କଲେ କି ଘରେ କିଛି ଅବ୍ୟବସ୍ଥା ହେଲେ ଦଣ୍ଡ ଦିଆ ହୁଏ । ସେ ଦଣ୍ଡ-ନିଜେ ଜଗତ୍‌ବାବୁ ମୁହଁ ଶୁଖେଇବା । ସେତିକି ହେଲେ ଚହଳ ପଡ଼ିଯାଏ, ସମସ୍ତେ ଅନୁତପ୍ତ ହୁଅନ୍ତି । ମୁଁ ଜାଣି ନ ଥିଲି ଯେ, ଗୋଟାଏ ଦୃଷ୍ଟିରେ ଦେଖିଲେ ତାଙ୍କ ଘର ଭର୍ତ୍ତି, ଏତେ ମଣିଷ, ଏତେ ପିଲା, ସବୁ ତ ତାଙ୍କରି —ଅଥଚ ଆଉ ଗୋଟାଏ ଦୃଷ୍ଟିରୁ ଦେଖିଲେ ସେ ଘରେ ପୁରୁଷଟିଏ, ତା'ର ସ୍ତ୍ରୀଟି, ସେମାନଙ୍କର ସନ୍ତାନ ନାହିଁ । ପାଟ୍‌ନାରେ ମୁଁ ଥାଏଁ, ତାଙ୍କ ସ୍ତ୍ରୀଙ୍କର ଗୋଟିଏ ମଲା ପୁଅଟିଏ ଜନ୍ମ ହେଲା ନା ଜନ୍ମ ହେବାର ଅଳ୍ପସମୟ ପରେ ମରିଗଲା । ହୃଷ୍ଟପୁଷ୍ଟ ପିଲାଟିଏ ସେ କୁଆଡ଼େ, ଭାରି ସୁନ୍ଦର —ମୋ ବୋଉ କହୁଥିଲା ।

ସେହି ପ୍ରାତଃସ୍ମରଣୀୟ ପରୋପକାରୀ ମହାମନୁଷ୍ୟଙ୍କ ନାଁ ଥିଲା ଶ୍ରୀ ଜଗତ୍ ବଲ୍ଲଭ ଦାସ, ବି.ଏ., ଡାକ ନାଁ ଜଗତ୍‌ବାବୁ ଥିଲା । ସେ ବି ଆଉ ନାହାନ୍ତି । ବୋଧହୁଏ ୧୯୬୨ରେ ପୁରୀରେ ତାଙ୍କ ଘରେ ମଲେ ।

କାହ୍ନୁଭାଇ ମତେ କହିଥିଲେ, ''ଚାଲ୍ ତତେ ଜଗତ୍‌ବାବୁଙ୍କ ପାଖକୁ ନେଇଯିବି । ଦେଖିବୁ ନାଇଁ, ଭାରି ଭଲ ଲୋକ, ଖୁବ୍ ଭଲ ଛାତ୍ର ଥିଲେ, ଯାହା ପଢ଼ିଥିଲେ ସବୁ ମନେ ରଖିଛନ୍ତି, ତୁଣ୍ଡେ ତୁଣ୍ଡେ ସେକ୍‌ସପିୟର୍ ମିଲ୍‌ଟନ୍ ବି ଗାଇଦେଇଯିବେ ଏଡ଼େ ପ୍ରଖର ସ୍ମରଣଶକ୍ତି ! ପିଲାଙ୍କୁ ପାଠ ପଢ଼େଇବାକୁ ତାଙ୍କର ଭାରି ମନ । ଦେଖିବୁ, କେମିତି ଟାଣୁଆ ମଣିଷ, ନୀତି ଉପରୁ ଏଡ଼େ ଟିକିଏ ଏପଟସେପଟ ନାହିଁ, ଦୁନିଆ ଚଳିଯାଉ ପଛେ । ମଣିଷ ହବ ତ ସେମିତି ହବ । ଯିବା ଚାଲ୍ ।''

ମୁଁ ପଛେଇ ପଛେଇ ହେଉଥାଏଁ । ସହଜରେ ତ ନୂଆ ଲୋକ ଦେଖିଲେ କେମିତି ମାଡ଼ିପଡ଼େ, ତହିଁରେ ପୁଣି, ମୁଁ ଇସ୍କୁଲିଆ ପିଲା, ମୁଁ ସୋନ୍‌ପୁର ଗଡ଼ଜାତରୁ ଆସିଛି ।

ଏଠି ଏତେ ଚିହ୍ନାଜଣା ନାହିଁ ।

ଆମରି ଘର ସଡ଼କ ସେମୁଣ୍ଡରେ ତାଙ୍କ ବସା, ମଝିରେ ଆଉ ପାଞ୍ଚଜଣଙ୍କ ବସା । ସେହି ରୋଡ୍ ନଂ ୧୦, ତାଙ୍କର ଯେ କ୍ୱାର୍ଟର୍ ନଂ ୧୨, ତା ସେପାଖେ ସଡ଼କ, ତା ସେପାଖେ ପାଟ୍‌ନା ହାଇସ୍କୁଲ୍ ହତା ।

''ଏଇ ଘର, ଆ–'' ।

ଆମ ବଡ଼ ଭାଉଜବୋଉ ଗୋଟିଏ ସମ୍ପର୍କରେ ଜଗତ୍‌ବାବୁଙ୍କ ସ୍ତ୍ରୀଙ୍କର ପିଇସୀ ହୁଅନ୍ତି, ତେଣୁ ଗିରିଧାରୀ ଭାଇ ଜଗତ୍‌ବାବୁଙ୍କ ସ୍ତ୍ରୀଙ୍କର 'ପିଇସା', ଭାଇ ତାଙ୍କ ନାଁ ଧରି ଡାକନ୍ତି 'ବସନ୍ତ', ତାଙ୍କୁ 'ତୁ' ବୋଲି କହନ୍ତି । ଅତଏବ ମତେ ୧୩ ବର୍ଷ ଓ ଶ୍ରୀମତୀ ବସନ୍ତକୁମାରୀ ଦେବୀଙ୍କୁ ବୋଧହୁଏ ୩୦ ବର୍ଷ ଓ ଜଗତ୍‌ବାବୁଙ୍କୁ ବୋଧହୁଏ ୩୬ ବର୍ଷ, ଆଉ ବୟସର ଏଇ ବ୍ୟବଧାନ ସତ୍ତ୍ୱେ ମୁଁ ଡାକେଁ ''ବସନ୍ତ– ତୁ–'' ସେ ମତେ ଡାକେ 'ପିଇସା' ଓ ମାନ୍ୟ କରେ, ଜଗତ୍‌ବାବୁ– ସେ ମୋର ଗୁରୁ, ସେ ମତେ ଡାକନ୍ତି 'ପିଇସା', କିନ୍ତୁ ତାଙ୍କୁ ବ୍ୟବହାର କରନ୍ତି ଗୋଟିଏ ନାଁ ପରି ।

''ଆହା–ଯୋଉ ଉତ୍ତର ଲେଖିଚ ପିଇସା, ମଲ ନାହିଁ ଯାହା ।''

ଆଉ ମୁଁ ତାଙ୍କୁ ଡାକେଁ ''ଆଜ୍ଞା'', ତାଙ୍କ ଆଗରେ ଥରିଛି । ସ୍ନେହରେ ଡାକନ୍ତି– ''ଟିକି ପିଇସା'' ।

''ହେଇଟି ପରା, ଏଇ ଜଗତ୍‌ବାବୁ ।''

ଆଗରୁ କାହ୍ନୁଭାଇ ମତେ ତାଙ୍କ ବିଷୟରେ ଯେଉଁ ଧାରଣା ଦେଇଥିଲେ, ମୋ ଛାତି ଧଡ଼ଧଡ଼ ହେଲା ।

ସାଧା ପଟା ଖଟଟାଏ ପଡ଼ିଛି । ତା ଉପରେ ଖଣ୍ଡେ ସପ । ସପ ଉପରେ ଖଟ ଫାନ୍ଦ ଉପରେ ଗୋଡ଼ ଲମ୍ୱେଇ ଦେଇ ବସିଛନ୍ତି ଜଣେ ମଣିଷ-ପର୍ବତ । ପାଖରେ କ'ଣ ବହି ଥୁଆହୋଇଛି । ଖଟ ସେକରେ ଠିଆ ଆଲମାରୀର ଥାକଯାକ ଖୁନ୍ଦାଖୁନ୍ଦି ଇଂରେଜି ବହିଗୁଡ଼ିକ । ଦିପହର ବେଳ । ବାଁ ହାତପାଖେ ଗୋଟାଏ ବିଞ୍ଚଣା । ବଡ଼ ମାଦଳା ମୁହଁଟାଏ ମୋ ମୁହଁକୁ ଚାହିଁଲା ।

''ବସ ପିଇସା (କାହ୍ନୁଭାଇଙ୍କୁ),

ବସ (ମତେ) ।''

ଯେମିତି ମତେ କିଏ କାନ୍ଧରୁ ଧରି ଦାବି ବସେଇ ଦେଉଛି, ମୁଁ ଡରି ଡରି ଚୌକିରେ ବସିପଡ଼ିଲି । ତା'ପରେ ଅନୁଭବ କଲି, ମୋର ଡର ଛାଡ଼ିଗଲାଣି, ମୁଁ ତାଙ୍କ ମୁହଁକୁ ଅନେଇଁ ରହିଛି । ସେ ମୁହଁରେ କୌଣସି ଭାବ ନାହିଁ,

ଉତ୍ସାହ ନାହିଁ କି ବିରକ୍ତି ନାହିଁ । ସତେ ଯେମିତି ମୁଁ କ୍ଲାସ୍‌ରେ ସାମ୍ନା ବ୍ଲାକ୍‌ବୋର୍ଡ଼କୁ ଅନାଇଁ ରହିଛି, ମୋ ଆଖିରେ କୁତୂହଳ, ଦେଖିବି ସେଠି କ'ଣ ଲେଖାହେବ ।

ସେ ଆଖି ଯୋଡ଼ିକ ବି ସ୍ଥିରହୋଇ ମୋ ମୁହଁକୁ ଅନାଇଁଥାଏ, ହଠାତ୍ ବ୍ଲାକ୍‌ବୋର୍ଡ଼ରେ ଲେଖା ଫୁଟିଉଠିଲା, ସେ ମାଦଳା ମୁହଁରେ କ'ଣ ସୂକ୍ଷ୍ମ ପରିବର୍ତ୍ତନ ଘଟିଗଲା, ଆଖିରେ ବେଦନାର କ୍ଷୀଣ ଝଲକ,

''ହଉ, ତା'ହେଲେ, ବାପା ଚାଲିଗଲେ– !''

ସେ ତୁନିହୋଇ ଅନାଇ ରହିଲେ । ମୁଁ ବି ଅନାଇଁ ରହିଲି । କିନ୍ତୁ ମୋ ଦୃଷ୍ଟି ପଡ଼ିଥାଏ ନିଜ ଭିତରକୁ । ସେଠି ଅନ୍ଧାର, ବିରାଟ ଶୂନ୍ୟତା, ଜୀବନ ବ୍ରହ୍ମ ଖାଲି ଛଅଟି ଅକ୍ଷର, ବାପା ଚାଲିଗଲେ ।

ପୁଣି ମୋ ଦୃଷ୍ଟି ତାଙ୍କଆଡ଼କୁ ଅନାଇଁଲା, ସେଠି ମେଘତଳର କରୁଣ ଛାଇ, କିନ୍ତୁ କ'ଣ ପୁଣି ସେ ଛାଇ ତଳୁ ଧୀରେ ଧୀରେ ମୁଣ୍ଡ ଟେକୁଛି, ନୀରବରେ ମତେ ଦମ୍ଭ ଦେଉଛି, ସାହସ ଦେଉଛି, ଯେମିତି ମୋ ଟଳଟଳ ହାତଗୋଡ଼ ଆଉ ଥରିବ ନାହିଁ । କ୍ରମେ କ୍ରମେ ଉଜ୍ଜଳ, କଠୋର ହୋଇଗଲା ସେ ଚାହାଣିର ନିର୍ଦ୍ଦେଶ, ସେ ଦୁର୍ବଳତାର ଶତ୍ରୁ ।

''ସେଉଠୁ ? କ'ଣ କରିବ ତୁମେ ? ଭାରି କାନ୍ଦିବ, ନୁହେଁ ? କାନ୍ଦିବଣି ବହୁତ ଯେ, ବଡ଼ପାଟିରେ କାନ୍ଦୁଥିବ, କବାଟ କିଳି କାନ୍ଦୁଥିବ । ସୁଁ ସୁଁ କରି କାନ୍ଦୁଥିବ । କହୁନା, ମତେ କହ, ହୋ ଟିକି ପିଇସା । ଆରେ କହ ହୋ । କାନ୍ଦୁନା ? ବାରିଆଡ଼େ ବୁଲି ବୁଲି କାନ୍ଦୁନା ? ପାଇଖାନାରେ ବସି କାନ୍ଦୁନା ?''

ମୁହଁକୁ ତଳକୁ ପୋତି ଦେଲି ।

ସେ କହିଲେ, ''ଆଉ ତୁମେ ଯେତେବେଳେ କାନ୍ଦୁଥିବ, ତୁମ ବୋଉ କ'ଣ କରୁଥିବେ ? ଟିକିଏ ଭାବିଚ ତାଙ୍କ କଥା ? ତାଙ୍କ ଦୁଃଖ ବଢ଼ୁଥିବ ନା କମୁଥିବ ? ଏମିତି କାନ୍ଦି କାନ୍ଦି ତୁମେ ନିଜକୁ ତ ଦୁର୍ବଳ କରୁଛ, ତୁମ ବୋଉଙ୍କର ଆୟୁଷ ନଷ୍ଟ କରୁଛ । ତୁମେ ଟିକିଏ କାନ୍ଦିଲେ ସେ ଅସମ୍ଭାଳ ହୋଇ କାନ୍ଦିବେ । କାନ୍ଦି କାନ୍ଦି ଖିଆ ଛାଡ଼ିଦେଲେଣି, ଆଉ ଉଠୁନାହାନ୍ତି । ଏମିତି କାନ୍ଦୁଥିଲେ ବାପାଙ୍କ ସାଙ୍ଗକୁ ସେ ବି ଯିବେ ।''

''ନାହିଁ ନାହିଁ ମୁଁ ଆଉ କାନ୍ଦିବି ନାହିଁ ।''

"ପ୍ରତିଜ୍ଞା କରୁଛ ? ପ୍ରତିଜ୍ଞା ରଖିବ ।"

"ହଁ ।"

"ହଉ ଦେଖିବା, ତା'ହେଲେ ବୁଝିବା ତୁମେ ଅସଲ ମଣିଷ, ଟାଣୁଆ ମଣିଷ । ଦୁଃଖ ହିଁ ମଣିଷକୁ ଗଢ଼େ । ତୁମେ ମଣିଷ ହୋଇ ଗଢ଼ିହୁଅ । ମନେ ରହିବ ?"

"ହଁ ।"

"ତୁମେ ତୁମ ବାପାଙ୍କର ଯୋଗ୍ୟପୁତ୍ର ହେବ । ସେ କେମିତିଆ ମଣିଷ ଥିଲେ ଜଗତଯାକ ଜାଣନ୍ତି । ସାଧୁ, ସଚ୍ଚୋଟ, ସଚ୍ଛ, ମରିବା ପର୍ଯ୍ୟନ୍ତ କର୍ତ୍ତବ୍ୟନିଷ୍ଠ, ବିବେକୀ, ସ୍ୱାଧୀନଚେତା, ସତ୍ୟରେ ଜୀବନକୁ ବାନ୍ଧିଥିଲେ, ସତ୍ୟରେ ବଞ୍ଚିଲେ, ସତ୍ୟରେ ମିଶିଗଲେ । ଖୁବ୍ ବଡ଼ ସାଧନା ସେ । ଯାହା କହୁଛି ସତ କି ନାହିଁ ?"

"ସତ ।"

"ସତ !" ସେ ଖଡେଇହେଲେ, "ଏମିତି ଦୁର୍ବଳ ନିର୍ଜୀବ ସ୍ୱରରେ କାହିଁକି କହୁଛ ? କ'ଣ ତୁମ ନିଜର ବିଶ୍ୱାସ ଆସୁନାହିଁ ?"

"ସେମିତି ମଣିଷ ଆଉ କାହିଁ ପାଇବି ?"

"ପାଇବ ନିଜ ଭିତରେ । ନିଜକୁ ତାଲିମ୍ କଲେ, ଗଢ଼ିଲେ, ତୁମ ଭିତରେ ସେ ଆଉଥରେ ବଞ୍ଚିଉଠିବେ । ତୁମେ ଯଦି ପାଠ ପଢ଼ିବ, ଚରିତ୍ର ଗଢ଼ିବ, ସଦ୍‌ଗୁଣ ବଢ଼େଇବ, ଖାଲି କଥାଗୁଡ଼ାଏ ଗପିବା ନୁହେଁ, ଆଦର୍ଶ ଅନୁସାରେ କାମ କରିବ, ପୁଣି ତୁମ ନିଜ ଭିତରେ ସେ ମହାତ୍ମାଙ୍କୁ ତୁମେ ପାଇବ । ହେବ ସେମିତି ? ମୋ ଆଖିକି ଅନାଇଁ କହ ।"

ନିର୍ଭୟରେ ତାଙ୍କ ଆଖିକି ଅନାଇଁ କହିଲି "ହେବି ।"

ସେ ସ୍ଥିରହୋଇ ମୋ ଆଖିକି ଅନାଇଁ ରହିଲେ, କହିଲେ, "ନିଶ୍ଚୟ ତୁମେ ହୋଇପାରିବ । ମୁଁ ଜାଣେ । ତୁମେ ନିଜକୁ ସାଧାରଣ ଭାବିବ ନାହିଁ । ତୁମେ ଆଦୌ ସାଧାରଣ ନୁହଁ । ତୁମ ଭିତରେ ଅଦ୍ଭୁତ ଶକ୍ତି ଅଛି, ଟିକିଏ ଗାଲେଇପଡ଼ି ଶୋଇଛି, ତାକୁ ଉଠେଇବାକୁ ପଡ଼ିବ । ଆଉ ଟିକିଏ ପରିଶ୍ରମ କର, ସେ ଉଠିପଡ଼ିବ ।"

ସେ କାହ୍ନୁଭାଇଙ୍କ ମୁହଁକୁ ଅନାଇଁଲେ । କାହ୍ନୁଭାଇ ଗଭୀର ସ୍ନେହରେ ଆନନ୍ଦରେ ମୋ ମୁହଁକୁ ଅନାଇଁ ରହିଥିଲେ । ଜଗତ୍‌ବାବୁଙ୍କ କଥା କେଇପଦ

ସତେଯେମିତି ଭବିଷ୍ୟତ୍‌ବାଣୀ, କାହ୍ନୁଭାଇଙ୍କ ମନରେ ବିଶେଷ ଆନନ୍ଦ ଏଇଥିପାଇଁ ଯେ ସେ ମତେ ପିଲାଦିନୁଁ ନିଜ ଧାରଣା ଅନୁସାରେ ପାଠ ପଢ଼େଇଛନ୍ତି ।

ତାଙ୍କର ଓ ଜଗତ୍‌ବାବୁଙ୍କର କ'ଣ କଥା ପଡ଼ିଲା । ଜଗତ୍‌ବାବୁ ଖଟ ଉପରେ ଥାଇ ପାଟି କଲେ, ''ଆରେ ଯେ ଟିକି ପିଇସାଙ୍କୁ କ'ଣ ଖାଇବାକୁ ଦିଅ ।'' ମତେ କହିଲେ ''ଯାଅ, ତମ ବସନ୍ତ ଅନେଇଁ ବଇଚନ୍ତି ।''

''ଆରେ ! ଟିକି ପିଇସା ! ଆସ ଆସ !'' ବସନ୍ତ ମତେ କୁଣ୍ଢେଇ ପକେଇଲା । ଲାଗିଲା ସେ ମୋର ଅତି ସ୍ନେହୀ ନିରୀହ ମଇନା ଅପା ପରି, କିନ୍ତୁ ଆହୁରି ମୋଟମାଟ । ଖେତ ଅପା ପରି ମାଆ-ମାଆ ଲାଗେ, ସମସ୍ତେ ତା ପୁଅ ଝିଅ ।

''ବସ ଏ ପିଢ଼ାରେ ଟିକି ପିଇସା ।''

ଗଲାବେଳେ ଜଗତ୍‌ବାବୁ କହିଲେ ''ଆସୁଥିବ ।''

ଠିକ୍ ତହିଁଆରଦିନ ପାଠପଢ଼ା ନିର୍ଦ୍ଦେଶ ଆରମ୍ଭ ହୋଇଗଲା । ''ଶୁଣ ଟିକି ପିଇସା, ମନେରଖ । ବଳଦିଆ ପରି ଗୁଡ଼ାଏ ଘୋଷିଲେ ପାଠ ହୁଏନାହିଁ । ବାଗରେ ପଢ଼ିବାକୁ ହୁଏ । ଆଗ ରୁଟିନ୍‌ଟିଏ କର, କେତେବେଳେ ନିଦରୁ ଉଠିବ, କେତେବେଳେ ରାତିରେ ଶୋଇବ, ତା ଭିତରେ କେତେବେଳେ କେଉଁ କାମ କରିବ । ସାମ୍ନାରେ ଘଣ୍ଟା ଥୁଆହେବ । ରୁଟିନ୍ ଅନୁସାରେ ତୁମେ କାମ କରିବ । ଖେଳ, ଗପ, ସବୁ ମପାଚୁପା । ତୁମେ ବି କଳ ହୋଇଯିବ, ପାଠପଢ଼ାକୁ ସେହି ବାଗ ଭଲ । ଆଗ ନିଜ ରୁଚିକୁ ନିଜେ ବୁଝ, କେତେବେଳେ ତମକୁ କେଉଁ ପାଠ ପଢ଼ିବାକୁ କି ଲେଖିବାକୁ ଭଲ ଲାଗେ । ସଂସ୍କୃତ ଘୋଷିବାକୁ କେତେବେଳେ ଭଲ ଲାଗେ, ଅଙ୍କ କଷିବାକୁ କେତେବେଳେ ଭଲ ଲାଗେ । ସେହି ଅନୁସାରେ ରୁଟିନ୍ କର ।

ତା'ପରେ ଶୁଣ, ପ୍ରତି ସବ୍‌ଜେକ୍ଟ ପାଇଁ ଯୋଡ଼ିଏ ଲେଖାଁ ଖାତା କର, ଗୋଟିଏ ଇସ୍କୁଲ୍‌ରେ ଯାହା କାମ ଦିଅନ୍ତି ତାକୁ ଲେଖିବା ପାଇଁ । ଆରଟି ଘରେ ଯେଉଁ କାମ କରିବ ସେଥିପାଇଁ । ପୁଣି ପ୍ରତି ସବ୍‌ଜେକ୍ଟର ଘରୋଇ ଖାତା ଖଣ୍ଡେ ପରିବର୍ତ୍ତେ ବିଭିନ୍ନ କାମ ପାଇଁ ଦଶଖଣ୍ଡ ବି ହୋଇପାରେ । ଯଥା ଇଂରେଜି ଗ୍ରାମାର୍ ପାଇଁ ଗୋଟିଏ, ଟ୍ରାନ୍‌ସଲେସନ୍ ପାଇଁ ଆଉ ଗୋଟିଏ, ପ୍ରବନ୍ଧ ପାଇଁ ଆଉ ଗୋଟିଏ, କବିତା ବହି ପାଇଁ ଗୋଟିଏ, ଗଦ୍ୟ ବହି ପାଇଁ ଗୋଟିଏ, ପୁଣି ହସ୍ତାକ୍ଷର ପାଇଁ ଗୋଟିଏ । ସବୁ ଖାତା ଯତ୍ନ ସହକାରେ ରଖୁଥିବ, ହଜେଇବ ନାହିଁ । ତୁମେ ଲେଖି ଆଣୁଥିବ, ମୁଁ ଯେମିତି ଅଫିସ୍‌ରୁ

ଫେରିଲେ ତାକୁ ପାଏଁ । ମୁଁ ସଂଶୋଧନ କରିଦେବି । କାହିଁକି କେଉଁଟା ସଂଶୋଧନ ହେଲା ତୁମେ ମୋଠୁଁ ଆସି ବୁଝି ଖାତା ଲେଉଟାଇନେବ । ମୁଁ ନମ୍ବର ବି ଦେବି । ମଝିରେ ମଝିରେ ଆମର ପରୀକ୍ଷା ବି ହେବ । ତୁମେ ପ୍ରଶ୍ନ କାଗଜଟିଏ ଧରି ଠିକ୍ ତିନିଘଣ୍ଟା ସମୟ ଭିତରେ ତା ଉତ୍ତର ଲେଖିବ, ମତେ ଆଣି ଦେଇଯିବ, ମୁଁ ସେଥିରେ ନମ୍ବର ଦେଉଥିବି । ଯାହା ବାଜେ ବହି ପଢୁଚ, ସେଥିପାଇଁ ବି ଖାତା କର, ବହିର ସାରାଂଶ ତହିଁରେ ଲେଖ । ଯେତେ ଲେଖିବ ସେତେ ଭଲ । ତୁମ ପରୀକ୍ଷା ନିଆଯିବ ଲେଖାରେ, ତୁଣ୍ଡ ଆବୃତ୍ତିରେ ନୁହେଁ ।

ଆଗକୁ ମାଡ଼ି ପଢ଼ିଯା, ବୁଝି ବୁଝି ମନେ ରଖି ରଖି ଆଗକୁ ମାଡ଼ । ଇସ୍କୁଲରେ ନସରୁଣୁ ଘରେ ତୁମେ ବହି ସାରିଦିଅ । ସେଉଠୁ ଅଧିକା ତଥ୍ୟ ଅଧିକା ଜ୍ଞାନ ସଂଗ୍ରହ କର । ସେହି ଏକା ବହି ତ ଶହ ଶହ ହଜାର ହଜାର ପିଲା ପଢ଼ି ପରୀକ୍ଷା ଦେବେ, ତୁମେ ବି ସେମିତି ଲେଖିଲେ ଅନ୍ୟମାନଙ୍କୁ ଟପିବ କେଉଁଥିରେ ?

ପରୀକ୍ଷା ଆଗରୁ ବହିପଢ଼ା ଓ ରିଭିଜନ୍ ସବୁ ସରିଥିବ । ପରୀକ୍ଷା ସାତଦିନ ଆଗରୁ ପରିଶ୍ରମ ବି କମେଇଦେବ, ମନ ଭିତରୁ ଉଦ୍‌ବେଗ ଉତ୍ତେଜନା ବି କମେଇଦେବ, ମନ ଖୁସିରେ ସୁସ୍ଥ ହୋଇ ସଅଳ ଶୋଇ ଉଠି ନିଶ୍ଚିନ୍ତ ହୋଇଯାଇ ପରୀକ୍ଷା ଦେବ ।

ଯାହା ନ ବୁଝିପାରିବ ପଚାରିବ, ନିଜ ଅଜ୍ଞତା, ଅପାରଗତା, ଭୁଲ୍ ଯାକୁ ଯେତେ ଲୁଚେଇବ ସେତିକି ତୁମର କ୍ଷତି ହେବ ।

ବାଜେ ଗପରେ ସମୟ ନଷ୍ଟ କରନା, ପରକୁ ଉପଦେଶ ଦେବାରେ ବି ସମୟ ନଷ୍ଟ କରନା, ଯେ ଯାହା ପଚାରିଲେ ତାକୁ କହ । ଯେ ତୁମଠୁଁ ବେଶି ଜାଣେ ତା ସଙ୍ଗରେ ଯୁକ୍ତି କର, ଆଲୋଚନା କର ।

ଯାହା କହୁଚି ତାକୁ ସବୁ ଟିପିରଖ, ସେହିପରି କାମ କର ।

ଯାହା ଯେତେବେଳେ ଅସୁବିଧା ହେବ ମତେ କହିବ, ମତେ ଯାହା କହିବାକୁ ମନ ନ ହେବ ବସନ୍ତକୁ କହିବ, ସେ ତ ତୁମର, ମୁଁ ସିନା ପର ।''

ମୁଁ ଯାଏଁ, ସେ ପଢ଼ାନ୍ତି ।

ଆଦୌ ଜାଣି ହୁଏନାହିଁ, କିନ୍ତୁ ସେ ନିଘା ରଖିଥାନ୍ତି ।

ମୁଁ ବଡ଼ ବିସ୍ମିତ ହେଲି, ଯେତେବେଳେ ପଛେ ମୁଁ ଜାଣିଲି ଯେ, ପାଟ୍‌ନାରେ ରାତିରେ ଯେଉଁ ପ୍ରଚଣ୍ଡ ଶୀତ ହୁଏ, ସେ ଶୀତକୁ ଖାତିରି

ନ କରି କେତେଥର ସେ ରାତି ଶେଷଆଡ଼କୁ ମୋ ପଢ଼ା ଘର ଝରକା ପାଖେ ତନଖି କରି ଯାଇଛନ୍ତି ଯେ ମୁଁ ପରୀକ୍ଷା ପାଇଁ ପଢୁଛି କି ଶୋଇରହିଛି ।

ତାଙ୍କର ଯେମିତି ଦୃଢ଼ବିଶ୍ୱାସ ଜନ୍ମିଲା ଯେ, ମୁଁ ମନ ଦେଇ ପରିଶ୍ରମ କରି ପାଠ ପଢୁଛି, ସେ ମନେ ମନେ ଖୁସିହେଲେ । କାଳେ ମୋର ମନ ମୋଟା ହୋଇଯିବ ବୋଲି ଭାବି ସେ ମତେ ଅଳ୍ପ ଅଳ୍ପ ନମ୍ବର ଦିଅନ୍ତି, ଉତ୍ତର ଆହୁରି ଭଲ ଆହୁରି ଉନ୍ନତ ସ୍ତରର ହେଉ ବୋଲି ମତାନ୍ତି ଓ ଧୀରେ ଧୀରେ ନମ୍ବର ବଢ଼ାନ୍ତି ।

ଭୁଲ୍ ହେଲେ ଭାରି ଡର ମାଡ଼େ ।

"ପିଇସା, ଆଜି ତମ କାନ ମୋଡ଼ା ହେବ ଆସ, ଦେଖିଲ ଯେ କ'ଣ ଲେଖିଚ ।"

"ଗଲା ସାଇଲ ତ । ଯାହା ବୁଝେଇଥିଲି ସବୁ ପୋଡ଼ି ଖାଇଲ ହୋ ପିଇସା, ସଇଲା । ସଇଲା । ଏଇଥିରେ ଆଉ କ'ଣ କଂପିଟ୍ କରିବ ।"

ସେଦିନ ଆଖିରେ ଲୁହ ଜକାଏ, ପାଟିକି ଭାତ ରୁଚେ ନାହିଁ ।

କିନ୍ତୁ ତା'ପରେ ପୁଣି ମନ ମୋଟ ହେଇଯାଏ । ସେ ଡାକିହାକି କହନ୍ତି, "ଆରେ ଗୋପାଳ, ଆରେ ଫକୁ, ମୁଁ ସିନା କୁଆଡ଼ର ଗଧଟାଏ ହେଇଥିଲି । ତେମେ ସବୁ ତ ସ୍କଲର୍, ଆଜିକାଲିକା ନବ୍ୟ ସଭ୍ୟ, ହେଇ ନେଲ ପିଇସା ଲେଖିଚନ୍ତି ମାର୍କ ଦେଲ । ଦିଅ ଦିଅ ଟିକିଏ ଦେଖିବା । ଆଉ ଭୁଲ୍ ଯଦି ପାଉଚ କାଟ, ମୁଁ ତ ପାଇଲି ନାହିଁ ।"

ତା'ପରେ ସେମାନେ ବି ଦେଖିବେ ।

"ଦେଖ ପିଇସା, ଆମେ ଗୋଟିଏ ତିନିଜଣିଆ ବୋର୍ଡ଼ ହେଲୁଁ । ଆମ ବିଚାରରେ ଯେ ପେପର୍‌ଟିକୁ ଶହେରୁ ପଚସ୍ତରି ଦିଆଯାଇ ପାରେ । ତେବେ ଏତିକିରେ ମନମୋଟା ହୁଅନା, ସବୁଥର ସବୁ ପେପର୍ ଏଇ ଷ୍ଟାଣ୍ଡାର୍ଡ଼ କି ୟାଠୁ ଭଲ ହେବା ଦରକାର, ନ ହେଲେ ମନ୍ଦ ।"

ପାଠ ପଢ଼ିବାର ଅନେକ ବାଗ ବି ସ୍ୱେ ବତେଇ ଦେଉଥିଲେ ।"ଦେଖ, ଧର ଆଜି ଏ ପୃଷ୍ଠାକଯାକ ମୁଖସ୍ଥ କରିବା ଦରକାର । କେମିତି ଘୋଷିବ ? ସାଧାରଣ ପିଲାଏ ଘୋଷନ୍ତି : "ହୁମାୟୁନ୍ ହୁମାୟୁନ୍ ହୁମାୟୁନ୍ ହୁମାୟୁନ୍‌ଙ୍କ ପୁଅ ଆକବର୍ ଆକବର୍ ଆକବର୍ ହୁମାୟୁନ୍‌ଙ୍କ ପୁଅ ଆକବର୍ ଆକବର୍‌ଙ୍କ ପୁଅ ହୁମାୟୁନ୍" —ଏଇଆ ଫଳ ହୁଏ । ସେମିତି ନୁହେଁ । ତୁମେ ଆଗ

ତିନି ଚାରି ଧାଡ଼ି ମନେ ମନେ ତିନି ଚାରି ଥର ଭାବି ଭାବି ପଢ଼, ଆସ୍ତେ ଆସ୍ତେ, କାହାପରେ କ'ଣ ଅଛି ଟିକିଏ ଖିଆଲ ରହିଥାଉ । ଆଖିବୁଜ । ଯାହା ପଢ଼ିଲ ତାକୁ ମନରୁ ଭାବି କହ । ଆଖି ଖୋଲ ଦେଖ ଠିକ୍ ମିଶିଲା କି ନାହିଁ । ନ ମିଶିଲାଯାକେ ସେମିତି କର । ଯେମିତି ଦେଖିଲ ଯେ ଆଖିବୁଜି ମନେ ମନେ ତୁମେ ତାକୁ ଠିକ୍ କହିପାରୁଛ, ସଙ୍ଗେ ସଙ୍ଗେ ଖାତାରେ ଲେଖିପକା, ସେ ଲେଖାକୁ ଆଉଥରେ ପଢ଼ । ବେଶ୍ ସରିଗଲା, ତୁମ ସ୍ମରଣରେ ଅଠାରେ ଲାଖିଲା ପରି ଲାଖିଗଲା । ଯେ ଉପାୟ କଲେ ଅଳ୍ପ ସମୟ ଭିତରେ ତୁମେ କେତେ କେତେ ପୃଷ୍ଠା ବି ଘୋଷି ମନେ ରଖିପାରିବ ।''

ଚେଷ୍ଟା କରିଥିଲି, ଦେଖିଲି ଯେ ଉପଦେଶ ବଡ଼ ଫଳପ୍ରଦ । ଏମ୍.ଏ. ପଢ଼ାରେ ନାନା ବହିର ପୃଷ୍ଠାକୁ ପୃଷ୍ଠା ଏହି ଉପାୟରେ ମୁଁ ମନେ ରଖିପାରିଥିଲି, ଏବେବି ଦରକାର ପଡ଼ିଲେ ଏହି ଉପାୟ କରେଁ । ଅନ୍ୟ ଯାହାଙ୍କୁ ସବୁ କହିଛି ସେମାନେ ବି ଉପକାର ପାଇଛନ୍ତି ।

ମ୍ୟାଟ୍ରିକୁଲେସନ୍‌ର ସବୁ ପାଠ ତାଙ୍କର ମନେ ଥିଲା । ସେ ବି.ଏ. ପାଶ୍ କରିସାରିଲା ପରେ ସେକ୍ରେଟେରିଏଟ୍‌ରେ ନିଯୁକ୍ତି ପାଇବା ଆଗରୁ ଭଦ୍ରକ ହାଇସ୍କୁଲ୍‌ରେ ଶିକ୍ଷକ ହୋଇଥିଲେ । ଶୁଣିଛି ସେ ଜଣେ ବିଖ୍ୟାତ ଦକ୍ଷ ଶିକ୍ଷକ ବୋଲି ଖ୍ୟାତି ପାଇଥିଲେ । ବୋଧହୁଏ ପ୍ରଧାନ ଶିକ୍ଷକ ଥିଲେ । ଶୁଣିଛି ସେଠି ଗୋଟିଏ ପରିବାର ତାଙ୍କୁ 'ଧରମପୁଅ' କଲେ, ତାଙ୍କର ଧରମ ଭାଇ ହେଲେ ସେ ପରିବାରର ବଡ଼ପୁଅ ଗୋପାଳ ଦାସ, ବି.ଏଲ୍., ପଛେ କନିକାର ମ୍ୟାନେଜର ହେଲେ, ତାଙ୍କ ତଳ ବୈଷ୍ଣବ ଦାସ, ଯେ ପୁଲିସ୍ ଡି.ଆଇ.ଜି. ହେଲେ, ତାଙ୍କ ତଳ ଗୋଲକ ଦାସ, ବି.ଏଲ୍., ଓକିଲ । ସେ ଭାଇପଣ ସେମାନଙ୍କର ଥାଏ, ସେମାନେ ସପରିବାରେ ଆସନ୍ତି । ଗୋପାଳବାବୁ ତାଙ୍କ ପୁଅ ଟାଗୁଙ୍କୁ ପାଠ ପଢ଼େଇବା ସକାଶେ ମଣିଷ ହେବା ସକାଶେ ଜଗତ୍‌ବାବୁଙ୍କ ପାଖେ ଛାଡ଼ିଥାନ୍ତି । ତା ଡାକ ନାଁ ରାଧାମାଧବ ଦାସ, ସେ ପଛେ ଡାକ୍ତର ହେଲା । ସେମିତି ତାଙ୍କର ଆଉ ଯୋଡ଼ିଏ ଧରମ ଭାଇ ଇରମ୍‌ର ପାଢ଼ୀ ନୁହେଁ, ରାଧାକାନ୍ତ ପାଢ଼ୀ ଓ ମୁକ୍ତିକାନ୍ତ ପାଢ଼ୀ, ଭଦ୍ରକ ସବ୍‌ଡିଭିଜନ୍‌ର ବିଖ୍ୟାତ ଧନୀ ଜମିଦାର । ସେତେବେଳକୁ ସେ ଦୁଇ ଭାଇରେ ଗୋଟିଏ ବୋଲି ପୁଅ, ରାଧାକାନ୍ତ ପାଢ଼ୀଙ୍କ ବଡ଼ପୁଅ ରତିକାନ୍ତ, ଡାକ ନାଁ ବିପିନ୍ । ସେ ପରିବାରର ବହୁତ ଆଗ୍ରହ ବଳିଥାଏ କାଳେ ବିପିନ୍‌ଟି ଜଗତ୍‌ବାବୁଙ୍କ ପାଖରେ ରହି ପଢ଼ିଲେ ମୂଳରୁ ତା ଚରିତ୍ର ଗଢ଼ିହେବ, ସେ ବି ଅକ୍ଷର ପାଠ ପଢ଼ିବ ।

ପାଦ୍ରୀମାନେ ସପରିବାର ତାଙ୍କ ଘରକୁ ବେଳେ ବେଳେ ଆସନ୍ତି, ବିପିନ୍ ଦାଦି ସବୁବେଳେ ଥାଏ । ସେ ଜଗତ୍‌ବାବୁଙ୍କ ପାଖେ ରହି ପଢ଼ି ମ୍ୟାଟ୍ରିକ୍ ପାଶ୍ କରି ଆଇ.ଏ. ଦ୍ୱିତୀୟ ବର୍ଷରେ ପଢ଼ିଲା । ବିପିନ୍ ଘରୁ ବ୍ରାହ୍ମଣ ରୋଷେୟା ଟୋକାଟିଏ ଆସିଥାଏ, କୃପାସିନ୍ଧୁ ଅଗସ୍ତି, ନି:ପ୍ରା: ପଢୁଥିଲା ଚାଲି ଆସିଥାଏ । ଜଗତ୍‌ବାବୁ ଡାକନ୍ତି "କୁରୁପା, ହେ କୁରୁପା, ହସ୍ତାକ୍ଷର ଲେଖିଚୁ ?" କୁରୁପାକୁ ସେ ନିଜେ ପଢ଼ାନ୍ତି । ସେ ବି ଉଠି ଉଠି ସେକ୍ରେଟେରିଏଟ୍‌ରେ କିରାନିଟିଏ ହେଲା, ଗ୍ରେଡ୍ ଟୁ ଆସିଷ୍ଟାଣ୍ଟ୍ ହୋଇ ପେନ୍‌ସନ୍ ନେଇଛି, ଭୁବନେଶ୍ୱରରେ ତା'ର କୋଠାଟିଏ, ଜଗତ୍‌ବାବୁ ଗୋଟିଏ ଯୋଗୀ ପିଲା ପାଳିଥିଲେ, ଖୁବ୍ ସାନ ଛେଉଣ୍ଡଟିଏ, ତା ନାଁ ହରିନାଥ, ତାକୁ ନିଜେ ପଢ଼େଇଲେ, ମ୍ୟାଟ୍ରିକ୍ ପାଶ୍ କଲା, ବିହାରରେ କୋଅପରେଟିଭ୍ ଡିପାର୍ଟମେଣ୍ଟ୍‌ରେ ଚାକିରି କରେ । କଟକ ବଦଳି ହେଲାପରେ ସେ ଲାବଣ୍ୟ ବୋଲି ହାଡ଼ି ପିଲାଟିଏ ପାଳିଲେ । ତାକୁ ବି ନିଜେ ପାଠ ପଢ଼ାଉଥିଲେ, ଅଛୁଆଁ ପ୍ରଥା ତାଙ୍କ ଘରୁ ଉଠାଇ ଦେଇଥିଲେ । ବ୍ରାହ୍ମଣ କୃପାସିନ୍ଧୁ, ଯୋଗୀ ହରିନାଥ ଓ ମେହେନ୍ତର ପିଲା ଲାବଣ୍ୟ ଏମାନଙ୍କୁ ଏକାଠି ପଢ଼ାନ୍ତି ଜଗତ୍‌ବାବୁ । ପଛେ ମେହେନ୍ତର ପିଲାଟି ତାଙ୍କରି ସାହାଯ୍ୟରେ ଉନ୍ନତି କଲା, ମିଳିଟେରୀରେ ଚାକିରି କଲା ଓ ଭାରତ ସରକାରଙ୍କ ଅଧୀନରେ ରେଡ଼ିଓ ମେକାନିକ୍ ହେଲା । ଆଉ ଗୋଟିଏ ହାଡ଼ିପିଲା ବି ମଣିଷ କଲେ, ସେ ଟାଟାରେ ଦୁଇଶ ଯାକେ ପାଏ । ଚାକିରିରେ ରହିଲା, ହାଡ଼ିପିଲାଟି ବି ସେମିତି ଚାକିରିଟିଏ କଲା । ଜଗତ୍‌ବାବୁଙ୍କ ଉତ୍ତର କାଳରେ ସେ ଦୁହେଁ ତାଙ୍କୁ ଖୁବ୍ ଖୋଜାଳୋଡ଼ା କରୁଥିଲେ । ଜଗତ୍‌ବାବୁଙ୍କ ଶଳା ଦୁହେଁ ବୁଢ଼ା ଓ ଟୁଆଁ ବି ତାଙ୍କ କତିରେ ରହି ପଢ଼ନ୍ତି, ସେ ଦୁହେଁ, ବିପିନ୍ ଓ ଟାଙ୍ଗୁ ଏକାସଙ୍ଗରେ ପଢୁଥିଲେ । ତାଙ୍କ ସଙ୍ଗେ ପଢୁଥିଲେ ଜଗତ୍‌ବାବୁଙ୍କ ଗାଁର ପୁଅ ଭାଇ କ୍ଷେତ୍ରମୋହନ ଦାସ, ସେ ସେଠି ରହି ପଢ଼ି ମ୍ୟାଟ୍ରିକ୍ ପାଶ୍ କଲେ, କାଳକ୍ରମେ ଓଡ଼ିଶା ସେକ୍ରେଟେରିଏଟ୍‌ର ଅର୍ଥ ବିଭାଗରେ ଜଣେ ହେଡ୍ ଆସିଷ୍ଟାଣ୍ଟ୍ ହେଲେ । ଜଗତ୍‌ବାବୁଙ୍କର ବୁଢ଼ୀ ପିଇସିଟିଏ ବି ସେଠି ଥାନ୍ତି । ଜଗତ୍‌ବାବୁଙ୍କ ବୋଉ ପିଲାଦିନୁ ମରିଥିଲେ । ତାଙ୍କ ବାପା ଆଉଥରେ ବିଭା ହୋଇଥିଲେ, ତାଙ୍କର ଗୋଟିଏ ପୁଅ, ନିମାଇଁ ଚରଣ । ନିମେଇଁବାବୁ ବି ଖୁବ୍ ଡେଙ୍ଗା, ଧେଡ଼େଙ୍ଗା, ନାକଟି ବଡ଼, ବୟସରେ ମୋଠୁଁ ତିନି ଚାରି ବର୍ଷ ବଡ଼ । ସେ ଘରେ ରହି ପଢୁଥାନ୍ତି ପ୍ରାଇଭେଟ୍‌ରେ ମ୍ୟାଟ୍ରିକ୍ ପରୀକ୍ଷା ଦେବେ ବୋଲି । ଖୁବ୍ ମେଳାପୀ ଲୋକ, ବହୁତ ବଙ୍ଗଳା ଉପନ୍ୟାସ ପଢ଼ନ୍ତି, ବିଶେଷତଃ ଦୀନେନ୍ଦ୍ରନାଥ ରାୟଙ୍କ ଲେଖା 'ରହସ୍ୟ ଲହରୀ' ସିରିଜ୍ ଅର୍ଥାତ୍

ଇଂରେଜି ସେକ୍ସଟନ୍ ବ୍ଲେକ୍ ସିରିଜ୍‌ର ବଙ୍ଗଳା ଭାଷାନ୍ତର । ଅନେକଥର ତାଙ୍କଠୁଁ ମୁଁ ସେ ବହି ନେଇ ପଢ଼ିଛି । ଥରେ ଅଧେ ସିନେମା ଯାଇଥିଲୁଁ ତାଙ୍କ ସାଙ୍ଗରେ । ଜହ୍ନରାତିରେ ବାଙ୍କିପୁର ଯାଇ "ଫ୍ୟାଣ୍ଟମ୍ ଅଫ୍ ଦି ଅପେରା" ଦେଖିଥିଲୁଁ ମନେଅଛି । ଜଗତ୍‌ବାବୁଙ୍କ ଆଉଜଣେ ଭାଇ ଅଦ୍ୱୈତ ମଝିରେ ମଝିରେ ଆସି ରହନ୍ତି, ତିନୋଟି ଭଉଣୀ ଥାନ୍ତି, ନେତ୍ରମଣି, କ୍ଷେତ୍ରମଣି ଓ ଆଉ ଗୋଟିଏ, ପଛେ ସେ କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କୁ ବିଭାହେଲା । ଶ୍ରୀ ଗୋପାଳ ପଟ୍ଟନାୟକ ମେଡ଼ିକେଲ ପଢ଼ିଲାବେଳେ ବୋଧହୁଏ ପ୍ରଥମ ଦୁଇ ବର୍ଷ ଜଗତ୍‌ବାବୁଙ୍କ ଘରେ ରହୁଥିଲେ, ପଛେ ସେ ଡାଇରେକ୍ଟର ହେଲେ । ଶ୍ରୀ ଗୋପାଳ ଦାସ ସେଠି ରହି ଓକିଲାତି ପଢୁଥିଲେ, ପରେ ହାଇକୋର୍ଟ ଜଜ୍ ହେଲେ । ଡାକ୍ତର ରାଜକିଶୋର ନନ୍ଦ ବି ସେଠି ରହୁଥିଲେ ଦେଖିଛି ।

ଜଗତ୍‌ବାବୁଙ୍କ ଘର ପୁରୀ ଜିଲ୍ଲା ପୁରୀ ସଦର ସବ୍‌ଡିଭିଜନ୍ ଟା'ସିରି । ସାପ ସାଲୁ ସାଲୁ ସନ୍ତସନ୍ତିଆ ପାଟ ଦାଢ଼ରେ । ପ୍ରସିଦ୍ଧ ଯୋଡ଼ାଲିଙ୍ଗ ମହାଦେବଙ୍କ ପୀଠ ସେଠୁ ତିନି ମାଇଲ୍, ପୂଜ୍ୟ ଉତ୍କଳମଣି ଗୋପବନ୍ଧୁଙ୍କ ଗାଁ ସୁଆଣ୍ଡ ସେଠୁ ସିଧା ବାଟରେ ଛ' ମାଇଲ୍ ।

ଗୋଟିଏ ଖାନ୍‌ଦାନି ଜମିଦାର ପରିବାର, ବହୁତ ପୁରୁଷର ଜମିଦାର, ବହୁତ ଚାଷଜମି, ତୋଟା, ପୋଖରୀ । ଶଶୁରଘର ଚଣାହଟାର ଜମିଦାର ବଂଶ, ସେ ବି ପ୍ରସିଦ୍ଧ ପରିବାର । କବି କୃଷ୍ଣମୋହନ ପଟ୍ଟନାୟକ ତାଙ୍କ ସ୍ତ୍ରୀ ବସନ୍ତର ଦାଦି, କବି ଅନନ୍ତ ପଟ୍ଟନାୟକ ଆଉ ଜଣେ ଦାଦିଙ୍କ ପୁଅ । ଜଗତ୍‌ବାବୁଙ୍କ ଶଶୁର ଉପେନ୍ଦ୍ର ପଟ୍ଟନାୟକ କେଉଁ କେଉଁ ଗଡ଼ଜାତରେ ମ୍ୟାନେଜର ଓ ଦେୱାନ୍ ଥିଲେ ।

ସବୁବେଳେ ସତ୍ ଚରିତ୍ର, ମର୍ଯ୍ୟାଦାବୋଧ, ଉଦାରତା, ସମସ୍ତିଙ୍କୁ ସ୍ନେହ, ଯେତେ ପାରିବ ସେତେ ପର-ଉପକାର, ଚିନ୍ତାରେ କାର୍ଯ୍ୟରେ ଆଦର୍ଶବୋଧ, ନୀତିମତା, ପ୍ରତିଦାନର ଆଶା ନ ରଖି ଢୋଲ ନ ପିଟି ନୀରବରେ କାର୍ଯ୍ୟ କରିବା, ସବୁବେଳେ ଆଗ ଦେଶର ଉନ୍ନତି ଚିନ୍ତା, ଦଶଜଣଙ୍କ ଉପକାର ଚିନ୍ତା, ନିଜ ଚିନ୍ତାକୁ ସଂପୂର୍ଣ୍ଣ ଭାବେ ଭଗବାନଙ୍କ ଉପରେ ଛାଡ଼ିଦେବା, ନିଜେ ଖାଲି କର୍ତ୍ତବ୍ୟ କରିଯିବା ଜଗତ୍‌ବାବୁଙ୍କ ଜୀବନ ଓ ଘରକରଣା ଏହି ଭାବଧାରା ବିଞ୍ଚୁଥିଲା ।

ସେ ବିଶ୍ୱାସ କରୁଥିଲେ, ଜୀବନ ହୋଇଛି ଉପଭୋଗ କରିବାପାଇଁ, ଉପଭୋଗର ମାର୍ଗ ପରୋପକାର, ସଂସାରର ସୁଖ ଆନନ୍ଦ ବୃଦ୍ଧି, ଉନ୍ନତ

ଜୀବନଯାପନ, ''ପ୍ଲେନ୍ ଲିଭିଂ ଏଣ୍ଡ୍ ହାଇ ଥିଙ୍କିଂ'' । ସେ ଅନ୍ୟମାନଙ୍କୁ ବୈଷୟିକ ସୁଖ ଦେଉଥିଲେ, ନିଜ ପାଇଁ ନିଜ ସ୍ତ୍ରୀ ପାଇଁ ଖାଲି ''ତେନ ତ୍ୟକ୍ତେନ ଭୁଞ୍ଜୀଥା'' । ତାଙ୍କର ବିଶ୍ୱାସ ଥିଲା, ଜଗନ୍ନାଥ-ଧର୍ମ ପୃଥିବୀରେ ଶ୍ରେଷ୍ଠ ନୀତି ଆଦର୍ଶ, ପ୍ରାଚୀନ ଓଡ଼ିଶାରେ ଘରେ ଘରେ ସେ ଆଦର୍ଶ ଥିଲା, ସେ ଆଦର୍ଶରେ ଜୀବନ ଗଢ଼ିଲେ ପୁଣି ଓଡ଼ିଶା ଉଠିବ । ସେ ଦୁଇ ହାତରେ ବିତରଣ କରୁଥିଲେ ତାଙ୍କର ଆନନ୍ଦ, ''ଗଢ଼ିବା ଓ ଦାନ ଦେବା ।'' ସେଥିପାଇଁ ''ଖାଦ୍ୟ ଦିଅ, ଧନ ଦିଅ, ସଦ୍‌ବୁଦ୍ଧି ଦିଅ, ସାନ୍ତ୍ୱନା ଦିଅ, କଳା ଦିଅ, ସାହିତ୍ୟ ଦିଅ—'' ସବୁବେଳେ କରିଯାଅ, ''ଲିଟ୍‌ଲ୍ ନେମ୍‌ଲେସ୍ ଆକ୍ଟସ୍ ଅଫ୍ ଗୁଡ୍'', ''କାମ କର, ନାଁ ଖୋଜ ନାହିଁ'' ।

ପଛେ ୧୯୫୦ରେ ସେ ବେମାର ପଡ଼ିଛନ୍ତି ଶୁଣି ଘୁମୁସରର କୁଲ୍ଲାଡ଼ରେ ତାଙ୍କୁ ଖୋଜିବାକୁ ଗଲି । ପାଇବାକୁ ଅସୁବିଧା ହେଲାନାହିଁ । ଗାଁର ଛୋଟ ପିଲାମାନେ ମତେ ବାଟ ଦେଖାଇ ନେଇଗଲେ । ପଲେ ପିଲା ସବୁବେଳେ ତାଙ୍କୁ ବେଢ଼ିଥାନ୍ତି, ଖେଳୁଥାନ୍ତି, ପାଟି କରୁଥାନ୍ତି, ସେ ସେମାନଙ୍କୁ କଦଳୀ, ମିଠେଇ, ପିଠା, କେତେ କ'ଣ ଖାଇବାକୁ ଦିଅନ୍ତି । ଗାଁ ଲୋକଙ୍କ ପ୍ରତି ବି ସେ ଖୁବ୍ ବଦାନ୍ୟ । ସମସ୍ତେ ତାଙ୍କର ଆପଣାର । ବୋଧହୁଏ ୧୯୪୬ରେ ପେନ୍‌ସନ୍ ନେଲେ, ତା'ପରେ ପୁରୀ ରାଜାଙ୍କ ଦେୱାନ୍ ହେଲେ ଓ ଶ୍ରୀ ଜଗନ୍ନାଥ ମନ୍ଦିରରେ ସୁପରିଣ୍ଟେଣ୍ଡେଣ୍ଟ୍ ହେଲେ । କୁଲ୍ଲାଡ଼ରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଜମିଥାଏ, ସେ ସେହି ଜମି ହାଲ୍‌ଚାଲ୍ ବୁଝିବାକୁ ଆସିଥାନ୍ତି । ଉତ୍କଟ ବ୍ୟାସିଲେରି ଡିସେଣ୍ଟ୍ରି ହେଲା, ବସ୍‌ବାଲା ହାତରେ ମୋ ପାଖକୁ ଆସ୍ପା ଖବର ପଠାଇଲେ, ସେଥର ସେ ବଞ୍ଚିଗଲେ । କେଡ଼େ ନିଃସହାୟ ସେ ଦିଶୁଥାନ୍ତି । ମୁଁ କହିଲି ''ଆପଣ କାହିଁକି ଯେ ବୟସରେ ଘର ଛାଡ଼ି ଏତେଦୂର ଏ ଗଣ୍ଡ ମଫସଲକୁ ଆସିଲେ କହିଲେ, କି ଦୁଃସାହସିକତା !''

ସେ ହସି ହସି କହିଲେ ''କ'ଣ ହେଲା ? ଛାନିଆ ହେଇଯାଉଚ ? ଏମାନଙ୍କୁ ଦେଖିଲ, ଘର ତ ମୋ ସାଙ୍ଗେ ସାଙ୍ଗେ ।''

''କିନ୍ତୁ କେଡ଼େ ବିପଦ !''

''ଏ ଅଲୋଡ଼ା ଜୀବନଟା ତ ରହିଚି, ଅଳସୁଆ ହୋଇ ଘୁଷୁରି ପରି ବଞ୍ଚିବା ଅପେକ୍ଷା ଯଦି ମୋ ଦ୍ୱାରା ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର କିଛି ସେବା ହୋଇପାରିବ ସେ ତ ମହାଭାଗ୍ୟ, ସେହି ପବିତ୍ର କର୍ତ୍ତବ୍ୟ କରୁ କରୁ ଯଦି ଏ ଘୁଷୁରି ଜନ୍ମଟା ଶେଷ ହୋଇଯାଇଥାନ୍ତା ତ ଆହୁରି ଭଲ, ନୁହେଁ ?''

ଦେଖିଲି, ସେହି ଜଗତ୍‌ବାବୁ ସେ ।

୧୯୨୭ରେ ୨୮ରେ ୨୯ରେ ସେ ବାରମ୍ବାର କହୁଥିଲେ ତାଙ୍କର ଆଉ ଜଣେ ପ୍ରିୟ ଛାତ୍ର କଥା, ମତେ କହନ୍ତି "ତାକୁ ଏପର୍ଯ୍ୟନ୍ତ ସମସ୍ତେ ଚିହ୍ନି ନାହାନ୍ତି, ଚିହ୍ନିବେ ଦିନେ, ରଇଥା ରଇଥା, ସେ ଆସୁଚି ଯେ । ସେ ସମସ୍ତିଙ୍କି ସାଧ କରିବ, ସମସ୍ତିଙ୍କି ଟପିବ, ତା ନାଁ କୀର୍ତ୍ତି ଚାରିଆଡ଼େ ରଟିବ । ହଁ ତାଠିଁ ସେ ଗୁଣ ଅଛି, ପ୍ରତିଭାକୁ ଦାବିବ କିଏ ଅଟକେଇବ କିଏ ? ତା ବୁଦ୍ଧି ଯେମିତି ବଳ ସେମିତି ଚେହେରା ବି ହବ ସେମିତି, ତା ପ୍ରତିଜ୍ଞା ସେଡ଼ିକି ଟାଣ, ଯୋଉଥିରେ ଲାଗିଥିବ ଲାଗିଥିବ । ତାକୁ କେହି ହଟେଇ ପାରିବେ ନାହିଁ । ତା ପାରିଲାପଣ କାହିଁକି ପଚାରୁଚ, ତାଠିଁ ଅଦ୍‌ଭୁତ ଶକ୍ତି । ନିଜ ହାତରେ ତାକୁ ମୁଁ ତିଆରି କରିଛି, ହୁଁ, ସେମିତିଆ ମଣିଷଟିଏ ବାହାରିଲେ ସିନା ସାରା ଦେଶର କାମରେ ଲାଗିବ, ଆଉ ପଣେ କାହାଣେ ଅନ୍ୟ ଲୋକ ଥିଲେ କାହାର କ'ଣ କରିବେ ?"

"ସେ କ'ଣ ଭାରି ପ୍ରତିଭାବାନ୍ ?"

"ହଁ ହଁ, ପ୍ରତିଭାବାନ୍, ସେମିତି ପ୍ରତିଭା ଆଉ କାହାଠିଁ ଦେଖିଲି ନାହିଁ ।"

"କ'ଣ ଭାରି ଭଲ ଷ୍ଟୁଡେଣ୍ଟ ?"

"ଆରେ ଖାଲି କ'ଣ ଷ୍ଟୁଡେଣ୍ଟ୍ ? ଭଲ ଷ୍ଟୁଡେଣ୍ଟ୍ ତ କେତେ ଅଛନ୍ତି, କେତେ ବାହାରିବେ । ତା'ର ସବୁ ବଡ଼ ଯେ । ଚେହେରା ବି ବଡ଼, ଆଖି ବି ବଡ଼, ବୁଧି ବି ବଡ଼, ହୃଦୟ ବି ବଡ଼, ବିଚାର ବି ବଡ଼, ଆରେ ସେଇଟା ନେତାଟାଏ ହୋ, ତା ପିଲାଦିନୁଁ ସମସ୍ତିଙ୍କ ଆଗେ ଆଗେ, ଯେମିତି ଗୋଠ ଆଗରେ ଗଉଡ଼ । ଆମର ଦରକାର ସେମିତିଆ ଟୋକା । ଡର ଭୟ ବୋଲି ଏତେ ଟିକିଏ ଅଛି ? ଆଦୌ ନାହିଁ । ବେକ ଚାରିପାଖେ ବୁଧି । ଆଖି କଣବାଟେ ଥରେ ଅନେଇଁଦେଲେ ବି ସବୁକଥା ଦେଖିନେବ । ସତେଯେମିତି ମୁଣ୍ଡ ପଛଆଡ଼େ ବି ତା'ର ଆଖି ଅଛି । ସବୁ ଜାଣିପାରେ, କିଛି କହେନାହିଁ, କାମ କରି ଚାଲିଯାଏ । କାମ ଉପରେ, କର୍ତ୍ତବ୍ୟ ଉପରେ ସେ ନିଜକୁ ବି ଉପରୋଧ ଦେଖାଏ ନାହିଁ ତ ଆଉ ପରକୁ କି ଉପରୋଧ ? ତାଠିଁ ଦୁର୍ବଳତା ନାହିଁ ।"

"ଆପଣ ଏ ଯେଉଁ ବିଚିତ୍ର ବର୍ଣ୍ଣନା ଦେଉଛନ୍ତି, ସେପରି ମଣିଷ କ'ଣ ଓଡ଼ିଶାରେ ଅଛନ୍ତି ?"

ରାଗିଲା ପରି କହନ୍ତି ''କାହିଁକି ନ ଥିବେ ? ତୁମର ଯଯାତି କେଶରୀ, ନରସିଂହ ଦେବ, କପିଳେନ୍ଦ୍ର, ଏମାନେ ସବୁ କ'ଣ ? ଏମାନେ କ'ଣ ଆଜିକାଲିକା ନରମ ପୁଚୁପୁଚୁ ମିଁ ମିଁକିଆ ଚାହା ସିଗାରେଟ୍‌ପିଆ ବାବୁ ସାଇବ, ଆଖି ଗାଡ଼ରେ ପଶିଥିବ, ଚଷମା ଘୋଡ଼େଇଥିବେ, ଛାତି ବିଦାକାଠି ପରି, ତା ଉପରେ ଫୁଲଶାଗୁଣା ପରି ଟାଇ ୱେଷ୍ଟ କୋଟ୍, ଥୋଡ଼ାଏ ବହି ଘୋଷିଥିବେ, ପାଇ ପାଇ ପାଇଥିବେ ଗୋଟାଏ ଚାକିରି । ଏଇଗୁଡ଼ାକ ଓଡ଼ିଶାର ଇତିହାସ ତିଆରି କରିଥିଲେ ? ଖାଲି ଇଂରେଜି ଚୋବେଇ ଚୋବେଇ କରି ? ଏଗୁଡ଼ାଙ୍କୁ ଦେଖି କାହିଁକି ତୁମେ ଭାବୁଛ ସେମାନେ ନ ଥିଲେ କି ନ ବାହାରିବେ ବୋଲି ? ବେଳ ଆସୁଛି, ଓଡ଼ିଶା ପୁଣି ଉଠିବ । ସେଇଥିପାଇଁ ସେ ତିଆରି ହୋଇଛି ।''

ମୁଁ ମୁହଁ ଶୁଖେଇ ବସି ଭାବେଁ, କିଏ ସେ ମଣିଷ । ଡରି ଡରି ଥଙ୍ଗେଇ ଥଙ୍ଗେଇ ହୋଇ କହେଁ, ''ଆଉ କ'ଣ କେହି ଚେଷ୍ଟା କଲେ ବି ସେମିତି ହେବ ନାହିଁ ?'' ସେ ମୋ ମୁହଁକୁ ଅନାଇଁ ହସିଦିଅନ୍ତି, କହନ୍ତି ''ଚେଷ୍ଟା କଲେ ଆଉ କେହି ହବ ନାଇଁ କ'ଣ ମୁଁ କହିଲି ? ତେବେ, ଚେଷ୍ଟା କଲେ ତ ? ଏଇ ବୈଷ୍ଣବଟା କଥା ଦେଖ । ବଗଡ଼ ହୋଇଯାଇଥିଲା, ତା ଆଶା ଛାଡ଼ି ଦେଇଥିଲେ । ସେଉଠୁ ତା ବୋଉ ଆଣି ମୋ ହାତରେ ତାକୁ ସମର୍ପି ଦେଲେ । ମତେ ମାହାର୍ଦ୍ଦ ଟେକି ଦେଲେ । କହିଲେ ତୁ ମୋ ପୁଅ । ଏଣିକି ତୋ ଭାଇ ତତେ ଲାଗିଲା । ମୁଁ ବି ଚେଷ୍ଟାକରି ଦେଖିଲି ପାରିହେଉ ନାହିଁ । ଦିନେ ବାନ୍ଧିପକେଇ ଗୋଗୋଛ ବାଡ଼ିଆ ବାଡ଼େଇଲି । କାହିଁକି ରାଗିଯାଇ ବାଡ଼େଇଲି ବୋଲି ଅନୁତାପ ଆସିଲା । କିନ୍ତୁ ସେହି ଦିନଠୁ ତା'ର କ'ଣ ପରିବର୍ତ୍ତନ ଆସିଗଲା । ମୁଁ ଯାହା କହିଲେ କଥା ମାନେ । ସେ ଭଲ ପିଲା ହେଲା, ପନ୍ଦର ଟଙ୍କା ସ୍କଲର୍‌ସିପ୍ ପାଇ ମ୍ୟାଟ୍ରିକ୍ ପାଶ୍ କଲା, ଇଂରେଜି ଏମ୍.ଏ.ରେ ସେକେଣ୍ଡ୍ କ୍ଲାସ୍ ପାଇ ୟୁନିଭର୍ସିଟିରେ ସେକେଣ୍ଡ୍ ହେଲା । ବହୁତ ଖେଳରେ ଫାଷ୍ଟ୍ । ବୁଦ୍ଧି ଯେ ବିଚକ୍ଷଣ, ଚେହେରା ତ ଦେଖିଚ । ଆପେ ଚେଷ୍ଟା କରି କରି ସେ ଉନ୍ନତି କରିଛି । ଡି.ଏସ୍.ପି. ହୋଇ ଚାକିରି ଆରମ୍ଭ କଲା, କାମ କାର୍ଯ୍ୟରେ ତା ଦକ୍ଷତା ତା ଖ୍ୟାତି ବହୁତ, ସମସ୍ତେ ଭାରି ପ୍ରଶଂସା କରନ୍ତି । ଥରେ କ'ଣ ହେଲା ଶୁଣ । ଲୋକେ ମେଳି କରିଥାନ୍ତି । ଠେଙ୍ଗା ବାଡ଼ି ଧରି ଶହ ଶହ ଲୋକ ତା କାରକୁ ଅଟକାଇ ମାର ମାର ଗର୍ଜନ ଛାଡ଼ିଲେ । ଦରଭଙ୍ଗା ଜିଲ୍ଲାରେ ମଫସଲରେ ଠାଏ । ତା ଡ୍ରାଇଭର୍ ଥରିଲାଣି । ସେ ଡ୍ରାଇଭରକୁ ତୁନି ତୁନି କରି କହିଲା,

''ଡରିଲେ ମାରିଦେବେ, ମୁଁ ଚତେ ମେସିନ୍‌ଗନ୍ ଦେ ବୋଲି ଡାକିଲେ ତୁ ଫଟୋ କ୍ୟାମେରାଟାକୁ ପଦାରେ ଷ୍ଟାଣ୍ଡ ଉପରେ ଫିଟ୍ କରିଦେବୁ । ବୈଷ୍ଣବ ଓହ୍ଲେଇପଡ଼ି ଠିଆହେଲା, ଅଧା ତାଳଗଛଟାଏ ତ ! ହାତଟେକି ଲୋକଙ୍କୁ ଅଟକିବାକୁ କହିଲା । ଲୋକେ ପାଟି କରୁଥାନ୍ତି; ଠେଙ୍ଗା ନଚୋଉଥାନ୍ତି । ବୈଷ୍ଣବ କହିଲା ''ସତେ, ତେମେ ମତେ ମାରିବ ? ଆରେ ଆଣିବୁଟି ମେସିନ୍‌ଗନ୍ ।'' ଷ୍ଟାଣ୍ଡ ଉପରେ କ୍ୟାମେରା ଥୁଆହେଲା ''ହେଇ ଦେଖ ଯେ ମେସିନ୍ ତୋପ ଖଞ୍ଜାହେଲା । ମୁଁ ଏକ୍-ଦୁଇ-ତିନି କହିଲା ବେଳକୁ ତୁମେ ପଳେଇଥିବ ତ ପଳେଇଥିବ, ନ ହେଲେ ମୁଁ ଏ ମେସିନ୍ ତୋପ ଚଲେଇଦେବି ଯେ ଯା ଭିତରୁ ଗୁଳି ବାହାରି ତୁମେ ସମସ୍ତେ ମରିଯିବ । ଆଉ ମତେ ଦୋଷ ଦେବ ନାହିଁ ।''

ଫଟୋ ଉଠେଇ ନେଉଥାଏ । କହିଲା ''ଏଥର ପଳା, ହେଇ ଦେଖ ମେସିନ୍ ତୋପ ଲାଖ କଲି,'' ସେଉଠୁ ଯେମିତି ''ଏକ୍-ଦୁଇ-'' କହିଛି ଯେ ଯୁଆଡ଼େ ପଳେଇଲେ । ସେ ବି ବର୍ତ୍ତିଗଲା, ଘରକୁ ଫେରିଲା, ଫଟୋ ଦେଖି ଦେଖି ମେଳିଆ ଗୁଡ଼ାଏ ଧରାହେଲେ । ତେମେ ପାରିଥାନ୍ତ ଏମିତି ବୁଦ୍ଧି ସାହାସ ଦେଖାଇ ?''

ଆଗ ଆଗ ଭାବୁଥିଲି ସେ ତାଙ୍କର ଯେଉଁ ଛାତ୍ର କଥା କହନ୍ତି, ସେ କ'ଣ ବୈଷ୍ଣବ ଚରଣ ଦାସ ?

''ଆପଣ ଯାହାଙ୍କ କଥା କହିଲେ ଯେ ଓଡ଼ିଶାକୁ ଉଠେଇବେ କହୁଛନ୍ତି, ସେ କ'ଣ ସେହି ବୈଷ୍ଣବ ଦାସ ?''

''ହୋ ଟିକି ପିଇସା, କିଓ ଓଲୁ କ'ଣ ଗଛରେ ଫଳନ୍ତି ? ହଇହୋ ପୁଲିସ୍ ହାକିମଟିଏ ଯେତେ ବିଚକ୍ଷଣ ଯେତେ ବଡ଼ ହାକିମ ହଉ, ସେ ଦେଶଟାଯାକକୁ ଉଠେଇବ କେମିତି ? କୋଉ ଚାକିରିଆଟା ଉଠେଇବ ? ତୁମେ ଯେକୌଣସି କର୍ମଚାରୀ ହୁଅ, ଯେତେ ଇଚ୍ଛା ସେତେ ହାକିମ, ତୁମେ ସାରା ଦେଶଟାକୁ ଉଠେଇବ କେମିତି ବା ? ତୁମେ ଚାକିରିରେ ଥାଇ ତୁମ କର୍ତ୍ତବ୍ୟକୁ ଠିକ୍ ଠିକ୍ କଲେ ବହୁତ ଲୋକଙ୍କର ଉପକାର ହେବ, ତା ସଙ୍ଗେ ସଙ୍ଗେ ତୁମେ ଦେଶ ପାଇଁ ଆହୁରି ନାନା କଥା କରିପାର, ଯେମିତି ପରୋପକାର, ଦରିଦ୍ରଙ୍କୁ ସାହାଯ୍ୟ, ରୋଗୀସେବା, ବୈଷ୍ଣବ ପରି ତୁମେ ଉପନ୍ୟାସ ବି ଲେଖିପାର, ମାତୃଭାଷାର ସାହିତ୍ୟର ଉପକାର ହେବ, ସଙ୍ଗୀତ କଳା ଯାର ବି ଉନ୍ନତି କରିପାର, ସେ ବି କରେ, କିନ୍ତୁ ଚାକିରିରେ ହାତଗୋଡ଼ ବାନ୍ଧିଦେଲେ

ତୁମେ ତ ଆଉ ସ୍ୱାଧୀନ ରହିପାରିବ ନାହିଁ ଯେ ମନଇଚ୍ଛା ଦେଶଟାକୁ ଗଢ଼ିବ ? ବୈଷ୍ଣବ ଏଡ଼େ ବଢ଼ିଆ ପିଲା, କିନ୍ତୁ କ'ଣ ହବ, ଚାକିରିଟାଏ ତ କଲା । ଆଉ ଗ୍ରେଟ୍ ମ୍ୟାନ୍ କୁଆଡୁ ହବ ?''

ଟିକିଏ ରହି ଦୀର୍ଘଶ୍ୱାସ ପକାଇ କହନ୍ତି, ''ହୋଇପାରିଥାନ୍ତା, 'ଲାଇଭ୍ସ୍ ଅଫ୍ ଗ୍ରେଟ୍ ମେନ୍ ଅଲ୍ ରିମାଇଣ୍ଡ୍ ଅସ୍ —ୱି କ୍ୟାନ୍ ମେକ୍ ଆୱାର୍ ଲାଇଭ୍ସ୍ ସବ୍‌ଲାଇମ୍' ।''

ଅନ୍ୟମନସ୍କ ଭାବ ବଦଳିଯାଏ କି ବଢ଼ିଯାଏ କୁହାଟ ଛାଡ଼ନ୍ତି ''ହୋ ଟିକି ପିଇସା, ତୁମେ ଗ୍ରେଟ୍ ମ୍ୟାନ୍ ହେବ ? ଏଁ ? ହଉ, ହୁଅ । ତା'ହେଲେ ବେକଟା ପାଣିଛଡ଼େଇ ଦିଅ, ସେଇଟା କଟିଯିବ, ଆଉ ସବୁ ଲୋଭ ତ ସହଜେ ଛାଡ଼ିବାକୁ ପଡ଼ିବ, ଘର ବା ଭାରିଜା ନା ଆଉ କିଛି । ଯୀଶୁଖ୍ରୀଷ୍ଟ ଗ୍ରେଟ୍ ମ୍ୟାନ୍ । ବୁଝିଲ କଥାଟା ?''

''ଆପଣ ଯାହା କଥା କହନ୍ତି ସେ କ'ଣ ସେମିତିଆ ?''

''ସେ ସେମିତିଆ ହବ ବୋଲି ତ ମୁଁ ଭାବୁଚି ।''

''କହନ୍ତୁ କହନ୍ତୁ ତାଙ୍କ ନାଁ କହନ୍ତୁ, ଶୁଣିବା ନାହିଁ ଟିକିଏ ?''

''ଖାଲି ନାଁରୁ କ'ଣ ପାଇବ ? ହଉ, ତା ନାଁ ହରେକୃଷ୍ଣ ମହତାବ ।''

କିଏ ସେ, ଯେ ଜଗତ୍‌ବାବୁଙ୍କ ଆଖିରେ ବି ଏଡ଼େ ବଡ଼ । ଜଗତ୍‌ବାବୁ ଯାହା ପାଇଁ ଗର୍ବ ଅନୁଭବ କରନ୍ତି ନିଜେ ସେ ପିଲାକୁ ମଣିଷ କଲେ ବୋଲି ।

ମୁଁ ଚିହ୍ନି ନ ଥାଏ । ନାଁଟି ତାଙ୍କଠିରୁଁ ପ୍ରଥମେ ଶୁଣିଥିଲି ।

ସେତେବେଳେ ବି ଅନୁଭବ କରିଥିଲି, ଯେଉଁମାନେ ମହାପ୍ରାଣ ମଣିଷ, ସେମାନେ ସେମାନଙ୍କ ଉପରେ ଯେ ପ୍ରଭାବ ପକାଇ ତାଙ୍କର ଉନ୍ନତି କରନ୍ତି, ସେ ପ୍ରଭାବ ତାଙ୍କ ବକ୍ତୃତାରୁ ଆସେ ନାହିଁ, ତାଙ୍କ ତୁଣ୍ଡରୁ କି ଲେଖାରୁ ଆସେ ନାହିଁ, ତାଙ୍କ ଦୃଷ୍ଟାନ୍ତରୁ ବି ଆସେ ନାହିଁ, ନୀରବରେ ଆସେ ତାଙ୍କଠିରୁଁ । ତାଙ୍କୁ ଶ୍ରଦ୍ଧା କଲେ ହିଁ ସେ ପ୍ରଭାବ ଆସିବା ମାର୍ଗ ଖୋଲିଯାଏ । ସେଉଠୁ ସେ ଆସେ, ଶୂନ୍ୟ ଭିତରୁ କିରଣ ପରି । କେତେବେଳେ ତାଙ୍କ ମୁହଁର କେଉଁ ଭଙ୍ଗୀ, କେତେବେଳେ ତାଙ୍କ ସ୍ୱରରେ କେଉଁ ଶବ୍ଦ, ତାଙ୍କ ତୁଣ୍ଡରୁ କେଉଁ ପଦ, —ସେ ସେ ପ୍ରଭାବକୁ ଗୋଟିଏ ବିଶିଷ୍ଟ ଲକ୍ଷ୍ୟ ଆଡ଼କୁ ମଡ଼ାଇନିଏ, ତେଣୁ ମନରେ ସେହିପରି ଭାବ ଉଏଁ, ସେହିପରି ସ୍ୱପ୍ନ ଭାସେ, ସେହିପରି ଆକାଙ୍‌କ୍ଷା ଜନ୍ମେ ।

ଶ୍ରଦ୍ଧାର ଆର ପାଖଟା ଅଶ୍ରଦ୍ଧା । ତା'ର ପରିଣାମ ଗୋଟିଏ ସ୍ୱିଚ୍-ଅଫ୍ ଅବସ୍ଥା । ଶ୍ରଦ୍ଧା ନଥିଲେ ସ୍ୱିଚ୍-ଅନ୍ ହୁଏ ନାହିଁ, ଆଲୁଅ ଜଳେ ନାହିଁ, ପଙ୍ଖା ବୁଲେ ନାହିଁ, ଛାତ୍ର ଖାଲି ତା ଆଖି ଆଗରେ ମାଷ୍ଟରଟିଏ ଦେଖେ, ମାଷ୍ଟରଠିଁ ଗୁରୁକୁ ପାଏ ନାହିଁ, ଗୁରୁ ହିଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଏ ଉକ୍ତି ତାକୁ ହାସ୍ୟାସ୍ପଦ ହିଁ ଲାଗେ ।

ଶ୍ରଦ୍ଧା ନଥିଲେ କିଛି ଗ୍ରହଣ କରି ହୁଏ ନାହିଁ, ଭାବ ଆଉ ଅର୍ଥ ଭାଏଁ ଭାଏଁ ଯାଏ ।

ସେ ମୋ ପାଠପଢ଼ାକୁ ନିର୍ଦ୍ଦେଶ ଦେଉଥିଲେ, ମୋ ପାଠ ପ୍ରସ୍ତୁତିକୁ ମାପୁଥିଲେ, ଭୁଲ୍ ସୁଧାରୁଥିଲେ, ତେଣୁ ମୋର ପାଠପଢ଼ାରେ ଉନ୍ନତି ପାଇଁ ସାହାଯ୍ୟ ମିଳୁଥିଲା । କିନ୍ତୁ ତାଠୁଁ ବଳି ଉପକାର ମିଳୁଥିଲା ମୋ ଭାବ-ରାଜ୍ୟରେ ।

ଏକୁଟିଆ ଥିଲାବେଳେ ସେ ବେଳେ ବେଳେ ବସିଥାନ୍ତି, କ'ଣ ଭାବୁଥାନ୍ତି, ଆଉ ସ୍ୱପ୍ନରେ ବିଳିବିଳେଇଲା ପରି ମତେ କଥା କହନ୍ତି ।

''ପାଠ ପଢ଼ି କ'ଣ କରିବ ?''

''ଆପଣ କହନ୍ତୁ ।''

''କ'ଣ ମନ ହଉଚି କରିବାକୁ ? ବହୁତ ଟଙ୍କା କମେଇବ, ନାହିଁ ?''

''ଖାଲି ବହୁତ ଟଙ୍କା କମେଇଲେ କ'ଣ ହେବ ? ସଂସାରରେ ଟଙ୍କା କ'ଣ ସବୁଠୁ ବଡ଼ ?''

''ସବୁଠୁଁ ବଡ଼ ନୁହେଁ, କିନ୍ତୁ ଦରକାର । ନଇଲେ ନିଜ ଅଭାବ ବି ମେଣ୍ଟି ହେବ ନାହିଁ, ପରର ଅଭାବ ତ ଦୂରର କଥା ।''

''ନିଜ ଅଭାବ କମାଯାଇ ପାରେ, ତା ନହେଲେ ଖୁବ୍ ଅଳ୍ପ ଟଙ୍କା ରୋଜଗାର କଲେ ବଳିଯିବ ।''

''ହେଲା, ବାବାଜୀଙ୍କ ପରି ଚଳିବ । ଏଇଆ କହୁଚ ? ତମର ତେମେ ଯେମିତି ମନ ସେମିତି ଚଳିବ, ଆଉ କାହାରିକି ଟଙ୍କାପଇସା ଦବ ନାହିଁ, ସବୁଦିନେ ମାଗିଖିଆ, ନଇଲେ ଗରିବ । ବେଶ୍ । ତା ହେଲେ ତେମେ ବଞ୍ଚିବ କେଉଁ ଉଦ୍ଦେଶ୍ୟ ସକାଶେ ?''

''କାହାରି କିଛି କାମରେ ଲାଗିବା ସକାଶେ । କିଛି କାହାର ଉପକାର, ସେ ଯେତେ ଟିକିଏ ହେଉପଛେ । ଯଦି କେଉଁଦିନ ବାଟରୁ ଭଙ୍ଗା କାଚ ଖଣ୍ଡେ କି କଣ୍ଟାଟିଏ କାଢ଼ିଦେଇ ପାରିବି, ତେବେ ଅନ୍ତତଃ ସେତିକି ସେଦିନର ଭଲ କାମ । ଆଉ କେତେ ଉପକାର ତ କରାଯାଇ ପାରେ ।''

ସେ ହସନ୍ତି । କହନ୍ତି ''ଭାରି ସୁବିଧା ବାଟ ବୋଲି ଭାବିଚ, ନାଇଁ ?

ସଂସାରଟା ଏଡ଼ିକି ସରଳ ହେଇଚି ? ଆଚ୍ଛା – କାହିଁକି କାହା ଉପକାର କରିବ ? ସେ କ'ଣ ଦବ କିଛି ?''

''ନ ଦଉ, ବାସ୍ନା ଫୁଲଟିଏ ତା ମନକୁ ଫୁଟେ, ଅନ୍ୟମାନଙ୍କୁ ବାସ୍ନା ଦିଏ, ଅନ୍ୟମାନେ ପଛେ ତା ପାଖୁଡ଼ା ଛିଣ୍ଡାନ୍ତୁ କି ତାକୁ ମଳି ଦିଅନ୍ତୁ । ସେ ତା'ର ଫୁଟେ, ସେଇଟା ତା ସ୍ୱଭାବ । ମୁଁ ସେଇଆ ଚାହେଁ ।''

ସେ ବିଚିତ୍ର ଚାହାଣିରେ ମୋ ମୁହଁକୁ ଅନାନ୍ତି, ଓଠରେ କୌତୁକିଆ ହସ, ହଠାତ୍ ତାଙ୍କ ମୁହଁ କେମିତି ସ୍ୱପ୍ନରେ ଝଲସି ଉଠେ । ଆନନ୍ଦ ଖେଳିଯାଏ । କହନ୍ତି–

''ବାଃ-ବାଃ-ବାଃ ଟିକି ପିଇସା, କଥାପଦେ କହିଲ । କଥାଟା ତୁମ ତୁଣ୍ଡରୁ ବାହାରୁଚି, ତୁମେ ଜାଣିପାରୁନା ସିନା, ତୁମ ତୁଣ୍ଡରେ ଏକଥା କହୁଚନ୍ତି ତୁମ ବାପା, ସେ ବ୍ରହ୍ମଜ୍ଞାନୀ, ସାଧକ, ସେଇଥିପାଇଁ । କିନ୍ତୁ ଯା ଅର୍ଥ ବୁଝୁଚ ? ଯା ଅର୍ଥ ତମକୁ ଭାତ ଅଣ୍ଟିବ ନାହିଁ, ନ ମିଳି ବି ପାରେ । ଯା ଅର୍ଥ ତୁମଠିଁ ଧନସମ୍ପତ୍ତି ରହିବ ନାହିଁ, ତେଣୁ ତୁମଠିଁ କ୍ଷମତା ରହିବ ନାହିଁ, ତୁମକୁ କେହି ପଚାରିବେ ନାହିଁ, ଓଲଟି – ଠିଆ ଗୋଇଠା ଦେବେ । ପରୋପକାର ମାନେ ଘରୁ ଯିବ ମଶାଣିକି । ମହାଦେବ ସବୁଠୁ ବଳି ପରୋପକାରୀ, ସେଇଥିପାଇଁ ସେ ଖରାଖିଆ ହୋଇ ରହନ୍ତି, ମଶାଣିରେ ଥାଆନ୍ତି । ତେମେ ସେମିତିଆ ହବ ?'' ସେ ହସନ୍ତି ।

ତା'ପରେ ସେ ଭାବବିହ୍ୱଳ ହୋଇ କହନ୍ତି–

''ଓଃ ! କେଡ଼େ ବଡ଼ ଆଦର୍ଶ ସେ ! ସେମିତି ମଣିଷ ଅଘୋରି ହୋଇ ମଶାଣିରେ ତ ବୁଲିବ, ଲେଙ୍ଗୁଟି ତ ମାରିବ, ହଉ, ତେବେ ତା ଜୀବନଟା କେଉଁ ଦରର ହବ ? କାଳିଦାସେ ଦର ଦେଇଛନ୍ତି ପରା, –

ଅକିଞ୍ଚନଃ ସନ୍ ପ୍ରଭବଃ ସ ସମ୍ପଦାଂ
ତ୍ରିଲୋକନାଥଃ ପିତୃସଦ୍ମଗୋଚରଃ ।
ସଭୀମରୂପଃ ଶିବ ଇତ୍ୟୁଦୀର୍ଯ୍ୟତେ
ନସନ୍ତି ଯାଥାର୍ଥ୍ୟବିଦଃ ପିନାକିନଃ

ଆହୁରି କହିଛନ୍ତି–

ତଦଙ୍ଗ ସଂସର୍ଗମବାପ୍ୟ କଳ୍ପତେ
ଧ୍ରୁବଂ ଚିତାଭସ୍ମରଜୋ ବିଶୁଦ୍ଧୟେ ।
ତଥାହି ନୃତ୍ୟାଭିନୟକ୍ରିୟାଚ୍ୟୁତଂ
ବିଲିପ୍ୟତେ ମୌଳିଭିରମ୍ବରୌକସାମ୍ ।

ଆମ ଭାରତବର୍ଷର ସବୁଠୁ ବଡ଼ ଆଦର୍ଶ ସେଇଆ ।'' ଗୋଟି ଗୋଟି କରି ମଧୁର ଗମ୍ଭୀର ଶବ୍ଦଗୁଡ଼ିକ ଚାରିଆଡ଼େ ଯେମିତି ମହକ ବିଞ୍ଚିଦିଏ । ଶ୍ଳୋକକୁ ବୁଝନ୍ତି ।

କହନ୍ତି ''ଲାଗୁଚି ତ ଭାରି ଭଲ; ସାଧିବା ସବୁଠୁ କଷ୍ଟ । ପାରିଥିଲା ଜଣେ, ଗୋପବନ୍ଧୁ ଦାସ, ସେ ତ ଆଉ ନାହିଁ ।'' ସେ ଚୁପ୍‌ହୋଇ ରହିଲେ, ମୁହଁରେ ଗଭୀର ଦୁଃଖ । ଝିକିଝିକେଇ ଉଠି କହିଲେ ''ସେମାନେ ରହନ୍ତି ନାଇଁ ହୋ, ବାଟ ଦେଖାଇଦେଇ ଚାଲିଯାଆନ୍ତି ।'' ପୁଣି ଚୁପ୍‌ଚାପ୍ । ତା'ପରେ ''ନାଇଁ ହୋ, ତେମେ କ'ଣ ମଣିଷଟି ନୁହଁ କି ?

ତମର ସୁଖକୁ ଇଚ୍ଛା ହେବ ନାହିଁ କି ?

ତେମେ ବି ସଂସାରର ଆଉ ଦଶଟା ଘୁଷୁରିଙ୍କ ପରି ଚଳିବ ନାଇଁ ଯେ ସେ ସୁଖ ଛାଡ଼ି ଜୀବନକୁ ଉଜାଡ଼ିଦେଇ ପରୋପକାର କରିବାକୁ ଯିବ ? କାହିଁକି ? କଥାଟାକୁ ଭାବ, ଭାବି ଚିନ୍ତି ମତ ଥିଏ କଲେ ମତେ କହିବ ।''

ଜଗତ୍‌ବାବୁ କଥା କହିଲେ ହିଁ ଶିକ୍ଷା ଦେଉଥିଲେ, ସେ କଥାରେ ଥିଲା ଉଚିତ ଅନୁଚିତ ବୋଲି ବାଛବିଚାର, ନ୍ୟାୟ-ଅନ୍ୟାୟ ଭଲ ମନ୍ଦ ବିଷୟରେ ସ୍ପଷ୍ଟ ଧାରଣା, ମଣିଷପଣିଆଁ ବିକାଶ କରିବା ପାଇଁ ନାନା ପ୍ରୟୋଗ, ଚରିତ୍ର ଗଢ଼ିବା ପାଇଁ ନୀତି ଉପଦେଶ, ନାନା ଉଦାହରଣ । ସେ ଆଖିବୁଜି ହଠାତ୍ କହିପକାଉ ନଥିଲେ ''ଏଇଟା ଭୁଲ୍'' କି ''ଏଇଟା ଖରାପ'' । ଭୁଲ୍ କି ଖରାପ ବୋଲି ଜାଣିଲେ ସେ ଏମିତି ବାଗରେ ତାକୁ ଓ ତା ସମ୍ଭାବିତ ପରିଣତିକୁ ଆଲୋଚନା କରୁଥିଲେ, ଯେମିତି କହିବା ଲୋକ ନିଜେ ବୁଝିପାରିବ ଯେ ସେ ଯାହା କହିଲା ତା ଭୁଲ ବା ଖରାପ । ସେଉଠୁ ସେ କହୁଥିଲେ,

''ଏଥର ନିଜେ ବୁଝି ପାରିଲ ?''

''ହଁ ।''

''କାଇଲ୍ ମାନୁଚ ?''

''ହଁ ।''

''ଆଉ ଏ ଭୁଲ୍ ହବ ନାଇଁ ତ ?''

''ନା ।''

''ହଉ ।''

ସେଉଠୁ ସେ ବ୍ୟାଖ୍ୟା କରି ଆହୁରି ବୁଝାଉଥିଲେ । ଆଲୋଚନାଗୁଡ଼ିକ ତାତ୍ତ୍ୱିକ । ତାଙ୍କର ଇଚ୍ଛା, ଆମେସବୁ ଯୁକ୍ତି ବାହାର କରି କରି ଜ୍ୟାମିତିର

ପ୍ରବ୍ଲେମ୍ କଷିଲା ପରି ତାତ୍ତ୍ୱିକ ଆଲୋଚନା ବି କରି ଶିଖୁଁ ।

କେବେ ଆଲୋଚନା ଛଳରେ ଆରମ୍ଭ କରନ୍ତି—

"ତୁମର କୋଉ ଧର୍ମ ?"

"ହିନ୍ଦୁ ଧର୍ମ ।"

"ଆଚ୍ଛା, ଯେ ଧର୍ମ ମାନିବା ଦ୍ୱାରା ତମର କୋଉ ବଳକା ଉପକାରଟା ହଉଚି, ଯୋଉଟା ମୁସଲମାନ କି ଖ୍ରୀଷ୍ଟିଆନ୍ ହୋଇଥିଲେ ନ ମିଳିଥାନ୍ତା ? ମତେ ବୁଝା ।

ଆହୁରି କହ, —ପୃଥିବୀରେ ଯେତେ ପ୍ରକାର ଧର୍ମ ଅଛି, ସେଗୁଡ଼ାକ ଯଦି ଉଠେଇ ଦିଆ ହ'ନ୍ତା, ଓଲଟି କୁହା ହ'ନ୍ତା, ଯେ ଧର୍ମରେ ବିଶ୍ୱାସ କରିବ, ତାକୁ ବର୍ଷେ ଜେଲ୍ । କ'ଣ କ୍ଷତି ହ'ନ୍ତା ?"

ଲାଗିବ ଆଲୋଚନା ।

ଯୁକ୍ତିକୁ ଯୁକ୍ତିରେ ସେ କାଟିକୁଟି ଥୋଇଦେବେ । ଚାହିଁବେ, ଏକା ମୁଁ ନୁହେଁ, ଅନ୍ୟମାନେ ବି ସେ ଯୁକ୍ତିଯୁଦ୍ଧରେ ମିଶନ୍ତୁ ।

ମଝିରେ ମଝିରେ କୁହା ଚାଲିଥିବ "ଆମେ ମାନିବୁ ନାଇଁ, ଏଁ ! ତେମେ ଖାଲି କହିଲେ ଆମେ ଆଖିବୁଜି ମାନିଯିବୁଁ ? ନଜିର ବତାଅ, ପ୍ରମାଣ ଦିଅ, ଯୁକ୍ତି ବାଢ଼, ତେବେ ସିନା ?"

"ଆପଣଙ୍କର ସାଙ୍ଗରେ ଆମେ ଯୁକ୍ତିରେ ପାରିବୁଁ ?"

"କାହିଁକି ? ତେମେ କ'ଣ ମଣିଷ ନୁହଁ ? ଏ ଗୌଣ ମନୋବୃତ୍ତି କାହିଁକି ? ତୁମେ କ'ଣ ଭାବୁଚ ସଂସାର ଭିତରେ ମୁଁ ସବୁଠୁ ବୁଧିଆ ? କେଭେ ନୁହେଁ । କ'ଣ ମୋ ଆକାର ଦେଖି ଡରିଯାଉଚ ? ଦେହର ଆକାରକୁ ଦେଖି ମଣିଷର ବୁଦ୍ଧି ଡରିଯିବ ? ବାଃ, ତେବେ ତ ମଣିଷ ଖାଲି ପଶୁମାନଙ୍କର ଚାକର ହୋଇଥାନ୍ତା । ସେକଥା ନୁହେଁ, ବୁଦ୍ଧିକୁ ବୁଦ୍ଧି କାଟେ, ମୁଣ୍ଡକୁ ଇଟା ଫୋପାଡ଼ିଲେ ବୁଦ୍ଧି କଟେ ନାହିଁ । ବାହାବଳ ଦେଖେଇଲେ ବୁଦ୍ଧି କାଟି ହୁଏ ନାହିଁ । ଯୁକ୍ତିଟିଏ ପଡ଼ିଲା, ତୁମେ ଯୁକ୍ତି କର । କିଛି ମନେ ପଡୁ ନାହିଁ ଭାବୁଚ, ତେବେ ମହଲତ୍ ନିଅ, ଆମେ ରାଜି ହେବା, ଆଜି ଏ ଯୁକ୍ତି ଏତିକି ଥାଉ ଆଉ ଦିନେ ଏଇଠୁ ଧରିବା । ପୁଣି ଲଢ଼ିବା । ଭାବି ଶିଖ, ନିଜେ ଭାବି ଶିଖ । ଥିରିହୋଇ ବସ, ଭାବ, ଯାହା ଯୁକ୍ତି ମନେପଡୁଛି, କାଗଜରେ ଟିପ, ତା ବିଷୟରେ ଭାବ, ଫେର୍ ଆସ ।"

ସେ କହନ୍ତି "ଅସଲ ଯେ ମୁଣ୍ଡ । ସବୁ ଗଢ଼ିବାକୁ ଚେଷ୍ଟାକର ଫାଷ୍ଟ୍ ପ୍ରିନ୍‌ସିପ୍ଲସ୍ (ମୌଳିକ ସୂତ୍ର)ରୁ ଆରମ୍ଭ କରି । ସବୁ ଜ୍ଞାନ ବିଜ୍ଞାନ ସେମିତି ତିଆରି ହେଲା । ସବୁ ମୁନି ଋଷି ସେମିତି ତିଆରି ହେଲେ । ବ୍ୟବହାରରେ ଭଦ୍ର ସୁବୋଧ ହବ ସିନା, ବିଚାର ବେଳେ ସ୍ୱାଧୀନ ହେବ । ସବୁବେଳେ ପ୍ରଶ୍ନ କରିବ "କାହିଁକି ? କାହିଁକି ?" ତା ଉତ୍ତର ଖୋଜିବ । ବିଚାରବେଳେ ଅଳ୍ପକେ ସନ୍ତୁଷ୍ଟ ହେବ ନାହିଁ । ଚାରିଆଡ଼ୁ ଦେଖିବ । ଆଖି ବୁଜି ବିଶ୍ୱାସ କରିବ ନାହିଁ । କଲେ ତା ନାଁ ଅନ୍ଧବିଶ୍ୱାସ, ସେମିତି ଆଚରଣର ନାଁ' କୁସଂସ୍କାର । ମୌଳିକ ହୁଅ, 'କପି' ହୁଅ ନାହିଁ ।"

ତାଙ୍କର ଶିକ୍ଷାଦାନ କାର୍ଯ୍ୟ ଏଇ ଧରଣର । ସେ କାର୍ଯ୍ୟକ୍ରମ ଭିତରେ ପାଠ ପଢ଼ାଇବା ଗୋଟିଏ ଅଂଶ, ସବୁଯାକ ନୁହେଁ ।

ସେ କହନ୍ତି "ମୌଳିକ ଚିନ୍ତା କରୁ କରୁ ଆଗ ଆଗ ତୁମେ ଝୁଣ୍ଟି ପାର, କଚଡ଼ା ଖାଇପାର, ତା ନ ହେଲେ ଚାଲି ଶିଖି ପାରିବ ନାହିଁ । ମଣିଷ ଏମିତି ମଲାଯାକେ ଶିଖୁଥାଏ । କେହି ସଂପୂର୍ଣ୍ଣ ନୁହେଁ ।

ଲୋକେ ହସିବେ । ଲୋକଙ୍କ କଥାକୁ ଛକ କାହିଁକି ? ଛକ ନିଜର ବିବେକକୁ । ଯେଉଁମାନେ ଲୋକଙ୍କ କଥାକୁ ଡରି ଦଶଜଣଙ୍କୁ ଦେଖି ଅନୁକରଣ କରନ୍ତି ସେମାନେ ମଣିଷ ହୁଅନ୍ତି ନାହିଁ, ତାଙ୍କ ମୁଣ୍ଡରୁ କୌଣସି ନୂଆ କଥା ବାହାରେ ନାହିଁ । ଅନ୍ୟମାନେ ଯାହା କହିଛନ୍ତି, କରୁଛନ୍ତି, ସେଇଆକୁ ନକଲ କରି କରି ତାଙ୍କ ଦିନ ଯାଏ । ତାଙ୍କ ମୁଣ୍ଡ ମୂଳରୁ ବିକା, ବିଚାର ବିବେକ ପରଠି ବନ୍ଧା, ସେମାନେ ଗୋଟିଏ ଗୋଟିଏ କଳ, ପର ଇଙ୍ଗିତରେ ନାଚନ୍ତି । ତୁମେ ସେମିତି ହୁଅନାହିଁ, ନିଜେ ଭାବି ଶିଖ, ନିଜେ ଉଦ୍‌ଭାବନ କର ।

ଏକା ଓଡ଼ିଶା ନୁହେଁ, ସାରା ଭାରତକୁ ଦେଖ । କେଡ଼େ ପୁରୁଣା ଖାନ୍ଦାନି ଯେ ଦେଶ, ଯା'ର ପ୍ରତି ପ୍ରଦେଶ, ପ୍ରତି ଗାଁ ଗଣ୍ଡା । ଏଇ ଭାରତ ଆଗେ କେଡ଼େ ପ୍ରସିଦ୍ଧ ହେଇଥିଲା । ଅନ୍ୟ ସମସ୍ତେ ସବୁ ଦେଶ ଆଁ କରି ଅନେଇଥିଲେ ଯେ କ'ଣ କହିବ ଶିଖିବେ ବୋଲି । ଯେ କ'ଣ କରୁଚି, ତାକୁ ଅନୁକରଣ କରିବେ ବୋଲି । ସେତେବେଳେ ଯେ ଏ ଦେଶର ବଳ ଥିଲା, ମର୍ଯ୍ୟାଦା ଥିଲା । କାହିଁକି ? ଏ ଦେଶର ଲୋକେ ନିଜ ମୁଣ୍ଡ ଖର୍ଚ୍ଚ କରି ନୂଆ ନୂଆ କଥା ଭାବି ଭାବି ବାହାର କରୁଥିଲେ । ସେଇ ମୁଣ୍ଡରୁ ବେଦ, ବେଦାନ୍ତ, ଗୀତା, କେତେ କେତେ ଦର୍ଶନ, କେତେ କେତେ ଜ୍ଞାନ ବାହାରିଲା । ସେଇ ମୁଣ୍ଡରୁ କେତେ କେତେ ବୁଦ୍ଧି ବାହାରିଲା ଯେ, ସେହି ଅନୁସାରେ ଚଳି

ଏ ଦେଶଲୋକ ବଳୁଆ, ପାଠୁଆ, ଧନୀ, ଯୋଦ୍ଧା, ପଣ୍ଡିତ, ଋଷି, — କେତେ କଥା ହେଲେ । ମହାପୁରୁଷ ହେଲେ । ସେଉଠୁ କ୍ରମେ ଏ ଦେଶର ଲୋକେ ଆପଣା ବିଚାର ଆପଣା ମତ ଛାଡ଼ିଦେଲେ । ଆଉ ନିଜେ କିଛି ଭାବିଲେ ନାହିଁ । ମୁଣ୍ଡରେ ମୁରୁଚା ଲାଗିଗଲା । ବୁଦ୍ଧି ବଳ କିଛି ବାହାରିଲା ନାହିଁ । ସେଉଠୁ ବିଦେଶୀ ଲୋକେ ଆସି ତାଙ୍କ ଉପରେ ରାଜୁତି ଚଳେଇଲେ, ତାଙ୍କୁ ମେଣ୍ଢା କରି ରଖିଲେ । ସରିଗଲା । ଏ ବିଦେଶୀ ରାଜତ୍ୱ ରହିବ ନାହିଁ । ଏ ଯିବେ, ...'' ସେ ଦୂରକୁ ଦେଖିଲା ପରି ଭାବାବିଷ୍ଟ ରହି କହୁଥାନ୍ତି,

''ଶହ ଶହ ବର୍ଷର ନିଦ ଝାଡ଼ିଝୁଡ଼ି ଦେଇ ଭାରତ ଆଖି ମଳି ମଳି ଉଠିପଡ଼ୁଚି । ସେ ଉଠିଲେ ଆଉ କିଏ ଅଛିଯେ, ତାକୁ ଅଟକେଇବ ? ଛନଛନିଆ ଟୋକାସବୁ ମାଡ଼ି ଆସୁଚନ୍ତି । ତାଙ୍କଠିଁ ସାହସ ଅଛି, ବଳ ଅଛି, ବୁଦ୍ଧି ଅଛି, ସବୁ ଅଛି । ଆହୁରି ବାହାରିବେ । ସେମାନେ ହାତଯୋଡ଼ି ଆଖିବୁଜି ଶୁଣାକଥା ମାନିବେ ନାହିଁ, କହିବେ ଆମୁକୁ ପ୍ରମାଣ ଦେଖା ।

ଆଉ ତେମେ ସବୁ, ଆଜହୁଁ ତେମେ ସବୁ ଯଦି ନିଜକୁ ତାଲିମ ନ କରିବ, ତେମେ ପଛରେ ପଡ଼ିଥିବଟି ! ସାରା ଭାରତର ଲୋକେ ଆଗେ ଆଗେ ଚାଲିଥିବେ, ତେମେ ଓଡ଼ିଆ ପଡ଼ିଥିବ ସାତ ପଛରେ । ଓଡ଼ିଶାର କି ଅଧଃପତନ ଦେଖୁଛ ? ସେ ଦଶା ଆହୁରି ବଢେଇବ ।

କି ଦଶା ହେଲାଣି ଓଡ଼ିଶା ! ଭାବିଚ କେବେ ? କେମିତି ଦେଶ ଉନ୍ନତି କରିବ, ସେଥିପାଇଁ କାହା ମୁଣ୍ଡ ବଥାଉଚି ? ସମସ୍ତେ ନିଜେ ନିଜେ ଗଢ଼ିଲେ ସିନା ହୁଅନ୍ତା । ଖାଲି ଆପଣା ଆପଣା ପେଟଚିନ୍ତା । ଛୋଟ ବୁଦ୍ଧି, ଛୋଟ କଥା । ନିଜ ଭିତରେ କଳି । ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ଓଡ଼ିଆ ସ୍ୱର୍ଗକୁ ଗଲେ ବି ଆପଣା ଆପଣା ଭିତରେ କଳି କରନ୍ତି ।

ଆଉ ତମ ବାହାପିଆମିକୁ ଆଗ । ଆମେ ଗଢ଼ିଥିଲୁ ପୁରୀ ଦେଉଳ, ଲିଙ୍ଗରାଜ ଦେଉଳ, କୋଣାର୍କ ଦେଉଳ । ଆମେ ଦିଗ୍‌ବିଜୟ କରିଥିଲୁଁ, ଅମୁକ ଦେଶ ଅମୁକ ଦେଶ ଜିଣିଥିଲୁଁ । ଆମର ଏଡ଼େ ବଡ଼ ଇତିହାସ ଅଛି । ଆରେ ସେ ତ ପୁରୁଣା କଥା ହୋ, ଶହ ଶହ ବର୍ଷ ତଳର କଥା । ତା'ପରେ କ'ଣ କଲ ? ଏବେ କ'ଣ କଲ ? ଖାଲି ଭାଟଗିରି ?

ଆମ ଓଡ଼ିଶା ଉପରେ ସତେ ଯେମିତି ଅଭିଶାପ ପଡ଼ିଚି । ଗଜା ଭେଣ୍ଡିଆମାନେ ଦିଶୁଚନ୍ତି ଝିଣ୍ଟିକା ପରି । ତମ ଖାରବେଳ ପରା ମଗଧକୁ ଜିତିଥିଲା, ଅଇଛା

ତେମେ ପାରିବ ଯେ ବିହାରୀ ଟୋକାଙ୍କୁ ? ସେଥିରୁ ଗୋଟିଏ ହେଲେ ତମ ପରି କେଇପୁଞ୍ଜା ? ଲାଜ ମାଡୁନାଇଁ ? ତମର କୋଉ କୋଉ ରଜା ପରା ବଙ୍ଗଦେଶକୁ ଜିତିଥିଲେ ? ଅଇଛା କୋଉଥିରେ ତାଙ୍କୁ ତୁମେ ଟପିଯିବ ? ଦେଖୁଚଟି ? କିଏ କୋଉଥିରେ ନାଁ'ଟାଏ କରନ୍ତି କି ! ଆମ ମନ ଶାନ୍ତି ପାଆନ୍ତା । ଆମେ ତ ପାରିଲୁ ନାଇଁ, ନାଁ ବୁଡ଼େଇଲୁ, ତୁମେ ସବୁ ହେଲ ଆହୁରି ନିପଟ । ତା ହେଲେ କି ଯଶ କି ଗୌରବ ଦେଖିବୁଁ ବୋଲି ଆମେସବୁ ବଞ୍ଚିବୁ ? ଆମେ ମରିଯିବା ଭଲ ।''

ସେ ଏପରି ଭାବରେ ଦେଶାତ୍ମବୋଧ ତିଆରି କରନ୍ତି ଯେ, ଦେହରେ ନିଆଁ ଖେଳିଯାଏ, ଆଖିରୁ ଝରଝର ବୁହେ, କହନ୍ତି ''କାନ୍ଦ, କାନ୍ଦ ଦେଶ ପାଇଁ କାନ୍ଦ, ତା ହେଲେ ବି କାଳେ ଭଗବାନଙ୍କର ଦୟା ହେବ, ପଥର ତରଳିବ ! କାନ୍ଦି କାନ୍ଦି ପ୍ରତିଜ୍ଞା କର, ଏ ପବିତ୍ର ଜଗନ୍ନାଥ ଦେଶରେ ମୋର ଜନ୍ମ, ମୁଁ ଯେମିତି ଦେଶ ପ୍ରତି ମୋ କର୍ତ୍ତବ୍ୟ କରେଁ । କର୍ତ୍ତବ୍ୟର ବାଟ ସେହି ଜଗନ୍ନାଥ ଦେଖାଇବେ, ଯାହା ପାଇଁ ଯେଉଁ ବାଟ ଭଲ, ସେହି ବାଟ । ଆନ୍ତରିକତା ନଥିଲେ ସେ ବାଟ ଦେଖାନ୍ତି ନାହିଁ ।

ଆରେ ଏ ଟିକିଏ ନାକ ସୁଁ ସୁଁ କୋଉ ବଡ଼ କଥା ! ଗୋପବନ୍ଧୁ ଦାସ ତ ଭୋ ଭୋ କାନ୍ଦନ୍ତି, ଦିନ ରାତି, କେତେବେଳେ ପାଟ୍ନା ଆସେମ୍ବ୍ଲି ଘରେ ତ କେତେବେଳେ ପୁରୀ ସିଂହ ଦୁଆରରେ । କେତେବେଳେ ସତ୍ୟବାଦୀରେ ତ କେତେବେଳେ ଭାର୍ଗବୀ ନଈରେ ! ଆହା କେଡ଼େ ବଡ଼ ଦେଶଭକ୍ତ, ମହାପୁରୁଷ ! ମିଷ୍ଟର୍ ଦାସଙ୍କ ସାରା ଜୀବନ ତ ଓଡ଼ିଶା ପାଇଁ କାନ୍ଦଣା, ଆଉ କିଏ ପାରିଲା କି ?

ଦେଶ ପାଇଁ କାନ୍ଦିଲେ ତୁମେ ନିଜେ ପବିତ୍ର ହେବ ।

କିନ୍ତୁ କାମ ଦରକାର । ପ୍ରତି ମୁହୂର୍ତ୍ତ ହିଁ ମୂଲ୍ୟବାନ୍ । ପ୍ରତି ମୁହୂର୍ତ୍ତ ପାଇଁ କାମ ଅଛି । ଲାଗିପଡ଼ ।''

ମୁଁ ଅନୁଭବ କରେଁ, ସେହି ବିରାଟ ବ୍ୟକ୍ତିତ୍ୱ ପଛଆଡ଼େ ସମୁଦାୟ ପଟ୍ଟଭୂମି ଶୂନ୍ୟହୋଇ ଅଦୃଶ୍ୟ ହୋଇଯାଏ । ସବୁ ଅଦୃଶ୍ୟ ହୋଇଯାଏ ।

ଖାଲି ମୋ ଆଗରେ ସେ ।

କେଉଁ ହଜିଲା ଶତାବ୍ଦୀର ପ୍ରାଚୀନ ଯୋଗୀ-ଗୁରୁ ସତେ ଯେମିତି ଶିଷ୍ୟକୁ ଉଦ୍‌ବୋଧନ ଦେଉଛନ୍ତି !

ଅନ୍ଧାର ଭିତରେ ଗମ୍ଭୀର ଚାଲିରେ ଏପାଖ ସେପାଖ ହେଉଛନ୍ତି, ରହି ରହିକା ପଦେ ପଦେ କଥା, ଅଣନିଶ୍ୱାସୀ ହୋଇ ଦାନ୍ତ ଚିପି ଚିପି ପଥର ଉପରେ ଖୋଳି ଖୋଳି ଲେଖି ଗଲାପରି ସ୍ପଷ୍ଟ ଟାଣ, —ଅନିଭା, ଅଭୁଲା ।

"ପଢ଼ିଯା, ଆହୁରି ଆଗକୁ, ଆହୁରି, ଆହୁରି, ବହୁତ ବାକି, —ନିଜକୁ ତିଆରି କର, ଧୀର ମତିରେ, ସ୍ଥିର ବୁଦ୍ଧିରେ, ନିଶ୍ଚିତ ଗତିରେ । ସବୁବେଳେ ଚାଲିଥା ଉପରକୁ ଉପରକୁ । ସେଉଠୁ ପକ୍ଷ ମେଲିଦିଅ, ଯା ଉଡ଼ି ଆକାଶକୁ, ମୁଣ୍ଡ ଠିକ୍ ରଖିଥା, ଚାଲିଥା ।

ଦେଶକୁ କିଛି ଦେଇଯା, ଦର୍ଶନ, ସାହିତ୍ୟ, ଜ୍ଞାନ ବିଜ୍ଞାନ । ଦେଶର ଗୌରବ ବଢ଼ାଅ ।

ହଲପ କର, ଭଗବାନଙ୍କ ନାଁ ଧରି ହଲପ କର, ମୁଁ ମୋ ଦେଶର ଗୌରବ ବଢ଼ାଇବି, ନ ହେଲେ ମରିବି । କାର୍ଯ୍ୟଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ । —ଘଣ୍ଟାର କଣ୍ଟା ବୁଲୁଚି, ଯେଉଁ ସମୟ ଗଲା, ସେ ଆଉ ଫେରିବ ନାହିଁ ।

ତୁମର ଦେଶ ଅପେକ୍ଷା କରିଛି, ତୁମ ବାପା ତୁମ ଅଜା ଅନେଇଁଚନ୍ତି, ଅନେଇଁଚନ୍ତି ଅତୀତର ମହାପୁରୁଷମାନେ, ସେମାନେ କିଭଳି ଦେଶ ଛାଡ଼ିଦେଇ ଯାଇଥିଲେ, ଆଉ ଯେ କି ହତଶ୍ରୀ ଦେଶ ! ସେମାନେ କାନ୍ଦୁଛନ୍ତି, ପାଣି ଆଞ୍ଜୁଳାଏ ପିଇଲେ ସେଥିରେ ଲୁହ ମିଶିଯାଉଛି ।

ଧୌତାଶ୍ରୁଶେଷଂ ପିତରଃ ପିବନ୍ତି ।

ତେଣୁ ହଲପ୍ କର—

ଭାବ ଏକଥା, କାମ କର ।"

ମୁଁ ତାଙ୍କ ଘରେ ରହେ ନାହିଁ, କିନ୍ତୁ ତାଙ୍କ ଘରର କଟକଣା ମୁଁ ଲକ୍ଷ୍ୟ କରେ । ସେ ଗୋଟାଏ ଆଶ୍ରମ-ଜୀବନ । କେହି ଅଳସୁଆ ହେବେ ନାହିଁ, ଘଣ୍ଟା ଅନୁସାରେ କାମ ବନ୍ଧା ହୋଇଥାଏ, ସମସ୍ତେ କରିବେ, ସାନ ବଡ଼ ନାହିଁ, କାହା ମନ ମୋଟ ଯେମିତି ନହୁଏ । ବଡ଼ ଲୋକର ପିଲା ଆଉ ଗରିବ ପିଲା—ସମସ୍ତେ ବଗିଚା କାମ, ଗାଈ କାମ, ନିଜ ନିଜ କାମ କରିବେ, ଅନ୍ୟ କାମ ପାଇଁ ପାଳି ପଡ଼େ । ସମସ୍ତେ କସରତ୍ କରିବେ, ଉପରଓଳି ନିଶ୍ଚୟ ଖେଳିବେ, ପଢ଼ା ଘଣ୍ଟାରେ ପାଠ ପଢ଼ିବେ । କେହି ତ୍ରୁଟି କଲେ 'ବିଚାର' ହୁଏ, ବେଳେ ବେଳେ 'ନିଶାପ' ବସେ । ବିନା ଅନୁମତିରେ ସଞ୍ଜ ପରେ କେହି କୁଆଡ଼େ ଯିବେ ନାହିଁ । 'ଆଡ୍ଡା ଦେବା' ମନା ।

ଖବରକାଗଜ ଖାଲି ପଢ଼ାହୁଏ ନାହିଁ, ବିଭିନ୍ନ 'ସମସ୍ୟା' ଆଲୋଚନା ହୁଏ । ତେଣୁ ସେଠି ପିଲାଙ୍କର 'ସାଧାରଣଜ୍ଞାନ' ବି ଭଲ ହୁଏ ।

ଯଦି ଫୁଲ ବଗିଚା, ଫଳ ବଗିଚା, ଘର ଓ ଘର ଚାରିକର ସଫାସୁତୁରା, ପିଲାଙ୍କ ସାଜସଜ୍ଜା, ଖାଦ୍ୟ, ପ୍ରଫୁଲ୍ଲତା ଓ ସ୍ୱାସ୍ଥ୍ୟ, ଗୋରୁଙ୍କ ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟରେ ପୁରସ୍କାର ଦିଆ ହେଉଥାନ୍ତା, ତେବେ ରୋଡ୍ ନମ୍ବର ୧୦, କ୍ୱାର୍ଟର ନଂ ୧୨, ସବୁ ପୁରସ୍କାର ପାଇଥାନ୍ତା, ଏଥିରେ ସନ୍ଦେହ ନାହିଁ ।

ଲୋକେ ଥଟ୍ଟାରେ କହନ୍ତି, "ଜଗତ୍ ବାବୁଙ୍କ ଘରେ ସମସ୍ତେ କୋଦା କୋଦା, ମଣିଷ, ଗୋରୁଗାଈ, କୁକୁର (ମାଈ କୁକୁରଟିଏ, ତା ନାଁ 'ଅପା') ଗଛବୁରୁଛ, ସବୁ ।" ସେହି ପର୍ଯ୍ୟାୟରେ ସେ ଘରୁ ବାହାରନ୍ତି ଦୁଇ ଗୋପାଳବାବୁ ଓ ବୈଷ୍ଣବ ବାବୁ ।

ବିଦେଶରେ ଓଡ଼ିଆ ଇଜ୍ଜତ୍‌ର ଚୂଡ଼ାନ୍ତ ।

ଓଡ଼ିଆ ବୋଲି ତାଙ୍କ ମନରେ ଗର୍ବ ଥିଲା । ସେ କହନ୍ତି "ଦେଖାଶିଖା ଓଡ଼ିଶା" – ଯା ମାନେ କ'ଣ ଜାଣ ?

ଓଡ଼ିଶା ସମସ୍ତଙ୍କୁ ବାଟ ଦେଖାଏ, ସମସ୍ତେ ତାକୁ ଦେଖି ଦେଖି ଶିଖନ୍ତି ।

ପୁରୀରେ ପଶ୍ଚିମା ଯାତ୍ରୀମାନେ ଗୀତ ବୋଲନ୍ତି, ଶୁଣିନ ?

'ବଡ଼େ ବଡ଼େ ଜଗନ୍ନାଥ ହୋ–'

ସବୁ ଏଠି ବଡ଼ ।

ସେଇ ବଡ଼ପଣ ଆମକୁ ଆମ କାର୍ଯ୍ୟରେ, ଚିନ୍ତାରେ, ସବୁଥିରେ ଦେଖାଇବାକୁ ପଡ଼ିବ । ଆଉ ଲାଜ ଲାଜ, ଡର ଡର କାହିଁକି ?

ମ୍ୟାଟ୍ରିକ୍ୟୁଲେସନ୍ ଟେଷ୍ଟ୍ ପରୀକ୍ଷା ପୂର୍ବରୁ କାଳେ ମତେ ଥଣ୍ଡା ଧରିବ ବୋଲି ମୋ ପାଇଁ ଖଣ୍ଡିଏ ଫ୍ଲାନେଲ୍ କାମିଜ୍ କିଣିଦେଲେ । ମୋ ଜୀବନରେ ପ୍ରଥମ ଗରମ କାମିଜ୍ ସେ । ସବୁଦିନେ ଜିଗର ଲଗାନ୍ତି, "ଦିଓଳି ଏଠି ଅନ୍ତତଃ ଜଳଖିଆ ଖାଇ ଯିବ ।" ମୋ ଅପେକ୍ଷା ମୋ ଦେହ ଭଲମନ୍ଦ ଖବର ସେ ବେଶି ବୁଝନ୍ତି । କହନ୍ତି, "ଜର୍ମାନ୍‌ମାନେ ଏଡ଼େ ଉନ୍ନତି କଲେ କେମିତି ? ସେମାନେ ଡିଟେଲ୍ ଜଗନ୍ତି । ଇଂରେଜିରେ ଯାହା କୁହାଯାଏ Nothing should be left to chance, ସେଇଆ ।" ବହି ପାଠ ମୁଁ କେତେଥର ରିଭାଇଜ୍ କଲିଣି, ପ୍ରସ୍ତୁତି ମୋର କେମିତି, ସବୁ ସେ ତଦାରଖ କରୁଥାନ୍ତି । ଘଣ୍ଟା ଦେଖି ପ୍ରଶ୍ନ କାଗଜରେ ଉତ୍ତର ଲେଖିବାକୁ ହୁଏ । ସେ ନମ୍ବର ଦିଅନ୍ତି ।

ଟେଷ୍ଟର ମାର୍କ ଦେଖିଲେ, ସନ୍ତୁଷ୍ଟ ହେଲେ, କହିଲେ ''ଶୋଇପଡ଼ ନାଇଁ, ମନ ମୋଟା କର ନାଇଁ ।'' ପ୍ରତିଦିନ ତଡ଼ି ତଡ଼ି ଖେଳିବାକୁ ପଠାନ୍ତି, ନହେଲେ କୈଫିୟତ୍ ଦେବାକୁ ପଡ଼େ ।

ଫାଇନାଲ୍ ପରୀକ୍ଷା ଆଉ କୋଡ଼ିଏ ଦିନ । ହକି ଖେଳୁଥାଏଁ । ବଲ୍ ଗଡ଼େଇ ଅନ୍ୟମାନଙ୍କୁ ନଚେଇ ନଚେଇ ଆଗକୁ ଯାଉଥାଏ, ହଠାତ୍ ଗୋଟାଏ ବ୍ୟୂହ ଘୋଟିଗଲା ମୋ ଚାରିକରେ, ସବୁ ରଥୀ ମତେ ଘେରିଗଲେ । ଖୁବ୍ ସାହସରେ ବଲ୍ କାଢ଼ିନେଇ ଦୌଡ଼ିଗଲି । ପଡ଼ିଆ କରରୁ ଦେଖଣାହାରୀମାନେ ବ୍ରେଭୋ ବ୍ରେଭୋ ରଡ଼ୁଥାନ୍ତି, କିନ୍ତୁ ଅନୁଭବ କରିଥିଲି ମୋ ବୁଢ଼ାଆଙ୍ଗୁଠି ଗଣ୍ଠିରେ କ'ଣ ମାଡ଼ ହୋଇଯାଇଛି । ଖଣ୍ଡେ ବାଟ ଗଲାପରେ ମୋ ହାତରୁ ହକିବାଡ଼ି ଖସିପଡ଼ିଲା । ମୁଁ ଦେଖିଲି, ସତେକି ମୋ ଡାହାଣ ହାତ ବୁଢ଼ା ଆଙ୍ଗୁଠି ଗଣ୍ଠିଟା ଗୋଟାଏ ହକି ବଲ୍ ପରି ଫୁଲିଯାଇଛି । ଆମର ଜଣେ ପ୍ରିୟ ଶିକ୍ଷକ ମେଜର୍ ରୟ୍ ରେଫରି ହୋଇଥିଲେ, ଦଉଡ଼ିଆସି ମତେ ଧରି ବାହାରକୁ ନେଇଗଲେ । ପକେଟ୍‌ରୁ ଏମ୍ବ୍ରୋକେସନ୍ କାଢ଼ି ଫୁଲା ଜାଗାରେ ଖୁବ୍ ରଗଡ଼ିଲେ । ମୋ ଆଖିରୁ ପାଣି ବାହାରି ପଡ଼ିଲା । ତା'ପରେ ଘରକୁ ଆସିଲି । ସାଙ୍ଗ ପିଲାଏ ଭାରି ଦୁଃଖିତ ହେଲେ ।

ପିଲାଦିନେ ବଡ଼ଭାଇଙ୍କ ଦାନ୍ତରେ ହକିବଲ୍ ବାଜି ଦାନ୍ତରୁ ଫାଳେ ଭାଙ୍ଗିଥିଲା । ଦାନ୍ତଟା ପଡ଼ିବାଯାକେ ସେ ସ୍ମୃତି ରହିଲା । ସେ ମତେ ବାରମ୍ବାର ମନା କରିଥିଲେ – ''ହକି ଖେଳିବୁ ନାଇଁଟି !''

ଭାବିଲି, ମୋ ଡାହାଣ ପାପୁଲି ବୁଢ଼ା ଆଙ୍ଗୁଠିଟା ଗଲା, ଆଉ ସେ ହାତରେ ଲେଖି ପାରିବି ନାହିଁ, ଆଉ ପରୀକ୍ଷା ଦେଇପାରିବି ନାହିଁ, ସବୁ ଆଶା ଗଲା ।

ବଡ଼ ଭାଉଜୋଉ ବୁଝେଇଲେ, ''ଭଗବାନଙ୍କୁ ଡାକ, ଭଲ ହୋଇଯାଉ ।''

ବୋଉ ମୋ ସଙ୍ଗରେ କାନ୍ଦିଲା । କହିଲା, ''ଆହାରେ ଦଇବ, ଗରିବ ବାପଛେଉଣ୍ଡ ଛୁଆ ଦେଖିଲେ ଦାଉ ସାଧୁ !''

ସେହି ସଞ୍ଜରେ ଜଗତ୍‌ବାବୁଙ୍କୁ ବି କହିବା ଉଚିତ । ମୋର ସବୁ ହାନିଲାଭ ତାଙ୍କୁ କହିବା ଦରକାର । ଯେ ତ ମୋର ଐତିହାସିକ ଦୁର୍ଦ୍ଦଶା !

ଛାତି ଦାଉଁ ଦାଉଁ ପଡୁଥାଏ, କ'ଣ ସେ ହେବେ, କ'ଣ ସେ ଭାବିବେ, ଏଇଆ କଳ୍ପନା କରି କରି । ତାଙ୍କର ଏତେ ପରିଶ୍ରମ, ଏତେ ଆଶା,

ମୋ ଉପରେ ଏତେ ବିଶ୍ୱାସ ଓ ଭରସା, ମୁଁ ଦେଲି ଏଇ ପରିଣତିର ପ୍ରତିଦାନ ।

ମୋ ମୁହଁକୁ ଚାହିଁଦେଇ ସେ କ'ଣ ଅନୁମାନ କଲେ । କହିଲେ "କିଛି ଗୋଟାଏ ହେଉଚି ତ, କହୁନ ?"

ଅତି କଷ୍ଟରେ ନିଜକୁ ସମ୍ଭାଳିଲି । ତା'ପରେ ଅଟକେଇ ଅଟକେଇ ହୋଇ ମୋ କାହାଣୀ କହିଲି, ବୁଢ଼ା ଆଙ୍ଗୁଠି ଦେଖାଇଲି ।

ସେ ସିଧା ମୋ ଆଖିକୁ ଅନେଇଁଲେ । କହିଲେ – "ଭାସିଗଲା କ'ଣ ? ହକି ଖେଳୁଥିଲ, ଆଙ୍ଗୁଠି ଗଣ୍ଠିରେ ମାଡ଼ଟାଏ ବାଜିଲା । ବାଜୁ । ତା ବୋଲି କ'ଣ ହକି ଖେଳନ୍ତ ନାହିଁ ? ବ୍ୟାଟ୍ ଧରି ପାରିଲେ ପୁଣି ଖେଳ, ସବୁଦିନେ ଖେଳ, ଖେଳିବା ଉଚିତ । ମୁଁ ତ ଭାବୁଚି ଯେ ସ୍ପ୍ରେନ୍, ଯେ ଫ୍ରାକ୍‌ଚର୍ ନୁହେଁ । ଦେଖାଯାଉ, ଓଦା ବାଲିକନା ବାନ୍ଧ, ଭଲ ହେଲେ ହେବ । ଡାକ୍ତରି ଚିକିତ୍ସା କରାଇବା । ଯେତେଦିନ ଲାଗୁ । ଭଲ ହେଲେ ପରୀକ୍ଷା ଦବ, ନହେଲେ ରହିଲା, ଆର ବର୍ଷ ପରୀକ୍ଷା ଦବ, ଫାଷ୍ଟ୍ ହବ, କ୍ଷତି କ'ଣ ? ପରୀକ୍ଷା ନଦେଇ ପାରିଲେ କ'ଣ ହେଇଯାଉଛି ଯେ, ଏଥିପାଇଁ ତମ ମୁହଁ ଶୁଖିଯାଇଛି ? ତୁମେ ତୁମ କର୍ତ୍ତବ୍ୟ କରିଛ, ସେଥିରେ ହେଳା କରିନା, ସେଇ ମୋର ସନ୍ତୋଷ । ତୁମ ମୂଲ୍ୟ ତୁମେ ସିନା ଜାଣିନା, ମୁଁ ଜାଣିଛି, ସେଇ ମୋର ସନ୍ତୋଷ । ତୁମେ ଆଖି ଆଗରେ ଉଚ୍ଚ ଆଦର୍ଶ ରଖି ଅନବରତ ପରିଶ୍ରମ କରିଯାଇଛ, କେବେ ତ୍ରୁଟି କରିନା, ସେଇ ମୋର ସନ୍ତୋଷ । ମୋ ମନରେ ଅବଶୋଷ୍ ନାହିଁ । ଆକସ୍ମିକ ଦୁର୍ଘଟଣା ପାଇଁ ତୁମେ ତ ଦାୟୀ ନୁହଁ । ବାଟରେ ଯାଉଚ, ସାପ କାମୁଡ଼ିଦେବ, ତୁମର କି ଦୋଷ ? ମଣିଷର ଦର କ'ଣ କଷାଯାଏ, ସେ କ'ଣ ପାଇଲା ସେଇଆକୁ ମାପ କରି, ନା ସେ କ'ଣ ପାଇବ ବୋଲି ଚେଷ୍ଟା ଚଳେଇଥିଲା, ତାକୁ ମାପ କରି ? ହଇଓ, ଟିକି ପିଇସା ? ପଢ଼ିଚ କବି ବ୍ରାଉନଙ୍କ ଗ୍ରାମାରିଆନ୍‌ସ୍ ଫ୍ୟୁନରେଲ୍ ?

ଦ୍ୟାଟ୍ ଲୋ ମ୍ୟାନ୍ ଗୋଜ୍ ଅନ୍ ଆଡିଂ ୱାନ୍ ଟୁ ୱାନ୍,
ହିଜ୍ ହଣ୍ଡ୍ରେଡ୍ ଇଜ୍ ସୁନ୍ ହିଟ୍
ଦିସ୍ ହାଇ ମ୍ୟାନ୍ ଏମିଂ ଏଟ୍ ଏ
ମିଲିଅନ୍ ମିସେସ୍ ଦି ୟୁନିଟ୍ ।

ଭଗବାନ କରନ୍ତୁ, ତୁମେ ହୁଅ ସେଇ ହାଇ ମ୍ୟାନ୍, ଆଜି ନୁହେଁ,

ଜୀବନଯାକ । ତୁମେ ସେଇଆ ହବ ଯେ, ''ହସିଦେଲେ, କହିଲେ ''ତୁମ କାନରେ ସେଇଆ ତ ଫୁଙ୍କା ହୋଇଛି, ତୁମର ମୋର ସମ୍ବନ୍ଧଟା ତ ଖାଲି ଏ ଜନ୍ମର ନୁହେଁ, ବହୁ ଜନ୍ମର । ଏଇଟା ଆତ୍ମିକ ସମ୍ବନ୍ଧ । ସେଇଥିପାଇଁ ତୁମେ ବି ହେବ ସେଇଆ । ଦୁନିଆଁ ତା'ର ଲାଭ ଲୋକ୍‌ସାନ୍‌ର ହିସାବ କଷି କଷି ହିସାବୀ ହୋଇ ଚଳୁଥାଉ, ନ କହୁ ତମ୍ଭକୁ 'ପ୍ରାକ୍‌ଟିକାଲ୍' ବୋଲି ।

ଅତି ଦୁଃଖରେ ଅତି ଆଶଙ୍କାରେ ମୁଁ ଯାଇଥିଲି, ଫେରିଲି ଖୁବ୍ ମନଖୁସିରେ ।

ଦରଜ ରହିଲା, ସେଉଠୁ ମୁଁ ଅଭ୍ୟାସ କରିବାକୁ ଲାଗିଲି ଯେ, କି ବାଗରେ ମୁଁ ବୁଢ଼ାଆଙ୍ଗୁଠି ସାହଯ୍ୟ ନ ନେଇ ଲେଖିପାରିବି । ବାଁ ହାତରେ ଲେଖିବାକୁ ବି ଚେଷ୍ଟା କଲି । ପ୍ରାୟ ପନ୍ଦର ଦିନ ପରେ ଦରଜ ଛାଡ଼ିଗଲା । ପରୀକ୍ଷା ଦେଲି । ଖାଲି ଶେଷ ଦିନ ଟିକିଏ ଦରଜ ଲାଗିଲା ।

ପରୀକ୍ଷା ବେଳେ ତାଙ୍କ ଘରେ ଖାଇ ଯିବାକୁ ନିର୍ଦ୍ଦେଶ ଦେଇଥିଲେ । ଦହି ମାଛ କଲେ । ପୂର୍ଣ୍ଣକୁମ୍ଭ ବସାଇଲେ । ମତେ ଠାକୁରମନ୍ଦିର ନେଇ ଦର୍ଶନ କରାଇ ବେକରେ ଫୁଲ ମାଳଟିଏ ପକାଇ ଅଣାଇଲେ । ମୋ ହାତରେ ତାଙ୍କ ଘଣ୍ଟା ବନ୍ଧାଗଲା । ମୋ ଦେହରେ ତାଙ୍କର ଶାଲ୍ ପକାଇ ଦିଆଗଲା, ମତେ ଘୋଡ଼ାଗାଡ଼ିରେ ବସାଇ ବିଦା କରାଗଲା । ବାଙ୍କିପୁରରେ ପାଟ୍‌ନା କଲେଜିଏଟ୍ ସ୍କୁଲ୍‌ରେ ପାଟ୍‌ନା ଜିଲ୍ଲାଯାକ ପିଲାଙ୍କ ପରୀକ୍ଷା ।

ପରୀକ୍ଷା-ଘରେ ମୁଁ ପରୀକ୍ଷା ଦେଉଥାଏଁ । ସେଦିନ ଓଡ଼ିଆ ଥାଏ । ଜଣେ ସମୀକ୍ଷକ ମତେ ଆସି କହିଲେ – ''ଜାଣିଚ ପାଟ୍‌ନା କେନ୍ଦ୍ରର ପରୀକ୍ଷାର୍ଥୀଙ୍କ ଭିତରେ ତୁମେ ହିଁ ଏକମାତ୍ର ଓଡ଼ିଆ ।''

ମୁଁ କହିଲ ''ମୁଁ ପରା ଓଡ଼ିଶାର ପ୍ରତିନିଧି !''

ଆମେ ଦିହେଁ ହସିଲୁଁ ।

ପରୀକ୍ଷା ଦେଇ ସାରିଲା ପରେ ୧୯୩୦ ମାର୍ଚ୍ଚ ମାସରେ ମୁଁ ପାଟ୍‌ନାରୁ ଆସିଲି । ଜଗତ୍‌ବାବୁଙ୍କ ସଙ୍ଗେ ପୁଣି ଦେଖା ହେଲା । ୧୯୩୬ ଅପ୍ରେଲ୍ ମାସରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ସେମାନେ ସମସ୍ତେ କଟକ ଆସିଲେ । ସେ କଟକ ପିଟିନ୍ ସାହି ଗୀର୍ଜା ଘର ପାଖ ଘରଟିଏ ଭଡ଼ା ନେଇଥାଆନ୍ତି । ବଡ଼ ପୋଖରୀ ଉପରେ । ପଛେ ସେ ଘରକୁ କିଣିଲେ । ୧୯୩୬ରେ ମୁଁ ଏମ୍.ଏ. ପାଶ୍ କଲି । ୧୯୩୭ ଜାନୁଆରୀରେ ମୁଁ ଦିଲ୍ଲୀରେ ଆଇ.ସି.ଏସ୍. ପରୀକ୍ଷା ଦେଲି । ସେ ପରୀକ୍ଷା ଦେବାକୁ ସେ ମତେ ପ୍ରବର୍ତ୍ତାଇ ଥିଲେ

ଓ ମୋର ଖର୍ଚ୍ଚ ପାଇଁ ଟ ୧୦୦ ଙ୍କା ଦେଉଥିଲେ । ତା'ପରେ ମୋ ଉପର ଭାଇ ଦୁହିଁଙ୍କଠୁଁ ଆଉ ଟ ୨୦୦ ଙ୍କା ମୁଁ ନେଲି ।

୧୯୩୮ ସେପ୍ଟେମ୍ବର ୧୦ରେ ମୁଁ ସବ୍‌ଡିପୋଟି ହେଲି । ପ୍ରଥମ ଦି'ମାସର ଦରମାରୁ ତାଙ୍କର ଖହେଟଙ୍କା ଦେଇଦେଲି । କିନ୍ତୁ ତାଙ୍କଠୁଁ ଯେତେ ସ୍ନେହ, ଯେତେ ଉପକାର ମୁଁ ପାଇଛି, ସେ କାହାରି ହେଲେ ପରିଶୋଧ କରିବା କଳ୍ପନା ବାହାରେ ।

ଚାକିରି କରି କଟକଠୁଁ ଦୂରରେ ରହୁଥାଏ । ସେତେବେଳେ ଦେଖା ୧୯୫୦ରେ କୁଲାଡ଼ରେ, ଯେତେବେଳେ ସେ ବେମାର ପଡ଼ିଥିଲେ ଓ ଆସ୍କାକୁ ମୋ ବସାକୁ ଦିନେ ଦି'ଦିନ ପାଇଁ ଆସିଲେ । ପୁଣି ୧୯୫୪-୫୬ ବେଳେ ପୁରୀରେ, ସେ ସେଠି ଥିଲେ । ଯେତେବେଳେ ପହଞ୍ଚିଲେ ଖୁବ୍ ଖାଇବାକୁ ଦିଅନ୍ତି । ସେହି ସ୍ନେହ, ସେହି ଉଦାରତା ।

> "ଅସ୍ତି ଗୋଦାବରୀ ତୀରେ
> ବିଶାଳଃ ଶାଲ୍ମଳୀ ତରୁଃ
> ତତ୍ର ନାନା ଦିଗ୍‌ଦେଶାତ୍
> ଆଗତ୍ୟ ପକ୍ଷିଣଃ ନିବସନ୍ତି ।"

ସେହି ବିଶାଳ ଶାଲ୍ମଳୀ-ତରୁ ନାଆଁ ଜଗଦ୍‌ବଲ୍ଲଭ ଦାସ । ଆଉ ସେ ପକ୍ଷିଣଃ — ନାନା ଆଡ଼ର, ନାନା ଜାତି, ନାନା ଶ୍ରେଣୀ, ନାନା ବୟସ । ତହିଁରେ ନାନା ଉଦୀୟମାନ ବ୍ୟକ୍ତି ।

ସେ ଜଗତଯାକର ବନ୍ଧୁ । ସେ ସମସ୍ତେ ତାଙ୍କର ଧାରୁଆ । ଏତେ ସ୍ନେହ ଏତେ ସାହାଯ୍ୟ, ଏତେ ଉଦାରତା, ଘରପିଛା ଏତେ ଖର୍ଚ୍ଚ, —କିଏ ତା'ର କି ପ୍ରତ୍ୟୁପକାର କଲା, ତା ହୃଦୟ କହିବ । ସେ କେବେ ଉଘେଇ ନାହାନ୍ତି । ସେ କେବେ କହି ବୁଲିନାହାନ୍ତି ଜୀବନ କେମିତି ବିତେଇଲେ, କାହାପାଇଁ କ'ଣ କଲେ । ତାଙ୍କ ନିଜର କିଛି ବିଳାସବ୍ୟସନ ନଥିଲା । ନିଜର କେହି ପିଲାଛୁଆ ନଥିଲେ । ଅଥଚ ଏତେ ପୈତୃକ ସମ୍ପତ୍ତି ବହୁ ପରିମାଣରେ କମିଗଲା । ଏତେ ଦରମା ପାଉଥିଲେ, ତଥାପି ଦେ'ଣା ହୋଇଗଲା । ବୁଢ଼ାଦିନେ ରୋଗ ଘୋଟିବା ସମୟରେ ଅଭାବ ବହୁତ କଷ୍ଟ ଦେଲା । ବହୁତ ଏକୁଟିଆ ଏକୁଟିଆ ଦିଶୁଥିଲେ ।

ସବୁ କଷ୍ଟ ଶେଷ ହେଲା ୧୯୬୨ରେ । ସେ ପୁରୀରେ ମରିଗଲେ । ପୁରୀ ସଦର ଥାନା ପଛଆଡ଼େ ଜାଗାଟିଏ କିଣିଥିଲେ । ବଡ଼ ପାଚିରି ବୁଲେଇ

ପୋଖରୀ ଖୋଳି ଘରଟିଏ କରିଥିଲେ । କଟିରେ ସ୍ତ୍ରୀ, ଯୋଡ଼ିଏ ଆଜୀବନ ବିଶ୍ୱସ୍ତ ଚାକର, ଜଣକ ନାଁ ଗୋପୀ, ଗୋଟିଏ ବିଶ୍ୱାସୀ କୁକୁର, ଅନ୍ୟ କେତେଜଣ ଆତ୍ମୀୟ ସ୍ୱଜନ । ସେ ଶ୍ରୀଜଗନ୍ନାଥଙ୍କୁ ଭକ୍ତି କରୁଥିଲେ । ତାଙ୍କରି ସେବା କରି କରି ଦେହ ଛାଡ଼ିଲେ ।

ପ୍ରେତକୁ ଆଗ କିଏ ଡାକିଲା ? ବଡ଼ଭାଇ ବୋଧହୁଏ ।

ରାତି ଏଗାର । ପଦାରେ ସବୁ ଚୁପ୍‌ଚାପ୍ । ମଝିରେ ମଝିରେ କୁକୁର ବୋବାଳି । ଘର କବାଟ ଝରକା ବନ୍ଦ । ନଲ୍ଲଣ ଧିମେଇ ଧିମେଇ ଜଳୁଛି, କାଚ ଉପରେ ନାଲି କାଗଜ ଗୁରା ହୋଇଛି । କ୍ଷୀଣ ଆଲୁଅ ବି ନାଲିଆ ଦିଶୁଛି । ଭାଇଙ୍କ ସ୍ୱର ଭାରି ଅସ୍ୱାଭାବିକ ଶୁଭୁଥାଏ ।

ସମସ୍ତେ ଚୁପ୍ । ଭାଇ ବି ଡାକିଦେଇ ତୁନି ହେଲେ । ଆମେ ସମସ୍ତେ ମନେ ମନେ ଭାଉଚୋଉଙ୍କ ବୋଉଙ୍କୁ ଧ୍ୟାନ କରିବା କଥା । ଧିଳଭାଇ, କାହ୍ନୁଭାଇ ତାଙ୍କୁ ଦେଖିଥିଲେ, ତାଙ୍କର ଏକମାତ୍ର ପୁଅ ମରିଯିବା ପରେ ସେ ତାଙ୍କ ଭିତରୁ ଜଣକୁ ପୁଅ କରିବାକୁ ଇଚ୍ଛା କରିଥିଲେ, ବାପା ନାହିଁ କଲେ । ମୁଁ ତାଙ୍କୁ ଦେଖିନାହିଁ । ତଥାପି, ଶୁଣାକଥାରୁ ଧ୍ୟାନ କଲି, କିଏ ଜଣେ ମୋଟୀ ଗୋରୀ ବୁଢ଼ୀ, ମୁହଁ ବଡ଼ ଭାଉଜବୋଉଙ୍କ ମୁହଁ ପରି । ଡର ମାଡୁଥାଏ ।

ସତକୁ ସତ ଯଦି ଭୂତ ଥାଏ, ଏ ଘରେ ଦେଖାଦେବ ? କି ଭୟାନକ କଥା ! ମୁଁ ମନେ ମନେ ଠାକୁରମାନଙ୍କ ନାଁ କହୁଥାଏଁ, ତା'ହେଲେ ଭୂତ ମୋର କିଛି କରିପାରିବ ନାହିଁ ।

କାଗଜ ଉପରେ ପ୍ଲାନ୍‌ଚେଟ୍ ଗଡ଼ିଗଲା ।

ଭାଉଜବୋଉଙ୍କ ହାତପାପୁଲି ପ୍ଲାନ୍‌ଚେଟ୍ ଉପରେ ଥାଏ । କଣାବାଟେ ପେନ୍‌ସିଲ୍ ଗଳାଇ ଦିଆଗଲା ।

ଭାଇ ପଚାରିଲେ, "ଆପଣ କିଏ ?"

ପ୍ଲାନ୍‌ଚେଟ୍ କାଗଜ ଉପରେ ବଡ଼ ବଡ଼ ଅକ୍ଷରରେ ଭାଉଜବୋଉଙ୍କ ବୋଉଙ୍କ ନାଁ ଲେଖିଲା ।

ଭାଇ ପଚାରିଲେ, "ଆପଣ କେଉଁଠି ଅଛନ୍ତି ?"

ପ୍ଲାନ୍‌ଚେଟ୍ ଲେଖିଲା, "ସପ୍ତମ ସ୍ୱର୍ଗରେ ।"

ଆଉ ଯାହା ପଚାରିଲେ ସେ ଉତ୍ତର ଦେଲାନାହିଁ ।

ପୁଣି ଲେଖିଲା, "ମତେ ଏଠି କଷ୍ଟ ହେଉଛି । ମତେ ଛାଡ଼ିଦିଅ ।"

ଭାଉଜବୋଉ ପ୍ଲାନ୍‌ଚେଟ୍ ଉପରୁ ହାତ ଟେକିନେଲେ । ତା ଅର୍ଥ ସେ ଭୂତକୁ ମେଲାଣି ଦିଆଗଲା ।

ପୁଣି ଡକାଗଲା ତାଙ୍କ ବାପାଙ୍କୁ । ଭାଇ ଥରେ ପାଟିରେ ଡାକିଲା ପରେ ଆମେ ସମସ୍ତେ ତାଙ୍କୁ ମନେ ମନେ ଡାକିଲୁଁ । ମୁଁ ତାଙ୍କୁ ବି କେବେହେଲେ ଦେଖିନାହିଁ, କିନ୍ତୁ ଶୁଣିଛି, ତାଙ୍କ ସ୍ତ୍ରୀ ଯେଡ଼ିକି ସଂସାରୀ ସେ ସେଡ଼ିକି ବୈରାଗୀ, ତାଙ୍କ ସ୍ତ୍ରୀଙ୍କର ଓଲଟା । ସମ୍ପତ୍ତି ପ୍ରତି ତାଙ୍କ ସ୍ତ୍ରୀଙ୍କର ପ୍ରବଳ ଲୋଭ, ପରକୁ ଦାନ କରିଦେବା ଓ ଉଡ଼ାଡ଼ିଦେବା ଭିତରେ ସେ କିଛି ତଫାତ୍ ଦେଖିପାରନ୍ତି ନାହିଁ । ଶୁଣିଥିଲି ତାଙ୍କ ତୋଟାରୁ ପତ୍ର ସାଉଁଟିଲେ ବି ମୂଲ୍ୟ ଦେବାକୁ ପଡ଼େ । କିନ୍ତୁ ଭାଉଜବୋଉଙ୍କ ବାପା ଯେ ମାଗିଲା କୁଆଡ଼େ ତାକୁ ଧନ ଅଜାଡ଼ି ଦିଅନ୍ତି, ଗୁହାରିଆମାନେ ତାଙ୍କ କତି ଛାଡ଼ନ୍ତି ନାହିଁ, ସେ ସଂସାରର ଭଲମନ୍ଦ ବିଷୟରେ ନିସ୍ପୃହ, ଅନେକ ସମୟରେ ବାହାରେ ତାଙ୍କ ଠାକୁର ଘରେ ବସିଥାନ୍ତି, ଠାକୁରଙ୍କୁ ଡାକୁଥାନ୍ତି, ଘରକୁ ଆସନ୍ତି ନାହିଁ । ଆଉ ଶୁଣିଥିଲି ଯେ, ଘରସଂସାର ପ୍ରତି ତାଙ୍କର ଏତେ ବୈରାଗ୍ୟ ଦେଖି ତାଙ୍କ ସ୍ତ୍ରୀ ଛାନିଆ ହୋଇଗଲେ, କାଳେ ସେ ବାବାଜୀ ହୋଇ ଘରୁ ଚାଲିଯିବେ, ତେଣୁ ଗୁଣିଆ ଡକାଇ ଗୁଣି-ଗାରେଡ଼ି କଲେ, ଆଉ ତା'ପରେ ସେ ଖାଲି ଭକୁ ହୋଇ ଘରେ ବସିରହିଲେ, କାହାକୁ ପାଟି ଫିଟାନ୍ତି ନାହିଁ, ଏମିତି ଜଡ଼ ପରି କେତେଦିନ ରହି ସେ ମରିଗଲେ । ମୁଁ ଶୁଣିଥିଲି ସେ ଜଣେ ପରମ ଭାଗବତ ବ୍ୟକ୍ତି, ଜଣେ ସନ୍ଥ ସାଧକ । ଭାଇ କହିଥିଲେ ଯେ, ଯେଉଁମାନେ ସ୍ୱର୍ଗରେ ଥା'ନ୍ତି ସେମାନେ ସବୁବେଳେ ଭଗବାନଙ୍କଠି ଲୟ ଲଗାଇଥାନ୍ତି, ତାଙ୍କୁ ପ୍ଲାନ୍‌ଚେଟ୍‌ରେ ଡାକିଲେ ସେ ବଡ଼ ଡେରିରେ ଆସନ୍ତି, ଆସିବାକୁ ମୋଟେ ମନ ନ ଥାଏ, ପଦେ ଦି'ପଦ ଉତ୍ତର ଦେଇ ଦେଇ ସେ ପଳାଇବାକୁ ବସନ୍ତି ।

କିନ୍ତୁ ଭାଉଜବୋଉଙ୍କ ବାପାଙ୍କ ବିଷୟରେ ଏସବୁ ବିପରୀତ ହେଲା । ପ୍ଲାନ୍‌ଚେଟ୍ ସଙ୍ଗେ ସଙ୍ଗେ ଗଡ଼ିଗଲା । ନାଁ ପଚାରିଲା ମାତ୍ରେ ନାଁ ଲେଖିହେଲା । "କୋଉଠି ଅଛ" ପଚାରିବା ମାତ୍ରେ ଉତ୍ତର ଲେଖିହେଲା "ନରକରେ" ।

ପୁଣି ଆଉଥରେ ସେହି ପ୍ରଶ୍ନ । ଉତ୍ତର ସେଇଆ — "ନରକରେ ।"

"କେମିତି ଅଛ ?"

"ଭାରି କଷ୍ଟ ।"

"କେମିତି ଉଦ୍ଧାର ପାଇବ ?"

"ଗୟାରେ ପିଣ୍ଡ ଦିଅ ।"

ଭାଉଜବୋଉଙ୍କ ଆଖିରୁ ଲୁହ ଧାର ନିଗିଡ଼ି ପଡ଼ିଲା ।

ଭାଇ କହିଲେ "ହାତ ଉଠାଇଦିଅ ।"

ଏଥର ବାପା । ବଡ଼ ଉତ୍ସୁକ ହୋଇ ଆମେ ଅନାଇଁ ରହିଲୁଁ । ଭାଇ ବାପାଙ୍କୁ ଡାକିଲେ । ଆମେସବୁ ଡାକିଲୁ । ନିଜ ପାଟିରେ "ବାପା ବାପା" ଶବ୍ଦ ବଡ଼ ଅସ୍ୱାଭାବିକ ଶୁଭୁଥାଏ, ପାଟି ଥରି ଉଠୁଥାଏ । କୋହ ଉଠୁଥାଏ । ଭାଇ କହିଲେ "ଏଥର ତୁନିହୋଇ ବାପାଙ୍କୁ ଧ୍ୟାନ କର ।" ଆଖିବୁଜି ବାପାଙ୍କ ମୂର୍ତ୍ତିକୁ ଧ୍ୟାନ କଲି । କାହିଁ, ସ୍ପଷ୍ଟ ହୋଇ ମନେପଡୁ ନାହିଁ ତ ! ଯେମିତି ମଣିଷ ଆଖି ଆଗରେ ଆଉ କେଉଁ ମଣିଷକୁ ଦେଖେ, କି ଯେମିତି ଦେଖେ ମୂର୍ତ୍ତି କି ଫଟୋ, ସେମିତି କିଛି ଦେଖିବା ତ ଉଚିତ୍ ଥିଲା । କିନ୍ତୁ ଛିଲିକାଏ ଛିଲିକାଏ ମନେପଡୁଛି, ପୂରା ନୁହେଁ । ସେଉଠୁ ମନେ ମନେ ଭାବିଲି ନାନା ଘଟନା । ମଲା ବେଳର ମୁହଁ, ହସିଲା ବେଳର ରାଗିଲା ବେଳର ମୁହଁ । କିଛି କିଛି ମନେପଡୁଛି । ମନେପଡ଼ିଲା ଗୋଟାଏ ଛବି; –ବାପାଙ୍କ ପ୍ରିୟ ଘୋଡ଼ାର ମନ ଦିନେ ବିଗିଡ଼ି ଯାଇଥିଲା, ବାପା ତା କତିକି ଯିବାମାତ୍ରେ ସେ ତାଙ୍କ ମୁଣ୍ଡ ବାଳରୁ ପୁଳାଏ ଦାନ୍ତରେ କାମୁଡ଼ି ଧରିଥିଲା, ବାପା ଛାଟିପିଟି ହେଉଥିଲେ, ଘଟନାଟା ଦୁଃଖପ୍ରଦ, କିନ୍ତୁ ଅବସ୍ଥାର ଚେହେରା ଦେଖି ମତେ ହସ ମାଡ଼ିଥିଲା । ବାପା ଉଧୁରି ଆସିଲେ, କାମୁଡ଼ା କୁକୁର ପରି ଘୋଡ଼ାଟା ବି ପାଟି ଦାନ୍ତ ଦେଖାଇ ବେକ ବଢ଼େଇ ହାଉଁ ହାଉଁ କରି ଦାନ୍ତରେ ଦାନ୍ତ ମାଡ଼ିଦେଉଥାଏ । ବାପା ତାକୁ ଗୋଟାଏ ବଡା ଫାଳିଆରେ ବହୁତ ପିଟିଲେ, ସେ ହିଁ ହିଁ ହିଁ ହିଁ ହଉଥାଏ, ସତେ ଯେମିତି ବାହାଦୂରୀ କରି ହସୁଥାଏ, କୁଦା କାଉଥାଏ, ଲାଞ୍ଜ ପିଟୁଥାଏ ଶୂନ୍ୟକୁ ଗୋଇଠା ମାରୁଥାଏ ।

ପ୍ଲାନ୍‌ଚେଟ୍ ଗଡ଼ିଗଲା ।

ଗମ୍ଭୀର ହୋଇ ଭାଇ ପଚାରିଲେ "ଆପଣ କିଏ ?" ପ୍ଲାନ୍‌ଚେଟ୍ ଗଡ଼ି ଗଡ଼ି ବାପାଙ୍କ ନାଁ ଲେଖିଲା ।

"କୋଉଠି ଅଛନ୍ତି ?"

"ସପ୍ତମ ସ୍ୱର୍ଗରେ ।"

"କେମିତି ଲାଗୁଛି ?"

"ଭାରି ସୁଖ ।"

ଆଉ କ'ଣ ଉତ୍ତର ଲେଖିଲେ ମନେପଡୁ ନାହିଁ ।

ବାପା ଗଲେ ।

ତା'ପରେ ପ୍ଲାନ୍‌ଚେଟ୍ ଆଉ ଥରେ ଗଡ଼ିଲା ।

"କିଏ ?"

ଭଙ୍ଗା ଭଙ୍ଗା ଅକ୍ଷରରେ ଲେଖିହେଲା "ଦୁର୍ଯ୍ୟୋଧନ ମହାନ୍ତି ।"

କିଏ, ଦିଜ ଦାଦି ?"

"ହଁ ।"

"କୋଉଠୁ ଆଇଲେ ?"

"ନରକରୁ ।"

ସେ ବି କ'ଣ କହିଲେ ବୋଲି ଲେଖାହେଲା ।

ରାତି ୧୨ ବାଜିଲାଣି । 'ମିଡିୟମ୍' ଭାଉଜବୋଉ କହିଲେ, "ଆଉ, ମୋ ମୁଣ୍ଡ ବୁଲୋଉଚି ।" ଆମେ ସମସ୍ତେ ଚେଷ୍ଟା କଲାପରେ ଭାଉଜବୋଉ 'ମିଡିୟମ୍' ହୋଇଥିଲେ, ଆମେ ଡାକିଲେ କି ପ୍ଲାନ୍‌ଚେଟ୍‌ରେ ହାତ ଥୋଇଲେ କୌଣସି ପ୍ରେତ ଆସୁ ନ ଥିଲେ । ବନ୍ଦ ହେଲା ।

ତା'ପରେ ଆଲୋଚନା । କିଏ ସ୍ୱର୍ଗରେ ଅଛି, କିଏ ନରକରେ ଅଛି, ସେଥିପାଇଁ ଆମର ଆନନ୍ଦ ବା ଦୁଃଖ ପ୍ରକାଶ । କ'ଣ କ'ଣ ଭବିଷ୍ୟଦ୍ କଥାରେ ଉତ୍ତର ମିଳିଥିଲା, ସେଥିପାଇଁ ଆଶା ବା ନିରାଶା ।

ଅନ୍ୟାନ୍ୟ ବହୁତ କଥା ପଡ଼ିଲା । ତା'ହେଲେ ସ୍ୱର୍ଗ ନରକ ଅଛି । ସ୍ୱର୍ଗ ବି ସ୍ତର ସ୍ତର ହୋଇ । ଅବିକଳ କ୍ଲାସ୍ ପ୍ରମୋସନ୍ ପାଇଲା ପରି ।

କିନ୍ତୁ ବିଚାର କେଡ଼େ ଅଦ୍ଭୁତ ! ଯେ ସ୍ୱର୍ଗକୁ ଯିବ ଭାବିଥିଲୁଁ, ସେ ଯାଇ ନରକରେ ଓ ଯେ ନରକକୁ ଯିବ ଭାବିଥିଲୁଁ, ତାକୁ ପଠାଗଲା ସ୍ୱର୍ଗକୁ । କିପରି ଯା ହୁଏ !

ଭାଇ ବୁଝେଇଲେ, "ଆମେ ଲୋକର ଏ ଜନ୍ମର କ୍ରିୟାକଳାପ ଦେଖି ବିଚାର କରୁଁ ଯେ, ସେ ସ୍ୱର୍ଗ ପାଇବ ନା ନର୍କ, କିନ୍ତୁ ଭଗବାନ ଦେଖନ୍ତି ତା ପୂର୍ବଜନ୍ମର କ୍ରିୟାକଳାପ ମଧ୍ୟ ।" ଅର୍ଥାତ୍ କ୍ଲାସ୍ ପ୍ରମୋସନ୍ ଦେଲାବେଳେ ପୂର୍ବେ ଅନ୍ୟାନ୍ୟ କ୍ଲାସ୍‌ର ପରୀକ୍ଷାରେ ଛାତ୍ରଟି କେତେ କେତେ ମାର୍କ ପାଇଥିଲା ସବୁ ଏ ପରୀକ୍ଷାର ମାର୍କ ସହିତ ମିଶି ଡିଭିଜନ୍ ଦିଆହେଲେ ଯେପରି ହୁଅନ୍ତା ସେମିତିଆ ।

ଭାଉଜୋଉ ମୁଣ୍ଡ ଟୁଙ୍ଗାରିଲେ ।

ବିଚାର ଉପରେ ତାଙ୍କର ନିଜର ଯୁକ୍ତିରେ ସବୁବେଳେ ବିଶିଷ୍ଟତା ଥାଏ ।

ପନ୍ଦର ମିନିଟ୍ ଯାଇ ନ ଥାଏ । ଲାଗିଲା ସତେ ଯେମିତି ଯେ ଯେତେ ଯାହା ହେଲା ସେଗୁଡ଼ାକ କାଳ୍ପନିକ, ସବୁ ମିଛ । ଗୋଟାଏ ମିଛିମିଛିକିଆ

ଖେଳ । ଆଗ ଭାଇ ଭାଉଜବୋଉଙ୍କୁ ପଚାରିଲେ, "ତେମେ ଟାଲାଖିକରି ମନରୁ ଫାନ୍ଦି ପ୍ଲାନ୍‌ଚେଟ୍ ପର୍ଚା ଗଢ଼େଇ ଗଢ଼େଇ ଉତ୍ତରଗୁଡ଼ାକ ଲେଖୁନା ତ ?"

ଭାଉଜୋଉ ରାଗିଗଲେ, କହିଲେ "ମୁଁ ଜାଣି ଜାଣି ମୋ ବାପଟାକୁ ନେଇ..." କାନ୍ଦି ପକାଇଲେ ।

ଭାଇ କହିଲେ "ବାଃ ! ବ୍ରହ୍ମାସ୍ତ୍ର ! କିଓ କାନ୍ଦୁଚ କାହିଁକି ?" ଭାଉଜୋଉ କହିଲେ "ମୁଁ କ'ଣ ଜାଣିଥିଲି, ତମ ଦାଦି ନାଁ ଲେଖନ୍ତି ଦିର୍ଯୋଧନ ବୋଲି ? ତେମେ ପରା ନିଜେ କହୁଚ ଅକ୍ଷରଗୁଡ଼ାକ ତାଙ୍କ ଅକ୍ଷର ପରି । ମୁଁ କ'ଣ ତାଙ୍କ ଅକ୍ଷର ଚିହ୍ନିଚି ?"

"କେଜାଣି, ଦିଜ ଦାଦି ତ ଏବେ ତିନି ଚାରି ବର୍ଷ ହେଲା ମଲେ । ତେମେ ଯେତେବେଳେ ନୂଆ ବୋହୂ ହେଇ ଆଇଲ ସେ ତ ଗାଁରେ ଥିଲେ, ତାଙ୍କ ଘର ଆମ ଘର କାନ୍ଥକୁ କାନ୍ଥ ଲାଗିଛି । ତାଙ୍କ ଝିଆରୀ ସୁଲ ତ ତମର ସଙ୍ଗାତ । ଦାଦିଙ୍କ 'ମହାନାଟକ' ଖାତା ବି ତୁମେ ଦେଖିଥିବ କେତେଥର; ସଂସ୍କୃତ ମହାନାଟକ ସେ ଉତାରି ରଖିଥିଲେ, ନିଜେ ବି କେତେ ସଂକୀର୍ତ୍ତନ ରଚନା କରି ଲେଖିଥିଲେ । ମୃଦଙ୍ଗ, ପଖୋଉଜ, ସଂକୀର୍ତ୍ତନ ବୋଲିବା ଏଥିରେ ସେ ଓସ୍ତାଦ୍ ଥିଲେ । ତେବେ ମୁଁ କଦାପି ବିଶ୍ବାସ କରିବି ନାହିଁ ଯେ, ସେ ନରକକୁ ଯାଇଥିବେ ।"

"ଆଉ ମୋ ବାପା ?"

"ତେବେ ଯେ କେମିତି ହେଲା ?"

"କେଜାଣି ! ମତେ ତ ସେଇଆ ଆଶ୍ଚର୍ଯ୍ୟ ଲାଗୁଚି । ଆଚ୍ଛା ଏମିତି କ'ଣ ହେଇ ନ ପାରେ ଯେ, ତମ ନିଜ ମନରେ କାହା କାହା ବିଷୟରେ କ'ଣ ଖରାପ ଧାରଣା ରହିଯାଇଛି ଆଉ ସେଗୁଡ଼ାକ ବାହାରି ପଡ଼ିଲା ?"

ଭାଉଜୋଉ ପୁଣି ରାଗିଗଲେ । କହିଲେ "ସବୁ ନାଟର ଗୋବର୍ଦ୍ଧନ ତୁମେ । ଏ ପ୍ଲାନ୍‌ଚେଟ୍ ମାନ୍‌ଚେଟ୍ ଭୂତଫୁତ କଥା କିଏ ବାହାର କଲା ? କିଏ ଯାକୁ ଘରକୁ ଆଣିଲା ? ଏମିତି ନାଇ ସେମିତି ହୁଏ ବୋଲି କିଏ କହିଲା ? ମତେ କିଏ ବସେଇଲା ? ସେଇଠୁ ଅଇଚ୍ଛା ମିଛଟାରେ ମତେ ସମସ୍ତିଙ୍କ ଆଗରେ ଭାଣ୍ଡିଆ କରୁଚ, ଅପବାଦ ଦଉଚ । ହେଁ, ତେମେ ଏଡ଼େ ସିଆଣା ପଡ଼ିଚ !"

"ଦେଇ ପାନ ଖଣ୍ଡେ ।"

"ଯାଉଚିଆଁ ।"

"ଥାଉ ଛାଡ଼, ଭୁଲିଯା । ଏଥିରେ ମୁଣ୍ଡ ପୁରେଇଲେ ମଣିଷ ପାଗଳ ହେଇଯିବ ।"

"କେବେ ଗୟା ଯିବା ?"

"କାହିଁକି ?"

"ବାପାଙ୍କୁ ପିଣ୍ଡ ଦେବା ନାହିଁ ?"

"ମଲା ଏ ମଣିଷ ! ସତେରେ ଗୟା ଯାଇ ପିଣ୍ଡ ଦେବାକୁ ପଡ଼ିବ ? ଆଚ୍ଛା ଯେଉଁମାନେ ହିନ୍ଦୁ ନୁହଁନ୍ତି ତାଙ୍କ ଭିତରୁ ଥୋଡ଼ାଏ ଲୋକ ନରକକୁ ଯାଆନ୍ତି ନା ନାହିଁ ନରକଟା ଖାଲି ହିନ୍ଦୁମାନଙ୍କ ପାଇଁ ହେଇଚି ? ଯଦି ନରକକୁ ଗଲେ, କିଏ ଆରବରୁ, କିଏ ରୋମ୍, କିଏ ବିଲାତ୍ କିଏ ଉତ୍ତର ଆମେରିକା, କି କିଏ ଦକ୍ଷିଣ ଆଫ୍ରିକାରୁ, ତାଙ୍କ ପିଲାଏ କ'ଣ ପିଣ୍ଡ ଦବାକୁ ଗୟା ଧାଉଁଚନ୍ତି ? ସ୍ୱର୍ଗଟା ନରକଟା କୋଉଠି କୋଉଠି ଅଛି ? ଏଗୁଡ଼ାକ ତୁଚ୍ଛା ବାଜେକଥା । ମଣିଷ ମଲେ ଗଲା । ଆତ୍ମା ତ ପଞ୍ଚଭୂତରେ ମିଶିଗଲା, ଆଉ ସ୍ୱର୍ଗ ନରକ କ'ଣ ? ଯଦିବା ଅଛି, କିଏ ଦେଖିଛି ?"

ଭାଉଜୋଉ କହିଲେ "ଧନ୍ୟ ତେମେ ! ତମରି ମୁହଁରେ ଅରୁଆ ଫେର୍ ତମରି ମୁହଁରେ ଉଷୁନା ।"

ପ୍ରକୃତରେ ବଡ଼ଭାଇଙ୍କଠି ଦୁଇଟି ଧାର ଥାଏ, ଗୋଟିଏ ବିଶ୍ୱାସ କରେ, ଅସମ୍ଭବକୁ ସମ୍ଭବ ଭାବେ, ଆରଟି ଅବିଶ୍ୱାସ କରେ, ହସରେ ଉଡ଼ାଏ ।

ଆମେ ଶୋଇବାକୁ ଗଲୁ ।

ଲାଗୁଥାଏ, କ'ଣ ଯେ ! ସତ ନା ଭେଲିକି ? ଯେଉଁମାନେ ଏ ସଂସାରରୁ ଚାଲିଯାଇଛନ୍ତି, ସତେ ସେମାନଙ୍କର ପ୍ରେତ-ସତ୍ତା ରହିଛି ଆଉ ସେ ସ୍ୱର୍ଗରେ କି ନରକରେ ଅଛି ? କେମିତି ସେଠିକା ସମାଜ, ସେଠିକା ଚଳଣି, ସେ ଦେଶ, କେଉଁଠି ସେ ? ସଂସାରରେ ଏତେ ଭାଷା, ଏତେ ଧର୍ମ, ଯାହା ଆମ ଧର୍ମ କି ଭାଷାଠୁଁ ଭିନେ, ସେଗୁଡ଼ାକ କ'ଣ ଭୁଲ୍ ? ଆବିଦ୍, ହୁସେନ୍, ନିଖିଲ୍ ବିଶ୍ୱାସ, ସୁନୀଲ ସେନ୍, ଆଉ ମୁଁ – ଆମେ ମଲେ କ'ଣ ଏକା ସ୍ୱର୍ଗକୁ କି ଏକା ନରକକୁ ଯିବା ନା ମୁସ୍ଲିମ୍, ଖ୍ରୀଷ୍ଟ୍ୟାନ୍, ବ୍ରାହ୍ମ ଆଉ ହିନ୍ଦୁର ପ୍ରେତାତ୍ମା ପାଇଁ ଅଲଗା ଅଲଗା ସ୍ଥାନ !

ନ ହେଲେ ଯେ ପ୍ଲାନଚେଟ୍ ପଦାର୍ଥଟା କ'ଣ ଠକାମି ? ସକାଳୁ ଭାଉଜବୋଉ କହିଲେ, "ମୋ ଦେହ ହାତ ଭାରି ଦରଜ । କାଲି ଗୋଟିଏ ଗୋଟିଏ 'ମଣିଷ' ଯେତେବେଳେ ଆସୁଥାନ୍ତି, ମୋ ହାତ ଉପରେ ସତେକି ବରଫ ଲଦି ହେଲା ପରି ଲାଗୁଥାଏ, ଦେହ ଉପରେ ପ୍ରଚଣ୍ଡ ଚାପ ମୁଁ ଅନୁଭବ

କରୁଥାଏଁ, ରାତିଯାକ ଦେହହାତ ଛେଟିକୁଟି ହେଲା ।''

ଭାଇ କହିଲେ, ''ସେମିତି ହୁଏ, ବହିରେ ଲେଖିଛି । ଭାରି ବାଧା ହୁଏ । ଅତି ଦରକାର ନ ପଡ଼ିଲେ ପ୍ଲାନ୍‌ଚେଟ୍ ବ୍ୟବହାର କରିବା ମନା ।''

ସଭାଙ୍କୁ ପୁଣି ସମସ୍ତିଙ୍କର କୁତୂହଳ ହେଲା, ପ୍ଲାନ୍‌ଚେଟ୍ ବ୍ୟବହାର କରାଯାଉ । କିନ୍ତୁ ଭାଉଜବୋଉ ମିଡ଼ିଅମ୍ ହେବାକୁ ମନାକଲେ । ବୋଧହୁଏ ଭାଇ ହେଲେ । ବହୁତ ବେଳ ଗଲା । ଆମେ ଅପେକ୍ଷା କରି ବସିଥାଉଁ, ସତେ ଅବା ମୃଷାଟାଏ ଯନ୍ତାରେ ପଡ଼ିବ । କିଛି ହେଲା ନାହିଁ । ପୁଣି ଧୂଳଭାଇ ଧରିଲେ । କାହାକୁ କାହାକୁ ଡକାଗଲା, ଡେରି ହେଉ ପଛେ, 'ଆସିଲେ' କିଏ କିଏ ।

ଘରେ ତିନି ଚାରି ଥର ପ୍ଲାନ୍‌ଚେଟ୍ ବ୍ୟବହାର ହୋଇଥିଲା, ତା'ପରେ ମନ ଛାଡ଼ିଗଲା ।

ଭାଇ ବୁଝେଇଦେଲେ, ''ପାଠ କହିଛି ଭୂତ ପ୍ରେତଙ୍କର ଶରୀର ନାହିଁ, ସେମାନଙ୍କଠୁଁ ଆମେ ଜୀଅନ୍ତା ମଣିଷ ଶ୍ରେଷ୍ଠ, ସେମାନେ ଆମର କ'ଣ କରିବେ ? ହରିନାମ ଶୁଣିଲେ ଯେଡ଼େ ପ୍ରତାପୀ ଭୂତ ହେଲେ ଡରେ, ଲୁଚେ । କିଏ ଭଲ ହେଉ କିଏ ଖରାପ ହେଉ, ଆମର କି ଯାଏ ? ସେମାନେ ତାଙ୍କର ଥାଉନ୍ତୁ, ଆମେ ଆମର କାମ କରୁଥାଉଁ ।''

କିନ୍ତୁ ଗୟା ଓ ପ୍ରୟାଗରେ ପିଣ୍ଡ ଆଦି ଦେବାକୁ ସେମାନେ ଯାଇଥିଲେ । ଟିକିଏ ପରେ ଭାଇଙ୍କ ସତୁ ରାମବାବୁ ଆସିଲେ ଓ ଭାଉଜବୋଉଙ୍କ ବଡ଼ ଭଉଣୀ ଉଷା'ପା ଆସିଲେ, ସେତେବେଳେ ସେମାନେ ଗଲେ ।

** ** **

ଅରଡିଆପଦାର ଜମିଦାର ବଂଶର ଶ୍ରୀରାମଚନ୍ଦ୍ର ମହାପାତ୍ର ବଡ଼ ଭାଉଜବୋଉଙ୍କ ଭିଣୋଇ । ତାଙ୍କ ନାଁ ଗୁନବାବୁ । ଗାଁରେ ଥା'ନ୍ତି, ନିଜ ଜମିବାଡ଼ି ଓ ବେଳେ ବେଳେ ଶଶୁର ଘର ଜମିଦାରି ଖବର ସେ ବୁଝନ୍ତି । ସେତେବେଳର ଜମିଦାରମାନେ 'ବଡ଼ଲୋକ' ବୋଲି ଆମେ ଜାଣିଥିଲୁ ।

ଗୁନବାବୁ ପାଟ୍‌ନା ବୁଲି ବୁଲି ଦେଖନ୍ତି; କିଛି ଜମି ଆମ୍ବଗଛ ବି କିଣି ନେଇଥିଲେ ।

ମେଳାପୀ ଲୋକ । 'ଥୋଡ଼ା ଥୋଡ଼ା ହିନ୍ଦୀ କହୁଥିଲେ । ଦିନେ ଗୋଟିଏ ଘୋଡ଼ାଗାଡ଼ିବାଲା ସଙ୍ଗେ ତାଙ୍କର ଝଟାପଟା କଳି ଲାଗିଲା । ସେ ରାଗିଯାଇ ତାକୁ କହଲେ; ''ଶଳାକୁ ଜୁତି ମାରୁଙ୍ଗା ।'' ତା'ପରେ କବାଟଟା ଧଡ୍‌କିନା ଦେଲେ ବନ୍ଦକରି ।

**　　　**　　　**

ଆମ ଘରେ ପୂଜାଉଛାର ଧୂମ୍ ନ ଥିଲା, ଖାଲି ମୋ ବୋଉ ତା କୋଥଳିଟି ଖୋଲେ, କ'ଣ ଟିକିଏ ପୂଜା କରେ, ନିର୍ମାଲ୍ୟ ଦୋ'ଟି ପାଟିଏ ପକାଏ, ସାନ ଜଗନ୍ନାଥ ଛବିଟିଏ ରଖିଥାଏ, ତାକୁ ଦଣ୍ଡବତ କରେ । ମୋ ପଢ଼ାଘରେ ଟେବୁଲ୍ ଉପରେ କାଠରେ ବନ୍ଧାହୋଇ ରହିଥାଏ ଗୋଟିଏ ଗଣେଶ ଛବି, ସୋନ୍‌ପୁରରୁ ଆଣିଥିଲି, ରବି-ବର୍ମା କୃତ । ମୁଁ ସେଠି ଗୋଡ଼ତଳେ ପଡ଼େଁ । ମନେ ମନେ ଠାକୁରଙ୍କୁ ଯାହା ଯାହା ମାଗିବାର ମାଗେଁ । ଭାଇ ଭାଉଜବୋଉ କ'ଣ ପୂଜା କରିବାର ମୋର ମନେ ପଡୁନାହିଁ ।

ଲୋକେ ଅନେକ ପ୍ରକାର ପୂଜା, ଅନେକ ପ୍ରକାର ଗୁରୁ କରନ୍ତି । ଭାଇ ତାକୁ ହସରେ ଉଡ଼ାନ୍ତି । ଆମେ ଶୁଣିଥିଲୁଁ, ଭାଉଜବୋଉଙ୍କ ଗାଁ ପାଖର ରାମ ଦାସ୍ (ଶ୍ରୀରାମଚନ୍ଦ୍ର ଦାସ, ପଛେ ତାଙ୍କର ଦୁଇପୁଅ ଫରେଷ୍ଟ କନ୍‌ଜାରଭେଟର୍ ହେଲେ)ଙ୍କ ସଙ୍ଗରେ ତାଙ୍କର କେମିତି ଥଟ୍ଟା ଲାଗେ । ରାମବାବୁ ମଧ୍ୟ ସେକ୍ରେଟେରିଏଟ୍‌ର ଜଣେ କିରାନି । ସେ ବହୁତ ଠାକୁର ପୂଜା କରନ୍ତି । ଚେକା ପକାଇ ଆଖିବୁଜି ତାଙ୍କ ଠାକୁରଙ୍କୁ ଧ୍ୟାନ କରୁଥାନ୍ତି, ତାଙ୍କ ସାମ୍ନାରେ ଗୋଟିଏ ଥାଳିଆରେ ଥୁଆ ହୋଇଥାଏ ନୈବେଦ୍ୟ ହେବାପାଇଁ କେତେବେଳେ ଗୋଟିଏ ସାନ ରସଗୋଲା, କେତେବେଳେ କଦଳୀଟିଏ । ଭାଇ ଥିରି ଥିରି ଆସି ତାକୁ ପାଟିରେ ପକାଇଦେଇ ତାଙ୍କ ସାମ୍ନାରେ ବସି ପଡ଼ନ୍ତି । ରାମବାବୁ ଆଖି ଖୋଲି କହନ୍ତି "କି ଆଶ୍ଚର୍ଯ୍ୟ, ଏଠି ଭୋଗ ରଖିଥିଲି କିଏ ନେଲା ?"

ଭାଇ କହନ୍ତି "ଆପଣ ଠାକୁରଙ୍କୁ ଦେଇଥିଲେ ତ, ଠାକୁର ନିଶ୍ଚୟ ଖାଇଥିବେ । ସକଳ ଘଟେ ନାରାୟଣ ।"

ରାମବାବୁ ନାମ ସଂକୀର୍ତ୍ତନ କରନ୍ତି, ବାବାଜୀ ପରି ତିଳକ କାଟନ୍ତି, ବେକରେ ମାଳି ପକାନ୍ତି । ସେ ତାଙ୍କ ପୂଜାରୁ ଆନନ୍ଦ ପାଆନ୍ତି । ତାଙ୍କ ସ୍ତ୍ରୀ ଖୁବ୍ ସୁସ୍ଥ ଥିଲେ । ଗାଲରେ ଗୋଟିଏ ବ୍ରଣ ହୋଇ ଚାହୁଁ ଚାହୁଁ ବିସର୍ପିଗଲା । ସେ ତାଙ୍କୁ ଜଳତୁଳସୀ ଦେଉଥିଲେ, ନାମ ଶୁଣାଉଥିଲେ । କିନ୍ତୁ ସ୍ତ୍ରୀ ମରିଗଲେ । ଲୋକେ କହନ୍ତି, ସେତେବେଳେ ସେ ସ୍ତ୍ରୀଙ୍କ ଖଟ ପାଖେ ତଳେ ନାଚିକୁଦି ନାମ ସଂକୀର୍ତ୍ତନ କରୁଥିଲେ । ଭାଇଙ୍କି ବୁଝେଇଲେ, "ତା'ର ଡକରା ଆସିଲା ସେ ଗଲା, ପ୍ରଭୁଙ୍କର ଇଚ୍ଛା । ମଲାବେଳେ ହରିନାମ ଶୁଣିଲା, ତରିଯିବ ।" ବହୁପ୍ରକାର ସମସ୍ୟା ଭିତରେ ସେହି ହରିନାମ ଜପି ଜପି ରାମବାବୁ ତାଙ୍କ ଜୀବନ ବିତାଇଲେ । ଆଉ ବିଭା ହେଲେନାହିଁ ।

ସାନ ସାନ ପିଲା ଯୋଡ଼ିଙ୍କୁ ମଣିଷ କଲେ । ସେ କଟକ ବଦଳି ହେଲାପରେ ଦେଖିଲୁଁ ବଙ୍ଗାଳି ସାହି ମଠ ପାଖେ ଅଛନ୍ତି, ଯାହା ଦରମା ପାଆନ୍ତି, ସବୁ ମଠକୁ ଦେଇଦିଅନ୍ତି, ତାଙ୍କ ପରିବାରର ଯାହା ଆବଶ୍ୟକ, ତାହା ମଠ ତୁଲାନ୍ତି ।

ଭାଇଙ୍କର ତାଙ୍କର ଧର୍ମ ବିଷୟରେ କଥା ପଡ଼େ, ରାମବାବୁ କହନ୍ତି "ଆପଣଙ୍କର ଯୋଗ ପଡ଼ିଲେ ଆପଣ ବି ସେସବୁ ମାର୍ଗ ଧରିବେ ।" ଭାଇ ହସନ୍ତି ।

ଭାଇ ବୁଝାନ୍ତି ବାବାଜିମାନଙ୍କ ଭିତରେ କେମିତି ନାନାପ୍ରକାର ଭଣ୍ଡ ଅଛନ୍ତି । ସେ କହନ୍ତି "ଧର୍ମ ତ ନିଜର ବିଶ୍ୱାସ, ଧର୍ମ ମାନିବା ମାନେ ସେହି ଅନୁସାରେ କାମ କରିବା । ଆଉ ବାହାରେ ଏତେ ଦେଖାଇହେଲେ କି ଧର୍ମ ହୁଏ ? କାମ ନ କଲେ କିଛି ହୁଏ ନାହିଁ, କୁହୁକ ବୋଲି କିଛି ନାହିଁ ।" ସେ ଆଇଁଷ ଖାଇବାକୁ ଖୁବ୍ ଭଲ ପାଆନ୍ତି । ତା'ର ଉପକାରିତା ବର୍ଣ୍ଣନା କରନ୍ତି ।

ଅନେକ ସମୟରେ ସେ କହନ୍ତି କେଉଁ ଜଣେ "ଇଞ୍ଜିନ୍‌ବାବା"ଙ୍କ କଥା । ରାଞ୍ଚିରେ ଥିଲାବେଳେ ଦେଖିଥିଲେ । ହିନ୍ଦୁର ବାବାଜୀ । ସେ କହନ୍ତି,

"ତାଙ୍କର ବହୁତ ଶିଷ୍ୟ ଶିଷ୍ୟା । ସମସ୍ତେ ଗୋଟାଏ ଘରେ ପଶନ୍ତି । ରେଲ୍ ଇଞ୍ଜିନ୍ ଯେମିତି ସାଁ ସାଁ ହୁଏ, ଆଗ ବାବାଜୀ ସେମିତି ସାଁ ସାଁ ହୁଅନ୍ତି । ତା'ପରେ ତାଙ୍କ ସଙ୍ଗେ ତାଳ ରଖି ରଖି ନାକବାଟେ ସେମିତି ସାଁ-ସାଁ-ସାଁ-ସାଁ ଶବ୍ଦ କରନ୍ତି । ଏକାଠି ଚାଲେ ଇଞ୍ଜିନ୍ ଅଧଘଣ୍ଟାଏ ଯାକେ । ସେହି ତାଙ୍କର ସାଧନା ।"

ଗଞ୍ଜେଇଟଣା, ଭୋଜନ ଲୋଭ, ଅଭିନୟ, କଳ୍ପନା, ଠକାମି, 'ଭକ୍ତ'ମାନଙ୍କର ନାନା ଅଭ୍ୟାସ ବିଷୟରେ ସେ ବ୍ୟଙ୍ଗ କରନ୍ତି, ହସନ୍ତି ଓ ହସାନ୍ତି । ତୀର୍ଥସ୍ଥାନମାନଙ୍କରେ ପଣ୍ଡାମାନଙ୍କ ଠକାମି ଓ ଦୌରାତ୍ମ୍ୟ କଥା ସେ କହନ୍ତି ।

"ବେଶୀ ବାବା, ସ୍ୱାମୀ, ଅବତାର ବାହାରୁଛନ୍ତି ବଙ୍ଗଦେଶରୁ । ଯା ତାତ୍ପର୍ଯ୍ୟ ତୁମେସବୁ ଭାବିଛ ?" ସେ କହନ୍ତି ।

ତା'ପରେ ଭାଇ ଭାଉଜବୋଉ ଗଲେ ଦେଓଗଡ଼ । ସେଠି ଥିଲେ ଡାକ୍ତର ଲକ୍ଷ୍ମୀନାରାୟଣ ମହାନ୍ତି । ବାପାଙ୍କର ମାମୁଁପୁଅ ଭାଇ ଜଣେ । ତାଙ୍କୁ ଡାକୁଁ 'ବଇଁଶୀ ଦାଦି' । ଦାଦି ଖୁଡ଼ୀ ଭାଇ ଭାଉଜବୋଉଙ୍କୁ ବହୁତ ସ୍ନେହ ଆଦର କଲେ, ବହୁତ ଉପଦେଶ ଦେଲେ । ଦେଓଗଡ଼ରୁ ଫେରି ସେମାନେ ଦାଦିଖୁଡ଼ୀଙ୍କୁ ଖୁବ୍ ପ୍ରଶଂସା କରୁଥାନ୍ତି । ତା ସଙ୍ଗେ ସଙ୍ଗେ ଭାଇ ଭାଉଜବୋଉଙ୍କର ଆଶ୍ଚର୍ଯ୍ୟ ପ୍ରକାରେ ପରିବର୍ତ୍ତନ ହୋଇଥାଏ ।

ଭାଉଜବୋଉ ମାଛମାଂସ, ପିଆଜ, ରସୁଣ, ଉଷୁନା ଚାଉଳ, ଏସବୁ ଆଉ ଖାଉନଲେ ନାହିଁ । ପ୍ରତିଦିନ ଗାଧୋଇ ସାରି ଅଧଘଣ୍ଟାଏ ଲେଖାଁ ପୂଜା କଲେ । ଭାଉଜବୋଉ ରାମ, ସୀତା, କୃଷ୍ଣ, ସଂସ୍କୃତରେ ଏମାନଙ୍କର ବନ୍ଦନା ଗାଆନ୍ତି । ବହି ଦେଖି ଦେଖି ବୋଲନ୍ତି । ଅନେକ ସମୟରେ ସଞ୍ଜରେ ବି ବୋଲନ୍ତି । ଆମ ଘରେ ନିୟମିତଭାବେ ଠାକୁରପୂଜା ହେଲା । ଘଣ୍ଟି ବାଜେ, ଶଙ୍ଖ ବାଜେ । ଝୁଣାଧୂଆଁ ଦିଆହୁଏ । ଭାଉଜବୋଉ ଶାନ୍ତ ଆତ୍ମସ୍ଥ ହୋଇ ବସନ୍ତି ।

କ୍ରମେ ତାଙ୍କର ଆଇଁଷ, ପିଆଜ ରସୁଣ ପ୍ରତି ବିକାର ଆସିଗଲା । ତାଙ୍କର ଥାଳି, ଗିଲାସ, ତାଟିଆ ଆଦି ଅଲଗା ହୋଇଗଲା । ଆଇଁଷଖିଆମାନେ ତାକୁ ବ୍ୟବହାର କଲେ ତାଙ୍କୁ ଘୃଣା ଲାଗେ । ମାଛ ମାଂସ ଆସିଲେ ଉଠା ଚୂଲିରେ ଦୁଆରେ କି ଦୂରରେ ରନ୍ଧାହୁଏ । ପଡ଼ିଶା ଘରୁ ଶୁଖୁଆପୋଡ଼ାର ମନମତାଣିଆ ବାସ୍ନା ଆସିଲେ ଝରକା କବାଟ କିଳା ହୁଏ ।

ଘର ଚଳାଚଳରେ ପରିବର୍ତ୍ତନ ଦେଖାଗଲା । ଆହୁରି କଷୋଟ, ଆହୁରି କଣ୍ଟାକଣ୍ଟି, ଯେମିତି ଭବିଷ୍ୟତ ପାଇଁ ପ୍ରସ୍ତୁତିର ଜରୁରି ଆବଶ୍ୟକ ଅନୁଭବ ହୋଇଛି ।

ଭାଇ ବି ମାଛ, ମାଂସ, ପିଆଜ, ରସୁଣ ଛାଡ଼ିଦେଲେ । ବୋଉ ଭାରି ମନ ଦୁଃଖ କଲା, କହିଲା, ''ନିଜ ଦେହକୁ କଷ୍ଟ ଦେଇ କି ଧର୍ମରେ ? ଆଉ କ'ଣ ପୁଷ୍ଟିକର ଜିନିଷ ଖାଉଥିଲ ଯେ, ମାଛ ମାଂସ ବି ଛାଡ଼ିଦେଲ ? ଧର୍ମଟା ମନରେ ଥିଲେ କ'ଣ ହେବନାହିଁ ?''

ଭାଉଜବୋଉ କହିଲେ ''ହିଂସାଟା ପରା ପାପ ।''

''ତେବେ ହିଂସା ଛାଡ଼ିଦିଅ, ସମସ୍ତିଙ୍କୁ ଆପଣା ପରି ଭାବ । ସକଳ ଘଟେ ନାରାୟଣ ।''

ଭାଇ କହିଲେ ''ନାଇଁ, ନାଇଁ, ମାଛ ମାଂସ ଖାଇଲେ ଦେହରେ ବଳ ହୁଏ ଯେ, ତା ସଙ୍ଗେ ସଙ୍ଗେ ଦେହକୁ ବହୁତ ରୋଗ ଘୋଟେ, ବହିରେ ଲେଖା ହେଇଚି ।''

''କେଜାଣିରେ ବାପା ! ମୁଁ ତ ଜାଣେ, ପେଟକୁ ନ ଖାଇଲେ ରୋଗ, କାମ ନ କଲେ ରୋଗ । ଏଠି ମାଛ ମାଂସ, ପୋଟଳ, ବାଇଗଣ, ପନିପରିବା ଏଡ଼େ ଶସ୍ତା, ଅଳ୍ପ ପଇସାରେ ଯାହାକୁ ଯେତେ । ସଂସାରେ ଥିବ ଯେତେଦିନ, ଆନନ୍ଦ କରୁଥିବ ମନ । ଖାଇପିଇ ମୋଟାସୋଟା ହୋଇ ସୁଖରେ ରହନ୍ତ । ଅନ୍ନମଏ ପିଣ୍ଡଟି । ଆତ୍ମା କୃଶଳେ ସର୍ବ ସିଦ୍ଧି । ଆତ୍ମାକୁ କଷ୍ଟ ଦେଇ

କି ଧର୍ମ ସାଧିବ ରେ ? ତୁମ ବାପା ପରା ଏତେ ଧର୍ମ କରୁଥିଲେ, ବା'ଷଠି ବର୍ଷରେ ମଲେ । ଧର୍ମ କଲେ ଭାଗ୍ୟ ବଦଳିବ ? ଆପଣା କର୍ତ୍ତବ୍ୟ କରୁଥା, ଠାକୁରଙ୍କ ନାଁ ନଉଥା, ମନଟା ତାଙ୍କଠି ଥାଉ, ଏତିକି କଲେ ହେଲା । ସମସ୍ତିଙ୍କଠି ଭଗବାନ ଅଛି, ସେଇଥା ଭାବି ସମସ୍ତିଙ୍କି ନିଜ ପରି ଦେଖ, ଦୁଃଖୀ ରଙ୍କୀଙ୍କି ଦିଅ, ସବୁବେଳେ ହୃଦୟରେ ଦୟାପଦ ଥାଉ, ତା'ରି ନାଁ ଯେ ଅସଲ ପୂଜା । କରିହଉଚି କୋଉଠି ?''

ଚାଲିଲା ଆମ ଘରେ ଦି'ପ୍ରକାର ରୋଷେଇ, ଅରୁଆ ଓ ଉଷୁନା, କେତେଥର ଏକା ଅରୁଆ ରୋଷେଇରେ ବି ଚଳିଯାଏ ।

ସେମାନଙ୍କ ପୂଜା ଉଆ ବଢ଼ି ବଢ଼ି ଚାଲିଲା । ଏବେବି ଚାଲିଛି । ବୋଉ କହୁଥିଲା, ''ଯାହାର ଯେମନ୍ତ ରୁଚି । ଯେ ଯୋଉ ବାଟରେ ଠାକୁରଙ୍କୁ ଲୋଡ଼ୁ । ମନ ଦୃଢ଼ ଥିଲେ ଗଡ଼ିଆ ଗଙ୍ଗା ।''

** ** **

କୋଉଠୁ ଆସିଥିଲା ବାଙ୍କା ?

ମନେନାହିଁ ।

ଯେମିତି ଖାଲି ଫୁଲର ମହକ ହିଁ ମନେରହିଛି । କୋଉଠୁ ତୋଳି ଆଣିଥିଲି ତା ମନେନାହିଁ ।

ସେ ସେହି ପାଟ୍‌ନାର । ବୋଉ କହେ ପାଟ୍‌ନାରେ କାଉମାନେ ବି ହିନ୍ଦୀରେ ବୋବାନ୍ତି । କିନ୍ତୁ ବାଙ୍କା ଓ ମୋ ଭିତରେ ଭାଷାର ବ୍ୟବଧାନ ବି ନ ଥିଲା ।

ଅକସ୍ମାତ୍ ଦିନେ ମୁଁ ତାକୁ କାଖେଇ ଘେନି ଆସିଥିଲି, ସେତେବେଳେ ତା ଦେହରେ ଥିଲା ବହଳ ରୁମୁରୁମିଆ ବାଦାମୀ ବର୍ଣ୍ଣର ସାନ କୋଟ୍‌ଟିଏ, ମୁହଁଟି ଗୋଲ, କାନ ଯୋଡ଼ିକ ଓଦା, ପତକା ପରି ଓହଳି ପଡ଼ିଥାଏ, କାନ କଣାରେ ଯେଉଁ ଟିଙ୍କଉକୁଣି ଥା'ନ୍ତି, ତାଙ୍କୁ କବାଟ ଡେରିଦେଇ ଉଦ୍ଧୁଆଳ କରିଥାଏ । ଗୋଲ ଗୋଲ କଳାଭଅଁର ଆଖି ଯୋଡ଼ିଏ । ଲାଞ୍ଜଟି ସରୁ, ଲମ୍ବା । ମୁଁ ତାକୁ ଛାତିରେ ଯାକିଥାଏଁ । କେତେବେଳେ ସେ ମୋ ଛାତି ପକେଟ୍‌ରେ ମୁହଁ ଗଳେଇ ଶୁଙ୍ଘୁଥାଏ, ସେଠି ବେଳେ ବେଳେ ଯେଉଁ ମୁଢ଼ି ଗଣ୍ଡିଏ ଥାଏ, କାଳେ ତହିଁରୁ କିଛି ରହିଯାଇଥିବ ।

''ଭାଉଜୋଉ, ଦେଖିଲ, ୟା ମୁହଁ ସୁନ୍ଦର ନୁହେଁ ?''

''ଅବିକଳ ତମରି ମୁହଁ ପରି ପରା ।'' ମତେ ଖୁସି ଲାଗିଲା । ବୋଉ

କହିଲା "ଆଗୋ, ମୋ ପୁଅ ମୁହଁ ପରି କାହିଁକି ହବ ବା, ତମ ପୁଅ ମୁହଁ ପରି କିନା !" ତାଙ୍କ ପୁଅ ଶ୍ୟାମ ସେତେବେଳେ ଏଡ଼େ ଟିକିଏ ।

ବଡ଼ଭାଇ ଆସିଲେ, କହିଲେ, "ତଳେ ଛାଡ଼ିଲୁ ।" ଛାଡ଼ିଲି । ବାଙ୍କା ଚାଲିଲା ଆଠବଙ୍କୀ ହୋଇ ନଡ଼ନଡ଼ ହୋଇ । ଭାଇ କହିଲେ "ବାଃ, ଯା ନାଁ ଦେ ବାଙ୍କା ।"

ସମସ୍ତେ ତାକୁ ବେଢ଼ି ବସିଲୁଁ । ସେ ପୁଣି ମୋ କୋଡ଼କୁ ଫେରିଆସିଲା, ସେଇଠି ମୁଣ୍ଡ ଥୋଇ ଡବ ଡବ କରି ସମସ୍ତିଙ୍କୁ ଅନାଇଁଲା । ଛୋଟିଆ କରି ଜିଭ କାଢ଼ି ମୋ ଲୁଗାକୁ ଚାଟୁଥାଏ । ତା'ର ଇର୍ଷ୍ୟା ହେଲା । ସେ ପୁରୁଷ ପିଲା । ତା'ଠି କୋଡ଼ିଏଟି ନଖ, ତେଣୁ ସେ ଭାରି କାମୁଡ଼ା ହେବ । ତା କାନ ମୋଡ଼ା ହେଲା, ଲାଙ୍ଗୁଡ଼ ମୋଡ଼ା ହେଲା, ତା'ର ଉଁ ନାହିଁ କି ଚୁଁ ନାହିଁ, ତେଣୁ ସେ ସାହସୀ ହେବ ।

ଭାଇ ତାଙ୍କର ମନ୍ତବ୍ୟ ଦେଲେ ।

"ଯେ ଗୋଟିଏ ହାଉଣ୍ଡ୍-ଟେରିଅର୍-ଆଲ୍‌ସେସିଆନ୍ ମିଶା କୁକୁରଟିଏ, ମୁହଁ ଆଉ ବଙ୍କା ଗୋଡ଼ ତ ବୁଲ୍‌ଡଗ୍‌ର । ଯା ଯତ୍ନ ନେବାକୁ ପଡ଼ିବ, ତା'ହେଲେ ଯେ ବଡ଼ଦିନେ କିଛି ଗୋଟାଏ ହବ । ରହୁ ।" ନିନି, ଶାମ, ଧୁନି, ତା ଟିକି ଦେହରୁ ପୁଳାଏ ଲୋମ୍ ମୁଠେଇଲେ । ଭାଉଜୋଉ ପାଟି କଲେ, "ଇସ୍ ! ଛିଃ" କହିଲେ "ରଖିବ ଯଦି ହୁସିଆର୍‌ରେ ରଖ, ନଇଲେ ଘରେ ପଶିବ, ହାଣ୍ଡିକୁଣ୍ଡେଇ ମାରା କରିବ, ସବୁ ଅଇଁଷା କରିବ ।"

ବୋଉ କହିଲା, "ଯାକି ଯାକି ବୁଲିଲେ ସେ ରୋଗିଣା ହୋଇଯିବ ।"

ବାଙ୍କା ଗୃହୀତ ହେଲା ।

ଆରମ୍ଭ ହେଲା ତା ତାଲିମ୍ । ଭାଇ କହିଲେ "ଗୋଟାଏ ଗାତ ଖୋଳି ତହିଁରେ ପକାଇଦେ, ସେ ଉଠିବାକୁ ଚେଷ୍ଟା କରି କରି ଲମ୍ବା ହେବ ।" ବିଚରା ବାଙ୍କାକୁ ସକାଳେ ଗୋଟାଏ ଗାତ ଭିତରେ ପକାଇ ଦିଆହୁଏ, ସେ ତଦ୍ୱାରା ଲମ୍ବ ହେଲା କି ନା ଜଣାନାହିଁ, କିନ୍ତୁ ତା'ର ସ୍ୱର ସାଧନା ହେଲା । ବଡ଼ କରୁଣ ଶୁଭେ ସେ ସ୍ୱର । ମୁଁ ବାରମ୍ବାର ଯାଇ ଯାହାକିଛି ଖାଦ୍ୟଦ୍ରବ୍ୟ ପକାଇଦେଇ ଆସେଁ, ଆଉ ଆଶ୍ୱାସନା ଶୁଣାଏଁ, "କାନ୍ଦନା ବାଙ୍କା, କସରତ୍ କର, ଡେଙ୍ଗା ହବୁ, ଲମ୍ବା ହବୁ, ଭାଇ କହିଚନ୍ତି ।"

ବେଳେ ବେଳେ ଭାଇ ତାକୁ ଜିନିଷ ନେ ଆଣ କରିବାକୁ ଶିଖାନ୍ତି ।

ତା ପାଟିରେ ଗୋଟାଏ ଦାନ୍ତକାଠି ଧରେଇ ଦିଆହୁଏ, ଭାଇ କହନ୍ତି "ବାଙ୍କା ଆଣ୍ ।"

ସେ ସିଧା ଦାନ୍ତକାଠି କାମୁଡ଼ି ମୋ ପାଖକୁ ଆସେ । ଭାଇ କହନ୍ତି, "ବଡ଼ ହେଲେ ସେ ନକ୍ସଣ ଧରି ଯା'ଆସ କରିବ ।" ମୁଁ କହେଁ, "ଦରକାର ପଡ଼ିଲେ ଦି'ପହରେ ଆପଣଙ୍କ ପାଖକୁ ପାନଡବା, ଟିଫିନ୍ କ୍ୟାରିଅର୍ ନେଇ ବି ଯିବ । ଖାଲି ଥରେ ଜାଗାଟା ଦେଖାଇ ଦେଲେ ହେଲା ।"

ଭାଉଜୋଇ କହନ୍ତି "ଆଉ ! ତମ ବୁଦ୍ଧି ବୀର ବଳଦ ପଟେ ।"

ତାକୁ ଥାକ ଉପରେ ଅଧାକାନ୍ଥି ଉପରେ ବସାଇ ଦିଆହୁଏ, ସେ ତଳକୁ ଡେଇଁ ଶିଖୁ । ସେମିତି, ସୂତାରେ ରୁଟିଖଣ୍ଡେ ବାନ୍ଧି ତାକୁ ହାଇଜମ୍ପ୍ ଅଭ୍ୟାସ କରାହୁଏ ।

ଅନେକ ସମୟରେ ମୁଁ ପାଠ ପଢ଼ିଲାବେଳେ ବାଙ୍କାକୁ କୋଡ଼ରେ ଧରି ବସି ପଢ଼େଁ, ଯାହା ପଢ଼ିଥାଏ ତା ଆଗରେ କହେଁ, ସେ ଡବ ଡବ କରି ଅନାଏଁ ।

ଶୀତଦିନ । ବାଙ୍କା ରାତିରେ ଏକୁଟିଆ ଶୋଇବାକୁ ଆପତ୍ତି କରେ । କେତେଥର ମୁଁ ତାକୁ ମୋ ପାଖରେ ଶୁଆଏଁ । ତଳେ ନଡ଼ା, ତା ଉପରେ ଅଖା, ତା ଉପରେ କନ୍ଥା, ତା ଉପରେ ଆମେ । ବାଙ୍କା, ମୁଁ, ମୋ ବୋଉ । ସେପଟେ ବୋଉ ଦେହର ଉଷ୍ମ୍, ଏପଟେ ବାଙ୍କା ଦେହର ଉଷ୍ମ୍ । ବୋଉ ମୋର ସର୍ବସହଣୀ । ତଥାପି କହେ "ବାଳୁତ ପିଲାଟିଏ ସେ, କିଛି ଜାଣିନାଇଁ, ହେଲେ କ'ଣ ହେଲା, ଯେତେହେଲେ କୁକୁରଟାଏ ତ, ଆଉ କ'ଣ ମଣିଷ ? ତୋ ଦେହ ଗନ୍ଧେଇବ, ରୋଗ ହେବ ।"

ବାଙ୍କା ଚାହୁଁ ଚାହୁଁ ବଢ଼ିଗଲା । ତା'ର ବଡ଼ ବଡ଼ ରୁମଗୁଡ଼ିକ କୁଆଡ଼େ ଉଭେଇଗଲା, ଉଠିଲା ସାନ ସାନ ରୁମ । ତା କାନ ଦି'ଟା ଠିଆ ହୋଇଗଲା । ଯେତେ ସଫା କଲେ ସେଥିରେ କର୍ଣ୍ଣକୁଣ୍ଡଳ ପରି ଟିଙ୍କ ଲାଗିଥାନ୍ତି । ତା ଗୋଲ ମୁହଁ ବଦଳିଯାଇ ବାହାରିଲା ଲମ୍ବ, ହାଡୁଆ ହୋଇ ଥୋମଣିଟାଏ ।

ସେ ସବୁ ଖାଇଲା; ପିଲାଙ୍କ ଅସନା, ବୋଉର ଖଙ୍କାର, ମୋର ନାସାମୃତ, ସବୁପ୍ରକାର ପୋକଯୋକ, ଆଉ ଆମେ ଯାହା ଖାଇ ଫୋପାଡ଼ିଦେଉଁ ସବୁ, ଯଥା – ଖଡ଼ାଚୋପା, ସଜନାଚୋପା, ବାଇଗଣ ଭୁଣ୍ଡି, ସେ ଖାଇଲା ଶାଗ, ଲଙ୍କା, ଅମୃତଭଣ୍ଡା, ଲାଉ, ଆଳୁ, କଖାରୁ, ବାଇଗଣ, ପୋଟଳ, ସବୁ ।

କିଛି ନ ପାଇଲେ ସେ ଜାଳେଣି କାଠ ବି ଚୋବାଏ । ଦେଖେ ସେଥିରେ ବି କ'ଣ ରସ ଥିବ । ଯେ ଯାହା ଖାଏ ବାଙ୍କା ସେଠି ପହଞ୍ଚିଯାଏ, ଲାଙ୍ଗୁଡ଼ ହଲାଏ, ମାଗେ, ଓଠ ଚାଟେ, ଖାଇଲା ପରି ମୁଖଭଙ୍ଗୀ କରେ । ଭାଇ କହିଲେ; ''ଏଇଟା ତୁଚ୍ଛ କଣ୍ଟ୍ରିବ୍ରିଡ୍ ।''

ବାଙ୍କାର ପ୍ରଥମେ ପାରିଲାପଣ ଜଣାପଡ଼ିଲା, ଯେତେବେଳେ ସେ ମୂଷାଟିଏ ମାରିଲା । ସେ କାଠଗଦା ସନ୍ଧିରେ ପଶି ମୂଷାଙ୍କୁ ଛକେ, ଦୁଆରେ ଗୁଣ୍ଡୁଚିମୂଷାଙ୍କୁ ଗୋଡ଼ାଏ, କାଉ, ବଣି, ଘରଚଟିଆ, ଏମାନଙ୍କୁ ଦେଖିଲେ ତଡ଼ିନିଏ, ଦି' ଗୋଡ଼ରେ ଠିଆହୋଇ ଆକାଶକୁ ଅନାଏଁ ।

ଗର୍ବରେ ମୋ ଛାତି କୁଣ୍ଢେମୋଟ ହୋଇଯାଏ । ଟିକିଏ ଖୁଡ଼୍‌କିନା ହେଲେ ବାଙ୍କା କାନ ଡେରେ, ଭୁକେ, ଦୌଡ଼ିଯାଏ ।

ରାତିଯାକ ସେ ତା'ର ମଝିରେ ମଝିରେ ଭୁକୁଥାଏ, ଏପାଖ ସେପାଖ ଧାଉଁଥାଏ । ବେଳେ ବେଳେ ଶୋଇପଡ଼େ, ପୁଣି ନିଦରେ ଥାଇ ମଝିରେ ମଝିରେ ଗାଉଁ ଗାଉଁ ହୁଏ, ଭୁକେ । ସେ ସ୍ୱପ୍ନରେ ବି କର୍ତ୍ତବ୍ୟନିଷ୍ଠ ।

ଘରୁ ଯେ ଯୁଆଡ଼େ ଯାଉ, ବାଙ୍କା ତା ସାଙ୍ଗେ ସାଙ୍ଗେ ଯିବାକୁ ବାହାରିପଡ଼େ । ପଦାରେ ସେ ଚିଲ ବେଗରେ ଦୌଡ଼େ ।

ଦିନବେଳେ ଛୋଟ ପିଲାଏ ଶୋଇଥିଲାବେଳେ ଭାଉଜବୋଉ ଯଦି ଛାଡ଼ିଦେଇ କୁଆଡ଼େ ଉଠିଯାଆନ୍ତି, ଦୁଆର ମୁହଁରେ ଜଗି ବସିଥାଏ ବାଙ୍କା । ସେଥିପାଇଁ ଭାଉଜବୋଉ ତାକୁ ପ୍ରଶଂସା କରନ୍ତି ।

ତାକୁ ପାଚିରି ଉପରେ ଚଢ଼ାଇଦେଲେ ସେ କେମିତି କେମିତି ଛାତ ଉପରେ ବି ଚଢ଼ିଯାଏ, ସେଠି ବି ପହରାଦିଏ । ଓହ୍ଲାଇପଡ଼େ ତା ମନକୁ । କ୍ରମେ ସେ ନିଜେ ପାଚିରି ଉପରେ ଚଢ଼ି ଶିଖିଲା । ରାତିରେ ପହରାବାଲା ଦେଖିଲେ ସେ ଛାତ ଉପରେ ଥାଇ ଭୁକୁଥାଏ, ବେଳେ ବେଳେ ସଡ଼କରୁ ଓଜନ୍ ଜୋତାର ମଚ୍‌ମଚ୍ ଶବ୍ଦ ସଙ୍ଗେ ସଙ୍ଗେ ଶୁଭେ ''ଶଶୁରା କୁତା !''

ବହୁତ ରାତି ହୋଇଥିବ, ଚାରିଆଡ଼େ ନିଶବଦ, ଟେବୁଲ ପାଖେ ଲଣ୍ଠନ ଆଗରେ ମୁଁ ବସି ପଢୁଥିବି । ହଠାତ୍ ଶୁଭିବ ବାଙ୍କାର ସ୍ୱର, ଛାତିଫଟା କରୁଣ ଆଳାପ—

''ଓ୍ୱୋ... ଓ... ଓ... 'ଓ !''

ସତେକି ସେ ଅଶାନ୍ତ ଅତୃପ୍ତ ସ୍ୱର ଯୁଗ ଯୁଗର ହଜିଲା ଅତୀତକୁ ବିକଳ ହୋଇ ଖୋଜୁଛି, କେତେ ମୁହଁ, କେତେ ଦୃଶ୍ୟ, କେତେ କେତେ ଘଟନାର ଇତିହାସ । ଖାଲି ଅନ୍ଧାର, ଶୂନ୍ୟତା । କେତେ ଦୂରରେ ନିଭି ଆସୁଥିବା ସ୍ମୃତି ପରି ମିଟିମିଟି ତାରାଗୁଡ଼ାଏ ।

ସତେଯେମିତି ଇତିହାସ ବହି ଜୀବନ୍ୟାସ ପାଏ । ପାଟ୍ନା ମ୍ୟୁଜିଅମ୍‌ରେ ଯେଉଁ ମୂର୍ତ୍ତିମାନଙ୍କୁ ଦେଖି ଆସିଥିଲି, ସେମାନେ ଜୀଇ ଉଠନ୍ତି ।

ମନେ ପଡ଼ିଯାଏ, ଥରେ ଗୋଟିଏ ଘାଗ୍ରା ପିନ୍ଧିଥିବା ଘଷିବିକାଳି ସ୍ତ୍ରୀଲୋକଟିଏ ତା'ର ସୁନ୍ଦର ମୈଥିଳୀ ହିନ୍ଦୀରେ କହିଥିଲା; "ଆମ ଘର ଜନକ୍-ପୁର ମା, ସୀତାଦେବୀ ସେଠି ଜନ୍ମ ହୋଇଥିଲେ ପରା ।" ମନେପଡ଼ନ୍ତି ବୁଦ୍ଧଦେବ, ଅଶୋକ, ନାଳନ୍ଦା ବିଶ୍ୱବିଦ୍ୟାଳୟ ।

ବାଙ୍କା ଅତୀତକୁ ଉଦ୍‌ବୋଧନ ଦିଏ ସେ ଛାତ ଉପରୁ । ମନେପଡ଼ନ୍ତି ମୋ ବାପା, ସେ ଆଉ ନାହାନ୍ତି ।

ଖୋଲା ପଡ଼ିଥିବା ବହିର ପୃଷ୍ଠା ତିନ୍ତିଯାଏ ।

ସମସ୍ତେ ଶୋଇଛନ୍ତି । ସେ ଘରୁ ଶୁଭୁଛି ଭାଇଙ୍କ ସୁସ୍ଥ ନିଦର ଛନ୍ଦାୟମାନ ଘୁଙ୍ଗୁଡ଼ି ଶବ୍ଦ ।

ମତେ କେହି ଦେଖୁନାହିଁ, ଖାଲି ଭଗବାନ,
"ଗଡ୍ ଦାଉ ସା-ଏଷ୍ଟ ମି !"

"କାହିଁକି ତୁମେ ଏଡ଼େ ନିଷ୍ଠୁର ଭଗବାନ ? କାହିଁକି ମୋ ବାପା ମଲେ ? କାହିଁକି ଆମର ଏ ଦଶା ?"

ବାପାଙ୍କୁ ମନେ ପକାଏଁ । ଟେବୁଲ୍ ଉପରେ ନଇଁପଡ଼େ ମୋ ମୁଣ୍ଡ । କଇଁ କଇଁ ହୋଇ ମୁଁ ମନେ ମନେ କହେଁ, ଓଠ କମ୍ପେଇ କମ୍ପେଇ କହେଁ, "ମତେ ଯାହା କହିଥିଲ ମୁଁ ସେଇଆ କରୁଚି ବାପା, ମୁଁ ହେଳା କରୁନାଇଁ ।"

ଆଖି ଆଗରେ ବାପାଙ୍କ ମୁହଁ ହସିଲା ପରି ଦିଶେ ।

ବାଙ୍କା ଦେଢ଼ ବର୍ଷର ହେଲା । ତା ସଙ୍ଗରେ ମୋର କେତେ ଦୁଃଖ ସୁଖ । ମୁଁ ଯାହା ଅନୁଭବ କରିଥାଏଁ, ପ୍ରଶଂସା କି ନିନ୍ଦା, କେତେବେଳେ କେଉଁ ମନଦୁଃଖ, ସବୁ ଫୁସ୍‌ଫୁସ୍ କରି ତା ଆଗରେ କହେଁ । ନିରୋଳା ଥାନ ଦେଖି ଆମେ ବସିଥାଉଁ । ମୁଁ ତା ଓଠ ଟେକେଁ, ଦାନ୍ତଗୁଡ଼ିକ ଦେଖେଁ,

ହ୍ୱା ପାଟି ଭିତରେ ହାତ ପୂରାଏଁ, ନିଶକୁ ଆସ୍ତେ ଆସ୍ତେ ଓଟାରେଁ, ଲାଙ୍ଗୁଡ଼କୁ ଚୁମୁଟେଁ, କାନ ମୋଡ଼େ, ପିଠି ଆଉଁସେ । ତାକୁ ଫୁସ୍‌ଫୁସ୍ କରି କଥା କହେଁ । ସେ ଶୁଣୁଥାଏ, ବେଳେ ବେଳେ ମୁଣ୍ଡ ହଲାଏ, ହଠାତ୍ ଉହୁଙ୍କି ପଡ଼ି ମୋ ଓଠକୁ ଚାଟିଦିଏ, କେତେବେଳେ ମୋ କାନ୍ଧରେ ଦୁଇ ହାତ ମୁହଁକୁ ମୁଣ୍ଡକୁ ଶୁଂଘେ, ମୁଣ୍ଡବାଳକୁ ଓଟାରେ । ତା ଦେହର କୁକୁରିଆ ଗନ୍ଧ ମୋ ନାକକୁ ଅଭ୍ୟାସ ହୋଇଯାଇଥିଲା । ମୁଁ ତାକୁ ଗାଧୋଇଦିଏଁ, ପୋଛିଦିଏଁ, କୁଣ୍ଡେଇଦିଏଁ, ଖାଇବାକୁ ଦିଏଁ । ଦିନବେଳେ ସେ ମୋ ଟେବୁଲ୍ ପାଖେ ମୋ କତିରେ ତଳେ ଶୋଇଥାଏ । ମୋ ସଙ୍ଗେ ସ୍କୁଲ୍ ଫାଟକଯାକେ ଯାଏ, ଖେଳ ପଡ଼ିଆକୁ ଯାଏ, ବୁଲି ଯାଏ । ମୁଁ ତାକୁ ଅନ୍ୟ କୁକୁରଙ୍କ ଆକ୍ରମଣରୁ ରକ୍ଷା କରେ, ସେ ବି ନିଜେ ନାନା ଉପାୟ ଜାଣେ । ଖୁବ୍ ଚଞ୍ଚଳ ଦୌଡ଼ି ପଳାଇପାରେ, ଲୁଚିବାକୁ କନ୍ଦି ଆବିଷ୍କାର କରିପାରେ, ଗୋଟିକିଆ କୁକୁର ହେଲେ ସେ ଡରେ ନାହିଁ, ଖୁବ୍ କୌଶଳରେ ତଣ୍ଟିରୁ କାମୁଡ଼ି ଧରେ । ତା ଦେହରେ ନାନା କ୍ଷତଚିହ୍ନ ତା'ର ଗୌରବ ବଢ଼ାଏ, ମୋ ବୋଉ ସେଥିରେ ଉଷୁମ୍ ହଳଦୀବଟା ଲଗାଇଦିଏ ।

ରାତିରେ ପହରା ଦିଏ, ଦିନରେ କାହାର କିଛି କରେ ନାହିଁ, ଖାଲି ନିଛାଟିଆ ବେଳେ ସେ ଘର ଜଗିଥାଏ । ଆମ ପଡ଼ାରେ ସେ ଜନପ୍ରିୟ ହେଲା । ଆପଣା ପାଇଁ ପଦାରେ ସୁଆଦିଆ ଭୋଜନ, ପେଟପୂରା ଭୋଜନର ବିଭିନ୍ନ ସ୍ଥାନ ବି ସେ ଖୋଜିନେଲା ।

ତା'ପରେ ତା ଜୀବନରେ ଉଦୟ ହେଲେ ଧରଣୀବାବୁ ।

ସେଦିନ ସକାଳ ମୋର ମନେଅଛି । ବେଳ ନଅଟା ହେବ । ମୁଁ ଦାଣ୍ଡପିଣ୍ଡାରେ ବସି ପଢୁଥାଏଁ । ଦେଖିଲି, ଉଗ୍ରମୂର୍ତ୍ତି ହୋଇ ଜଣେ ଡେଙ୍ଗା କଳା ଲୋକ ଗୋଟାଏ ହାତରେ ବାଲ୍ଟିଟାଏ ଧରି ଆର ହାତଟା ମୁଠେଇ ଉଞ୍ଚେଇ ଦୌଡ଼ି ଦୌଡ଼ି ଆସୁଛନ୍ତି, ଖାଲି ଦେହ, ତେଲ କି ଝାଳ ଜିକ୍‌ଜିକ୍, ସାମ୍ନାରେ ଦୌଡ଼ିଛି ବାଙ୍କା ।

''ତୋମାର୍ ହତଛାଡ଼ା କୁକୁର୍ ବ୍ୟାଟାକେ ବେଁଧେ ରାଖ୍‌ତେ ପାର୍‌ନା ?'' ସେ ରାଗରେ ଗରଗର ହୋଇ କହିଲେ, ''ତୋମାର୍ ଦାଦା କଇ ?''

ବାଙ୍କା ସେତେବେଳକୁ ଘର ଭିତରେ କୁଆଡ଼େ ଲୁଚିଲାଣି । ଧୀରେ ଧୀରେ ତାଙ୍କ ଅଭିଯୋଗ ଜଣାପଡ଼ିଲା । ରାସ୍ତା କଳ ପାଖେ କୁକୁରଟା ଶୋଇଥିଲା । ତାଙ୍କ ପୁଅ ଗଲା ଗାଧେଇ । କୁକୁର ତାକୁ ଘୁମୁରିଲା ।

ସେ ପାଖକୁ ଗଲା । କୁକୁର ତାକୁ ଗୋଡ଼େଇଲା । ସେ ଯେମିତି ''ବାବା ଗୋ'' ବୋଲି ପାଟିକଲା, ସେମିତି ଧରଣୀବାବୁ ଧାଇଁ ଆସିଲେ । କୁକୁର ପଳାଇଲା, ସେ ଗୋଡ଼େଇଲେ । କହିଦେଇ ଗଲେ, ''ଦେଖ, ତୁମ ଭାଇ କେଡ଼େ ଶାନ୍ତ ଭଦ୍ରଲୋକ, ତୁମେ ନିଜେ କେଡ଼େ ଭଲ ପିଲା, ଆଉ ଏ କୁକୁରଟା ରଖିଚ ଯେ, କାମୁଡ଼ି ଗୋଡ଼ାଉଚି । କେତେବେଳେ କାହାକୁ କାମୁଡ଼ିବ, ତାକୁ ବାନ୍ଧିରଖ ।''

ବାନ୍ଧି ରଖିଲି । ଅନୁସନ୍ଧାନ କରିବାକୁ ବାହାରି ପଡ଼ିଲି । ଧରଣୀବାବୁ ଯାହା କହିଲା, ଘଟନା ତା ନୁହେଁ । ସେ କଳ ପାଖରେ ମୋର କେତେ ସାଙ୍ଗମାନଙ୍କ ବସା । ଘରେ କଳ ଅଛି, କିନ୍ତୁ ପାଣି ଖର୍ଚ୍ଚ କମେଇବାକୁ ଧରଣୀବାବୁ ସେହି ରାସ୍ତା କଳରୁ ପାଣି ବୋହି ନିଅନ୍ତି, ସେଇଠି ଗାଧାନ୍ତି । ତାଙ୍କ ପୁଅଟି ଭାରି ଖୁଚୁବୁଚିଆ । ସେ ବାଙ୍କାକୁ ବିନା କାରଣରେ କେତେଥର ଢେଲା ଫୋପାଡ଼ିଛି ବୋଲି ବାଙ୍କା ତାକୁ ଚିହ୍ନିଛି । ସେଦିନ ସେ କଳଠୁଁ ଖଣ୍ଡେ ଦୂରରେ ଗୋଟିଏ ଖାଲରେ ଶୋଇଥିଲା, କଳରୁ ପାଣି ବୋହିଗଲେ ସେ ଖାଲରେ ଜମାହୁଏ । କେତେ କୁଲି, ଗଉଡ଼, ବାଟୋଇ ସେ କଳ ବ୍ୟବହାର କରି ଗଲେ, ବାଙ୍କା ତା'ର ଆରାମରେ ଜଳଶାୟୀ ହୋଇଥାଏ । ତା'ପରେ ଆସିଲା ଧରଣୀବାବୁଙ୍କ ପୁଅ । ଦୂରରୁ ହେଣ୍ଡିମାରି କୁହାଟ ଛାଡ଼ିଲା ''ଅ କୁକୁର୍ !'' ଦେଲା ଛାଡ଼ି ଗୋଟାଏ ବୋଲୁଅ, ଭଙ୍ଗାଇଟା ଖଣ୍ଡେ । ବାଙ୍କା କାଂକ୍ କଲା, ତା'ପରେ ଉଠିପଡ଼ି ଚାଲିଆସିଲା । ପିଲାଟା ଦୌଡ଼ି ପଳାଇଲା, ବାଙ୍କା ଫେରିଗଲା ତା ଖାଲକୁ । ତା'ପରେ ଗାଳି ଝାଡ଼ି ଝାଡ଼ି ଧରଣୀବାବୁ ଗୋଡ଼େଇ ଆସିଲେ, ଦୁଲ୍‌ଦାଲ୍ ଦି'ଟା ଇଟା ଫୋପାଡ଼ିଲେ, ବାଙ୍କା କାନ୍ଦି କାନ୍ଦି ଦୌଡ଼ି ପଳେଇ ଆସିଲା, ପଛେ ପଛେ ଧାଇଁଲେ ଧରଣୀବାବୁ ।

ଦିନବେଳେ ବାଙ୍କାକୁ ବାନ୍ଧି ରଖିବା ହିଁ ନିଶ୍ଚିତ ହେଲା । ବାଙ୍କା ଆପତ୍ତି କଲା, ଆମେ ଶୁଣିଲୁ ନାହିଁ ।

ଧରଣୀବାବୁଙ୍କୁ ସାହିଲୋକେ ଭଲ ପାଉ ନ ଥିଲେ । ବ୍ୟବହାରରେ ସେ ଭାରି ଟିଣା, କୁଆଡ଼େ କାହା ଘରକୁ ବି ଯାଆନ୍ତି ନାହିଁ, ପରିବାବାଲା, ଫେରିବାଲା, ବାହାରିଆ ଲୋକ ଓ ମଜୁରିଆମାନଙ୍କ ସଙ୍ଗେ କଳି କରନ୍ତି, ସେମାନେ ଘର ଘର ତାଙ୍କ ଅପକୀର୍ତ୍ତି ଗାଇ ବୁଲନ୍ତି । ସେ ଜିନିଷ ମୂଲାନ୍ତି, ଦର ପଟାନ୍ତି, ଘର ଭିତରକୁ ଜିନିଷ ନେଲାପରେ ପଇସା କାଟନ୍ତି, ନାନା ଯୁକ୍ତି କରନ୍ତି; ''ତୋ ଓଜନ ଠିକ୍ ନାହିଁ । ତୋ ବାଇଗଣ ପୋକା । ବଜାରରେ ଯା ଅଧାଦାମ୍'' ଇତ୍ୟାଦି । ଆପତ୍ତି କଲେ ପାଟିକରି ଗାଳି ଦିଅନ୍ତି, କହନ୍ତି

''ପୁଲିସ୍ ଡାକିବି । ନାଲିସ୍ କର'' ଇତ୍ୟାଦି । କେବେ ଯଦି ଗାଡ଼ି ଚଢ଼ନ୍ତି, ତେବେ ପଇସା ଦେଲାବେଳେ ସାହି ଉଠେ ପଡ଼େ, ଝଟାପଟା । ଠିକାରେ ବାସନ ମାଜିବାକୁ ଚାକରାଣୀ ନିଯୁକ୍ତ କଲେ ପନ୍ଦର ଗୋଡ଼ିଏ ଦିନ କାମ କରାଇ ପଇସା ନ ଦେଇ ତଡ଼ିଦିଅନ୍ତି, କହନ୍ତି ''ତୁ ମୋର ଯା କ୍ଷତି କଲୁ, ତା କ୍ଷତି କଲୁ, ଆଉ ତତେ ରଖିବି ନାହିଁ, ଯା ପଳା, ପୁଲିସ୍‌ରେ ଦେବି ।'' କିଛିଦିନ ପରେ ପୁଣି ସେମିତି ଆଉ ଜଣେ ମିଳିଯାଏ, ପୁଣି ତା'ଠୁ କୋଡ଼ିଏ ଦିନ ବେଠିରେ କାମ ଆଦାୟ କରି ତାକୁ ତଡ଼ନ୍ତି । କେହି କେହି ତାଙ୍କ ଦୁଆରମୁହଁରେ ଓଳିଏ ଖଣ୍ଡେ ବସିରହିଲେ ଛଅଣା ଆଠଣା ଫୋପାଡ଼ିଦେଇ କହନ୍ତି, ''ଯା ପଳା ।''

ଧରଣୀବାବୁଙ୍କ ବଜାର ସଉଦା କରିବା କାହାଣୀ ସମସ୍ତେ କୁହାକୋହି ହୁଅନ୍ତି । ମୁଁ ବି ଶୁଣିସାରିଲା ପରେ ନିଘାକରି ଦେଖିଛି, ସତକଥା ।

ସପ୍ତାହରେ ଚିତ୍‌କୋରାରେ ଦୁଇଦିନ ହାଟ ବସେ । ବହୁତ ବଡ଼ ହାଟ, ପରିବା ତ ଅତି ଶସ୍ତା, ଗଦା ଗଦା, ଅତି ଉତ୍କୃଷ୍ଟ ପରିବା । ଧରଣୀବାବୁ ବଡ଼ ମୁଣିଟିଏ ଧରି ବଜାର କରି ବାହାରନ୍ତି । ବଜାରରେ ବୁଲୁଥାନ୍ତି, ହାତରୁ ମୁଣିଟି ଓହଳିଥାଏ । ଚିହ୍ନାଲୋକ ଦେଖିଲାମାତ୍ରେ ସେ କହନ୍ତି, ''କିଣାକିଣି ସାରିଲେଣି ? ମାଛ କିଣିଲେ ନା ? ଏଡ଼େ ଏଡ଼େ ଗଙ୍ଗା ଇଲିସି, ତେଲ ଭର୍ତ୍ତି, ସେର ତ ଆଜି ଦଶଣା । ଗୋଟାକ ଦେଢ଼ ସେରରୁ ବେଶୀ । ହେଇ ତ ମୁଁ ସେଠୁ ଆସୁଛି ।''

ପୁଣି ''ଆଜିର ପୋଟଳ ଦେଖିଲେଣି ନା ? ଏ ସାନ ସାନ ଗୁଡ଼ାକ ନୁହେଁ, ହେଇ ସେଠି ଅଛି, ଦାମ୍ ଆଉ ଦି' ପଇସା ବେଶୀ, କହିଲା ତିନିଅଣା ସେର ନେବ, କହିଲି ହଉ ବାବା, ତୋ ଇଚ୍ଛା, —ଯାହା କହନ୍ତୁ, ଆମ କଲିକତାରେ ଏଡ଼େ ଏଡ଼େ ଜହ୍ନିପରି ଛନଛନିଆ ପୋଟଳ ଦିଶିବ ବି ନାହିଁ । ଘିଅ କରେଇରେ ଗୋଟା ଗୋଟା କରି ଛାଡ଼ିଦେବେ, ଭିତରଟା ଏକଦମ୍ ଲହୁଣି ପରି ଲାଗିବ, ଲାଲ୍ ହୋଇଯିବ । ପଇସା ପଡୁ ପଛେ, ଭଲକରି ଗଣ୍ଡିଏ ନ ଖାଇଲେ ଏତେଦୂରରେ ଚାକିରି କରିବା ଉଦ୍ଦେଶ୍ୟଟା କ'ଣ ? ''ନା କି ବଲେନ୍ ମଶାୟ୍ ?''

ଗପ କରି କରି ହାଟରୁ ଚାଲିଆସିବା ପରି ଜଣାପଡୁଥିବ, ହଠାତ୍ କହିବେ ''ଆପଣ ଯାଆନ୍ତୁ, ମୁଁ ଭୁଲିଯାଇଛି । ସନ୍ଦେଶ ପାଇଁ ଛେନା ସେରେ ବରାଦ୍ ଦେଇଥିଲି । ଆଜି ନ ନେଲେ ଏଡ଼େ ଭଲ ଛେନା ଆଉ ମିଳିବ ନାହିଁ ।'' ସେ ହାଟକୁ ଲେଉଟି ଯାଆନ୍ତି ।

ନ ଜାଣିଲା ଲୋକ ତାଙ୍କ କଥା ଶୁଣି ଦୀର୍ଘଶ୍ୱାସ ପକାଇ ପକାଇ ଆପଣା ଦୁର୍ଭାଗ୍ୟକୁ ନିନ୍ଦି ହାଟରୁ ଫେରନ୍ତି । ଭାବନ୍ତି ଯେ ଧରଣୀବାବୁ କେତେ ଦାମୀ ଦାମୀ ଜିନିଷ କିଣୁଛନ୍ତି । ଚାଉଳ କିଣିଲେ ତ ସରୁ ବାସମତୀ, ନଖରେ ଚାରିଟା ପଶିବ, ପରିବା କିଣିଲେ ତ ସବୁଥିରୁ ସାର ପରିବା, ଦାମୀ ପରିବା, ଆଉ କେତେ ଜାତିର ।

ସଞ୍ଜ ପାଖ ହୁଏ । ପରିବା ବାଛରା ହୋଇଯାଏ । ବହୁତ ଦୂରରୁ ଲୋକେ କିଣିନେଇ ଚାଲିଯାଆନ୍ତି । ମାଂସ ଦୋକାନରେ କୁକୁରଖିଆ ମାଉଁସ, ମାଛ ଦୋକାନରେ ସଢ଼ା ପଚା କିଛି, ସଢ଼ା ଗିନେଇ ଚୁଙ୍ଗୁଡ଼ି, ଧାଡ଼ି ଧାଡ଼ି ମୁହାଁମୁହିଁ ବସି ପଡ଼ିଥିବା ପରିବା ପସରାରେ ପୋକା, କେମ୍ପା, ଶୁକୁଟା, ବୁଢ଼ା ପରିବା । ଦୋକାନୀ ତାକୁ ବି ବିକିଦେଇ ଚାଲିଯିବାକୁ ଇଚ୍ଛୁକ । ସେତେବେଳେ ଦର ଅଧା ହୋଇଯାଏ, କେଉଁଠି ବା ଅଧାରୁ କମ୍ ।

"ଏ ପୋଟଳ କେତେ ?"

"ଛ ପଇସା ।"

"ଆରେ ଏ ତ ପୋଡିଲେ ଗଛ ହବ । ତିନି ପଇସାକୁ ଅଧ ସେର ଦେ ।"

"ନାଇଁ ଚାରି ପଇସା ।"

"ନାଇଁ ତିନି ।"

ଅଧସେରେ କିଣା ହେଲା । ତା'ପରେ, ପୋକା ବାଇଗଣ ସେରେ, ପଇସାଏ ସେର ନିନୁଅ (ମିଠା ତରଡ଼ା) ଦୁଇ ସେର, ପଇସାଏ ସେର ଶୁଖିଲା ଗାଜର ଦି' ସେର, ଦି' ପଇସାକୁ ସାନ ସାନ ଅଧେ ଅଧେ ସଢ଼ା ଆଳୁ ଅଧସେର, ତିନି ଚାରି ପଇସାକୁ ବୋଝେ ଶାଗ, ହେଉ ପଛେ ଶୁଖିଲା ପୋକରା, ଅଣାଏ ଦି' ଅଣାର ସଢ଼ା ମାଛ ବା କୁକୁରଖିଆ ମାଂସ, ଚାରିଅଣା ଛ' ଅଣାକୁ ମୁଣିଭର୍ତ୍ତି, ବଜାର ଶେଷ । ମୁଁ ଯେଉଁଦିନ ତାଙ୍କ ବଜାର ସଉଦା ଦେଖିବାକୁ ତାଙ୍କ ପିଛା ନେଇଥିଲି, —ସେ ଏ କୁକୁର ଘଟନାର ବହୁତଦିନ ପୂର୍ବରୁ, ସେଦିନ ସେ ମତେ ତଡ଼ିବାକୁ ବହୁତ ଉପାୟ କରିଥିଲେ । ଆଗ ମତେ ଚାହିଁଦେଇ ଗହଳି ଭିତରେ ତରତର ହୋଇ ଚାଲିଲେ । ମୁଁ ବି ଚାଲିଲି । ଗୋଟିଏ ପସରା ପାଖେ ହାବୁଡ଼ା ହାବୁଡ଼ି, ସେ ଗାଜର କିଣୁଥିଲେ । ତା'ପରେ ମତେ ପଚାରିଲେ ମୁଁ ସଉଦା କିଣିଛି କି ନାହିଁ । ଡେରି କଲେ ଘରେ ଅସୁବିଧା ହେବ, ମୋ ପଢ଼ା ନଷ୍ଟ ହେବ, ଏପରି ଅନେକ ସଦ୍‌ବୁଦ୍ଧି ଦେଲେ । କିନ୍ତୁ ମୁଁ ତାଙ୍କର ପାଖେ ପାଖେ ଥାଏଁ ।

ସେ ପୁଣି ଗହଳିରେ ପଶିଗଲେ । ମୁଁ ଠାଏ ଦି'ଠା ତାଙ୍କ ସଉଦା କିଣା ଦେଖି ତା'ପରେ ମାଛ-ମାଂସ ଦୋକାନରେ ଅପେକ୍ଷା କଲି । ଶେଥା ଧଳା ରୂପା ପରି ଦିଶୁଥାଏ ଗୁଡ଼ାଏ ସାନ ସାନ ସରୁ ମାଛ ଥାଏ । କେହି ଗରାଖ ଆସୁ ନ ଥାନ୍ତି । ସେ ଆସିଲେ । ମୂଲେଇଲେ । ମାଛ ଓଜନ ହେଲା । ତା'ପରେ ମତେ ଦେଖିପାରି କହିଲେ "ବାବା, ୟେ ପଏଜନ୍, ୟେ ପଏଜନ୍, ଭଲ ମାଛ କିଣିବାକୁ ହେଲେ ଆଗରୁ ଆସିବାକୁ ପଡ଼େ", ୟା କହି ସେ ତରତର ହୋଇ ପଳାଇଗଲେ, ମାଛବାଲା ଡାକ ଛାଡୁଥାଏ, "ଆରେ ପଗ୍‌ଲା ଆଦ୍‌ମୀ କାହାଁ ଭାଗ୍‌ଗିଆ ଓ ବାବୁଜୀ !"

ମୁଁ ଚାଲି ଆସିଥିଲି ।

ବାଙ୍କା ଦିନରେ ବନ୍ଧାହୁଏ, ସଞ୍ଜ ହେଲେ ଫିଟେ । କିନ୍ତୁ ସେହିଦିନଠୁଁ ସେ ଧରଣୀବାବୁଙ୍କୁ ଭୁଲି ନ ଥିଲା ।

ସଞ୍ଜ ଅନ୍ଧାର ପଡ଼ିଲେ ଧରଣୀବାବୁ ତାଙ୍କ ଭଦ୍ରତା ଜଗି କୋଡ଼ି ଧରି ଉଦ୍ୟାନ କର୍ମ କରନ୍ତି । ନଲ୍ଲଣଟିଏ ଧିମି ଧିମି ହୋଇ ଜଳୁଥାଏ । ସେ ଶାଗପଟାଳି କରିଥିଲେ, ବାଇଗଣ ଓ ଟମାଟୋ ଚାରା ଲଗାଇଥିଲେ । ସେ ବାଙ୍କାକୁ ଗୋଡ଼େଇବାର ୩ ଦିନ ପରେ ଦିନେ ରାତିରେ ବାଙ୍କା ଯାଇ ତାଙ୍କ ବାରିରେ ପଶି ସବୁ ଗଛ ଓପାଡ଼ି ଖିନ୍‌ଭିନି କଲା । ସେ ବହୁତ ପରିଶ୍ରମ କରିଥିବ, ଗଛମୂଳ ମାଟିକୁ ଚାରିଗୋଡ଼ରେ ଖୋଳି ଖୋଳି ଥୋଡ଼ାଏ ଗଛକୁ କାମୁଡ଼ି ଏହିପରି ଭାବିଚିନ୍ତି ଧ୍ୱଂସକର୍ମ କରିବାକୁ ସମୟ ଲାଗିଥିବ । ଧରଣୀବାବୁ ଜାଣିପାରିଲେ ନାହିଁ । ସକାଳକୁ ସେ ଯେଉଁ ପାଟିକଲେ ଯେ, କହିଲେ ନ ସରେ । କୁକୁରର ପାଦଚିହ୍ନ ପଡ଼ିଥିଲା, କିନ୍ତୁ ଏଡ଼େବଡ଼ ହିଂସାତ୍ମକ କାଣ୍ଡ କୌଣସି କୁକୁର କରିଥିବ, ସେ କଳ୍ପନା ହିଁ କରିପାରିଲେ ନାହିଁ । ତାଙ୍କ ଘର ବି ଆମ ଘରଠୁଁ ଅତି ପାଖ ନୁହେଁ, ତିନିଟା ଖଣ୍ଡେ ଧାଡ଼ି ଛାଡ଼ି ଗୋଟାଏ ଧାଡ଼ି ମଝିରେ ଠାଏ, ବାଙ୍କା କେମିତି ସେ ଘର ଠାବ କଲା, ତା ବି ଜାଣିବା କଷ୍ଟ । ସେ ତ ବହୁତ ଲୋକଙ୍କୁ ସନ୍ଦେହ କଲେ, ଦୋଷ ଦେଲେ, ଗାଳି ଫୈଛତ୍ ଲାଗିଲା, ପୁଣି ସେ ବଗିଚା କାମରେ ଲାଗିଗଲେ । କେତେଦିନ ଗଲା । ଶାଗପଟାଳି ଠିଆହେଲା, ବାଇଗଣ, ଟମାଟୋ, ଅନ୍ୟାନ୍ୟ ପରିବା ଗଛ ମୁଣ୍ଡ ଟେକିଲା । ପୁଣି ପହଞ୍ଚିଲା ବାଙ୍କା । ପୁଣି ଧ୍ୱଂସକଲା । ତହିଁଆରଦିନ ସକାଳୁ ପୁଣି ଧରଣୀବାବୁ ପାଗଳ ପରି ହେଲେ । କିନ୍ତୁ ସେଦିନ ରାତିରେ ସେ ଜଗିରହିଲେ । ବାଙ୍କା ଗଲା, ଯାହା ଅବଶିଷ୍ଟ ଥିଲା ସେତକ ଧ୍ୱଂସ ଆରମ୍ଭ କଲା । ଧରଣୀବାବୁ ଦେଖିଲେ । ତହିଁଆରଦିନ

ସକାଳୁ ଆମ ଘରେ ଆସି ଫେରାଦ୍ ହେଲେ । ବାଙ୍କା ବନ୍ଧା ହୋଇଥାଏ । ଅତି ନିରୀହଟିଏ ପରି ଦିଶୁଥାଏ ।

ବାଙ୍କା ରାତିରେ ବି ବନ୍ଧା ହେଲା । ବହୁତ ଚିତ୍କାର କଲା, କେହି ଶୋଇପାରିଲେ ନାହିଁ, ପୁଣି ତାକୁ ମୁକ୍ତି ଦିଆଗଲା ।

ତା'ପରେ ଧରଣୀବାବୁ ଫେରାଦ୍ ହେଲେ, ବାଙ୍କା ତାଙ୍କ ପୁଅକୁ ଯେଉଁଠି ଦେଖୁଛି ଖେଙ୍କି ଗୋଡ଼ୋଉଚି, ରାତିରେ ତାଙ୍କ ଘର ଆଗରେ ଶୋଉଛି । ପଦାକୁ ବାହାରିଲେ ଘୁମୁରୁଛି ।

ଭାଇ ତାଙ୍କୁ ପଚାରିଲେ, ''ତା'ହେଲେ ଆପଣ କ'ଣ କହୁଛନ୍ତି ? ସାହିରେ ଏତେ ମଣିଷ ଅଛନ୍ତି, ଆପଣଙ୍କ ଘର ବି ପାଖ ନୁହେଁ, କୁକୁରଟା ଖାଲି ଆପଣଙ୍କର ଅନିଷ୍ଟ କରିବାକୁ ଧାଉଁଚି ? ରାତିରେ ବାନ୍ଧିଲେ ତ ଆମେ କେହି ଶୋଇପାରିବୁ ନାହିଁ । ଆପଣଙ୍କ କଥା ମାନି ଦିନଯାକ ସେ ବନ୍ଧାହୁଏ । ଆପଣ ନିଜେ କହନ୍ତୁ କ'ଣ କରିବା । ଏ ତ ବଡ଼ ଅଦ୍ଭୁତ କଥା କି ନା ।''

ଭାଇ ରାଗନ୍ତି ନାହିଁ । କିନ୍ତୁ ତାଙ୍କ ଆଖି କଠୋର ଦିଶୁଥିଲା । ତାଙ୍କ ମୂର୍ତ୍ତିକୁ ବକା ପରି ଚାହିଁ ଚାହିଁ ଧରଣୀବାବୁ ଚାଲିଗଲେ, କହିଗଲେ,

''ତାଇତୋ ବଟେ !''

ଚାରିଦିନ ଗଲା । ସକାଳେ ପଢ଼ାଘରେ ମୁଁ ପଢୁଥାଏଁ । ବେଳ ନଅଟା ହେବ । ଗୋଟାଏ ବନ୍ଧୁକ ଫୁଟିବା ଶବ୍ଦ ଶୁଭିଲା । ହଠାତ୍ ମୋ ମନକୁ ପାପ ଛୁଇଁଲା । ଧାଇଁଯାଇ ଦେଖିଲି ବାଙ୍କା ତା ଦଉଡ଼ି କାଟି କୁଆଡ଼େ ପଳାଇଛି ।

କିଏ ବନ୍ଧୁକ ଫୁଟେଇଲା ବୋଲି ଖବର ନେଲି । ସାଙ୍ଗମାନେ ଦଉଡ଼ି ଦଉଡ଼ି ଆସି କହିଲେ ମ୍ୟୁନିସିପାଲିଟିରୁ କୁକୁରମରା ଲୋକ ଆସି ବାଙ୍କାକୁ ଗୁଳିକରି ମାରିଛି ।

କୁକୁରମରା ଲୋକ ଧରଣୀବାବୁଙ୍କ ଆଗରେ ଖାତାଟା ମେଲେଇ ଠିଆହେଲା । ସେ ଦସ୍ତଖତ୍ କରନ୍ତୁ, ସେ କୁକୁର ମାରିଛି । ତା'ହେଲେ ସେ ମ୍ୟୁନିସିପାଲିଟି ଅଫିସରୁ ତା ପାଉଣା ପାଇବ । ଧରଣୀବାବୁ ରାଗି ନିଆଁ । ''କ'ଣ ? ମୋ ବନ୍ଧୁ ଘରର ପୋଷା କୁକୁରଟାକୁ ତୁମେ ମାରିଦେଲ, ବିଚରା କାହାରି କିଛି ଦୋଷ କରିନାହିଁ, ରାସ୍ତାରେ ଯାଉଥିଲା, ମତେ କହୁଚ ଖାତା ଦସ୍ତଖତ୍ କର ?''

ସେ ଲୋକ ବି ରାଗରେ ନିଆଁ, କହିଲା, "କେଡ଼େ ବିଚିତ୍ର ଭଦ୍ରଲୋକ ହୋ ତେମେ ? ତେମେ ଦରଖାସ୍ତ କଲ ଏଠି ଗୋଟାଏ ପାଗଳା କୁକୁର ମାତିଛି, ଲୋକ ପଠାଇ ମରାଇଦିଅ, ସେଇଥିପାଇଁ ଠେଙ୍ଗାବାଲା ନ ପଠେଇ ବନ୍ଧୁକବାଲା ପଠାହେଲା । ମତେ ତୁମେ ନିଜେ ସାଙ୍ଗରେ ବୁଲେଇ କୁକୁରଟାକୁ ଦେଖାଇଦେଲ, ଅଇଲ୍ଲା ଉଲଟି ପଡୁଚ ?"

ହଁ, ବନ୍ଧୁକ ଖଣ୍ଡେ ହାତରେ ଅଛି ବୋଲି ଏଡ଼େ ସାହସ । ମୋ ନାଁ'ରେ ପୁଣି ମିଥ୍ୟା ଅପବାଦ । ନଚ୍ଛାର୍ କୋଥାକାର୍ ।"

ଲୋକ ଜମିଗଲେ ।

କୁକୁରମରା ତାଙ୍କ ଅପକୀର୍ତ୍ତି ଗାଇ ଗାଇ ଘର ଘର ବୁଲିଲା, କହିଲା, "ଦସକତ୍ ଦିଅ, ନ ହେଲେ ଯେଉଁ ଗୁଳି ଖର୍ଚ୍ଚ କଲି, ତା ଦାମ୍ ବି ମୋ ହାତରୁ ପଡ଼ିବ ।"

କେହି ମଙ୍ଗିଲେ ନାହିଁ ।

ଶେଷରେ ପହଞ୍ଚିଲା ଜଗତ୍‌ବାବୁଙ୍କ ଫାଟକ ପାଖରେ । ନିଜେ ଜଗତ୍‌ବାବୁ ସବୁ ଶୁଣି ତା ଖାତାରେ ଦସକତ୍ କଲେ, କହିଲେ, "ବାଙ୍କା ଟିକି ପିଇସାଙ୍କର କ'ଣ ତା ମୁଁ ଜାଣେ । ସେ ତ ମଲାଣି । ଯେ ଗରିବ ଲୋକର କି ଦୋଷ ? ବାଙ୍କାର ଆତ୍ମା ସ୍ୱର୍ଗକୁ ଯିବଣି । ଯେ ଗରିବ ଲୋକ ତା ପାଉଣା ପାଉ ।"

ମନ ଗହୀରରେ ଅକୁହା ଦରଜ ହାକୁ ହାକୁ ହୁଏ । ବାଙ୍କା ନାହିଁ । ମୋ ଭିତରୁ ଖଣ୍ଡେ ନାହିଁ । ତତଲା ଆଖିର ଦରଦର ଝରରେ ବାଙ୍କାର ସ୍ମୃତିର ତର୍ପଣ ହୁଏ । ବହୁତ ଦିନ ।

ପଛରୁ ଧୀରି ଧୀରି ଆସି ବୋଉ ପିଠି ଆଉଁସିଦିଏ । କହେ "ଛି ! ଅଣ୍ଡିରୀ ପୁଅ ପରା । ତା କର୍ମରେ ଥିଲା । ନ ହେଲେ ସେ ଦଉଡ଼ି ଛିଣ୍ଡେଇ ପଳାଇଥାନ୍ତା କାହିଁକି ! ତା ବୋଲି କେତେ ଝୁରି ହବୁରେ । ତୋ ବାପା ପରା ଚାଲିଗଲେ !"

** ** **

ପଢ଼ାଘର ଝରକାରୁ ଦିଶେ, ଧୋବ ଧାଉଳିଆ ଧେଡ଼େଙ୍ଗା ଗୋରା ତେଙ୍ଗା ଟୋକାଟିଏ ଘରୁ ବାହାରି ବାଡ଼ କରକୁ ଚାଲିଯାଏ, ଯାତୁକୁ ସ୍ୟାତୁକୁ ଅନାଏଁ, ପକେଟ୍‌ରୁ କାଢ଼େ ସିଗାରେଟ୍, ଦିଆସିଲି, ସିଗାରେଟ୍ ଟାଣେ, ବାଡ଼ ଡିଆଁଇ ଫୋପାଡ଼ିଦେଇ ପୁଣି ତରକି ତରକି ଘର ଭିତରେ ପଶେ, ସାଢ଼େ ନଅ ହେଲେ ସାଇକଲ ପଛରେ ବହି ବାନ୍ଧି ସେ ବାହାରି ଚାଲିଯାଏ ।

ସେ କଲେଜ୍‌ରେ ପଢ଼େ ।

ତା ତଳଟି ସ୍କୁଲ୍‌ରେ ପଢ଼େ ।

ଆଉ ଦିଶେ, ଗୋଲଗାଲ ଗୋରୀ ହୋଇ ଭଦ୍ରମହିଳାଟିଏ, ବୟସ ବେଶି ନୁହେଁ । ତା'ରି ପରି ଚେହେରା ଟିକି ଟିକି ଝିଅ ଯୋଡ଼ିଏ । ଏକୁଟିଆ ଥିଲାବେଳେ ମହିଳାଟିର ମୁହଁଟି ଖୁସି ଖୁସି ଦିଶେ, ଅତି ସୁନ୍ଦର ଦିଶେ ସେ ଯେତେବେଳେ ତା'ର ତିନି ବର୍ଷର ଝିଅଟିକୁ ଗେଲ କରେ, ଝରକା ପାଖେ ବସି ତାକୁ ଟେକିଧରି ଏଇଟା ସେଇଟା ଦେଖାଏ, ତା ସଙ୍ଗରେ କେତେ କ'ଣ ଦୁଃଖସୁଖ ହୁଏ ।

ବୋହୂଟି କଲେଜ୍ ପିଲାର ସାବତ ମା', ସ୍କୁଲ୍‌ପିଲାର ସାବତ ମା', ଗୋଟିକ ପରେ ଗୋଟିଏ ହୋଇ ଯୋଡ଼ିଏ ଭାରିଜା ମଲାପରେ ତା ସ୍ୱାମୀ ତାକୁ ବିଭା ହୋଇଛି ।

ସ୍କୁଲ୍ ପିଲାର କାଳୀ ବଡ଼ ଭଉଣୀଟିଏ ବି ଦିଶେ, ଧେଡ଼େଙ୍ଗୀ ହୋଇ ଝିଅଟିଏ, ଘର ଭିତରେ ଥାଏ ।

ସେ ଘରର ସବୁ ହସଖୁସି ମଉଳିଯାଏ, ଯେତେବେଳେ ବାବୁ ଘରକୁ ଆସନ୍ତି । ବୋହୂଟିର ମୁହଁରେ ପରିଷ୍କାର ହୋଇ ଫୁଟିଉଠେ ଭୟର ହାବଭାବ । ସେ ଚରଚର ହୋଇ ଏକର ସେକର ହୁଏ । ଘରୁ ମଝିରେ ମଝିରେ ଗର୍ଜନ ଶୁଭେ । କେବେ କେବେ କାହାର ଚିତ୍କାର ଶୁଭେ । ମଝିରେ ତାଙ୍କ ହତାରୁ କିଛି, ସେଉଠୁ ତାରବାଡ଼, ସେଉଠୁ ସଡ଼କ, ସେଉଠୁ ଆମ ହତାରୁ କିଛି, ସେଉଠୁ ମୋ ପଢ଼ା ଘରର ଝରକା, ଶୁଭେ ଦୁମ୍‌ଦାମ୍ ଗୁମ୍‌ଗାମ୍ ଶବ୍ଦ, ତା ସଙ୍ଗେ ସଙ୍ଗେ କାନ୍ଦଣା । ବୋହୂଟିକୁ ତା ସ୍ୱାମୀ ବିଧା ଚଟକଣା ମାରିବାର ମୁଁ ଦେଖିଛି, ବୋହୂଟି ପାଟିକରି ଉଠିଲାବେଳେ ତା ପାଟିରେ ହାତ ମାଡ଼ିଦେଇ ଝରକାଟା ଧଡ଼୍‌କିନା ବନ୍ଦକରି ଦେବାର ମୁଁ ଦେଖିଛି । କାନ୍ଦଣା ଶୁଭେ । କେବେ କେବେ ବାହୁନା, ବଡ଼ କରୁଣ ଛାତିଫଟା ବାହୁନା

"ଓ ମାଁଗୋ...ଓ

ଓଗୋ ବାବା ଗୋଓ...ଓ...

ଆମି ମରେ ଗ୍ୟାଲୁମ୍ ଗୋଓଓଓ...

ଆମାକେ ମେରେ..."

"ଫେର୍... ଫେର୍... ଆବାର୍" ଗୁମ୍-ଗୁମ୍-ଗୁମ୍, ତା'ପରେ ସବୁ ଚୁପ୍‌ଚାପ୍ ।

ଭାବେଁ, କ'ଣ ହେଲା ? ସତେ କ'ଣ ଦୀପ ନିଭିଗଲା ?

ପୁଣି ସ୍ୱାମୀ ଅଫିସ୍ ଗଲେ ବୋହୂଟିକୁ ଝରକା ପାଖେ କେବେ କେବେ

ଦେଖେଁ, ସେ ତା ଛୁଆଙ୍କ ସଙ୍ଗେ ହସ କଉତୁକ ହେଉଥାଏ, ତା ମୁହଁରେ ଯନ୍ତ୍ରଣା କି ଦୁଃଖର ଲେଶମାତ୍ର ଚିହ୍ନ ନାହିଁ ।

ତା ସ୍ୱାମୀକୁ ଖାଲି ଦେହରେ ଦେଖିଛି, ଖୁବ୍ ହୃଷ୍ଟପୁଷ୍ଟ ମଣିଷ, ତେଙ୍ଗା ଯେମିତି ମୋଟମାଟ ସେମିତି, ମାଉଁସିଆ ବଡ଼ ମୁହଁଟାଏ, ଗୁଣ୍ଡା ପରି ଦିଶନ୍ତି । ପଦାକୁ ବାହାରିଲେ ଧଳା ଲୁଗା ଉପରେ ଧଳା ପଞ୍ଜାବି, ଅଫିସ୍ ଗଲାବେଳେ ପୋଷାକ । ବାହାରେ ସେ ଦିଶନ୍ତି ଜଣେ ଶାନ୍ତଶିଷ୍ଟ ଗମ୍ଭୀର ଭଦ୍ରଲୋକ ପରି, ଅଳ୍ପ କଥା କହନ୍ତି, ଶିଷ୍ଟାଚାର କେବେ ଭାଙ୍ଗନ୍ତି ନାହିଁ । ତାଙ୍କ ଘରକୁ ଅନ୍ୟ କେହି ଭଦ୍ରଲୋକ ଯିବାର ମୁଁ ଦେଖିନାହିଁ । ସେ ବି କୁଆଡ଼େ ଯାଆନ୍ତି ନାହିଁ । ସାହି ମାଇପେ ବୁଲି ଯାଆନ୍ତି, ଶିଖାଶିଖି ହୋଇ କୁତୂହଳରେ ।

"କାଲି ରାତିରେ ତୁମ ଘରେ କିଏ ବାହୁନୁଥିଲା କି ?"

ବୋହୂଟି କହେ, "ମୁଁ ବାହୁନୁଥିଲି, ଚିଠି ଆସିଲା, ମୋ ପିଇସୀ ମା ମରିଗଲେ ।" ବୋହୂଟି ଆଖି ପୋଛେ ।

"ସେଦିନ ପରା ପିଇସୀ ମା ମଲେ ବୋଲି ରାତିଯାକ ବାହୁନୁଥିଲ ।"

"ଉହୁଁ", ବୋହୂଟି କହେ, "ସେଥର ମାଉସୀ ମା ମଲେ ନା ।"

"ଆହା, କେଡ଼େ ଦୁର୍ଭାଗ୍ୟ ଲୋ ! ତେମେ ଏଠି ଅଛ, ତେଣେ ମାଉସୀ ମଲା, ପିଇସୀ ମଲା, ତକାତକି ହୋଇ ସବୁ ଚାଲିଯାଉଛନ୍ତି ଆହା ! ...ହଁ । ଏଠି ଯେ କ'ଣ ନୋଳା ଫାଟିଯାଇଛି ବା ?"

"କ'ଣ ପୋକଟାଏ କାମୁଡ଼ି ଦେଲା ।"

"ବିଶାଲ୍ୟକରଣୀ ଲଗା, ବିଶାଲ୍ୟକରଣୀ, ତମ ଭାଷାରେ ତାକୁ କ'ଣ କହନ୍ତିଟି ?"

"କିଜାନି ?"

"ହେଇଥିବ କିଜାନି ପତର । ସେଇ କିଜାନି ପତର ବାଟି ଲଗେଇଦିଅ ଯେ, ଦରଜ କମିଯିବ ।"

ସାହି ମାଇପେ ତାଙ୍କ ଘରକରଣା ବିଷୟରେ ଖୋଳିତାଡ଼ି ପଚାରନ୍ତି । "ପିଲାଙ୍କ ପାଇଁ କି ଜଳଖିଆ କର ମା ?"

"କ'ଣ ଆଉ କରିବି ? ଛ' ଛ' ପଟ ଲୁଚି ଘିଅରେ ଛାଣିଦିଏଁ, ମେଞ୍ଚେ ଲେଖାଁ ଆଳୁଦମ୍, ଦି' ଦି' ଖଣ୍ଡ ପୋଟଳଭଜା, ବାଇଗଣ ଭଜା, କୋଉ କୋଉ ଦିନ ତା ସାଙ୍ଗରେ ରାବିଡ଼ି ଏକ ଏକ ପ୍ଲେଟ୍ ।"

"ହଁ, ତେମେ ତାଙ୍କର ନିଜ ମା'ଠୁଁ ବଳି । ନହେଲେ ଏତେ ଖର୍ଚ୍ଚ କରନ୍ତ ?"

ଭାରି ସୁକୁମାରିଆ ପିଲାଗୁଡ଼ାକ ନା, ଅନ୍ୟ ଜଳଖିଆ ତାଙ୍କ ପାଟିକି ରୁଚିବ ନାହିଁ ।''

''ହେଲେ ବୋହୂ, ସବୁଦିନେ କ'ଣ ସବୁକଥା ଥାଏ ? ଏ ଲୁଚି, ଆଲୁଦମ୍, ରାବିଡ଼ି ଆଜିକାଲି ଯୁଗରେ କାହାକୁ ମିଳେ ? ସେଥିରେ ପୁଣି କୁଟୁମ୍ବ ଆହୁରି ବଢ଼ିବେ ।''

''କି ଆଉ କରି !'' ବୋହୂଟି ହସେ ।

''କାହିଁକି ? ବେଳ ଥାଉଁ ଥାଉଁ ପିଲାଗୁଡ଼ାକୁ ତାଲିମ୍ କରୁନା ? ଚୂଡ଼ା ଦହି ଚିନି କରି ପେଟେ । ଆଜିକାଲି ତ ଖରାଦିନ, ପଖାଳ କରିଦେବ, ଶାଗ ଖରଡ଼ିଦେବ, ଆମ୍ବ ଛେଚିଦେବ, ଆଚାର ଖଣ୍ଡେ ଖଣ୍ଡେ ଧରେଇଦେବ । ଶୁଖୁଆ ଖଣ୍ଡିଏ ବେସର ଦେଇ ଭାଜିଦେଲେ ତ ମଜୁ ଉଠିପଡ଼ିବ ଗୋ ! ନଇଲେ ଏ ପଥର କୋଇଲା ନିଆଁପାଖେ ଏତେଥର ବସିଲେ ତମ ଦେହ ରହିବଟି ?''

ବୋହୂଟି ଦୀର୍ଘଶ୍ୱାସ ପକାଇ କହେ ''ହେଲେ ତ ଭଲ ହ'ନ୍ତା । କିନ୍ତୁ ଆମ ଦେଶରେ !'' ସେ ମୁହଁ ନେଫେଡ଼େ, କହେ ସେମାନେ ପଖାଳ ଖାଆନ୍ତି ନାହିଁ, ଶୁଖୁଆ ଗନ୍ଧ ପାଖ ପଶନ୍ତି ନାହିଁ । ତୁମ ଘରେ ଶୁଖୁଆ ଭଜା ହେଲେ ପରା ଏମାନେ ଝରକା ବନ୍ଦ କରନ୍ତି । କ'ଣ ଆଉ କରିବି ! ସେ ଅଭ୍ୟାସ ତ ସେମାନଙ୍କ ଦେହରେ ଚଳି ନାହିଁ । ଏଠି ସିନା ସରକାର ଘରେ ଚାକିରିଆ ହୋଇଚନ୍ତି, ଆମ ବାଂଲା ଦେଶରେ ଗୃହାଳଭର୍ତ୍ତି ଗୋରୁଗାଈ, ଅମାର ଭର୍ତ୍ତି ଧାନ, ପୋଖରୀ ଭର୍ତ୍ତି ବଡ଼ ବଡ଼ ମାଛ, ସେଠି ଅଭାବ କ'ଣ ?''

''ତେବେ କି ଦୁଃଖରେ ଏଠି ଆସି ପଡ଼ିଚ ?''

ବୋହୂଟି ଦୀର୍ଘଶ୍ୱାସ ପକାଏ, କହେ ''କପାଳ । ବାବୁ ଖୋଜନ୍ତି ଇଜ୍ଜତ୍, ବଡ଼ବାବୁ ହେବେ, ଆଉ ବଡ଼ବାବୁ ହେବେ; ଏଣେ ଦରମା ଗଣ୍ଡାକ ପଛେ ଚା' ଜଳଖିଆକୁ ନଅଣ୍ଟୁ, ମାସକୁ ମାସ ଘରୁ ମନିଅର୍ଡ଼ର ହୋଇ ଶହ ଶହ ଆସୁଥାଉ । ଲୋକଙ୍କ ରୁଚି ତ । ସେଇଥିପାଇଁ । ସେ ଯୋଉଠି ଆମେ ସମସ୍ତେ ସେଇଠି । ଯେ ବି ଭଲ, ଘରର ଆୟ ଘରେ ସାଇତା ହୋଇ ରହିଛି, ଆମେ ପଛେ କିଣି ଖାଉଁ ।''

ସାବୀବୋଉ ଅପା ପ୍ରକୃତରେ ଖାନ୍ଦାନୀ ଜମିଦାର, ଯାଜପୁର ଆଡ଼ର ପୁରୁଣା ମହାନାଏକ ବଂଶର, ତାଙ୍କ ସ୍ୱାମୀ ଦାମୋଦର ନାଏକ, ଖାଲି ଦେହରେ ପଇତା ଝଟକୁଥାଏ, କାନ୍ଧରେ ପାଚିଲା ଗାମୁଛା । କହନ୍ତି ''ସତକଥା କହିଲ ।

ଆମ ଜିନିଷ ତେଣେ ଭୂତ ଖାଉଛନ୍ତି, ଏଠି ଯେ ଆମେ କିଣିଖିଆ, ଚାକିରି କଲେ ପରା ଏଇଆ । ଧନ୍ୟରେ ବାବୁ ଚାକିରି । ଯାହା କହ ଆମ୍ଭକୁ ଯେ ଲୁଚି ଆଲୁଦମ୍ ରୁଚେ ନାହିଁ, କି ସାରଟା ଅଛି ଏଥିରେ ଯେ । ଛୁଆଙ୍କୁ ମୋର ଚୁଡ଼ା, ବସାଦହି, ଘିଅ, ଛେନା, ପାଚିଲା କଦଳୀ ଚକଟାଟାଏ ଦିଏଁ, ନ ହେଲେ ଦିଏଁ ଦହିପଖାଳ, ଶାଗ ଭଜା, ଶୁଖୁଆ ଭଜା, ଆଉ କ'ଣ ଏଣୁତେଣୁ ପରିବା ସନ୍ତୁଳା । ସକାଳୁ ଏଣ୍ଡୁରି କି ମୁଆଁପିଠା କରି ଦେଇଥାଏଁ । ଆଉ ମଝିରେ ମଝିରେ, ଦିପହରେ ପିଠା କରେଁ, ଏଇ କାକେରା, ଆରିସା, ମଣ୍ଡା, ଛୁଞ୍ଚି ପତର ତ ଆଉ କ'ଣ ? ତା ବି ସବୁଦିନେ କାହୁଁ ହବ ? କିଏ ମୋର ଏ ବଟାବଟି ଫେଣାଫେଣି କାମ୍ଭକୁ ପାରିବ ? ଏଠା ମଣିଷଙ୍କୁ କ'ଣ ଆସେ ।''

ଦିନେ ଶନିବାର ହୋଇଥାଏ । ସବୁଦିନ ପରି ଗୋଟାଏବେଳେ ମୁଁ ଘରକୁ ଆସେଁ, 'ଜଳଖିଆ' ଖାଇବି ବୋଲି, ପାଟି କରେଁ ।

''ବୋଉ, ଦେ ପଖାଳ'', ନଇଲେ ''ଭାଉଜୋଉ, ଦିଅ ପଖାଳ ।''

ନାଲିବଗଡ଼ା ଚାଉଳର ପଖାଳ, ବଡ଼ ତାଟିଆରେ ତାଟିଆଏ, ଦି'ଟା ପିଆଜ, ଗୋଟାଏ ଲଙ୍କା, ଟିକିଏ ଆମ୍ବୁଲ, ଏତିକି ହେଲେ ମୋର ପରମ ସନ୍ତୋଷ । ଅନେକଥର ଥାଏ ଟିକିଏ ସନ୍ତୁଳା କି ତରକାରି । ବୋଉ ନିଜେ ନ ଖାଇ ବି ମୋ ପାଇଁ ରଖିଦେଇଥାଏ । ଅନେକଥର ବଡ଼ିପୋଡ଼ା ଥାଏ, ସେ ତ ଅତି ଚମତ୍କାର । ବୁଢ଼ାଆଙ୍ଗୁଠି ଟିପରେ ଦାବିଦେଲେ ଚୂନା ହୋଇଯାଏ । ସେଥିରେ ଚୁନି ଚୁନି ପିଆଜ ଲଙ୍କା ପକାଇ ତେଲ ଟିକିଏ ଦେଲେ ସେ ପ୍ରସ୍ତୁତ ।

ସେଦିନ ବି ମୁଁ ଆସି ଖାଉଥାଏଁ, ସାବୀବୋଉ ଅପା ଓ ଅନ୍ୟମାନେ ସାମ୍ନା ଘରକୁ ବୁଲି ଯାଇଥାନ୍ତି । ଇସ୍କୁଲିଆ ପିଲାଟି, ଆସିଲା, ଜଳଖିଆ ମାଗିଲା । ତା ମା' କହିଲେ ''ଯାଉଚି ।'' ଗଲେ ।

ସାବୀବୋଉଙ୍କ ଆଖିରେ ଖେଳିଗଲା ଗୁଇନ୍ଦା ପୁଲିସ୍‌ର କୁତୂହଳ । ସେ ଅନ୍ୟମାନଙ୍କୁ ହାତ ଠାରି ତାଙ୍କ ରୋଷେଇ ଘରକୁ ଗଲେ । ଇସ୍କୁଲ୍ ପିଲାଟି, ତା ବଡ଼ ଭଉଣୀଟି ଓ ସାନଝିଅରୁ ଗୋଟିଏ ଖାଇ ବସିଛନ୍ତି । ପ୍ରତ୍ୟେକଙ୍କ ସାମ୍ନାରେ ଗୋଟିଏ ଲେଖାଁ ତାଟିଆ, ସେଥିରେ ମୋଷ୍ଟାଏ ଲେଖାଁ ଶୁଖିଲା ଭାତ ଥୁଆ ହୋଇଛି । ସେମାନେ ସେଥିରେ ସେହିକ୍ଷଣି ପାଣି ଢାଳିଲେ । ସେଉଠୁ ଗାବୁ ଗାବୁ କରି ଲୁଣ ଲଗାଇ ଖାଇବାକୁ ଲାଗିଲେ । କତିରେ ଗୋଟିଏ ଗୋଟିଏ କଞ୍ଚା ପିଆଜ ।

ସାବୀବୋଉ ଅପାଙ୍କ ଆଖି କୁହୁଳି ଉଠିଲା । କହିଲେ "ଆହା, ମରିଯାଉଥାଏଁଟି । ପଖାଳ ବି କରି ଆସେ ନାହିଁ ? ଆଳୁ ଦି'ଟା ମିଳିଲା ନାହିଁ ପୋଡ଼ିଦବାକୁ ? ଏଇଆ ଖାଇ ଯେ ପିଲା ଝିଙ୍କିକା ପରି ମୋଟ ମୋଟ ହେଉଚିନି ? ଏଇ ଚମ ଛ' ଛ' ପଟ ଲୁଚି, ପିଠେଟେ ଲେଖାଁ ରାବିଡ଼ି, ଆଳୁଦମ୍, ପୋଟଳ ଭଜା, ବାଇଗଣ ଭଜା ? ଇଲୋ ବାସନ ମାଜିବାକୁ ଠିକାରେ ମାଇପିଟିଏ ତ ରଖିନାହୁଁ, ନିତି ତ ଧୋବଣୀ ପରି ରାଇଜଯାକର ଲୁଗା ସୋଡ଼ାରେ ସିଝେଇ କାଚି ଶୁଖେଇଥାଉ, କିଏ ଦଉଚି ନା ନଉଚି ଯେ, ଏଡ଼େ ଚାତର କଥା କାହିଁକି ବା ! ଛିଆ ମୋର । ଏଡ଼ିକି ଛୋପରୀ ।"

ମୁହଁକୁ ମୋଡ଼ିଦେଲେ ।

ଶୁଣିଲି, ବୋହୂଟି ତଳକୁ ମୁହଁ ପୋତି କାଠ ପରି ଠିଆ ହୋଇଥାଏ, ତା ମୁହଁ ଶେଥା ପଡ଼ିଯାଇଥାଏ ।

ସେମାନେ ମଝି ଘରକୁ ଫେରି ଆସିଲେ । ଟିକିଏ ଛାଡ଼ି ତାଙ୍କ ପଛେ ପଛେ ବୋହୂଟି ଆସିଲା । ବସିପଡ଼ି ସମସ୍ତିଙ୍କ ମୁହଁକୁ ବଲବଲ କରି ଅନାଇଁଲା । ସେ ମୁହଁ ଶୂନ୍‌ଶାନ୍, ଥମ୍ପିଲା ଥମ୍ପିଲା । ଆଗରେ ଏତେ ମୁହଁ, କେଉଁଟା ଗମ୍ଭୀର, କେଉଁଟାରେ ବାଙ୍କୁଲି ଓଠରେ ହସର ଛୁରୀ, କେଉଁଟାରେ ଆଖି ଯୋଡ଼ିକରେ ସହାନୁଭୂତିର ଛିଟିକା ।

ପାଗଳ ପରି ସାବୀବୋଉ ଅପାଙ୍କ ମୁହଁକୁ ଅନାଇଁ ବସିଲା ।

ସେ କହିଲେ "କ'ଣ ହେଲା ବା ? ମତେ ଗିଳିବୁ କି ?"

ତା ଆଖିରୁ ଟପଟପ ଲୁହ ବୋହିଲା ।

ସାବୀବୋଉ ଅପା ତାକୁ ଭିଡ଼ିନେଇ କୁଣ୍ଢେଇ ପକେଇଲେ, ନିଜେ କାନ୍ଦିପକେଇ କହିଲେ, "ଆଲୋ, ମୋ କଥାକୁ ଛଳ କଲୁ କି ? ମୁଁ ପରା ସେମିତି ତବତବି । ଭିତରେ ଯାହା ବାହାରେ ତା । ପାଖ ପାଖ ସାମ୍ନାସାମ୍ନି ଏତେକାଳ ଥାଇଁ ମୁଁ ତୋ ଦୁଃଖ ଜାଣେନାଇଁ ? ସବୁ ଜାଣେ ଲୋ ସବୁ ଜାଣେ । ସେଇଟା ମଣିଷ ନୁହେଁ, ପଶୁଟାଏ । ମାଇପଖିଆଟା ଯୋଡ଼ାଏ ଯୋଡ଼ାଏ ଖାଇ ଆହୁରି ତା ମନ ଶାନ୍ତି ନାହିଁ । କୋଉଦିନ ଚିନାବାଦାମ୍ ପଇସାଟିକର କିଣି ଖାଇଲେ, ଆଇଲେ ସେ ଚିନାବାଦାମ୍ ଚୋପା ଦେଖିଲେ ଘୋଡ଼ାପରି ଚିହିଁକିବ, ସେଉଠୁ ଚଟେ ଚୁଟି ଧରି ନିସ୍ତୁକ ଛେଚିବ । ଛି ଛି ଛି, ମାଇକିନିଆ ଜନମକୁ ହାତ ଉଞ୍ଚୋଉଚି, ତା'ଠି ମଣିଷପଣିଆ ଅଛିଟି ? ଇଲୋ ତୋ ବିକଳ ଶୁଣି ତେଣେ ମୁଁ ନାଚେଁ, କହେଁ ଯାଉଚି ଯିବି ଦେଖିବି ସେ କେଡ଼େ

ଷଣ୍ଢଟାଏ ହେଇଛି । ଯେ କି ଅନାଚାର । ସଂସାରରେ ନ୍ୟାୟ ଧର୍ମ ବୁଡ଼ିଲା ! ଆଲୋ ଆମେ କ୍ଷତ୍ରିୟ ବଂଶ ଲୋ, ଆମ ଅଜା ପଣ ଅଜାଙ୍କ ହାତରେ କେତେ ଶତ୍ରୁଙ୍କ ମୁଣ୍ଡ ଗଡ଼ଗଡ଼େଇଥିବ ସିନା, ମାଈକିନିଆ ତାଙ୍କ ଆଖିରେ ଲକ୍ଷ୍ମୀ, ଦୁର୍ଗା–''

ବୋହୂଟି କଇଁକଇଁ ହୋଇ କାନ୍ଦୁଥାଏ ।

''କାନ୍ଦନା, କାନ୍ଦନା ମୋ ସୁନା, ଶୁଣ୍ । ସେଉଠୁ ମୁଁ ପାଟିକଲେ ଯେ ଆସି କହନ୍ତି, ତେମେ କାହିଁକି ଏମିତି ହଉଚ, ଥଏ ଧର, ପର ଘର କଥା, ସେ ମହାବିଷମ । ମୋର ସବୁ ରାଗ ତ ତାଙ୍କରି ଉପରେ ଅଜାଡ଼ି ହୋଇପଡ଼େ । ମୁଁ କହେଁ, ହୋ ଧର୍ମପୁରୁଷ, କଲିବେଳେ ତେମେ ପରା ଛାତି ତେରିଦେଲେ ଗାଁ ଗାଁ ଲୋକ ଶଙ୍କିଯାଆନ୍ତି । ତାଙ୍କ ଦାଣ୍ଡକୁ ଯାଇ ଟିକିଏ ଆଖି ତରାଟିଦେଲେ ବିଚରା ମାଇପିଟି ଯେ ଦୁମୁକୁଦୁମାରୁ ବର୍ତ୍ତନ୍ତା ନାଇଁ ? ଅଇଛା ଖାଲି ଗୀତା ଭାଗବତ ପଢୁଥା, ଦୁନିଆଁ ନିହାଲ୍ ହବ । ସେ କହନ୍ତି ଆଲୋ ଓଲି, ଯେ କ'ଣ ଗାଁ ହେଉଚି ? ଯେ ବିଦେଶ । ଅଇଛା ପିଠିରେ ପଡ଼ିବାକୁ ଯିବା, ମାଡ଼ ବନ୍ଦ ହବ । ସେଉଠୁ ଦିନେ ରାତିରେ ସେ ତା ତଣ୍ଟି ଚିପିବ କି ବିଷ ଦବ କି କ'ଣ ନାଇଁ କ'ଣ କରିବ । ତେବେ ତାକୁ ସେତେବେଳେ ଆଗୁଳି ପାରିବ ? ମୁହାଁମୁହିଁ କାମ ହେଲେ ସିନା ତେମେ ଜାଣିବ, ଗୁପ୍ତମାରୁକୁ କିଏ ପାରିବ ? ଯାହା କର୍ମ ସେ ଭୋଗିବ, ତେମେ ତା ପେଇଁ ଠାକୁରାଣୀକି ଡାକ, ମା କନକଦୁର୍ଗାକୁ କହ ।''

ବୋହୂଟା ପିଲା ପରି କାନ୍ଦୁଥାଏ ।

ତା'ର ସବୁ ଲାଜ ସରମ ଭାସିଯାଇଛି, ଭାସିଯାଇଚି ସବୁ ମିଛିମିଛିକିଆ ବାଲିବନ୍ଧ, ଯେତେ ଯାହା ସେ ଗଢୁଥିଲା ବୋଲି ନିଜ ମନକୁ ଭେଳିକି ଲଗାଉଥିଲା, ଦୁନିଆକୁ ପତିଆରା ଦେଖାଉଥିଲା ।

ସାବୀବୋଉ ଅପା ଶାନ୍ତହୋଇ ବୁଝୋଉଥାନ୍ତି, ''କାନ୍ଦନା ମୋ ସୁନା ଭଉଣୀଟା ଲୋ, ଶୁଣ୍ ଇଲୋ ଶୁଣ୍'', ତା ମୁଣ୍ଡକୁ ଆଉଁସୁଥାନ୍ତି, ''ଇଲୋ ଶାହାସ୍ତ୍ର କହିଚି ଗିରସ୍ତ ଗୋଡ଼ ଧୋଇ ପାଣି ପିଇବୁ । ତେବେ ଗିରସ୍ତ ଯଦି ଅମଣିଷ ହେଲା, ତାକୁ ମଣିଷ କରିବ କିଏ ? ଇଲୋ, ମରଣକୁ ଏତେ ଡର କିଆଁ ଲୋ ? ମରିବା ବେଳ ଆଇଲେ ନିଚେଁ ମରିବୁ । ଛୁଆ କି ଗିରସ୍ତ ଗୋଡ଼େଇ ଯିବେ ନାଇଁ । ତୁ ଡରି ଡରି ବିଧା ଗୋଇଠା ସହୁଚୁ । ସହ ନା । ସେ ପିଟି ପିଟି ତୋ ହାଡ଼ ଭାଙ୍ଗିଦଉ । ତୁ ପାଟିରେ କହ, ହେଇଟି ଦେଖ, କାନିରେ ଗଣ୍ଠି ପକେଇଲି, ଆଉ ଏ ଅତ୍ୟାଚାର

ସହିବି ନାହିଁ । ନାଲିଆଖି ଦେଖା, କହ ଖବରଦାର୍ ମୋ ଦେହ ଛୁଇଁନା, ମୁଁ ଦୁର୍ଗାଟି । କହ ଛିଃ ତମ ମୁହଁକୁ, ଆଉ କାହା ଉପରେ ଝଡ଼େଇହେଲ ପାରୁନା, ମୁଁ ଛାର ମାଇପିଟା ଉପରେ ଝଡ଼େଇ ହଉଚ ? ଅସଲ ଗୁମର କଥା କହିଦେ, କହ ପେଟ ପାଇଁ ପର ପାଖେ ନାଟ କରୁଚ, ସେଠୁ ବେଇମାନ ହୋଇ ନାଙ୍ଗୁଡ଼ ଯାକି ଘରକୁ ଫେରିଆସି ମୋ'ରି ଉପରେ ଦାଉ ସାଧୁଚ, ଧିକ୍ ତମ ଜନମ । ଇଲୋ ଟାଣୁଆ ହ, ମନ ବଳ ଅସଲ ଲୋ । ସେ ବଳେ ନଇଁ ପଡ଼ିବ ଦେଖିବୁ । ଆଉ ତୋ ପିଲାଙ୍କ ପାଇଁ ଯାହା ଦରକାର ମନ ହେଲେ ମତେ କହିପକା । ଏକା ମଣିଷ ଲୋ ଆମେ, ଏକା ମାଇପି ଜାତି, ତୁ ଲାଜ କରୁଚୁ କାହାକୁ ?''

ସେମାନେ ଆଉ ତାଙ୍କ ଘରକୁ ଗଲେ ନାହିଁ ।

କିନ୍ତୁ କ'ଣ ହେଲା କେଜାଣି, ଆଉ ସେ ଭଦ୍ରମହିଳା ଉପରେ ମାଡ଼ର ଗୁମ୍‌ଗାମ୍ ଶବ୍ଦ କି ତା'ର ବିକଳ କାନ୍ଦଣା ଶୁଭିଲା ନାହିଁ ।

କିଏ କହିଲା, ''ଖୋଇ କ'ଣ ଛାଡ଼ିବ ? ଦୁମୁକୁଦୁମା ଦଉଥିବ ମ,. ହେଲେ ଚୋର ମା କାନ୍ଦେ ନାହିଁ, କାନ୍ଦିଲେ କବାଟ କିଳି କାନ୍ଦେ ।''

ଆଉ କିଏ କହିଲା, ''ନାଇଁ ନାଇଁ ତା ନୁହେଁ, ତା ଗିରସ୍ତ ଶୁଣିଥିବ, ପିଲାଏ କହିଥିବେ । ଲାଜରା ହେଇଥିବ ।''

ଆଉ କେହି କହିଲେ, ''ତା ନୁହେଁ, ସେଦିନ ସଞ୍ଜପହରେ ପରା ମାଇକିନିଆଟା ତୁଣ୍ଡେ ତୁଣ୍ଡେ ବଡେଇଦେଲା ଲୋ, ଭଲା ଏ ସାବୀବୋଉ, ମନ୍ତ୍ର ଫୁଙ୍କିଦେଇ କାଇଁଶ କାଠିକି କାଇଁଶିକା ଶର କରିଦେଲା, ଶୁଣିନା, ବିଷ୍ଣୁଙ୍କ ଚକ୍ର ବି ତା ପାଖରେ ହାରିଲା ।''

** ** **

ସୌରୀନ୍-ଦା ସଙ୍ଗରେ ମୋର ବନ୍ଧୁତା ହେଲା ମୋର ଷ୍ଟାନ୍‌ଲି ଲେନ୍‌ପୁଲ୍ କୃତ ମୁସଲମାନ୍ ରାଜତ୍ୱର ଇତିହାସ ବହି ଲାଗି, ବହି ଖଣ୍ଡିକ ତା'ର ଦରକାର । ସେ କଲେଜ୍ ଛାତ୍ର, ଇତିହାସ ତା'ର ପାଠ୍ୟ । ସେ ଆହୁରି ଲୋଭେଇଲା, ଯେତେବେଳେ ଦେଖିଲା ଯେ, ଭିନ୍‌ସେଣ୍ଟ୍ ଏ ସ୍ମିଥ୍‌ଙ୍କ ସଂକ୍ଷିପ୍ତ ଭାରତ ଇତିହାସ ବି ମୋ'ଠି ଅଛି, ତା'ଛଡ଼ା ଆହୁରି ଅଛି ଏଲ୍‌ଫିନ୍‌ଷ୍ଟୋନ୍ କୃତ ମଧ୍ୟଯୁଗୀୟ ଭାରତ ଇତିହାସ । ଲେନ୍‌ପୁଲ୍ ଓ ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କ ଇତିହାସ ତ ମୁଁ ହରିଘର କିରାସିନି ପଟା ଆଲମାରି ବୈଠା ଅବସ୍ଥାରୁ ଉଦ୍ଧାର କରି ଆଣି ପଢୁଥିଲି, ଭିନ୍‌ସେଣ୍ଟ୍ ସ୍ମିଥ୍‌ଙ୍କ ସାନ ବହି ସୋନ୍‌ପୁର ହାଇସ୍କୁଲ୍‌ରେ ଆମର ପାଠ୍ୟ ଥିଲା । ସୌରୀନ୍ ଦା କହିଲା, ''ଏଗୁଡ଼ାକ କ୍ଲାସ୍ ନାଇନ୍‌ରେ ତମର କି ଦରକାରରେ

ଆସିବ ? ମିଛରେ ମୁଣ୍ଡ ଗୋଳମାଳ ହୋଇଯିବ ।'' ସେ ବୋଧହୁଏ ବି.ଏ. ପଢୁଥାଏ କି ଆଇ.ଏ. ଶେଷବର୍ଷ ।

ମୋ ପ୍ରୟୋଜନ ମୁଁ ବୁଝିଥିଲି । ପଢ଼ିବାକୁ ଖୁସି ଲାଗେ । ଯେତେ ପଢ଼ିଲେ ଲାଗେ ମୋ ଦେଖନ୍ତା ବାହାରେ 'ପାଠରେ ରାହୁ'ମାନେ ଅଛନ୍ତି, ମୁଁ ସେମାନଙ୍କ ଆଗରେ କିଛି ନୁହେଁ, ବାଟ ବହୁତ ଦୂର ।

ଆମର ବହି ବଦଳ ଉଦଳ ଚାଲେ । ସୌରୀନ୍ ଦା ପାଖରେ ଥିଲା ଭିନ୍‌ସେଣ୍ଟ୍ ଏ ସ୍ମିଥ୍‌ଙ୍କ 'ହିନ୍ଦୁ ଭାରତ', ସେଥିରେ ନାନା କଥା ଥିଲା ।

ଅତୀତରେ ଇତିହାସ ମୋ ଆଖି ଆଗରେ ସତେକି ଜୀଇଉଠେ । ପୁଣି ଆଉ ଘଡ଼ିକି ସେ ଯାଏ ଧୂଆଁ ହୋଇ । ରାଗ ଲାଗେ ।

ରାଗ ଲାଗେ ହିନ୍ଦୁମାନଙ୍କୁ, କାହିଁକି ସେମାନେ ଦେହବଳ ସାଧନା ଛାଡ଼ିଲେ ? ରାଗ ଲାଗେ ଜୟଚନ୍ଦ୍ରକୁ, କାହିଁକି ସେ ବିଦେଶୀ ପାଖରେ ଶରଣ ପଶିଲା ? ରାଗ ଲାଗେ ଭାରତବର୍ଷର ଯୁଗ ଯୁଗର ସ୍ୱାର୍ଥପର, ଚରଣଚୁଟିଆ ଗୁପ୍ତମାରୁ କଳିହା ଲୋକଗୁଡ଼ାକୁ, କାହିଁକି ସେମାନେ ବାରମ୍ବାର ଆପଣା ଆପଣା ଭିତରେ କଳି କରି ଦେଶର ସ୍ୱାଧୀନତା ନଷ୍ଟ କଲେ ।

ମିର୍‌ଜାଫର ପ୍ରତି ରାଗ କୁହୁଳି ଉଠେ, ହନ୍ତସନ୍ତ ହୁଏ, କାହିଁକି ସିରାଜ୍ ଉଦ୍ଦୌଲା ବାରୁଦ ବୋଝେଇ ଶଗଡ଼ଗୁଡ଼ାକ ଉପରେ ବର୍ଷାତି ଘୋଡ଼େଇଦେଲେ ନାହିଁ ଯେ, ପଲାସି ଡୋଟାରେ ବରଷା ଅସରାକ ଛେଚିଗଲା ଉତାରୁ ଯେତେବେଳେ ଇଂରେଜ୍ ପଟରୁ ଗୁଳି ବର୍ଷିଲା, ଅମପଟ ତୋପରେ ଭର୍ତ୍ତି କରିବାକୁ ଶୁଖିଲା ବାରୁଦ ବି ନ ଥିଲା, ଯେତେ ଫୁଟାଇଲେ ଖାଲି ଛିଙ୍କୁଥାଏ ।

କାହିଁକି ଭଗବାନଙ୍କର ଏ ଅବିଚାର ! ଓଃ ! ଗଲା ! ଗଲା ! ଭାରତ ପରାଧୀନ ହେଲା ।

''ବୁଝିଲୁ ବୋଉ, ହେଇ ଅନା ଅଙ୍ଗାରରେ ଗାର କାଟି ମୁଁ ତତେ ବୁଝେଇ ଦଉଚି, କେମିତି ଆମ ସିରାଜ୍ ହାରିଲା, ଆମେ ହାରିଲୁ । ନବାବଙ୍କ ନାତି ନାଁ ଶୁଣିନୋଉଁ ? ସେହି ସେ, ବୀର ସିରାଜ୍ ଉଦ୍ଦୌଲା ।''

ବୋଉ ଦୀର୍ଘଶ୍ୱାସ ପକାଏ । ସବୁକଥା ଶୁଣିବାକୁ ସେହି ତ ମୋର ସାକ୍ଷୀ । ରାତି ନିଛାଟିଆ ପଡ଼ିଲେ ଏକୁଟିଆ ବସି ବସି ଯେତେବେଳେ ପଢୁଥାଏଁ, ମଝିରେ ମଝିରେ ଡାକ ଛାଡ଼ୁଥାଏଁ ''ବୋଉ ! ବୋଉ ଲୋ !''

''ଉଁ !''

''ପଚାରିଲି ଶୋଇଚୁ କି ନାଇଁ ।''

''ତୁ ଶୋଇପଡ଼ରେ ପୁଅ ।''

"ନାଇଁ ତୁ ଶୋ ।"

ହଁ, ସେମାନେ ହାରିଥିଲେ, ବଳ ନ ଥିଲା ବୁଦ୍ଧି ନ ଥିଲା ବୋଲି ଆମେ ବଡ଼ ହେଲେ— ।

ମୁଁ, ଅନିଲ୍ ସାହା, ଚଣ୍ଡୀ, ସୁହାସ, ସୁରେଶ୍, ଭୈରା ଭାଇ, ହୁସେନ୍ ମାଥୁର୍, ଓଃ କେତେ କେତେ ।

ଦି'ପହରେ ମୁଁ ଟେବୁଲ୍‌ରୁ ଉଠି ଚାଲିଯାଏ । ଦାନ୍ତରେ ଦାନ୍ତ ଘଷି, ସରୁ ସରୁ ଡେଣାକୁ ଟାଙ୍କ ଟାଙ୍କି, ଝାଙ୍କି ଝାଙ୍କି, ହାତୁଆ ହାତୁଆ ଛାତିକି ଫୁଲେଇ ଫୁଲେଇ ଦୁମ୍‌ଦାମ୍ ଗୋଡ଼ ପକେଇ ମାଡ଼ିଯାଏଁ, ମୋ ପଢ଼ାଘର ଦୁଆରମୁହଁରୁ ରୋଷେଇ ଘର ଦୁଆରମୁହଁଯାକେ, ସେଉଠୁ ଓହ୍ଲେଇ ପଡ଼ି କଦଳୀଗଛ ସନ୍ଧିରେ ବୁଲି ବୁଲି ପାଚିରି କଣଯାକେ, ସେଉଠୁ ଲେଉଟି ଦାଣ୍ଡ ଘରଯାକେ, ପୁଣି ବାହାରି ରୋଷେଇ ଘରଯାକେ । ମୁଁ ମାରି ପକାଉଛି । କାଟି ପକାଉଛି । ବନ୍ଧୁକ ଦେଖାଇଲି, ଢୁ-ଢୁ-ଢୁ, —ହେଇ ସେମାନେ ମରି ଟଳିପଡ଼ିଲେ, —"ମର, ମର, ମର, ହେଇ ଦେଲି ଖତମ୍ କରି, ବଳୁଆ ହେଇଥିଲ ପରା ? ଜାଣିଚ ଆମେ କିଏ ?" ଚାଲିଚି ହାଇଦର୍ ଅଲି, ମାରି ହାଣି ଜାଳି, ଇଂରେଜ୍ ତ୍ରାହି ତ୍ରାହି ଡାକୁଚି, ତା ବୋଉ ପାଖକୁ ତା ବିଲାତ ଚିଠି ଲେଖୁଚି "ହାଇଦର ଆଉଚି ମାଡ଼ି ଲୋ ବୋଉ, ସେ ଗୋଟାଏ ଆଗ୍ନେୟଗିରି, ଗୋଟାଏ ନିଆଁ ବତାସୀ, ସେ ସାକ୍ଷାତ୍ ମୃତ୍ୟୁ, ଆମେ ଜାଣିନୋଉଁ କେତେବେଳେ ହାଇଦର-ବାଘ ଆମୁକୁ ଗିଳିବାକୁ କୋଉପଟୁ ଡେଇଁ ପଡ଼ିବ । ତା ହାବୁଡ଼ରୁ ବଞ୍ଚିଲେ ଫେର୍ ଚିଠି ଦେବି ମୋ ବୋଉ । ତୋ ଗେହ୍ଲା ପୁଅ ଟମି ।"

"ମର୍—ମର୍—ମର୍—"

ପିଣ୍ଡାରେ ବୋଉ ପାନ ଛେଚୁଚି, ଶୁଭୁଚି "ଦୁମ୍-ଦୁମ୍-ଛପ୍, ଛପ୍-ଠକ୍-ଠକ୍-" ତରତର ତାଳ, ତରତର । ସେଇ ଆମ ମାର୍ଚ୍ଚିଂ ତାଳ । ମନ ହଉଚି କଂସାଟାକୁ ଟାଇଁ ଟାଇଁ ପିଟନ୍ତି, ଭାଉଜୋଉ ଉଠି ପଡ଼ିବେ, ଛୋଟ ଝୁଆ ଉଠିବ, ନହେଲେ ପିଟନ୍ତି । ନପିଟେଁ ।

ହେଇ ମୁଁ ତୋପ ଚଳେଇଲି, ହେଇ ଚାରିଆଡ଼େ ନିଆଁ ବୃଷ୍ଟି ହେଲା । ହେଇ ସେମାନେ ମରିଯାଉଛନ୍ତି ।

"କାଇଁକି ଖରାଟାରେ ବାଇଆ ପରି ସେମିତି ବୁଲୁଚୁ ବା ? ମନକୁ ମନ କ'ଣ ଗୁଡ଼ାଏ ଭୁଟୁରୁ ଭୁଟୁରୁ ହଉଚୁ ? ଦାନ୍ତ ରଗଡୁଚୁ, ମୁହଁ ଆଖି ଭୃକୁଟି କରୁଚୁ । ଯେ ଦେଖିବ କ'ଣ କହିବରେ ପୁଅ ? ତୋ ଆଖିକି ନିଦ ନାଇଁ ?"

"ବୋ–ଦେଖିଲୁ ମତେ, ଦେଖୁ–ଦେଖ୍–ଦେଖ୍– ଏଇ ହାତରେ ଦେଶର ଶତ୍ରୁଗୁଡ଼ାକୁ ମାରି ପକେଇବି, କିଏ ପାରିବ ମତେ ?"

"ହଁରେ ପୁଅ, ଟିପି ଚଢ଼େଇ କହିଥିଲା ପରା, ମା'ଲୋ ମା, ମୁଁ ଯେଉଁ ଡାଳରେ ବସେଁ ସେ ଡାଳ ଭାଙ୍ଗିପଡେ । ମା କହିଲା ହଁରେ ପୁଅ, ତୋ ହାତ ଗୋଡ଼ରୁ ଜଣା ପଡୁଚି ।"

"ବିଶ୍ୱାସ କରୁନୁ ? ତୁ ବିଶ୍ୱାସ କରୁନୁ ? କିଏ ତୁ ? ତୁ ରାଣୀ ଦୁର୍ଗାବତୀ । ତୁ ପୁଣି ଶିବାଜୀଙ୍କ ବୋଉ, ରାଣା ପ୍ରତାପଙ୍କ ବୋଉ, ତୁ ଭାରତ ମାତା, ତୁ ବିଶ୍ୱାସ କର ବୋଉ ଦେଖିବୁ – ଦେଖିବୁ–"

ବୋଉ ମୁହଁରେ ସେହି ବିଚିତ୍ର ହସ, ସେ ହାଇ ମାରେ, କହେ; "ଓହୋ ! ସବୁବେଳେ ଖୁଦୁବୁଦିଆଟା, ଖାଲି ଚରଙ୍କ ଚଢ଼େଇ ପରି ବୁଲୁଥିବୁ । ଦେହରେ ତ ପଲେ ମାଉଁସ ନାହିଁ, ଛାତି ଯେ ବିଦାକାଠି, ଜୀବନ୍ତ ଯାଉଚି କି ଆଉଚି, ସତେରେ ଯେବେ ଧୁସୁରୁଧୁମାଟାଏ ହେଇଥାନ୍ତୁ କ'ଣ ନ ହଉନ୍ତୁ ! ଆରେ ତୋ ମୁହଁ କଳା ପଡ଼ିଗଲାଣି ଅନେଇଁ ହଉ ନାହିଁରେ, ମୋ ସାନକୁହା ମାନ; ଯା' ଟିକିଏ ଶୋଇପଡ଼, ମୋ ସୁନା–"

"ହୁଁ ! ଶୋଇବି ! ଜାଣିଚୁ ବୋଉ, କାର୍ଯ୍ୟଂ ବା ସାଧୟେତ୍ ଶରୀରଂ ବା ପାତୟେତ୍ ।"

"ହଉ ହଉ ଘରକୁ ଯା, ଥିରି ହେଇ ବ ।"

ସାମ୍ନାରେ ଛବିଟିଏ ମାରିଥାଏଁ । କେଉଁ କ୍ୟାଲେଣ୍ଡରରୁ କାଟିନେଇ ଗୋଟାଏ କାଗଜ ପଟା ଉପରେ ଅଠାରେ ମାରିଦେଇଥାଏଁ । ସେ ଗୋଟାଏ ମୂର୍ତ୍ତିର ଫଟୋ । ସୋନ୍‌ପୁରରେ ସଂଗ୍ରହ କରିଥିଲି, କଲେଜ୍‌ରେ ବି ମୋ ସାମ୍ନାରେ ଥିଲା । ତା ତଳେ ବଡ଼ ବଡ଼ ଅକ୍ଷରରେ ଛପା ହୋଇଥାଏ, "ଥିଙ୍କ୍, ପ୍ଲ୍ୟାନ୍ ।"

ଆଉ ତା ତଳେ, ସାନ ସାନ ଅକ୍ଷରରେ, "ରୋଡ଼ିନ୍‌ସ୍ ମାଷ୍ଟରପୀସ୍" ଗୋଟାଏ ପଥର ଉପରେ ପଛଟା ମାଡ଼ି ତଳେ ଦି'ପାଦ ଥୋଇ ପାଠିରେ ଡାହାଣ ହାତର ମୁଠାଟାକୁ ଭରାଦେଇ ମୁଣ୍ଡକୁ ଅଳ୍ପ ନୁଆଇଁ ବସିଥାଏ ଗୋଟାଏ ଲଙ୍ଗଳା ପୁରୁଷ । ସେ କ'ଣ ଭାବୁଥାଏ । ଟେବୁଲ୍ ସେକର କାନ୍ଥରୁ ସେଇ ମତେ ଚେତାଏ "ଥିଙ୍କ୍, ପ୍ଲ୍ୟାନ୍ ।"

ସୌରୀନ୍-ଦା ଡେଙ୍ଗା କିନ୍ତୁ ଦୁର୍ବଳ, ତା ବେକରେ ଶଙ୍ଖିଟା ଶଙ୍ଖ ପରି ବାହାରିଥାଏ, ହାତଗୋଡ଼ ସରୁ ସରୁ, କାମିଜ୍ ପିନ୍ଧିଲେ ବାଗି ହୋଇପଡ଼େ, କାନ୍ଧ ଦୋ'ଟି ନିଃସହାୟ ଓ ଅବଶ, ଛାତିଟା ବାହାରକୁ ନ ଟୋଇଲେଇ ସତେ ଯେମିତି ଭିତର ଆଡ଼କୁ ଟୋଳାଏ, ପିଠିଆଡ଼େ କାମିଜ୍ ଢୋଲା ହୋଇ ଝୁଲେ । ଲୁଗା କୁଞ୍ଚକୁ ପିଠିପଟେ ଖୋଷିଦେଇ ସାମ୍ନାରେ କୁଞ୍ଚରୁ କିଛି କିଛି ବାଁ ପଟେ ଡାହାଣପଟେ ଗେଞ୍ଜିଦେଇ ଲୁଗାଟାକୁ ସେ ଯେତେବେଳେ ପାଇଜାମା ପରି କରେ, ଆଖିରେ ଚଷମା, ଖରାବେଳେ ଦିଶେ ଯେମିତି ଗୋଟିଏ ବଡ଼ କଙ୍କିଟିଏ, ସେଇ ଯାହାକୁ ସେମାନେ କହନ୍ତି 'ଗଙ୍ଗା-ଫଡିଂ' ।

ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ତା ମନରେ ଦୁଃଖ ଥାଏ । ଦିନେ ସେ ଗୋଟିଏ କସରତ୍ ଶିଖାଇବା ବହି କିଣି ଆଣିଲା, ମୁଲର ବୋଲି ଜଣେ ଜର୍ମାନ ପହିଲମାନ୍ ଲେଖିଛି, କି ଇଂରେଜୀ ସାହାବ, ବହି ନାଁ "ମାଇଁ ସିଷ୍ଟମ" ମାନେ 'ମୋ ଉପାୟ' । ସେଥିରେ ବହୁତ ଫଟୋ, ବହୁତ ଛବି, ହାତଗୋଡ଼ ହଲେଇ ଦିନକୁ ପାଞ୍ଚ ମିନିଟରୁ ଆରମ୍ଭ କରି ବଢ଼ି ବଢ଼ି ତିରିଶ ଚାଳିଶ ମିନିଟ୍‌ଯାକେ ମଣିଷ କେମିତି କସରତ୍ କରି ବଳୁଆ ହେବ, କେତେ ଜାତିରେ ଦେହକୁ ମୋଡ଼ିବ, ଭାଙ୍ଗିବ, ସିଧା କରିବ, ଉଠିବ, ପଡ଼ିବ, କେତେବେଳେ ନିଶ୍ୱାସ ବନ୍ଦ କରିବ, ନିଶ୍ୱାସ ନେବ ଆଉ ଛାଡ଼ିବ, ତହିଁରେ ଲେଖା ହୋଇଥାଏ । ମୁଲର୍ କହିଥାନ୍ତି ଛାତି ଭର୍ତ୍ତି କରି ନିଶ୍ୱାସ ନେବା, ଆସ୍ତେ ଆସ୍ତେ ଛାଡ଼ିବା, ତା ସଙ୍ଗେ ସଙ୍ଗେ ଅଙ୍ଗ ଚାଳନା, ସାଧନା ଭାଙ୍ଗଣ, ଏଇଆ କଲେ ଅତି ଜଲ୍‌ଦି ଫଳ ମିଳିବ, ଚର୍ବି ଥିଲେ ଚର୍ବି ଝଡି ପଡ଼ିବ, ସରୁଆ ଥିଲେ ମାଉଁସ ଲାଗିବ, ଦେହଟିର ପ୍ରତ୍ୟେକ ଅଂଶ ସୁଠାମ ହୋଇ ବଳୁଆ ହେବ, ଚିପିଲେ ଲାଗିବ ଲହୁଣି ପରି, ଟାଙ୍କିଦେଲେ ହେବ ପଥର ପରି ଟାଣ ।

ତାଙ୍କଠୁଁ ସେ ବହି ମାଗି ନେଇ ମୁଁ ବି ଅଭ୍ୟାସ କଲି । ଦେହ ତ ଆଗରୁ ଫୁର୍ତ୍ତି ଥିଲା, କିନ୍ତୁ ୧୯୩୬ରେ କଟକରେ ଉତ୍କଳଭୀମ ପଦ୍ମଚରଣଙ୍କୁ ଗୁରୁ କରି ତାଙ୍କ ଉପାୟ ଅନୁସାରେ କସରତ୍ ଆରମ୍ଭ କରିବାଯାକେ ଛାତିମାପ ଆଉ ୨୯ ଇଞ୍ଚରୁ ଅଧିକା ହେଲା ନାହିଁ, ୧୯୩୬ରେ ଓଜନ ଥିଲା ୮୯ପାଉଣ୍ଡ । ଦୁଇବର୍ଷ ଦୁଇଓଳି ପଦ୍ମଚରଣଙ୍କ କସରତ୍ ସହିତ ମୁଦ୍‌ଗର, ଚେଷ୍ଟ ଏକ୍ସପ୍ୟାଣ୍ଡର୍ କରିବା ପରେ ପ୍ରକୃତରେ ପହିଲମାନ୍ ଦେହ ପରି ଦେହ ତିଆରି କଲା । ୧୯୪୦ରୁ ୪୫ କୋରାପୁଟ୍‌ରେ ଜଙ୍ଗଲବୁଲା, ପାହାଡ଼ଚଢ଼ା, ଆଉ କୋରାପୁଟ୍ ମାଳର ଜନ୍ଧକାରୀ ଜଳବାୟୁ, ସେ ବହୁତ ପଛର କଥା ।

ମଝିରେ ମଝିରେ ସୌରୀନ୍ଦା ଓ ମୁଁ ଆମ କସରତ୍ ଅଭ୍ୟାସର ସୁଫଳ କହୁଁ । ପରସ୍ପରକୁ ଅନାଇଁ କହୁଁ "ହଁ, ଉନ୍ନତି ଜଣାପଡୁଛି ତ !"

ନିଜେ ନିଜର ବିଶ୍ୱାସ ଜନ୍ମାଉଁ ।

କିନ୍ତୁ ତଥାପି ସାଙ୍ଗ ପିଲାମାନେ ତାଙ୍କ ବଳ ଦେଖାଇ ହୁଅନ୍ତି, କିଏ ହାତଟା କି ବେକଟାକୁ କେତେବେଳେ ଦିଏ ମୋଡ଼ି ।

ମୁଁ ଖାଲି ଆଗେ ଆଗେ ଥାଏଁ ଯୋଡିଏ ବିଷୟରେ, ଦୌଡ଼ା ଓ ଚାଲି, କିନ୍ତୁ ସ୍କୁଲ ପ୍ରତିଯୋଗିତାରେ ମିଶେ ନାହିଁ, ଯେ ଜିତେ ତା ସହିତ ରାସ୍ତାରେ କି ଖେଳ ପଡ଼ିଆରେ ପ୍ରତିଦ୍ୱନ୍ଦିତା କରେଁ ।

"ବୋଉ, ମୋ ଦେହରେ ଲାଗୁନାହିଁ କାହିଁକି ?"

ବୋଉ ଦୀର୍ଘଶ୍ୱାସ ପକାଏ, କହେ, କ'ଣ ଖାଇବାକୁ ପାଉଛୁ ଯେ ! ଦୁଧ ଘିଅ କି ଆଉ କୋଉ ପୁଷ୍ଟିକର ଖାଦ୍ୟ ?"

"ଗଜାମୁଗ ଗଜାବୁଟ ତ ଖାଏଁ । ସାଧାରଣ ଖାଦ୍ୟ ଖାଇ କ'ଣ ମଣିଷ ବଳୁଆ ହ'ନ୍ତି ନାହିଁ ? ଏଇ ଖାଦ୍ୟ ତ ସମସ୍ତେ ଖାଆନ୍ତି ।"

"ହଁ ରେ, ବୟସ ହେଲେ ବଳେ ହେବ । ତୋ ବେଳକୁ କ'ଣ ଥିଲା ଯେ, ତୁ ଖାଇବୁ ? ପିଲାଦିନେ ନ ଖାଇଲେ ଦେହରେ ବଳ ଆସିବ କୁଆଡୁ ?"

ମୁଁ ସେ ଯୁକ୍ତି ଗ୍ରହଣ କରିପାରେ ନାହିଁ । ଜଳଖିଆ ଅଭାବ ନଥାଏ, ଦି'ପହରେ ପଖାଳ, ସକାଳେ ଉପରଓଳି ଛତୁ ବା ମୁଢ଼ି । ବୁଟ ଛତୁ ଯଅ ଛତୁ ବିହାରୀମାନଙ୍କ ସାଧାରଣ ଖାଦ୍ୟ, ଖୁବ୍ ଅଳ୍ପ ପାଣି ଛିଞ୍ଚି ଲୁଣ ଟିକିଏ ପକାଇ ହାତରେ ଦଳି ଦଳି ଖାଇଲେ ଭଲ ଲାଗେ । ଦୁଇ ଚାରି ପଇସାରେ ପେଟେ । ଦୋକାନମାନଙ୍କରେ ଥାଳି ଥାଳି ଛତୁ ଗୁଣ୍ଡ ଦେଉଳିଆ ହୋଇ କୁରହା ହୋଇଥାଏ ; ମଝିରେ ନାଲି ଲଙ୍କା ପୋତା ହୋଇଥାଏ, କାନ୍ଥରେ ଭୀମ ଦୁଃଶାସନ କୁସ୍ତି ଲଢୁଥିବା ଛବି ।

କୁସ୍ତି କସରତ୍ ବିହାରୀମାନଙ୍କ ସାଧାରଣ ମଉଜ, ଟିକିଏ ବେଳ ମିଳିଲେ ସାଧାରଣ ଲୋକେ କୁସ୍ତି ଲଢ଼ନ୍ତି, କିଛି ନ ହେଲେ ଦଣ୍ଡ ବୈଠକ କରନ୍ତି ।

ଘରେ ଅସୁବିଧା ପଡ଼ିବାରୁ ଦିନାକେତେ ରୋଷେଇ କରିବାକୁ ଆମନ୍ତ୍ରିତ ହୋଇ ଆସିଲା ଗୋଟିଏ ଚପରାସି, ସେ ରୋଷେଇ ବସେଇ ଦେଇ ରୋଷେଇ ଘରେ ମଝିରେ ମଝିରେ ଥୋଡ଼ାଏ ଦଣ୍ଡବୈଠକ କରିଦିଏ । ଚାଲିଥାଏ ତା'ର ଏହିପରି ।

"ରାମ ଅବତାର ସିଂ"

"ଜୀ–"

"କା କରତ ହୋ ?"

"ମେହେନତ୍ କରତେ ହେଁ ।"

ସେ କୁଆଡ଼େ ପହିଲମାନ୍‌ଟିଏ । ଦେହ ବୋଦ୍‌କା ନୁହେଁ, ବିରୁଡି-ଅଣ୍ଟା, ଡେଙ୍ଗା ଲୋକ, ସୁଷମ ଦେହ । ସେ ମାଛ ମାଂସ ଛୁଏଁ ନାହିଁ । ଆମେ ସଜନା ଛୁଇଁ ଖାଉଁ ଦେଖି ଆଶ୍ଚର୍ଯ୍ୟ ହୁଏ, କହେ "ମାଇଜୀ, ଯେ ଲକ୍‌ଡ଼ି ହମ୍‌ଲୋଗ୍ ନହିଁ ଖାତେ ହେଁ । ଆମେ କଅଁଳିଆ ବାଇଗଣ କି ଭେଣ୍ଡି କିଣିଲେ ତା ମନରେ ଧାରଣା ହୁଏ ଯେ, ବୁଢ଼ା ବାଇଗଣ ବୁଢ଼ା ଭେଣ୍ଡି ମହଙ୍ଗା ବୋଲି ଆମେ ତାକୁ କିଣୁଁ । ପ୍ରକୃତରେ ସେଠି ସେ ମହଙ୍ଗା, ବିହାରୀ ପସନ୍ଦ କରନ୍ତି ଚୋବେଇ ଚୋବେଇ ଖାଇଲାଭଳି ବୁଢ଼ା । ଭାତ ବି ଖୁବ୍ ଟାଣ ଓ ଚାଉଳିଆ ହେଲେ ତାଙ୍କର ପସନ୍ଦ, ନରମ ଭାତକୁ ବେପସନ୍ଦ କରନ୍ତି । ଡ଼ଙ୍କ ଆଉ ଶାଗ ବି ତାଙ୍କର ପସନ୍ଦ ହୁଏ ନାହିଁ, ଖାଲି ଶୋରିଷ ଶାଗ, ବୁଟ ଶାଗ, ପାଳଙ୍ଗ ଶାଗ ଚଳେ ।

ମନେ ପଡୁଛି, ମୋ ଗୋଟିଏ ସାଙ୍ଗର ଅଜା ମତେ ଦେଖି ପଚାରିଲେ, "କ୍ୟା ଆପ୍ ଅନ୍ନ ନେହିଁ ଖାତେ ହେଁ ? ଏତନା ଦୁବ୍ଲା କେଁ ଓଁ ।?"

ମୋର କିଏ ପଚାରେ ମୁଁ ମୋଟା କି ଦୁବ୍ଲା ? ଇସ୍କୁଲରୁ ଆସିଲା ମାତ୍ରେ ମୁଁ ଖେଳରେ ମାତେଁ । ଫୁଟବଲ୍‌ରେ ମୁଁ ସେଣ୍ଟର ଫରୱାର୍ଡ଼, ଆମର ଟୀମ୍ ଥାଏ । ମ୍ୟାଚ୍ ଖେଳୁଁ । ହକିରେ ବି ମୁଁ ଖୁବ୍ ଆଗ୍ରହୀ, କ୍ରିକେଟ ବି ଭଲ ପାଏ, କିନ୍ତୁ ମୋର ବଡ଼ ନିଶା ପଦାରେ ବ୍ୟାଡ୍‌ମିଣ୍ଟନ୍ ଓ ଘରେ ଲୁଡ଼ୋ । ଭାଉଜୋଉ ବି ଲୁଡ଼ୋ ଖୁବ୍ ଭଲ ପାଆନ୍ତି, ଚାରିଜଣିଆ ହୋଇ ଖୁବ୍ ଖେଳୁଁ । ବ୍ୟାଡ୍‌ମିଣ୍ଟନ୍ ସତେକି ମୋ ନିଜ ବିଦ୍ୟା, ବଡ଼ ବଡ଼ ବୟସ୍କ ଓସ୍ତାଦ୍‌ମାନଙ୍କଠୁଁ ତାଲିମ ପାଇ ମୁଁ ବି ସେ ଖେଳର ଅନେକ ସୂକ୍ଷ୍ମତା ଶିଖିଯାଇଥିଲି, ସିଙ୍ଗଲ୍‌ସ୍‌ରେ ଖୁବ୍ ନାଁ ଥିଲା ।

ମଝିରେ ମଝିରେ ଚାଲି ଚାଲି ବହୁତ ଦୂରକୁ ବୁଲିଯାଏଁ । ସାଙ୍ଗମାନଙ୍କୁ ଘେନି ବୁଲିବାର ସଉକ ପିଲାଦିନୁ, ଗହଳି ସହର ବଜାର ନୁହେଁ, ଖାଲି କ୍ଷେତ, ପଡିଆ, ତୋଟା, ମଫସଲ ।

ଶୀତଦିନେ ଆମେ ଚାଲି ଚାଲି ଚାଲିଯାଉଁ ଦେହାତ୍, ମଫସଲ । ବିହାରର ସମତଳ । ଆଖି ପାଉନାହିଁ ଏକା ପଟ୍ଟନରେ କ୍ଷେତ ଲମ୍ବିଛି । ଯେମିତି

କିଏ ନାନା ବର୍ଣ୍ଣର ମୁରୁଜରେ ତଳେ କୋଠିଗୁଡ଼ିଏ ସଜେଇ ଆଙ୍କିଛି, କିଆରିମାନଙ୍କରେ ପତ୍ରର ବର୍ଣ୍ଣ ଭିନେ, ଫୁଲର ବର୍ଣ୍ଣ ଭିନେ, ଅରାଏ ଅରାଏ ସୋରିଷ, ଅରାଏ ଅରାଏ ମଟର ଛୁଇଁ, କେଉଁ କ୍ଷେତରେ ବୁଟ ଲଟେଇଛି, କେଉଁଥିରେ ଖେସାରି, କେଉଁଠି ହରଡ, କେଉଁଟା ଆଖୁ, କେଉଁଟା ଗହମ, କେଉଁଟା ଯଅ, କେଉଁଠି କେଉଁ ପନିପରିବା । କ୍ଷେତରୁ ତୋଳି ବୁଟ ଛୁଇଁ, ମଟର ଛୁଇଁ, ହରଡ ଛୁଇଁ, କାକୁଡ଼ି ଖାଇବାକୁ ମନ ହୁଏ, ମାଙ୍କଡ଼ ପରି ଆମେ କ୍ଷେତରେ ପଡ଼ୁଁ । ଆମେ ଜାଣୁ ବିହାରୀ ଚାଷୀ ଆପତ୍ତି କରିବ ନାହିଁ, ବରଂ ଖୁସୀ ହେବ ପିଲାଏ ଖାଉନ୍ତୁ ବୋଲି ଭାବି, କ୍ଷେତରେ ଯେ ଯେତେ ଖାଉ, ବୁଜୁଳି ବାନ୍ଧିବାକୁ ସେ ଦେବ ନାହିଁ, ଘରକୁ ବୋହି ନେବା ମନା ।

ଚାଷୀମାନେ ସମାଦର କରି ତାଙ୍କ ଗାଁକୁ ନେଇଯାଆନ୍ତି । ଆଖୁଦିନେ ଆଖୁ ଭାଙ୍ଗି ଦିଅନ୍ତି । ଗାଁ ପାଖ ହେଲେ ବହୁତ ଗୋବର, ଅସନା । ବହୁତ ମଇଁଷୀ । ସେମାନେ ଖାଇବାକୁ ଯାଚନ୍ତି, ଆମେ ଲାଜ କରୁଁ । ଦୁଧ, ଦହି, ଛେନା ଆଣି ଦିଅନ୍ତି, ବଳେଇ ବଳେଇ ଖୁଆନ୍ତି । ମା'ମାନେ କେଡ଼େ ଶରଧାରେ ବେଢ଼ିଯାଆନ୍ତି । ଆମେ ଲେଉଟି ଆସିଲାବେଳେ ସେମାନଙ୍କ ମନରେ ଦୁଃଖ ହୁଏ ।

ପୋଷାକ ଭିନେ, ଦେହାତି ବୋଲି ସଟ୍‌ଯାକ ବୁଝିବା କଷ୍ଟ ପଡ଼େ, କାନକୁ ଭାରି ସୁନ୍ଦର ଶୁଭେ, କେତେ ଶବ୍ଦ ତ ଓଡ଼ିଆ ପରି ।

କିନ୍ତୁ ମଣିଷ ଏକ ଭାରତ ଏକ ।

ପାଟ୍‌ନା ହାଇସ୍କୁଲ୍

ସେଠି ମୁଁ ନାଁ ଲେଖାଇଲାବେଳେ ହେଡ୍‌ମାଷ୍ଟର ଦାୟିତ୍ୱରେ ଥିଲେ ଯୋଗେଶ ବାବୁ । ସେଠୁ ସେ ସମ୍ବଲପୁର ହେଡ୍‌ମାଷ୍ଟର ହୋଇଗଲେ । ଆସିଲେ ଅଚୁତ୍ୟାନନ୍ଦ, ଜଣେ ଡେଙ୍ଗା, ବୁଢ଼ା, ଗମ୍ଭୀର, ବିହାରୀ ଭଦ୍ରଲୋକ । ଭାବୁଥିଲୁଁ, ନାଁ ବୋଧହୁଏ 'ଅଚ୍ୟୁତାନନ୍ଦ', ଲେଖନ୍ତି ''ଅଚୁତ୍ୟାନନ୍ଦ'' । ବେକଟିପା କଳା ଚପକନ, ପାଇଜାମା, ଛାତ୍ରମାନଙ୍କ ସଙ୍ଗେ କଥାଭାଷା ନାହିଁ । କାହା ସଙ୍ଗରେ ତାଙ୍କର କଳିଗୋଳ ବି ନଥିଲା । ସେ ଆମର କ୍ଲାସରେ ପଢ଼ାଇ ନାହାନ୍ତି ।

ମୋର ସେକେଣ୍ଡ କ୍ଲାସ୍ ବେଳକୁ ଆସିଲେ ରାୟ ସାହେବ ଆଶୁତୋଷ ଘଟକ । ଆକାରରେ ସାନ, ଖୁବ୍ ଗୋରା, ରାଗିଲେ ମୁହଁ ନାଲି ପଡ଼ିଯାଏ । ତାଙ୍କର ଖ୍ୟାତି ଥିଲା ସେ ଖୁବ୍ 'କଡା' ହେଡ୍‌ମାଷ୍ଟର । ସେ ବହୁତ ପ୍ରକାର

କଟକଣା କଲେ । ଖୁବ୍ ଟାଣୁଆ ଶାସକ; କେତେଜଣ ଉଚ୍ଚପଦସ୍ଥ କର୍ମଚାରୀଙ୍କ ପିଲା ଗୁଣ୍ଡାମି କରୁଥିଲେ, ସେ ସେମାନଙ୍କ ବାପାମାନଙ୍କୁ ଚିଠି ଲେଖିଲେ, ''ଏ ପିଲାକୁ ମୋ ସ୍କୁଲ୍‌ରୁ ଅନ୍ୟତ୍ର ବଦଳି କରି ନେଇଯା'ନ୍ତୁ, ନ ହେଲେ ଏ ସ୍କୁଲ୍‌ରୁ ତଡ଼ା ହୋଇପାରେ, 'ରଷ୍ଟିକେଟ୍' ହୋଇପାରେ ।'' ସେପରି କେତୋଟି ପିଲା ସ୍କୁଲ୍‌ରୁ ଗଲେ । ପିଲାଙ୍କ ପାଇଁ ଜଳଖିଆ ବନ୍ଦୋବସ୍ତ କରାଗଲା ଓ ଦି'ପହର ଅବକାଶ ବେଳେ ସ୍କୁଲ୍ ହତା ବାହାରକୁ ଯିବାକୁ ତାଙ୍କୁ ନିଷେଧ କରାଗଲା । କେତେଥର ହେଡ୍‌ମାଷ୍ଟର ଫାଟକ ପାଖେ ନିଜେ ଜଗି ପିଲା ଫେରିଆସିଲା ବେଳେ ନାଁ ଟିପିଲେ ଓ ଧାଡ଼ିକରି ଠିଆକରି ଦି' ଦି' ବେତ ପିଟିଲେ । ସେ ବରେଣ୍ଡାରେ ପହରାବାଲା ପରି ଟହଲନ୍ତି, କେତେବେଳେ ଭୁଷ୍‌କରି କ୍ଲାସ୍ ଭିତରକୁ ପଶି ଆସନ୍ତି, କେତେବେଳେ ପଛ ବେଞ୍ଚରେ ଚୁପ୍ ହୋଇ ବସି ମାଷ୍ଟରଙ୍କ ପଢ଼ା ତଦାରଖ କରନ୍ତି । ପିଲାଏ ଅପରାଧ କଲେ ସେ ଡିଟେନ୍ କରି ରଖନ୍ତି ।

କ୍ରମେ ଜଣାପଡ଼ିଲା, ପିଲାଙ୍କୁ ସେ ଭଲ ପାଆନ୍ତି, ତାଙ୍କ ଘରକୁ ଗଲେ ଖାଇବାକୁ ଦିଅନ୍ତି, ପିଲାଙ୍କ ଖେଳ ପାଇଁ ଖୁବ୍ ନିଘା ଦିଅନ୍ତି ଓ ଖୁବ୍ ଭଲ ଇଂରେଜୀ ପଢ଼ାନ୍ତି । ସେ ଇଂରେଜୀରେ ଏମ୍.ଏ. ପାଶ୍ କରିଥିଲେ ।

ଆମ ଟେଷ୍ଟ ପରୀକ୍ଷା ପରେ ସେ ସ୍କୁଲ୍‌ରେ ଆମ ପାଇଁ ଗୋଟିଏ ସ୍ପେଶାଲ୍ କୋଚିଂ କ୍ଲାସ୍ ଖୋଲିଥିଲେ । ସେଠି ସେ ସବୁଦିନେ ନିଜେ ଇଂରେଜୀ ପଢ଼ାନ୍ତି, ସତ୍ୟେନ୍ଦ୍ରନାଥ ଦାସଗୁପ୍ତ ଅଙ୍କ ପଢ଼ାନ୍ତି । ଅନ୍ୟାନ୍ୟ ବିଷୟରେ ମାଷ୍ଟରମାନେ ବି କେବେ କେବେ ପଢ଼ାନ୍ତି । ଏପରି କୋଚିଂ କ୍ଲାସ୍ ଆଗରୁ କେବେ ହୋଇନାହିଁ । ଦାସଗୁପ୍ତ ବାବୁ ଆସିବା ଆଗରୁ ଅଙ୍କ ମାଷ୍ଟର ଥିଲେ ବିମଲ୍ ଚନ୍ଦ୍ର ମିତ୍ର । ପିଲାଙ୍କ ସଙ୍ଗେ ତାଙ୍କର ପଡ଼ିଲା ନାହିଁ । ସେ ଚିଡ଼ନ୍ତି, ଭ୍ରୂକୁଟୀ କରନ୍ତି, ପିଲାଙ୍କ ନାଁରେ ହେଡ୍‌ମାଷ୍ଟରଙ୍କ ପାଖକୁ ଲେଖା ଅଭିଯୋଗ ପଠାଇ ଜୋରିମନା କରାଇଥିଲେ । ଦାସଗୁପ୍ତ ଆସିଲେ ଆମ ସେକେଣ୍ଡ୍ କ୍ଲାସ୍ ବେଳେ । ମୋଟା, ଡେଙ୍ଗା, ପାଠପଢ଼ାରେ ବ୍ୟସ୍ତ, କାହା କଥାକୁ ଛକ ନାହିଁ, ମୁହଁଟି ଗମ୍ଭୀର, କିନ୍ତୁ ପ୍ରସନ୍ନ । ବଡ଼ ଚେକା କଳା ମୁହଁରେ ମୋଟା ମୋଟା ଓହଳା ନିଶ, ତାଙ୍କ ବ୍ୟବହାର ଦେଖିଲେ ଲାଗେ ସେ ଆମ ଘରର ଜଣେ ମାନତା ମୁରବି । ଏଭଳି ଧୁରନ୍ଧର ଅଙ୍କ ଶିକ୍ଷକ ମୁଁ କଳ୍ପନା କରି ନ ଥିଲି । ଅତୀତର ନାନା ସ୍କୁଲ୍‌ର ଟେଷ୍ଟର ଓ ୟୁନିଭର୍ସିଟି ପରୀକ୍ଷାର ପ୍ରଶ୍ନଗୁଡ଼ାକ ବି ତାଙ୍କର ମୁଖସ୍ଥ, ଯେତେ ପ୍ରକାର ପ୍ରକାର ପ୍ରଶ୍ନରେ କୌଣସି ବିଶିଷ୍ଟତା ଅଛି, ଯାହା ଦିଶୁଥିବ ସରଳ, କିନ୍ତୁ ଦଗା ଦେବା ସମ୍ଭାବନା, ସେହିଆକୁ ସେ

ଆପଣା ସ୍ମରଣରୁ କାଢ଼ି ବ୍ଲାକ୍‌ବୋର୍ଡ଼ରେ ଲେଖିଦିଅନ୍ତି । ସହଜ ଓ ବୁଦ୍ଧିମାନ ସମାଧାନ ବି ସେ ବତାଇ ଦିଅନ୍ତି ।

ବୈକୁ ସାହୁ ବିହାରୀ ଭଦ୍ରଲୋକ, ଆକାରରେ ସାନ, ଭୂଗୋଳ ଭଲ ପଢ଼ାନ୍ତି ।

ପ୍ରସାଦ ଇଂରେଜୀ ପଢ଼ାନ୍ତି, ଭଲ ଶିକ୍ଷକ ଥିଲେ, ଫାଷ୍ଟ୍ କ୍ଲାସ୍‌ରେ ପଢ଼ାଇଲେ ଘଟକ ଓ କ୍ୟାପ୍ଟେନ୍ ରାୟ ।

ବିହାରୀ ସଂସ୍କୃତ ପଣ୍ଡିତ୍‌ଜୀ ଖୁବ୍ ଭଲ ମାନେ ବହି ଲେଖିଥିଲେ ଓ ଛପାଇଥିଲେ । ତା ସହିତ ଥିଲା ତାଙ୍କର ବ୍ୟାକରଣ ବହିଟିଏ । ମୁଁ ସଂସ୍କୃତ ଆଡ଼ିସ୍‌ନାଲ୍ ନେଇଥିଲି । ପଛେ ସେକେଣ୍ଡ୍ କ୍ଲାସ୍ ଅଧାଆଡ଼କୁ ବଦଳାଇ ଅଙ୍କ ଆଡ଼ିସ୍‌ନାଲ୍ ନେଲି । ସଂସ୍କୃତ ପଣ୍ଡିତ ମୋଟା ଲୋକ ଥିଲେ, ତାଙ୍କର ବଡ଼ ଚୁଟିଟିଏ ଥିଲା । ଅନେକ ପିଲା ତାଙ୍କୁ ଥଟ୍ଟା କରନ୍ତି ।

ଇତିହାସ ଶିକ୍ଷକ ମହମ୍ମଦ ଫଜ୍ଲୁ ଆଲିମ୍ ସାହେବ୍ ଭାରି ମଉଜି ଲୋକ । ଆକାରରେ ବଡ଼, ଡେଙ୍ଗା, ଗୋରା, ବଡ଼ ମୁଣ୍ଡ, ପେଟ ବି ବଡ଼, ସେ ମୁସଲମାନ୍ ପୋଷାକ ପିନ୍ଧି ଆସନ୍ତି, ଭୋଜନ, ବିଶ୍ରାମ, ଖେଳ, ଗଜଲ ଓ ଅତର ଭଲ ପାଆନ୍ତି । ଯେତେ ପିଲା ଖେଳରେ ଭଲ, ସେମାନେ ତାଙ୍କର ଅତି ଆପଣାର । ପିଲାଙ୍କୁ ତାଙ୍କର ସାତଖୁଣ୍ ମାଫ୍ । ତେଣୁ ପିଲାଙ୍କର ସେ ଖୁବ୍ ବିଶ୍ୱାସୀ । ଇତିହାସକୁ ସେ କାହାଣୀ ପରି କହନ୍ତି । ତାଙ୍କ ବ୍ୟାଖ୍ୟାନ ଅନୁସାରେ ଇତିହାସ ଗୁଡ଼ାଏ ତାରିଖ ଓ ଘଟନା ନୁହେଁ, ସେ ସାଧାରଣ ମଣିଷଙ୍କ ଜୀବନର କଥା, ପଦେ ପଦେ ଶିକ୍ଷଣୀୟ । ଗ୍ରହ ଚଳଣି ପରି ନାନା ଘଟଣା ମଣିଷଙ୍କ ଜୀବନକୁ ଓଲଟ ପାଲଟ କରେ, କୁଆଡ଼ୁ କେଉଁ ଢେଉ ମାଡ଼ି ଆସେ, ମଣିଷଙ୍କୁ ଟେକେ, ବୁଡ଼ାଏ କଚାଡ଼େ । କାହାର କେତେବେଳର କେଉଁ କାମ କେଉଁ ଗୁଣ ଭବିଷ୍ୟତରେ ସୁମରି ହେବାକୁ ରହିଯାଏ । ଫଜ୍ଲୁ ଆଲିମ୍‌ଙ୍କର ଖୁବ୍ ଦେଶାତ୍ମବୋଧ ଥିଲା, ସେ ଭାରତ ଘେନି ଗର୍ବ ଅନୁଭବ କରୁଥିଲେ, ଭାରତୀୟ ମଣିଷଙ୍କ ଚରିତ୍ର ଓ ସଂସ୍କୃତିର ଗୌରବ ଗାଉଥିଲେ । ପ୍ରଚ୍ଛନ୍ନ ଭାବରେ ଇଂରେଜ ଜାତିକୁ ଥଟ୍ଟା କରୁଥିଲେ ।

ଆଉ ଜଣେ ଇତିହାସ ଶିକ୍ଷକ ଥିଲେ, ହୁସେନ୍ ସାହେବ୍ । ସେ ଏମ୍.ଏ. ପାଶ୍ କରିଥିଲେ, ସାହେବୀ ପୋଷାକରେ ଆସନ୍ତି, ସେ ଅଧ୍ୟାପକ ହୋଇ ଚାଲିଗଲେ । ତାଙ୍କ ସ୍ଥାନରେ ଆସିଲେ କାଳୀକିଙ୍କର ଦତ୍ତ, ସେ ଏମ୍.ଏ.ରେ ଫାଷ୍ଟ୍ କ୍ଲାସ୍ ଫାଷ୍ଟ, ସରୁଆ ହୋଇ ଶ୍ୟାମଳ ମର୍ଣ୍ଣର ଲୋକଟିଏ, ଆଖିରେ ଚଷମା । ସେ ବି ଲେକ୍‌ଚରର୍ ହୋଇ ପାର୍ଟ୍ନା କଲେଜକୁ ଚାଲିଗଲେ ।

ପଛେ ସେ ଡକ୍ଟର ହେଲେ ଓ 'ସରକାର ଏଣ୍ଡ ଦତ୍ତ' କୃତ ଇତିହାସ ବହିର ଜଣେ ଲେଖକ ହୋଇ ଖୁବ୍ ଜଣାଶୁଣା ହେଲେ ।

ବଙ୍ଗଳା ଶିକ୍ଷକ ନୀତିକଥା ପଢ଼ାନ୍ତି । ବହୁତ ଗପ କହନ୍ତି । ତାଙ୍କ ବକ୍ତୃତା ଖୁବ୍ ଭଲ ଲାଗେ ।

ଜଗଜ୍ୟୋତି ଘୋଷ୍ ମୋଟା ସୋଟା ଗୋରା ଭଦ୍ରଲୋକ, ଖୁବ୍ ଶାନ୍ତ ଶିଷ୍ଟ । ସେ ଭଲ ଭୂଗୋଳ ପଢ଼ାନ୍ତି । ଭଲ ହିନ୍ଦୀ କହନ୍ତି । ''ମୁଜାଫରପୁର୍ କିସ୍‌ଲିୟେ ମହ୍‌ଶୁର୍ ହେ ? ବୋଲୋ, ତୁମ୍ ? ତୁମ୍ ?''

'ମହିଶୁର' କ'ଣ ?

''କିସ୍ ଚିଜ୍ କା ବାସ୍ତେ ମହ୍‌ଶୁର୍ ହେ ? ଖାୟା ନହିଁ କଭି ?''

''ଲିଚିଓଁକା ବାସ୍ତେ ।''

''ଓ୍ୱାଃ ଠିକ୍ ହେ''

ମୁଜାଫରପୁର୍ ଲିଚୁ ପାଇଁ ପ୍ରସିଦ୍ଧ, କଥାଟା ବୁଝା ପଡ଼ିଲା ।

ଅନେକ ବିହାରୀ ହିନ୍ଦୁ ପିଲା 'ଭର୍ଣ୍ଣାକୁଲର୍' ନେଇଥିଲେ ଉର୍ଦ୍ଦୁ ଓ 'କ୍ଲାସିକ୍‌ସ' ନେଇଥିଲେ ଫାର୍‌ସୀ । ସେମାନେ ଚୁଟି ରଖନ୍ତି, ହିନ୍ଦୁ ଧର୍ମ ସଂପର୍କରେ ଖୁବ୍ ରକ୍ଷଣଶୀଳ, ମାଛମାଂସ ଖାଆନ୍ତି ନାହିଁ, କିନ୍ତୁ ପଢ଼ନ୍ତି ଉର୍ଦ୍ଦୁ ଓ ଫାରସୀ । ଖାଲି ଗୋଟିଏ ଫାରସୀ ଶବ୍ଦ ମୁଁ ଶିଖି ପାରିଥିଲି, – 'ରିଚ୍' ମାନେ 'ଭାଲୁ', ଯେ ବତାଇଥିଲା ତାକୁହିଁ ରିଚ୍ ରିଚ୍ ସମ୍ବୋଧନ କରି ମୋ ଜ୍ଞାନର ପ୍ରୟୋଗ ପରଖିଥିଲି । ଆଉ 'ବେ-ବକୁଫ୍' 'ନମାକୁଦ୍' ପ୍ରଭୃତି ବିଶେଷଣ ତ ଶିକ୍ଷକମାନେ ବ୍ୟବହାର କରୁଥିଲେ । ହିନ୍ଦୀରେ ନମ୍ବର ଉଠେ ନାହିଁ, ଏକା ଶ୍ରେଣୀର ନାନା ବସ୍ତୁ ଭିତରୁ କେଉଁଟା ସ୍ତ୍ରୀଲିଙ୍ଗ କେଉଁଟା ପୁଂଲିଙ୍ଗ, ସେଇଠି ବେଶୀ ଭୁଲ୍ ହୁଏ । ଘୋଡାଟା ପୁଂଲିଙ୍ଗ, କିନ୍ତୁ ଗାଡିଟା ସ୍ତ୍ରୀଲିଙ୍ଗ । ତଥାପି ବଙ୍ଗାଳୀମାନେ ଓ ଓଡ଼ିଆମାନେ ନିଜ ନିଜ ବୁଦ୍ଧି ଖଟାଇ ହିନ୍ଦୀ କହନ୍ତି । ବଙ୍ଗାଳୀମାନେ କହନ୍ତି ତୁମେ କୁ ''ତୋମ୍'', କେତେକୁ ''କେତ୍ତା'', କ୍ରିୟାପଦରେ ଦ୍ୱିତୀୟପୁରୁଷ ପରିବର୍ତ୍ତେ ତୃତୀୟପୁରୁଷ ବ୍ୟବହାର କରନ୍ତି ।

''ତୋମ୍ କେତ୍ତା ବୋଲ୍‌ତା ବୋଲେ ।''

ହାଟରେ ଦେଖିଛି, ବାବୁମାନେ ସବୁବେଳେ ବ୍ୟାଟା ବ୍ୟାଟା କହି କହି ଅଭ୍ୟାସ ହୋଇଯାଇଥିବାରୁ 'ବ୍ୟାଟା' ଶବ୍ଦଟା ବେଳେବେଳେ ପାଟିରୁ ଖସିଯାଏ, ତା'ପରେ ଦୋକାନୀ ବାଡ଼େଇବାକୁ ଧାଏଁ ।

"ବ୍ୟାଟା ଦୋ ଆନାମେ ଦୋନା ।"

"କ୍ୟା ! ହମ୍ ତୁମାରା ବେଟା ? ଲାଗିଗଲା ଲଢ଼ାଲଢ଼ି । ଟଙ୍କେନ୍ତି 'ଆପ୍' ପରିବର୍ତ୍ତେ ଦୋକାନୀକୁ 'ତୁମ୍' ସମ୍ବୋଧନ ବେଳେ ବେଳେ ଗାଳି ଫଇଜତ୍ ଭିଆଏ ।

କଟକରୁ ନୂଆ ଆସିଥିବା କୌଣସି ଜଣେ ବାବୁ କେବେ ଭାରି ଉତ୍ତେଜିତ ହୋଇ ଗାଡ଼ିବାଲାକୁ ନିର୍ଦ୍ଦେଶ ଉତୁଥିଲେ ।

"ହେ ଏକ୍କାବାଲା, ହ-କରୋ ହ-କରୋ ହ-କରୋ" ସେ ଘୋଡ଼ାକୁ ଆହୁରି ଜୋର୍‌ରେ ଦଉଡ଼େଇଲା ।

ବୋଉ ଝରକା ପାଖେ ଠିଆ ହୋଇ ଇସ୍କୁଲ୍ ପଡିଆ ଆଡ଼କୁ ଅନାଇଁଥାଏ । ପିଲାଏ ଖେଳୁଥାନ୍ତି ।

"କ'ଣ ଦେଖୁଛୁ ବୋଉ ?"

"କେତେ ପିଲା ! ଭଗବାନ ତମ୍ଭକୁ ସବୁ କୋଟି ପରମାଈ ଦେଇଥାଉରେ ପିଲାଏ, ଏମିତି ହସି ଖେଳି ତମ ଜୀବନ ବିତାଅ ।"

* * * * * *

ଆମେ ବସା ବଦଳେଇଲୁ । ଏଥର ବସା ରେଲ୍‌ଲାଇନ୍ ପାଖେ । ଧାଡ଼ି ହୋଇ ଘର ଗୁଡ଼ିଏ, ସାମ୍ନାରେ ସଡକ, ତା ସେକରେ ବନ୍ଧ ଉପରେ ପାଖକୁ ପାଖ ହୋଇ ଦି' ଯୋଡ଼ା ରେଲ୍‌ଲାଇନ୍, ପ୍ରସିଦ୍ଧ ଇ-ଆଇ-ଆର୍ । ତା କରେ କରେ ଧାଡ଼ିହୋଇ ଟେଲିଗ୍ରାଫ୍ ଖୁଣ୍ଟମାନ । ଉପରେ ତାର ଲମ୍ବିଛି । ବନ୍ଧ କରରେ ଘଞ୍ଚ ହୋଇ ପୁରୁଷେ ଉଞ୍ଚର କାଠି ଘାସର ଜଙ୍ଗଲ, ଆଖୁଗଛ ପରି ଗଛ, ବଡ଼ ହେଲେ ତା ଉପରେ ବେଣାଫୁଲ ପରି ଫୁଲ ଫୁଟେ, ଶୁଖି ଆସୁଥିବା ଗଛ ଉପରଯାକ ବଡ଼ ବଡ଼ ଠିଆ କାନ୍ଦି ହୋଇ ଟିକି ଟିକି ଧଳା ଧଳା ଘାସଫୁଲ । ପବନରେ ତା ଉପରେ ଧଳା ଢେଉ ଖେଳେ । ତା ସେକରେ ଧାଇଁ ପଳାଏ ଲମ୍ବା ଲମ୍ବା ରେଲ୍‌ଗାଡ଼ି ।

ବଡ଼ ବିସ୍ମୟକର ସେ ଦୃଶ୍ୟ, ବିଶେଷତଃ ରାତିରେ । ଶୁନ୍‌ଶାନ୍ ରାତିରେ ନିଛାଟିଆ କୁହାଟ ଶୁଭେ, ରେଳଗାଡ଼ି ଆସୁଛି । ଅନ୍ଧାରରେ ଘଡ଼ିବାଣ ପରି ନିଆଁଗୁଲଗୁଡ଼ାଏ ଉପରକୁ ଛିଟ୍‌କାଡ଼ି ହେଉଥାଏ । ତୀବ୍ର ଆଲୁଅ ରେଖାଟାଏ ଆଗକୁ ଭୁଷି ଭୁଷି ମାଡ଼ିଚାଲେ । ତା'ର ବିଚିତ୍ର ସଙ୍ଗୀତ ଗାଇ ଗାଇ ନଈବଢ଼ି ପରି ମାଡ଼ିଯାଏ ରେଲ୍ ।

ତା'ର ନାନା ରୂପ ।

କେତେବେଳେ ପ୍ରତି ଡବା ବାହାରେ ବି ବହୁତ ଆଲୁଅ ଝଙ୍ଗାଝଙ୍ଗି, ଲମ୍ବ ହୋଇ ଗୋଟାଏ ବଡ଼ ରୋଶନି । ଯେମିତି ତୋଫାନ୍ ଏକ୍ସପ୍ରେସ୍ । କେତେବେଳେ ଅନ୍ଧାରେ ଅନ୍ଧାରେ ଲମ୍ବଧାଡ଼ି ହୋଇ ହାତୀଗୁଡ଼ାଏ, ଖଇରିଆ ଖଇରିଆ ଦେହଗୁଡ଼ାକ ବାରି ହେଉଛି ଝାପ୍‌ସା ଝାପ୍‌ସା ହୋଇ, ଲାଗିରହିଛି ଅଛିଣ୍ଡା ଧାର ।

ଦଳ ଦଳ ଲୋକ ଗାଡ଼ିରେ ବୁହାହୋଇ ଚାଲିଯାଆନ୍ତି । ନାନା ଚେହେରା, ନାନା ପୋଷାକ, ସଂସାରର ଜାତି ଜାତି ଲୀଳାଖେଳା । ପ୍ରତି ମଣିଷକୁ ଦେଖି ଭାବିବାକୁ ମନ୍ହୁଏ, —କିଏ ଯେ ? କ'ଣ ଯା ଇତିହାସ ? କେମିତି ଅଛି ? କ'ଣ ଭାବୁଛି ? କୁଆଡ଼େ ଯାଉଛି ? ଚାହୁଁ ଚାହୁଁ ଦୃଶ୍ୟ ବଦଳିଯାଏ, ଗୋଟାଏ ଡବା ପରେ ଆଉ ଗୋଟାଏ ଡବା, ତା'ପରେ ଆଉ ଗୋଟାଏ । ଗାଡ଼ି ଚାଲିଯାଏ । ବେଳେ ବେଳେ ଉଦାସ ଲାଗେ ।

ଏ ସଂସାରରେ ଇହଜନ୍ମରେ ଏଇ ମୁହୂର୍ତ୍ତକ ଏମାନଙ୍କ ସଙ୍ଗେ ଦେଖା, ଆଉ ନାହିଁ ।

ଆଗ ଆଗ ରେଲ୍ ଗଲାବେଳେ ଲାଗୁଥିଲା ସତେଯେମିତି ଭୂମିକମ୍ପ ହେଉଛି । କାନ ଫଟେଇ ଘୋର ଶବ୍ଦ, ଭୂଇଁ ବି ଦୁଲୁକୁଛି, ଝରକା କବାଟ ଖଡ଼ ଖଡ଼ ହେଉଛି । ଭାବୁଥିଲି, କେମିତି ମଣିଷ ସ୍ଥିର ହୋଇ ଭାବିପାରିବ କି ଶୋଇପାରିବ ଏ ଶବ୍ଦରେ ? ଚାହୁଁ ଚାହୁଁ ସେ ଶବ୍ଦ ବି ଆରେଇଗଲା । ରେଲ୍ ଘଡ଼ ଘଡ଼ ଭିତରେ ବି ଧ୍ୟାନ ଭାଙ୍ଗେ ନାହିଁ କି ନିଦ ଭାଙ୍ଗେ ନାହିଁ । ରାତିରେ ଏକୁଟିଆ ଥିଲାବେଳେ ରେଲ୍‌ର ଶବ୍ଦ ରେଲ୍‌ର ସିଟି ନାନା ସମୟରେ ନାନାପ୍ରକାର ଶୁଭେ, ତା' ସଙ୍ଗେ ସଙ୍ଗେ ମନେପଡ଼େ, ମଣିଷ ମନର କେଉଁ ଭାବ । କେତେବେଳେ ଅନ୍ଧାରରେ ବାଟବଣା ହୋଇ ସେ ଏକୁଟିଆ ପିଲାଟିଏ, ଛାନିଆଁ ହୋଇ ତା ମା'କୁ ଖୋଜୁଛି । କେତେବେଳେ ସେ କ୍ଳାନ୍ତ ବୁଢ଼ାଟିଏ, କାଶି କାଶି ଧଇଁସଇଁ ହୋଇ କୁନ୍ଥେଇ କୁନ୍ଥେଇ ଚାଲିଛି । କେତେବେଳେ କ'ଣ ।

ଅନେକ ସମୟରେ ସେ ଗୋଟାଏ ବିସ୍ମୟକର ଯାତ୍ରୀ, ତା'ଠି କ୍ଳାନ୍ତି ନାହିଁ, ଆଗରେ ଦିଗ୍‌ବିଜୟର ସୀମା ନାହିଁ, ଅଛିଣ୍ଡା ବାଟରେ ଚାଲିଛି ଏକାମୁହାଁ ହୋଇ ।

କେତେଦୂର ଲମ୍ବିଛି ଏ ବାଟ ?

ମନୋରଞ୍ଜନ କେତେଗୁଡ଼ିଏ ଷ୍ଟେସନ୍‌ର ନାଁ କହେ, ତା ବାପା ରେଲ୍‌ରେ କାମ କରେ, ସେ ଆମ ପଡ଼ିଶା । କିନ୍ତୁ ସେ ଷ୍ଟେସନ୍‌ଗୁଡ଼ିକ ତ ସେତେ ଦୂର ନୁହେଁ । ରେଲ୍ ମାନଚିତ୍ର ଦେଖି ନାଁଗୁଡ଼ିଏ ପଢ଼େଁ, ଧାରଣା କରିହୁଏ ନାହିଁ ।

ଲମ୍ବ ହୋଇ ଟାଣି ହୋଇଛି ଟେଲିଗ୍ରାଫ୍ ତାରଗୁଡ଼ିକ । ପୋଲା ଟେଲିଗ୍ରାଫ୍ ଖୁଣ୍ଟରେ କାନ ମାଡ଼ିଦିଏଁ । କି ବିଚିତ୍ର ସଙ୍ଗୀତ ! ତା'ର ଉପରେ ଧାଡ଼ି ହୋଇ କଜଳପାତୀମାନେ ବସିପଡ଼ନ୍ତି, ଲାଙ୍ଗୁଡ଼ ହଲାନ୍ତି । ବହୁତ ଉଦଭଦଳିଆ ଚଢ଼େଇ ବସନ୍ତି । ଛାଇ ଲେଉଟିଲେ ହଜାର ହଜାର ଘରଚଟିଆ ଓ ଅନ୍ୟାନ୍ୟ ଚଢ଼େଇ ସେ ତାର ଉପରେ ବସି ଶୁଅନ୍ତି ।

ବେଳେ ବେଳେ ରେଲ୍‌ଲାଇନ୍ ଉପରେ ଗୋରୁ କି କୁକୁର କଟିଯାନ୍ତି । ସେଉଠୁ କୁଆଡୁ କୁଆଡୁ ଆସନ୍ତି ବଡ଼ ବଡ଼ ଶାଗୁଣାମାନେ । ବିଲୁଆ ଆସନ୍ତି । ତାଙ୍କ ସମାଜରେ ବି ଖାଦ୍ୟ ଛଡ଼ାଛଡ଼ି ହେଉ ହେଉ ଗାଳି ଫଉଜଦ୍ ମାଡ଼ ଫୌଜଦାରି ଲାଗେ । ବେଳେ ବେଳେ ସେମାନେ କଳି କରୁ କରୁ ରେଲ୍ ମାଡ଼ିଆସେ, ସେମାନେ ବି କଟିଯାଆନ୍ତି ।

ଖରାଦିନେ କାଠି-ଘାସ ବଣରେ ନିଆଁ ଲାଗେ । ରେଲ୍‌ଲାଇନ୍ କରେ କରେ ବଡ଼ ଅଗି ଲମ୍ବିଯାଏ କାହିଁ ଦୂରକୁ ବୋଲି ।

* * *

ଆମ ବସାର ଡାହାଣ ପାଖେ ଯେଉଁ ବସା, ସେଥିରେ ଥା'ନ୍ତି ଜଣେ ବଙ୍ଗୀୟ ଭଦ୍ରଲୋକ, ଯତୀନ୍‌ବାବୁ । କେତେଥର ତାଙ୍କୁ ଓ ତାଙ୍କ ସ୍ତ୍ରୀଙ୍କୁ ଦେଖିଛି, ଦିହିଙ୍କ ଚେହେରା ଭାରି ସୁନ୍ଦର, ଉଭୟେ ଭାରି ସ୍ନେହୀ, ଭାରି ମେଳାପି । ତାଙ୍କର ଛୁଆ ପିଲା ନ ଥାନ୍ତି, ଘରେ ଖାଲି ଯତୀନ୍‌ବାବୁଙ୍କ ବୋଉ । ତାଙ୍କ ଘର ଚୁପ୍‌ଚାପ୍ ପଡ଼ିଥାଏ । ମୁଁ ଗଲେ ଯତୀନ୍‌ବାବୁ ଖୁସୀ ହୁଅନ୍ତି, କିନ୍ତୁ ମୁଁ କ୍ବଚିତ୍ ଯାଏଁ । ଆମ ବସା ଡାହାଣ କରକୁ ମୋ ପଢ଼ା ବଖୁରି । ଝରକା ବାଟେ ମୁଁ ଦେଖେଁ, ଆରପଟେ ଯତୀନ୍‌ବାବୁଙ୍କ ଘରର ଯେଉଁ ବଖୁରି, ତା ଝରକା ବନ୍ଦ ଥାଏ, ଝରକା ପଟା ଉପରେ ଧାର ଧାର ଉଇ ଘର ବଢ଼ିଥାଏ, ତା ତଳେ କାନ୍ଥରେ ଯେଉଁ କଣା, ଯେଉଁ ବାଟେ ଘରଧୁଆ ପାଣି ପଦାକୁ ବୋହିଯା'ନ୍ତା, ସେବାଟେ ଆତଯାତ ହୁଏ ବଡ଼ ନେହୁଳଟିଏ । ସେ ରେଲ୍‌ଲାଇନ୍‌ର କାଠି-ଘାସ ବଣରୁ ଆସେ, ଦି'ପହରେ ସେହି କଣାବାଟେ ପଶେ, ପୁଣି କେତେବେଳେ ପଦାକୁ ବାହାରେ । ଦିନେ ମୁଁ ଦେଖିଲି ସେ ଘର ଭିତରୁ ବଡ଼ ନେହୁଳ ପଛେ ପଛେ ଅତି ସାନ ସାନ ଛୁଆ ଚାରୋଟି

ବାହାରିଲେ, ପଦାରେ ଟିକିଏ ବୁଲିଲେ, ପୁଣି କଣାବାଟେ ଘର ଭିତରେ ପଶିଲେ ।

ମୁଁ ପଦାକୁ ବାହାରି ପଡ଼ିଲି । ଇଟା ଗୋଟେଇ ନେଇ ସେ ଘରର ସେ କଣାକୁ ବୁଜିଦେଲି । ଦୌଡ଼ିଲି ଯତୀନ୍‌ବାବୁଙ୍କ ଘରକୁ । କବାଟରେ ଠକ୍ ଠକ୍ କଲି । ଯତୀନ୍‌ବାବୁ ତ ଅଫିସ୍ ଯାଇଥିଲେ । ତାଙ୍କ ସ୍ତ୍ରୀ କବାଟ ଫିଟେଇଲେ ।

ମୁଁ ଖୁବ୍ ଉତ୍ସାହରେ ତାଙ୍କୁ ସବୁ କଥା କହିଲି । କଣା ତ ମୁଁ ବୁଜିଦେଇଛି । କବାଟଟା ଖୋଲିଦେଲେ ଏକାଥରେ ଚାରିଟାଯାକ ନେହୁଳଛୁଆ ଧରି ହେବ, ସେଥିରୁ ମୋର ମୋଟେ ଗୋଟିଏ ଦରକାର, ପୋଷିବି ।

ହସିଦେଇ ସେ କହିଲେ, ''କିନ୍ତୁ ତହିଁରେ ତା ମା' ମନରେ କଷ୍ଟ ହେବନାହିଁ ? ତମେ ତା ମା'କୁ କଷ୍ଟ ଦେଇ ତା ଛୁଆକୁ ବାନ୍ଧି ରଖିବ ?''

ମୁଁ କହିଲି ''ହଉ ତେବେ, ଆମେ ଦି'ଟା ଛୁଆ ଧରିବା, ଗୋଟାଏ ଆପଣ ପୋଷିବେ, ଗୋଟାଏ ମୁଁ ରଖିବି ।''

ସେ କହିଲେ ''ମୁଁ ତ ରଖିବି ନାହିଁ ।''

ମୁଁ କହିଲି ''ତା'ହେଲେ, ଖାଲି ଗୋଟାଏ ଧରିବା, ମୁଁ ରଖିବି । ସେ ଟିକିଏ ପୋଷା ମାନିଲେ ତ ଖୋଲା ରହିବ । ସେତେବେଳେ ସେ ତା ମା'କୁ ବି ଯାଇ ଦେଖି ଆସୁଥିବ, ରହୁଥିବ ମୋ ପାଖରେ ।''

ମତେ ଅଝଟ ଦେଖି ସେ କଅଁଳେଇ ଭିତରକୁ ଡାକିନେଲେ, କହିଲେ ''କୋଉ ବଖରାଟା, ଦେଖେଇଲ, ସେ ଭଣ୍ଡାର ଘରଟା ତ ?''

ମୁଁ କହିଲି ''ନାଇଁ, ହେଇ ସେ ବଖୁରିଟା, ଯେଉଁଥିରେ ଗୋଟାଏ ତାଲା ପଡ଼ିଛି ।''

ହଠାତ୍ ତାଙ୍କ ମୁହଁ କଳା ପଡ଼ିଗଲା, ଓଠ ଥରିଲା । ଆରପାଖ ଘରୁ ତାଙ୍କ ଶାଶୁ ଡାକିଲେ ''କି-ରେ ?''

ସେ କହିଲେ, ''କିଛି ନାଇଁ ମା' ।''

ମତେ ପୁଣି ଦାଣ୍ଡଘରକୁ ନେଇଗଲେ ।

ଘର ଭିତର କବାଟ ଆଉଜେଇ ଦେଲେ ।

ଫୁସ୍‌ଫୁସ୍ କରି କହିଲେ, ''ଆସ୍ତେ ଆସ୍ତେ କଥା କହିବା, ନ ହେଲେ ମା ଶୁଣିଲେ ମନ ଦୁଃଖ କରିବେ ।''

ତା'ପରେ ସେ ମତେ ଫୁସ୍‌ଫୁସ୍ କରି ଗୋଟିଏ ଘଟନା କହିଲେ । କହୁ କହୁ ଅଟକୁଥାନ୍ତି, ଅତି କଷ୍ଟରେ କାନ୍ଦ ବନ୍ଦ କରୁଥାନ୍ତି ।

ଯତୀନ୍‌ବାବୁଙ୍କର ସାନ ଭାଇଟିଏ ଥିଲା । ମୋଠୁଁ ଟିକିଏ ବଡ଼ । କଲିକତାରେ ପଢୁଥିଲା । ମ୍ୟାଟ୍ରିକ୍ ପରୀକ୍ଷା ଦେଇସାରି ଭାଇ ପାଖକୁ ଆସିଥିଲା । ଯେଉଁ ବଖୁରିରେ ତାଲା ପଡ଼ିଛି, ସେହି ବଖୁରିରେ ସେ ରହୁଥିଲା । ପରୀକ୍ଷା ସରିଥିଲେ ବି ବହୁତ ପଢୁଥାଏ, ପଢ଼ାରେ ହିଁ ତା'ର ଆନନ୍ଦ ।

ପୁଣି ସେ କଲିକତା ବୁଲି ଗଲା । ସେଠୁ କେତୋଟି ସାଙ୍ଗ ଏକାଠି ହୋଇ ପୁରୀ ବୁଲି ଗଲେ । ସମୁଦ୍ରରେ ଗାଧୋଇଲେ । ସମସ୍ତେ କୂଳକୁ ଲେଉଟି ଆସିଲେ । ଆସିଲା ନାହିଁ ଖାଲି ଜଣେ, —ଯତୀନ୍‌ବାବୁଙ୍କ ଭାଇ, ପାଣିତଳ ସୁଅ ତାକୁ ଓଟାରି ନେଇଗଲା ।

ସେ ଗଲାଦିନୁ ତା ବଖରାଟି ବନ୍ଦ ରହିଛି ।

ପଛେ ପରୀକ୍ଷା ଫଳ ବାହାରିଲା, ମ୍ୟାଟ୍ରିକୁଲେସନ ପରୀକ୍ଷାରେ ସେ ପିଲାଟି ଯୋଗ୍ୟତା ଅନୁସାରେ ପ୍ରଥମ ସ୍ଥାନ ଅଧିକାର କରି ପାଶ୍ କରିଥିଲା ।

ସେ ଘରର ଏକପ୍ରକାର ନିୟମ ହୋଇଯାଇଛି, —ସେ ବଖରାଟି ବନ୍ଦ ରହିବ । ତାକୁ ଖୋଲିଲେ କେହି ଧୈର୍ଯ୍ୟ ଧରି ରହିପାରିବେ ନାହିଁ, ପୁଣି ତାଙ୍କ ଶୋକ ଉଛୁଳି ଉଠିବ ।

''ବୁଝିଲେ ବାବା ?'' ସେ ଆଖି ପୋଛୁ ପୋଛୁ କହିଲେ । ମୋ ମୁଣ୍ଡ ନଇଁ ପଡ଼ିଥାଏ । ମୁଁ ମୁଣ୍ଡ ହଲେଇ ହଁ କଲି, ଆସ୍ତେ ଆସ୍ତେ ଚାଲି ଚାଲି ଲେଉଟି ଆସିଲି ।

ପୁଣି ମୁଁ କଣାରୁ ଇଟା କାଢ଼ି ନେଇଥାଏ ।

ନେହୁଲଟି ତା ଛୁଆଙ୍କୁ ଘେନି ସ୍ୱଚ୍ଛନ୍ଦରେ ଯା ଆସ କରୁଥାଏ । କିନ୍ତୁ ମୋ ମନ ନ ଥାଏ ସେଠି, ମୁଁ ସେ ବୁଜା ଝରକାକୁ ଅନାଏଁ ଆଉ ସେ ପିଲାଟି କଥା ଭାବେଁ । ମନେପକାଏଁ ଗୋଟିଏ କିଶୋର ଯତୀନ୍‌ବାବୁଙ୍କୁ, ପାତଳ, ଗୋରା, ସୁନ୍ଦର ମୁହଁଟିଏ, ସରୁ ସରୁ ଓଠ, ବଡ଼ ବଡ଼ ଭାବପ୍ରବଣ ଆଖି, ଚୁପ୍‌ଚାପ୍ ଶାନ୍ତ ମୁହଁଟିଏ, ସେଥିରେ ଗୋଟିଏ ସ୍ମିତ ହସର ଆରମ୍ଭ ସବୁବେଳେ ଲାଗି ରହିଛି । ହଜାର ହଜାର ପିଲାଙ୍କ ଭିତରେ କଲିକତା ୟୁନିଭର୍ସିଟିରେ ସେ ପିଲା ଫାଷ୍ଟ୍ ହୋଇଥିଲା, ନିଶ୍ଚୟ ସେ ଜଣେ ଜୀନୀୟସ୍ !

ଯତୀନ୍‌ବାବୁ ବି ବସା ବଦଳାଇଲେ । କେଡ଼େ ଚୁପ୍‌ଚାପ୍ ହୋଇ ରହିଥିଲେ ସେ, ସେମିତି ଚୁପ୍‌ଚାପ୍ ହୋଇ ଚାଲିଗଲେ । ତା'ପରେ ସେ ଘରେ ରହିଲେ ମନୋରଞ୍ଜନ ମୁଖର୍ଜି ଓ ତା ବାପା ମା ଭାଇ ଭଉଣୀମାନେ । ମନୋରଞ୍ଜନକୁ ଛାଡ଼ି ଗୁଡ଼ିରି ଗାଡ଼ିରି ହୋଇ ସେମାନେ ଆହୁରି ସାତ ଆଠଟି ଛୁଆ । ସେ ଘର ପାଟିତୁଣ୍ଡ କଳିଗୋଳରେ ଉଠିଲା ପଡ଼ିଲା । ପିଲାଗୁଡ଼ିକ ଭାରି

ଖୁଚୁବୁଚିଆ । ମନୋରଞ୍ଜନ ମୋ ସଙ୍ଗରେ ପଢ଼େ, ଶାନ୍ତଶିଷ୍ଟ କୁହାର ବୋଲର ପିଲାଟିଏ, ତା ଘର କାମରେ ସେ ଖୁବ୍ ସାହାଯ୍ୟ କରେ, ପଢ଼ାରେ ସେତେ ଭଲ ନୁହେଁ, ସେ କହେ, ତା ଜୀବନର ଲକ୍ଷ୍ୟ ସେ ରେଲ୍‌ରେ ଗାର୍ଡ଼ସାହେବ ହେବ । ତା ବାପା ରେଲ୍ ବିଭାଗରେ କିରାଣି କି ଟିଟିଆଇ । ସେ ନିଜେ ବହୁତ ଷ୍ଟେସନ୍‌ର ନାଁ ଜାଣିଥିଲା, ରେଲ୍‌ଗାଡ଼ି ଓ ରେଲ୍‌ଲାଇନ୍ ବିଷୟରେ କେତେ କଥା ଜାଣିଥିଲା, ସେ ସ୍ୱପ୍ନ ଦେଖୁଥିଲା, ରେଲ୍ ହିଁ ହେବ ତା ଘର, ସେ ରେଲ୍‌ରେ ଚଢ଼ି କେତେଦୂର ଦୂରାନ୍ତକୁ ଚାଲିଯାଉଥିବ, ପୁଣି ଆସୁଥିବ, ପୁଣି ଯାଉଥିବ, ସବୁବେଳେ ଦେଖୁଥିବ ନୂଆ ଜାଗା, ନୂଆ ମଣିଷ ।

ରେଲ୍ ଗଲାବେଳେ ଗାର୍ଡ଼ ସାହେବଙ୍କୁ ସଲାମ୍ କରିବାକୁ ତାକୁ ଭାରି ଖୁସି ଲାଗେ । ଆମେ ଦୁହେଁ ଠିଆହୋଇ ଦେଖୁଥାଉଁ । ଗାର୍ଡ଼ର ଗାଡ଼ି ଯାଏ । ଆମେ ହାତ ଟେକୁଁ । ଗାର୍ଡ଼ ବି ମୁଣ୍ଡରେ ହାତମାରି ପ୍ରତିନମସ୍କାର ଜଣାଏ, ହସିଦିଏ ।

ଅଚିହ୍ନା ମଣିଷ ସଙ୍ଗେ ଏ ନିରର୍ଥକ ଶିଷ୍ଟାଚାର ବିନିମୟ ଭାରି ଆମୋଦପ୍ରଦ ଲାଗେ ।

** ** **

ପଢ଼ା ଚାଲିଛି, ଇସ୍କୁଲ୍‌ର ଧରାବନ୍ଧା ନିର୍ଘଣ୍ଟ ଅନୁଯାୟୀ, ଗୋଟାଏ ପୃଷ୍ଠା ଉତାରୁ ଆଉ ଗୋଟାଏ ପୃଷ୍ଠା, ଗୋଟାଏ ସ୍ତର ଉତାରୁ ଆଉ ଗୋଟାଏ ସ୍ତର ।

ଇସ୍କୁଲ୍‌ରେ ଚିହ୍ନା ମୁହଁଟିମାନ ନ ଥିଲେ ସେ ବି ଲାଗନ୍ତା ଧୂସରା, ଦେହଘଷରା ।

ଆସେ ଝାଞ୍ଜି ଖରା, ଚାରିଆଡ଼ ତାତିଯାଏ, ଖଟ, ବିଛଣା, ବହି, ଦୁଆତ, କଲମ, ସବୁ । ପବନରେ ଶୁଖିଲା ତାଉ, ସତେ ଯେମିତି ତହ ତହ ଚୁଲି ଉପରର । ସେ ତାତିରେ ପାଣି ବାମ୍ପ ନାହିଁ, ଖାଲି ଆଗ୍ନେୟଗିରିର ଖର ନିଶ୍ୱାସ ସେ । କାନରେ ବାଜିଲେ ମୂର୍ଚ୍ଛା ଗଲାପରି ଲାଗେ । ତା ନାଁ ଉତ୍ତର ଭାରତର 'ଲୁ' । ବେଳେ ବେଳେ ଆସେ ଧୂଳିଝଡ଼, ଚାରିଆଡ଼ ଅନ୍ଧାର ହୋଇଯାଏ ।

ଖରା ଛୁଟି ସରେ । ଆକାଶରେ ମେଘର ଫଉଜ ଚାଲିଥାନ୍ତି । ମେଘ ଅଡ଼ାଡ଼େ । ଛେଚିକୁଟି ବରଷା । ମଝିରେ ମଝିରେ ବରଷା ଛାଡ଼ିଯାଏ । ଆମେ ଯାଉଁ ଘୋଡ଼ା ଦଉଡ଼ ପଡ଼ିଆରୁ ବାଲିଛତୁ ତୋଳି, ବହୁତ ଫୁଟେ ।

ତା'ପରେ ସୁନ୍ଦର ଶରତ୍ କାଳ । ମତେ ଲାଗେ ଓଡ଼ିଶାଠୁଁ ସେଠି ଶରତ ବେଶୀ ଦିନ ରହେ, ବେଶୀ ଶାନ୍ତ ନିର୍ମଳ ଦିଶେ । ଚାରିଆଡ଼େ ଗଙ୍ଗଶିଉଳି ଫୁଟି ଗଦାହୁଏ ।

ତା'ପରେ ଜାଡ଼ଦିନ ଆସେ । ଦାନ୍ତରେ ଦାନ୍ତ ଠକ ଠକ ବାଜେ, ସୂର୍ଯ୍ୟକୁ ସତେ ଯେମିତି ରୋଗ ଘୋଟେ । ଆମେ କୁଙ୍କିରି କାଙ୍କିରି ହୋଇ ବାହାରୁଁ, ରାତିରେ ଉହ୍ଲେଇ ଚାଲୁଁ ।

ହଠାତ୍ ଆମଗଛମାନଙ୍କରେ ବସନ୍ତ ଝଲଝଲାଏ, ଆଉ ବାବୁମାନଙ୍କ ବାଗ୍ଚାରେ ।

ବାଗ୍ଚାରୁ ମନେ ପଡ଼ିଗଲା ମହନା ମାଳି, ଆମେ ଡାକୁଁ ମହନି । ଶୁଖିଲା ସେମେଟା ହୋଇ ମଣିଷଟିଏ ସେ, ଗୋଟିଏ ଡୋରିଆ ବେଢ଼ଙ୍ଗ ଅଧାହାତ କାମିଜ୍‌ଟିଏ ଲୁଗା ଉପରେ ଗଳାଏ, ବେକରେ ମାଳି, ଅଣ୍ଟାରେ ବଟୁଆ, ମୁଣ୍ଡରେ ଚୁଟି । ସେ କେଉଁ ସାହାବ ଘରେ ମାଳି କାମ କରେ । କାହିଁକି କେଜାଣି, ମୋ ବୋଉକୁ ଦେଖିଲାକ୍ଷଣି ସେ ଅଭିଭୂତ ହୋଇପଡ଼ିଲା, ତା ପାଦରେ ମୁଣ୍ଡ ଲଗେଇଲା, କହିଲା, "ଚାରୋଟି ପୁଅଙ୍କର ମା ତୁମେ, ତା ସଙ୍ଗରେ ମୋର ବି ମା, ମୂରୁଖଟାଏ ବୋଲି ଏ ପୁଅଟାକୁ କ'ଣ ଘୃଣା କରିବ ?" ତା ଆଖି ଲୁହରେ ଛଳଛଳ ହୋଇଗଲା । ସେ ଆମଠୁଁ କିଛି ଲୋଡ଼ିନାହିଁ, ଓଲଟି ସେ ଆସି ପହଞ୍ଚିଲେ କେତେବେଳେ ବୋଲଟାଏ ହାକଟାଏ କରେ । କିନ୍ତୁ ମଝିରେ ମଝିରେ ହଠାତ୍ ସେ କୁଆଡ଼ୁ ଗଳିପଡ଼େ, ବେଶୀ ବୋଉ ସଙ୍ଗେ ଦୁଃଖ ସୁଖ ହୁଏ । ସେ ତା ହାନିଲାଭ କହେ, ବାରମ୍ବାର ବୋଉର ଆଶୀର୍ବାଦ ମାଗେ ।

ଆମ ଆଗରେ ସେ ତା'ର ଯେତେ ଅଭିଜ୍ଞତା କହେ, ଲାଗୁଥାଏ ସେ ସତେକି ବଡ଼େଇ ବଡ଼େଇ ବହାପିଆମି କରୁଛି, ସେସବୁ ତା ବିଚକ୍ଷଣ ବୁଦ୍ଧି ଓ କର୍ମକୁଶଳତାର କଥା, ଆଉ ତା ବୀରତ୍ୱର କଥା । ସେ ବାରମ୍ବାର କହେ, କେମିତି ସେ ପଶ୍ଚିମା ମାଳିମାନଙ୍କ ଆଗରେ ଓଡ଼ିଶାର ଓ ନିଜର ଗୌରବ କହେ, ତା ହିନ୍ଦୀ ବୋଲି ତା ନିଜସ୍ୱ ।

ସେଉଠୁ ମୁଁ କହିଲି,–

ଆରେ – କ୍ୟା ?

ହାମ୍ ଜଗନ୍ନାଥ୍ ଦେଶ୍‌କା ଆଦ୍‌ମୀ, ତୁମ୍ ଜାନ୍‌ତା ?

କଭି ଦେଖା ଜଗନ୍ନାଥ ଦେଶ୍ ?

ଉହାଁ ସବ୍‌କୁଛ୍ ବଡ଼ା ହୋତା ହେ, ସବ୍‌ସେ ଆଚ୍ଛା ହୋତା ହେ । ଯୈସେ ଖୋଦ୍ ଜଗନ୍ନାଥ୍ ଠାକୁର୍, ଆଉର୍ ସମୁନ୍ଦର୍, ଆଉର୍ ଆଦ୍‌ମୀକା ଦିଲ୍, ଉସ୍କା ଧର୍ମଭାବ୍, ଏଇସା ଆଚ୍ଛା ଆଦ୍‌ମି ତୁମ୍ କାହାଁ ପାଓଗେ ? ଜାନ୍‌ତେ ହୋ, ହମ୍ ଲୋଗ୍ ସବ୍ ଆଦ୍‌ମି ଯିତ୍‌ନା ଜଗନ୍ନାଥ ଦେଖ୍‌କା, ଓ ସବ୍ ଆଦ୍‌ମୀ ମର୍‌ନେକେ ବାଦ୍ ବୈକୁଣ୍ଠମେ ଯାଏଁଗେ, ତୁମ୍ ବୈକୁଣ୍ଠ ଯାନା ଆସାନି ନହିଁ ହେ । ତୁମ୍‌ହାରା ଦେଶ୍‌ମେ ଜଗନ୍ନାଥ କାହାଁ ହେ ?

ସେ ମତେ କହିଲା, —ସତେ ଭାଇ ଏଡ଼େ ବଢ଼ିଆ ତମ ଦେଶ । ମୁଁ କହିଲି – କି ଦେଶର ଲୋକ ଆମେ, କି ଘରର ପିଲା ଆମେ, ତୁମେ ଅଧମ କାହୁଁ ତା ବୁଝିବରେ ?'' କହିଲା, —''ମୋ'ଠୁଁ ଶୁଣି ଶୁଣି ସେମାନେ ପରା ଭାବୁଛନ୍ତି ଓଡ଼ିଆ ମଣିଷ ସବ୍‌ସେ ଆଚ୍ଛା, ସବ୍ ସେ ଜିଆଦା । ମଝିରେ ମଝିରେ ଖଞ୍ଜଣି ବଜେଇ ଭଜନ ଗାଏଁ, —ଶୁଣନ୍ତୁ ବିଚରାମାନେ, ତାଙ୍କ କର୍ଣ୍ଣ ପବିତ୍ର ହେଉ । ସେମାନେ ତ ପୋକମାଛି ପରି ଗଦା ହୁଅନ୍ତି । କେହି କେହି ମୋ ସାଙ୍ଗରେ ପାଳି ଧରନ୍ତି, ଗାଆନ୍ତି

''ଆରେ, ବାଇମନ,
ଆରେ ବାଇମନ,—''

ବେଳେ ବେଳେ ମୁଁ ଭାଗବତ ବୋଲେଁ, ସେମାନେ ଶୁଣନ୍ତି । କାମ ତ ଯେଝା ଯେଝାର କରୁଚନ୍ତି, ମୁଁ କହେ ନାମଟା ଚାଲିଥାଉ, ଲୋକେ ତରିଯିବେ ।''

ପ୍ରକାରେ ଲୋକ ଥିଲା ମହନା ମାଳି, ସତେ ଯେମିତି ତା ସଂସାରୀ ବୁଦ୍ଧିଟା ଊଣା, ସେ ଜନ୍ମ ହୋଇଛି ସମସ୍ତେ ତାକୁ ଠକିବେ ବୋଲି । ସେ ସେହି ଠକାମିର କାହାଣୀ କହେ, ଗାଁ ଲୋକେ କେମିତି ତା ଜମି ଠକିନେଲେ, ତା ଗଛବୁରୁଛ ଠକି ଖାଇଲେ, ତାକୁ ସବୁଥିରେ ଠକିଲେ । କିନ୍ତୁ କାହାରି ଉପରେ ତା'ର ଅହନ୍ତା ନ ଥାଏ । ସେ କହେ;

''ମତେ କାଇଁକି ଠକିଲେ ? ତାଙ୍କ ବୁଦ୍ଧି ପୋଡ଼ିଗଲା ବୋଲି ! ବୁଦ୍ଧି କାଇଁକି ପୋଡ଼ିଗଲା ? ତାଙ୍କ କପାଳ ଲିଖନ ବୋଲି ! ଠକି କରି କ'ଣ ପାଇଲେ ? ଏ ଜନ୍ମରେ ଘୁଷୁରି ପରି ପେଟକୁ ଖାଇ ଦେଲେ, ମଲେ ଘୁଷୁରି ଅବସ୍ଥା ହେବେ ନା ଆଉ କ'ଣ ତରିବେ ? ମୋର କି ଯାଏ ? ହେଇତି ମୁଁ ଏଡ଼େ ଦୂରବିଦେଶରେ ପଡ଼ିଚି ସିନା, ମୋର କିଛି ଅଟକୁଛି ନା ମନରେ ମଳିଧୂଳି ଅଛି ? ଠକନ୍ତୁ, ନଉନ୍ତୁ, ମୋ ପାଉଣାଟା ମୋ ପେଇଁ ଠାକୁରେ ରଖିଚନ୍ତି, କୋଉଦିନ ଉପାସ ରହୁନାହିଁ, ହାତଗୋଡ଼ ଚଳୁଚି ।''

ସତେ ଯେମିତି ଓଡ଼ିଶାର ଗାଁ ଗହଳିର ସବୁଦିନିଆଁ ମଣିଷର ନମୁନା ହୋଇ ଠିଆହୁଏ ଆସି ମହନା ମାଳି, କେତେ ଯୁଗ ଦେହେ ଦେହେ ଯାଇଛି, କେତେ ବିପତ୍ତି ଆସିଛି ଯାଇଛି, ତା ଟେର ଉପୁଡ଼ି ନାହିଁ । ଲୋକେ ଚିତା କାଟନ୍ତି, ସେ ଜାଣେ, ସେମାନେ ଠକିବେ ତ । ଲୋକେ ଟାହି ଟାପରା କରନ୍ତି, ସେ ଜାଣେ, ସେମାନେ ଥଟ୍ଟା କରିବେ ତ । ଦେହରେ ମାଉଁସ ଶୁଖିଯାଇଛି, ହାତ ଗୋଡ଼ ଶିର ଜାଲରେ ଛନ୍ଦାଛନ୍ଦି । କେତେଥର ମ୍ୟାଲେରିଆ ଜରରେ ପଡ଼ି ସେ କତରାକାଗି ହୋଇଛି, ଯେତେବେଳେ ଉଠିଛି, ପୁଷ୍ଟିକର ଖାଦ୍ୟ କେବେ ପାଇ ନାହିଁ ।

ତଥାପି ତା'ର ଅଭିଯୋଗ ନାହିଁ, କହେ "କାହାକୁ ନିନ୍ଦିବି ? ଆପଣା କର୍ମକୁ ସିନା ! କର୍ମ ବି କାହା ଅଧୀନ ? ନିଜେ ବଡ଼ଠାକୁରଙ୍କ ଅଧୀନ । ସେ ଯଦି ଭାବିଲେ, ଦହଗଞ୍ଜ କରିବେ, କରନ୍ତୁ, ସବୁ ତ ତାଙ୍କରି ଇଚ୍ଛାରେ ହୁଏ, ଆଉ କାହାର କି ଚାରା ଅଛି ? ସେ ଯାହା କରନ୍ତି ସବୁ ଠିକ୍, ଅଇଚ୍ଛା ରାତି କଲେ, ପଛକୁ ପୁଣି ଦିନ କରିବେ ଯେ । ସେ କୁକୁରଙ୍କୁ କହିଚନ୍ତି ତୁ ଭୁକିବୁ, କୁକୁର ଭୁକୁଚି । ମତେ କହିଛନ୍ତି, ତୁ ମାଳି କାମ କରି ପେଟ ପୋଷିବୁ, ବେଳ ପାଇଲେ ମୋ ନାମ ନବୁ, ମୁଁ ସେଇଆ କରୁଚି । ଭଲ ମନ୍ଦ ତାଙ୍କୁ ଜଣା, ମୋର କି ଯାଏ ?"

ଭାରି ସରଳ କରି କଥାଗୁଡ଼ିକ କହିଦିଏ, ଲାଗେ ସରଳ ଛଡ଼ା ଆଉ କେଉଁଆଡ଼କି ତା ମନ ଯାଏ ନାହିଁ । ତା ଆଖି ମିଟି ମିଟି ହେଉଥାଏ, ଓଠରୁ ସତେକି ହସ ବୋହି ପଡୁଥାଏ ।

ବୋଉ ପାଟ୍‌ନାରୁ ଯେଉଁଦିନ କଟକ ଯିବ ବୋଲି ବାହାରିଲା, ମହନି ଖବର ପାଇ ଆସି ପହଞ୍ଚିଥିଲା । କାନ୍ଦି କାନ୍ଦି ବିଦା ହେଲା । କହିଗଲା "ମୁଁ ବଞ୍ଚିଥିଲେ ଫେର୍ ଯେବେ ହେଲେ କଟକ ଗଲେ ଦେଖା କରିବି ଯେ, ମା'କୁ କିଏ ଭୁଲେ ?"

ତା'ପରେ ଅକସ୍ମାତ୍ କେବେ ଅକାଳେ ସକାଳେ ଆସେ, ନ ହେଲେ ନାହିଁ । ପଚାରିଲେ କହେ, "ଆସିବାକୁ ମନ ହୁଏ ଯେ, —ପୁଣି ଭାବେଁ, ଗଲେ ମା'କୁ ତ ସେଠି ଦେଖିବି ନାଇଁ, କାହିଁକି ଏତେ ବାଟ ଯିବି ?"

** ** **

ପାଟ୍‌ନାରେ ମୁଁ ଥାଏଁ, ଧୂଜଭାଇ ଓଡ଼ିଶା ସ୍କୁଲ୍ ଅଫ୍ ଇଞ୍ଜିନିଅରିଂର ପ୍ରଥମ ଦଳରେ ପରୀକ୍ଷା ଦେଇ ପାଶ୍ କଲେ, ସେ ବିହାର ଓଡ଼ିଶାରେ ଯୋଗ୍ୟତା ଅନୁସାରେ ପ୍ରଥମ ସ୍ଥାନ ଅଧିକାର କଲେ । ଦ୍ୱିତୀୟରୁ ଷଷ୍ଠ

ସ୍ଥାନ ବି ଅଧିକାର କରିଥାନ୍ତି ତାଙ୍କରି ଅନୁଷ୍ଠାନର ପିଲାମାନେ । ସମସ୍ତେ ଭାରି ଖୁସୀ ହେଲେ, ନିୟମ ଅନୁସାରେ ଏଥର ତାଙ୍କୁ ଗୋଟିଏ ସ୍ଥାୟୀ ସରକାରୀ ଓଭରସିଅରି ଚାକିରି ମିଳିଯିବା କଥା, ସେ କୃତିତ୍ୱ ପାଇଁ ସେତିକି ପୁରସ୍କାରର ବିଧାନ ଥାଏ ।

କିନ୍ତୁ ତା ମିଳିଲା ନାହିଁ । ଗୋଟିଏ ଯୁକ୍ତି ଆଗତ କରାଗଲା ଯେ, କଟକର ସରକାରୀ ଅନୁଷ୍ଠାନ ଓଡ଼ିଶା ସ୍କୁଲ୍ ଅଫ୍ ଇଞ୍ଜିନିୟରିଂ ସେ ପର୍ଯ୍ୟନ୍ତ ଆଇନ୍‌ଗତ ସ୍ୱୀକୃତି ପାଇନାହିଁ । ତେଣୁ ପାଟ୍‌ନାର ବିହାର ସ୍କୁଲ୍ ଅଫ୍ ଇଞ୍ଜିନିଅରିଂର ପିଲାଙ୍କୁ ଆଗ ସ୍ଥାୟୀ ଚାକିରି ଦିଆଗଲା । ସେହି ବିଷୟରେ ବୁଝାବୁଝି କରିବା ପାଇଁ ଓ ଆପତ୍ତି କରିବା ପାଇଁ ମନ୍ତ୍ରୀମାନଙ୍କୁ ଭେଟିବା ଲାଗି ସେ ପାଟ୍‌ନା ଆସିଲେ । ସେତେବେଳେ ସେ ବାଇବ୍‌ଲ ଧର୍ମଶାସ୍ତ୍ରକୁ ଖୁବ୍ ପ୍ରଶଂସା କରୁଥାନ୍ତି ଓ ମଣିଷ ଜୀବନ ପ୍ରତି ବାଇବ୍‌ଲର ଉପଦେଶଗୁଡ଼ିକ କେମିତି ସିଧାସଳଖେ ପ୍ରୟୋଗ କରିହୁଏ, ସେହି ଉପଦେଶମାନଙ୍କରେ ମଣିଷର ନିତିଦିନିଆ ଜୀବନର ନାନା ସମସ୍ୟା ଓ ନାନା ପ୍ରଶ୍ନର କେମିତି ଠିକଣା ଠିକଣା ବୁଧିଆ ଉତ୍ତରମାନ ମିଳିପାରେ, ସେହିସବୁ କଥା କହୁଥାନ୍ତି । ତାଙ୍କ କଲେଜ୍ ଅଧ୍ୟକ୍ଷ ପାର୍କିନ୍‌ସନ୍ ସାହେବ କୁଆଡ଼େ ଇଞ୍ଜିନିଅରିଂ ଓ ବାଇବ୍‌ଲ ଉଭୟ ବିଦ୍ୟାରେ ଖୁବ୍ ପ୍ରବୀଣ ଓ ପାର୍କିନ୍‌ସନ୍ ଓ ତାଙ୍କ ସ୍ତ୍ରୀ ଅତି ଯତ୍ନରେ ନିଜେ ତାଙ୍କୁ ବାଇବ୍‌ଲ ବୁଝେଉଥିଲେ ।

ବଡ଼ ଭାଉଜବୋଉ ଚିନ୍ତିତା ହୋଇ ଦୀର୍ଘଶ୍ୱାସ ପକାନ୍ତି, କହନ୍ତି "ତୁମେ କ'ଣ ଖ୍ରୀଷ୍ଟିଆନ୍ ହୋଇଯିବ ଧିଳ ?"

ସେ କହନ୍ତି "ବାଇବ୍‌ଲର ଉପଦେଶ ଠିକ୍ ବୋଲି ବିଶ୍ୱାସ କଲେ ଯଦି ସେପରି ଲୋକଙ୍କୁ ଖ୍ରୀଷ୍ଟ୍ୟାନ୍ କୁହାଯିବ, ବାଇବ୍‌ଲ ପଢ଼ି ପ୍ରାର୍ଥନା କରିବା ଲୋକଙ୍କୁ ଯଦି ଖ୍ରୀଷ୍ଟ୍ୟାନ୍ କୁହାଯିବ, ତେବେ ମୁଁ ଖ୍ରୀଷ୍ଟିଆନ୍ ତ; ଏଥିରେ ସନ୍ଦେହ କ'ଣ ଅଛି ? କିନ୍ତୁ ଖ୍ରୀଷ୍ଟିଆନ୍ ସଂଘରେ ନାଁ ଲେଖେଇଥିବ, ଡୁବନ୍ ନେଇଥିବ, ଖ୍ରୀଷ୍ଟିଆନ୍ ରୀତିନୀତି ଓ୍ଷାବାର ଆଦି କରୁଥିବ, ଏଭଳି ଲୋକଙ୍କୁ ଯଦି ଖ୍ରୀଷ୍ଟିଆନ୍ କୁହାଯିବ, ମୁଁ ସେଭଳି ଖ୍ରୀଷ୍ଟିଆନ୍ ହୋଇନାହିଁ ।"

"ନାଇଁ ନାଇଁ ଧିଳ, ତୁମେ ଖ୍ରୀଷ୍ଟିଆନ୍ ହବ ନାଇଁ, ତମ୍ଭକୁ ଆମ ସମସ୍ତିଙ୍କ ରାଣ, ତୁମେ ଖ୍ରୀଷ୍ଟିଆନ୍ ହେଲେ ତୁମ ବୋଉ ପ୍ରାଣ ରଖିବେ ନାଇଁ ।"

"ଏ କି ଆଶ୍ଚର୍ଯ୍ୟ କଥା କହୁଚ ! ବାଇବ୍‌ଲ ପଢ଼ିଲେ କ'ଣ ଲୋକେ ଖ୍ରୀଷ୍ଟ୍ୟାନ୍ ହ'ନ୍ତି ? ତେବେ, ବହିଟିଏ ଛପା ହେଇଛି, ଯାହାର ଇଚ୍ଛା ହେବ ସେ ପଢ଼ିବ; ସେ ସେ ଉପଦେଶ ମାନି ଚଳିବ । ମୁଁ ଦେଖିଛି, ଯେତେବେଳେ

ମୋ ମନରେ ଅଶାନ୍ତି ଆସିଛି, ମୁଁ ବାଇବ୍ଲର ଉପଦେଶ ପଢ଼ି ମନରେ ଶାନ୍ତି ପାଇଛି । ଭାରି ଆଶ୍ଚର୍ଯ୍ୟ ବହିଟିଏ ସେ, ସତେ ଯେମିତି ମଣିଷର ମନ ଭିତରର କଥାକୁ ଆଗରୁ କିଏ ଜାଣିପାରି ସେଠି ଲେଖି ଦେଇଛି, ତା ଉତ୍ତର ବି ଲେଖିଛି ।''

ମୁଁ ବି ବାଇବ୍ଲ ଖଣ୍ଡିଏ ଆଣିଲି । ଚେଷ୍ଟା କଲି, କିନ୍ତୁ ମୋ ମନ ଭିତର କଥା କି ତା'ର ଉତ୍ତର କିଛି ପାଇଲି ନାହିଁ । ବୋଧହୁଏ ମନ ଭିତରେ କିଛି ବିଶିଷ୍ଟ କଥା ଥିବାର ମୁଁ ଜାଣି ନ ଥିଲି ।

ଧୃଳଭାଇଙ୍କି ପଚାରିଲି, ସେ କହିଲେ, ''ଖୁବ୍ ନିଷ୍ଠା ସହକାରେ ପଢ଼, ମନକୁ ନମ୍ର କର, ବିନୟୀ କର, ଦୋଷ ହୋଇଥିଲେ ଅନୁତାପ କର, ଉତ୍ତର ଲୋଡ଼ାଥିଲେ ଖୋଜ୍, ଖୋଜିଲେ ପାଇବୁ ।

ମୁଁ ଆଉ ଖୋଜିଲି ନାହିଁ ।

'ପାପୋଽହଂ ପାପକର୍ମାହଂ ପାପାତ୍ମା ପାପସମ୍ଭବଃ' କହିବାକୁ ବେପସନ୍ଦ ଲାଗୁଥିଲା, ଖୁବ୍ ଉଲ୍ଲାସରେ କହୁଥିଲି ''ଅହଂ ଦେବୋ ନ ଚାନ୍ୟୋଽସ୍ମି ବ୍ରହ୍ମୈବାହଂ ନ ଶୋକ୍‌ଭାକ୍ ।''

ସେ ଲେଉଟିଗଲେ, ତାଙ୍କୁ ଆଉଥରେ ଦେଖିଲାବେଳକୁ ସେ ଦେବୀଭକ୍ତ, ପୂଜା କରୁଛନ୍ତି ମା' କାଳୀଙ୍କ ଛବିଟିଏ । ବୋଲୁଛନ୍ତି ''ସର୍ବମଙ୍ଗଳମଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁତେ ।'' କେତେବର୍ଷ ପରେ ସେ କ୍ରମେ ବୈଷ୍ଣବ ହୋଇଗଲେ, ''ଭଜ ନିତାଇ ଗୌର୍ ରାଧେଶ୍ୟାମ୍, ଜପ ହରେ କୃଷ୍ଣ ହରେ ରାମ୍'' ଗାଇ 'ସଂକୀର୍ତ୍ତନ' କଲେ, ଆଖିରୁ ଧାର ବୋହିଲା ।

ଏବେ ଲାଗୁଛି, ଏ ତିନିପ୍ରକାର ଧର୍ମବିଶ୍ୱାସ ଏକା ସୂତାରେ ହିଁ ଗୁନ୍ଥା ହୋଇଛି, ଆଉ ବାଗେ ଦେଖିଲେ, ତାଙ୍କ କର୍ମମୟ ଜୀବନ ଭିତରେ ଏ ପ୍ରକାର ପ୍ରକାର ଗୁଡ଼ିଏ ଉପରକୁ ହୋଇ ପାହାଚଗୁଡ଼ିଏ । ସେ କେବେ ହାତ ଟେକି ବସି ନାହାନ୍ତି, ପିଲାଦିନୁଁ ସବୁବେଳେ ନିଜର ବା ଆଉ କାହାରି କୌଣସି ଉପକାରୀ କାର୍ଯ୍ୟ କରିଯିବାରେ ସେ ଅଭ୍ୟସ୍ତ, କ'ଣ ନ ପାଇଲେ ସେଥିପାଇଁ ଝୁରି ହୋଇ ନାହାନ୍ତି; କ'ଣ ପାଇଲେ ସେଥିପାଇଁ ତାଙ୍କ ମନ ଫୁଲି ଉଠିନାହିଁ ।

ସଂରକ୍ଷିତ ସ୍ଥାୟୀ ଚାକିରି – ଯାହା ତାଙ୍କର ପ୍ରାପ୍ୟ ଥିଲା, ତା ତାଙ୍କୁ ମିଳିଲା ନାହିଁ । ସେ ଲେଉଟି ଯାଇ ବନ୍ୟା ଗବେଷଣା ବିଭାଗରେ ନିଯୁକ୍ତି ପାଇଲେ, ଓଡ଼ିଶା ସମତଳର ସବୁ ନଈ ବୁଲି ବୁଲି ଅଧ୍ୟୟନ କଲେ,

କେତେ ବର୍ଷ ପରେ ସ୍ଥାୟୀ ନିଯୁକ୍ତି ପାଇଲେ ନାଳ ବିଭାଗରେ । ୧୯୩୦ରେ ତାଙ୍କର ବିଭାଘର ହେଲା, ବୋଉ ସେଥିପାଇଁ ପାଟ୍‌ନାରୁ ଆଗରୁ ଗଲା ।

କାହ୍ନୁଭାଇଙ୍କ ବିଷୟରେ ଚିଠି ମିଳୁଥାଏ । ସେ 'ମଇଧରପଡା ବସା' ମେସ୍‌ରେ ରହି କଟକ କଲେଜ୍‌ରେ ବି.ଏ. ପଢୁଥାନ୍ତି, ବିଷୟ ଇକନମିକ୍ସ ଓ ମ୍ୟାଥେମ୍ୟାଟିକ୍ସ, ଇକନମିକ୍ସରେ ଅନର୍ସ । ତା' ଉପରେ ସେ କରୁଥାନ୍ତି ଗୋଟିଏ ପିଲାକୁ ଟିଉସନ୍ । ଏତେ ପରିଶ୍ରମ ଭିତରେ ସେ ଖୁବ୍ ଉତ୍ସାହ ଦେଇ ଚିଠି ଲେଖନ୍ତି, ନିଜର ଅସୁବିଧା କଥା ଲେଖନ୍ତି ନାହିଁ । ଆମେ ତାଙ୍କ ଅକ୍ଷରକୁ ପ୍ରଶଂସା କରୁଁ । ଭାଉଜବୋଉ କହନ୍ତି, "ତାଙ୍କ ଅକ୍ଷର କେଡେ ସୁନ୍ଦର ହୋଇଗଲାଣି, ବନାନ୍ ଭୁଲ୍ ବି ହେଉ ନାହିଁ ।" ଭାଇ କହନ୍ତି "ତା'ର ବହୁତ ଜ୍ଞାନ, ବି.ଏ. ପରୀକ୍ଷାରେ ଖୁବ୍ ଭଲ କରିବ, ତା ଭବିଷ୍ୟତ୍ ଉଜ୍ଜ୍ୱଳ ।" ଉଲ୍ଲାସରେ ମୋ ଗୋଡ଼ ଏଠି ବୋଲି ସେଠି ପଡ଼େ, ମୁଁ କଳ୍ପନା କରେଁ, – କାହ୍ନୁଭାଇ ବଡ଼ ହୋଇଛନ୍ତି, ଖୁବ୍ – ଖୁବ୍ ବଡ଼ । ମୋ ମନ ଫୁଲିଉଠେ । ତା'ପରେ ସେ ବିନା କାରଣରେ ହଟହଟାରେ ପଡ଼ିଲେ । ଖବର ମିଳିଲା । ଦିନେ ସେ ବସି ପଢୁଥିଲେ, ମେସ୍ ବସାର ଅନ୍ୟ କେଉଁଆଡ଼େ କାହାର ଗାଈଟାଏ କୁଆଡ଼େ ଚାଳ ଓଲାରୁଥିଲା । ବସାର ପୂଝାରୀ ଗାଈ ହୁରୁଡ଼େଇବାକୁ ହୁଣ୍ଡାପଣ କରି କଟୁରିଟାଏ ଫୋପାଡ଼ିଲା, ଗାଈର ଗୋଡ଼ ଖଣ୍ଡିଆ ହେଲା । ଗାଈର ମାଲିକ ତା ନାଁରେ ମକଦ୍ଦମା କରିବ ବୋଲି କାହ୍ନୁଭାଇଙ୍କି ସାକ୍ଷୀ ହେବାକୁ କହିଲା । ସେ ମନା କଲେ । ଗାଈର ମାଲିକ ରାଗିଯାଇ ସେ ନିଜେ ଗାଈକୁ ଖଣ୍ଡିଆ କଲେ ବୋଲି ମିଛରେ ଦରଖାସ୍ତ ଲେଖି ମକଦ୍ଦମା କଲା । କାହ୍ନୁଭାଇଙ୍କ ନାଁରେ ମିଛ ମକଦ୍ଦମା ଚାଲିଲା । ସେ ଧାଇଁଲେ କଚିରିକୁ । ଓକିଲ କଲେ, ଶ୍ରୀ ବୀରକିଶୋର ରାୟ । ଶେଷରେ ମକଦ୍ଦମାଟା କିଛି ହେଲା ନାହିଁ, ଗାଈର ମାଲିକ ମକଦ୍ଦମା ଉଠେଇ ନେଲା ଓ ରାଜିନାମା ଦାଖଲ କଲା । କିନ୍ତୁ ତାରିଖ ଗଡ଼ିଥିଲା ବହୁତ ଦିନ, କାହ୍ନୁଭାଇଙ୍କ ପଢ଼ାର ଖୁବ୍ କ୍ଷତି ହେଲା, ସେ ଅନର୍ସ ଛାଡ଼ିଦେଲେ, ମକଦ୍ଦମା ନାଁ ଶୁଣି ଆମେ ବି ଭାରି ଦୁଃଖିତ ଓ ଚିନ୍ତିତ ରହିଲୁଁ । ବାପା ମଲା ପରେ ଆମ ପରିବାର ଉପରକୁ ସେ ପ୍ରଥମ ବିପଦ । ସେ ବି.ଏ. ପାଶ୍ କଲେ । ରାଞ୍ଚିରେ ଚାକିରି ପାଇଁ ଗୋଟାଏ ଆକାଉଣ୍ଟସ୍ ପରୀକ୍ଷା ଦେଇ ଚାଲି ଆସିଲେ । ମୁଁ ୧୯୩୦ରେ କଟକ ଆସିଲାବେଳକୁ ସେ ବୋଧହୁଏ ନୂଆକରି ଚାକିରି ଆରମ୍ଭ କରିଥାନ୍ତି, କି ତା'ର ୭ ଦିନ ପରେ ଆରମ୍ଭ କଲେ, କଟକ ଡ଼ିଭିଜନ୍‌ରେ ଅନ୍‌ପାସ୍‌ଡ୍ କ୍ଲର୍କ ହୋଇ ୮୬୫ରେ, ମାସେ

ପରେ ରାଜ୍ୟ ପରୀକ୍ଷାର ଫଳ ବାହାରିଲା, ସେ ପାଶ୍ କରିଥାନ୍ତି, ମହାନଦୀ ଡ଼ିଭିଜନ୍ ଅଫିସରେ ପାସ୍‌ଡ଼୍ ଆକାଉଣ୍ଟସ୍ କ୍ଲର୍କ ହେଲେ ।

** ** **

ଆମ ଘର—

ଅତୀତ ଉପରେ ଆଖି ପକାଇଲେ ଦିଶି ଯାଉଛି, ମୋ ଅଭିଜ୍ଞତା ଭିତରେ କେତେଥର ଏଇ ଦି'ପଦ କଥାର ସଂଜ୍ଞା ବଦଳିଛି । କାନ୍ଥ ଛାତ ଥାଇ ଘର ହିସାବରେ କେତେବେଳେ କ'ଣ ଥିଲା ତା ରୂପ । କେଉଁ ସ୍ଥାନରେ ସେ । ଆଉ ମଣିଷ ମଣିଷ ଏକାଠି ସ୍ନେହ ସମ୍ପର୍କରେ ବନ୍ଧାହୋଇ ଯାହାକୁ 'ଆମ ଘର' କୁହାଯାଏ, ଜୀବନର ପଗ ପଗକେ କେତେ ତା'ର ପରିବର୍ତ୍ତନ । ପଛକୁ ଅନାଇଁଲେ କେତେବେଳର କେଉଁ ଖଞ୍ଜାଖଞ୍ଜି ଅନ୍ଧାର ଭିତରୁ ସ୍ମୃତିରେ ଝଲସି ଉଠେ, ପୁଣି ସେହି ଅନ୍ଧାରରେ ଶୋଇପଡ଼େ ।

ସେତେବେଳେ ମୋ ଦୁନିଆଁରେ 'ଆମ ଘର' କହିଲେ ମତେ ମିଶାଇ ମୋ ବଡ଼ଭାଇ, ଭାଉଜବୋଉ, ମୋର ଝିଅାରି ତିନୋଟି, ପୁତୁରା ଯୋଡ଼ିଏ, ସେମାନେ ଅତି ସାନ ସାନ । ସେତେବେଳେ ଆମ ସମସ୍ତିଙ୍କ ସୁଖ ଦୁଃଖ ଅନ୍ୟ ସମସ୍ତିଙ୍କ ସଙ୍ଗେ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଭବିଷ୍ୟତକୁ କଳ୍ପନା କଲେ ଅନ୍ୟ କୌଣସି ସମ୍ଭାବନାର ଚିତ୍ର ମୋ ଆଗରେ ଝୁଲୁ ନ ଥିଲା । ସତେ ଯେମିତି ସେହି 'ଆମ ଘର' ସେଇଠି ରହିଥିବ ସବୁଦିନେ ।

ଏବେ ଭାବୁଛି, ବୋଧହୁଏ ସେହି ଚେତନା ମଣିଷ ପକ୍ଷରେ ସବୁଠୁ ବେଶୀ ସ୍ୱାଭାବିକ, ଯେ ବର୍ତ୍ତମାନ ଯାହା ଦେଖୁଛି ଯାହା ଅନୁଭବ କରୁଛି, ତା ସେପାଖେ ବି ସତେକି ସେଇଆ, ଏଇ ଜୀବନ, ଏଇ ମୁହୂର୍ତ୍ତ, ଯାହା ଅଛି ତା । ଏତିକି ଚିତ୍ର ଆହୁରି ସୁଖକର ହୋଇ ଭାବିହୁଏ, ଏଥିରେ ପରିବର୍ତ୍ତନ ଘଟିବା, ଏଇଟା ସତେକି ଖାଲି ବୁଦ୍ଧିମାର୍ଗର ବିଚାର, ତା'ର ସମ୍ଭାବନା ଆପଣାର ପରତେ ହୁଏନାହିଁ ।

ସବୁ ଅଳି ଅର୍ଦ୍ଧେଳି, ଦାବୀ ଓ ଆପତ୍ତି ବଡ଼ ଭାଉଜବୋଉଙ୍କୁ । ସେ ଘର ଚଳାଉଥିଲେ । ଦିନ ରାତି ଲାଗିଥିଲେ ସେଥିରେ । ନିଜ ଅଭିଜ୍ଞତାରୁ ବୁଝିହେଉଛି କେଡ଼େ କଷ୍ଟ ସେ କାମ, କେତେ ବୁଦ୍ଧି, ବିଚାର, ହିସାବ, ଅଭିଜ୍ଞତା, ଦକ୍ଷତା ଓ କେତେ ଅନ୍ୟାନ୍ୟ ସଦ୍‌ଗୁଣ ସେଥିପାଇଁ ଦରକାର ପଡ଼େ । ଆୟ ଅଳ୍ପ । ବ୍ୟୟ ଅତି ପ୍ରୟୋଜନୀୟ, ନାନା ପ୍ରକାରର । ସମସ୍ତିଙ୍କ ମନକୁ ବି ଖୁସୀ ରଖିବାକୁ ପଡ଼ିବ । କିଛି ଉଧାରରେ ଆସିବ ନାହିଁ, କାହାଠୁଁ କିଛି ମଗାହେବ ନାହିଁ, ଯେତିକି ଆୟ ତାହାରି ଭିତରେ ଏଭଳି ଭାବରେ

ଚଳିଯିବାକୁ ପଡ଼ିବ, ଯେପରି କୌଣସି ଜରୁରି ଆବଶ୍ୟକ ବି ଅମେଣ୍ଟା ରହିବ ନାହିଁ । ରୋଷେଇ କରିବା, ଘର ଚଳେଇବା ଛଡ଼ା ତାଙ୍କର ଆହୁରି ବଡ଼ ଦାୟିତ୍ୱ ଥିଲା ପିଲାଙ୍କୁ ପାଳିବା । ବେଳେ ବେଳେ ତାଙ୍କ ନିଜ ଦେହ ବି ଅସୁସ୍ଥ ହୁଏ, ତଥାପି ସେ ଘୋଷାରି ଓଟାରି ହୋଇ କାମ କରିଯାଆନ୍ତି । ଏତେ ଜଞ୍ଜାଳ ଭିତରେ ସେ ବୁଦ୍ଧି ସ୍ଥିର ରଖିଥାନ୍ତି, ଆଶା କି ସାହସ ଛାଡ଼ନ୍ତି ନାହିଁ, କେହି ହତୋତ୍ସାହ ହେଲେ ସେ ସାହସ ଦିଅନ୍ତି । ପ୍ରାୟ ସବୁବେଳେ ତାଙ୍କ ମନ ପ୍ରଫୁଲ୍ଲ ଥାଏ, ସେ ହସନ୍ତି ଓ ହସାନ୍ତି । ତାଙ୍କର କୌଣସି ନିଷ୍ପତ୍ତି କାହାକୁ ନ ରୁଚିଲେ ସେ ଯୁକ୍ତି ଦେଖାଇ ବୁଝାଇ ଦିଅନ୍ତି ।

ବୋଉ ବି ତା ପାରୁ ପର୍ଯ୍ୟନ୍ତେ ଘର କାମରେ ଲାଗିଥାଏ । ଦି'ପହରେ କାମ ନ ଥିଲେ ସେ ପଢ଼େ ।

ବଡ଼ ଝିଅଟିକୁ ଛ'ବର୍ଷ ଓ ତା ତଳ ପୁଅଟିକୁ ଚାରିବର୍ଷ ହେଲା । ଭାଉଜବୋଉ ନିଜେ ସେମାନଙ୍କୁ ବର୍ଣ୍ଣମାଳା ପଢ଼ାଇଥିଲେ, ବହି ପଢ଼ି ଶିଖାଇଥିଲେ, ମୁଁ ବି କେବେ କେବେ କିଛି କିଛି ପଢ଼ାଏ ।

ଓଡ଼ିଆମାନଙ୍କ ପିଲାପିଲି ମଝିରେ ମଝିରେ ପରସ୍ପରଙ୍କ ଘରକୁ ବୁଲିଯାଆନ୍ତି । ଦି'ପହରେ ଭଦ୍ରମହିଳାମାନେ ଏକାଠି ବସାଉଠା ହୁଅନ୍ତି, ତାସ ଖେଳନ୍ତି, ବୁଲିଯାଆନ୍ତି । କେବେ କେବେ ତରକାରି ଦିଆନିଆ ବି ହୁଏ । ପରସ୍ପର ସହିତ ସ୍ନେହ ସମ୍ପର୍କ ରଖି ସେମାନେ ବିଦେଶରେ ଘର ପରି ଚଳୁଥିଲେ । ଘରେ ଘରେ ଓଷା ବାର, ଉତ୍ସବ ଓ କେବେ କେବେ ଭୋଜି ବି ହୁଏ ।

ଥରେ କାର୍ତ୍ତିକ ପୂର୍ଣ୍ଣମୀ ସକାଳେ ଅନ୍ୟମାନଙ୍କ ସଙ୍ଗେ ଆମେସବୁ ବି ବାଙ୍କିପୁର ଗଙ୍ଗାନଦୀକୁ ଯାଇଥିଲୁଁ ବୋଇତ ଭସାଇବାକୁ । ପ୍ରବଳ ଶୀତ । ଭୋର୍ ପାହାନ୍ତା । କଦଳୀ ଭେଳାର ଡଙ୍ଗା ଓ ଘିଅ ସଳିତା ନିଆହୋଇଥାଏ । ଗଙ୍ଗାସ୍ନାନ ସରିଲା, ଭେଳା ଭସା ହେବ, ଏତିକିବେଳେ ଜଣେ ଭଦ୍ରମହିଳା ଲକ୍ଷ୍ୟ କଲେ ଯେ, ଭାଇଙ୍କ ପୁଅଟି ତୀକ୍ଷ ପାହାଚମାନଙ୍କ ଗଡ଼ାଣିରେ ଗଡ଼ିଗଡ଼ିକା କଣପଟେ ତଳକୁ ଖସୁଛି, ଆଉ ଟିକିଏ ହୋଇଥିଲେ ସେ ପାଣିରେ ପଡ଼ିଯାଇଥାନ୍ତା, ନଈ ସେଠି ବହୁତ ଗଭୀର । ସେ ଆସନ୍ନ ବିପଦର କଥା ଏବେ ବି ସମସ୍ତେ କହନ୍ତି ।

ଘରକରଣା, ସଜାସଜି, ମଠାମଠି, ଜିନିଷ ସଂଗ୍ରହ କରିବା, ସାଇତି ରଖିବା, ଯେମିତି ନଷ୍ଟ ନ ହୁଏ ସେଥିପାଇଁ ନିଘା ରଖିବା, ଜଗିବା, ଏକାଠି ବସି କେତେ ସାତ ପାଞ୍ଚ ବିଚାର, କେତେ କଟକଣା, କେତେ ନିର୍ଦ୍ଦେଶ — ''ଏଇଆ ଏଇଆ କରିବାକୁ ପଡ଼ିବ, ଏଇଆ ଏଇଆ କରିବ ନାହିଁ,''

ପରସ୍ପରଙ୍କ ଆନନ୍ଦରେ କେତେ ଆନନ୍ଦ, ଦୁଃଖରେ କେତେ ସମବେଦନା, କେତେ ଗେହ୍ଲା ଆଦର, କେତେ ମୁହଁ ଫୁଲାଫୁଲି, —ସବୁ ମିଶି 'ଆମ ଘର' ।

ସେତେବେଳେ ସେ ଦିଶୁଥିଲା ନିଦା, ଚିରସ୍ଥାୟୀ ।

ଲାଗୁଥିଲା, —ଏକା ଛତା ତଳେ ଆମେ ଚାରିଭାଇ, ସବୁଦିନେ ଏକାଠି, ସବୁଥିରେ ଏକମନ, ସ୍ୱାର୍ଥ ଏକ । କାହାରି ବ୍ୟକ୍ତିଗତ ସ୍ୱତନ୍ତ୍ର ସ୍ୱାର୍ଥ ବୋଲି କିଛି ନାହିଁ । ଯେପରି ବି ରହିଲେ ଚାରିଜଣ ଏକାଠି । ବାପା ତ ସେଇଆ ଚାହିଁଥିଲେ ।

ଅଭାବ ବି ବାଣ୍ଟିହୋଇ ସାନ ହୋଇଯିବ, ଜଣେ ଝୁଣ୍ଟିପଡ଼ିଲେ ଆଉ ତିନିଜଣ ତାକୁ ଉଠେଇ ନେବେ । ଆଉ କାହାର କ'ଣ ଦରକାର ?

ଭାବୁଥିଲି, ଦୁନିଆଁଟା ବି ହୋଇପାରନ୍ତା ସେହିପରି, ସମସ୍ତେ ଏକ ପରିବାର । କିଏ ଜଣେ ଭଦ୍ରମହିଳା ଭାଉଜବୋଉଙ୍କର ଅତି ଆପଣାର ହୋଇ ହିତେଇ ହୋଇ ତାଙ୍କୁ କହନ୍ତି, "ଇଲୋ ତୋର ତ ଯେ ରାବଣେଶର ବଂଶ, ସବୁ ତ ଉଜାଡ଼ି ଦେଉଛୁ, ତୋ ପିଲାଙ୍କ ପାଇଁ ରଖୁଚୁ କ'ଣ ବା ? ଇଲୋ ଯେତେ ଭାଇ ସେତେ ଘରଲୋ, କିଏ ତତେ ପାଣି ଟୋପାଏ ଦେବ ?" ଭାଉଜବୋଉ ହସି ଦିଅନ୍ତି । କହନ୍ତି, "କ'ଣ କିଏ ରଖିଯିବ ଯେ ? କୋଉ ଗୋଟିକ ମୋର ପର ? କ'ଣ ଅଛି ଯେ, ଆମେ ଉଜାଡ଼ି ଦେଉଚୁ ? ଛି, ଥାଉ, ସେଗୁଡ଼ାକ କାହିଁକି ? ସମସ୍ତେ ଶୁଣିଲେ କ'ଣ କହିବେ ?"

ମୁଁ ତାଙ୍କ ମୁହଁକୁ ଅନାଏଁ, ସେ ସ୍ନେହରେ ଅନାଇ ଦିଅନ୍ତି । ମୁଁ ପ୍ରଶଂସା କରେଁ ତାଙ୍କ ବିଚାରକୁ ।

ବେଳେ ବେଳେ ସେ ଏପରି କଥା ପଦେ ପଦେ କହନ୍ତି ଯେ; ଲାଗେ ସତେ ଯେମିତି ତାଙ୍କ ଜୀବନ-ଅଭିଜ୍ଞତା ଖୁବ୍ ପାକଳ । କହନ୍ତି,

"ମଣିଷ ହାତରେ କିଛି ନାହିଁ, ମଣିଷ ମନ ବ୍ୟସ୍ତ କଲେ ଲାଭ କ'ଣ ? ବୃଥା ଛଟପଟ । ଜୀବନରେ ଯେତେ ଯାହା ଆସୁ, ସବୁ ଭଗବାନ ଦେଇଛନ୍ତି ଭାବି ସନ୍ତୋଷରେ ନ ରହିଲେ ଭଗବାନ ବିରକ୍ତ ହୁଅନ୍ତି, ଜୀବନରେ ଅଶାନ୍ତି ଲାଗି ରହିଥାଏ... ଆମକୁ ମାନିବାକୁ ପଡ଼ିବ ଈଶ୍ୱର ଯାହା କରନ୍ତି ସବୁ ଆମ ମଙ୍ଗଳ ପାଇଁ, ଆମେ ଭାବୁଁ ଖରାପ ହେଲା, କିନ୍ତୁ ପଛେ ଜାଣିହେବ ତା ନ ହୋଇଥିଲେ ଯା ହୋଇ ନ ଥାନ୍ତା, ଗୋଟାଏ କ'ଣ ଘଟିବ ବୋଲି ଆଉ ଗୋଟାଏ କ'ଣ ଘଟେ, ଆମେ ଆଗକୁ ଦେଖିପାରୁ ନାହିଁ, ସେ ଶକ୍ତି ଆମର ନାହିଁ, ତେଣୁ ମଣିଷ ନ ଜାଣିପାରି ଛାନିଆଁ ହୁଏ । ...ଯାହା

ହେବାର ଥିବ ତା ନିଶ୍ଚୟ ଘଟିବ, ତେବେ ଆମେ ଆମ କାମ କରିଯିବା; ଫଳକୁ ଅନେଇଁ ଧନ୍ଦିହେବା ବୃଥା । ଭଗବାନ ଯାହା ଦେଲେ ସେଇଥିରେ ସନ୍ତୁଷ୍ଟ ରହ । ଆପଣା ସାର୍ଥିକା ହେବା ପାପ ଆଉ ମୋହ ଉଭୟ । ନିଜ ସ୍ୱାର୍ଥ କଥା ଚିନ୍ତା ନ କରି ନ୍ୟାୟ ପ୍ରମାଣେ ମଣିଷ ନିଜେ ଯାହା ଭାବିବ ଉଚିତ୍ ବୋଲି, ସେଇଆ କହିବା ଉଚିତ୍, କରିବା ଉଚିତ୍, ଲୋକ ସୁଖ ନ ପାଆନ୍ତୁ । ନିଜ ବିବେକ ଯଦି ପସନ୍ଦ କଲା, ତେବେ ଆଉ କାହାର ନିନ୍ଦା ମିଳିଲେ କିଛି ଦୁଃଖ ନାହିଁ । ନିଜ ବିବେକ ଯଦି ନାପସନ୍ଦ କଲା, ତେବେ ଦୁନିଆଁ ଲୋକଙ୍କ ଆଗରେ ସଫେଇ ଦେଲେ ବି ନିଜ ମନ ପାଖେ ମଣିଷ ନିଜେ ଦୋଷୀ ହେବ । ଶାନ୍ତି ପାଇବ ନାହିଁ ।...

ସଂସାରରେ ଲୋକେ ସବୁବେଳେ ପରମୁଣ୍ଡରେ ଅଠା ବୋଳିବାକୁ ତିଆରି ହୋଇ ରହିଥାନ୍ତି, ନିଜ ସ୍ୱାର୍ଥସିଦ୍ଧି ପାଇଁ ସବୁ ଅନ୍ୟାୟ କରନ୍ତି, କହନ୍ତି ମୁଁ ଦାୟୀ ନୁହେଁ, ସେ କଲା ।...

ଲୋକେ କହନ୍ତି ମାଇକିନିଆମାନେ ଘର ଭାଙ୍ଗନ୍ତି । ଏକଥା ବିଲ୍‌କୁଲ୍ ମିଛ । ଘର ଭାଙ୍ଗନ୍ତି ପୁରୁଷମାନେ । ଅଥଚ ଚିହ୍ନା ପଡ଼ିବାକୁ ସାହସ ନ ଥାଏ, ମିଛରେ ଦୋଷ ହୁଏ ମାଇକିନିଆଙ୍କର ।

କେଉଁଠି ବୋହୂ ଯଦି ବିଗିଡ଼ିଯାଏ ସେ ଦୋଷ ତା ସ୍ୱାମୀର, ତା ଶାଶୂ ଶଶୁରଙ୍କର, ଶଶୁରଘର ମୁରବ୍‌ବିଙ୍କର । ବୋହୂ ତ ତାଙ୍କ ଘର ଚଳଣି ଆଗରୁ ଜାଣି ଆସି ନ ଥାଏ, ସେ ସତେଯେମିତି ଓଦାମାଟି ମେଞ୍ଚାଏ, ତାକୁ ତୁମେ ଯେମିତି ଗଢ଼ିବ ସେ ସେମିତି ହେବ ।''

ମୁଁ ପଚାରେଁ, ''ତୁମେ ଏତେକଥା କୋଉଠୁ ଜାଣିଲ ?''

ସେ କହନ୍ତି ''ମଣିଷ ସବୁ ଶିଖେ ଏଇ ସଂସାରରୁ । ଦେଖିବ, ଅଙ୍ଗେ ନିଭେଇବ, ଭାବିବ, ତା'ପରେ ବଳେ ଜାଣିବ ।'' ମୁଁ କହେଁ, ''ଯେ ଯାହା ଜାଣେ, ସେ କ'ଣ ସେସବୁ କଥା କରିପାରେ ?'' ସେ କହନ୍ତି, ''ଯେତେ ଜାଣିଲେ ସୁଦ୍ଧା ଭଗବାନଙ୍କ ଦୟା ନ ହେଲେ କିଛି କରିହୁଏ ନାହିଁ । ମଣିଷର ବିବେକ କହେ, ଡାହାଣକୁ ଯିବା ଉଚିତ୍ । କିନ୍ତୁ ଡାହାଣ ଡାହାଣ ଭାବୁ ଭାବୁ ସେ ତା' ପ୍ରବୃତ୍ତି ପଛେ ପଛେ ବାଁକୁ ମାଡ଼ିଯାଏ । ନିଜ ମନକୁ ରୋକିପାରେ ନାହିଁ । ଆଗ ଦରକାର ନିଜ ମନକୁ ଅକ୍ତିଆର କରିବା । ଧର୍ମଶାସ୍ତ୍ର କଥା ସମସ୍ତେ ଜାଣନ୍ତି, ତୁଣ୍ଡରେ ଗପି କ'ଣ ହେବ ? କାମ କଲେ ସିନା ।''

ମୁଁ ପଚାରେଁ, ''ତୁମେ ନିଜେ ତ ସବୁ ବୁଝୁଚ, ଜାଣୁଚ । ତୁମେ କ'ଣ ତାକୁ ସବୁ କାମରେ କରିପାରୁଛ ?''

ସେ କହନ୍ତି, ''ମୁଁ କ'ଣ ଯୋଗୀ-ଋଷି ? ମୁଁ ବି ତ ଅତି ସାଧାରଣ ମଣିଷ, କ'ଣ ଛାଡ଼ିଚି ? ଲୋଭ ନା ସ୍ୱାର୍ଥ ? ମୁଁ କ'ଣ ମୋ ମନକୁ ଅକ୍ତିଆର କଲିଣି ? ତା ବି ଭଗବାନଙ୍କ ଦୟା ହେଲେ ହୁଏ ।''

''ତେବେ ଏସବୁ ଭାବିବା ବି କ'ଣ ଦରକାର ? ଭଗବାନ ଦୟା କଲେ ତ କାମ ହେବ ।''

ସେ ଶାନ୍ତ ହୋଇ କହନ୍ତି, ''ଭାବିବା ଖୁବ୍ ଦରକାର । ଭାବୁଥିବା, ନିଜକୁ ନିଜେ ପରୀକ୍ଷା କରୁଥିବା, ଚେଷ୍ଟା କରୁଥିବା, —ଯେତିକି ଟିକିଏ ଆମ ଦେଇ ହେବ, ଯେ ଆମ କାର୍ଯ୍ୟରେ, ଚିନ୍ତାରେ କିଛି ହେଲେ ଉନ୍ନତି ହେଉଛି କି ନାହିଁ । ଯାହା କରୁଁ, ଚେତା ଥିବା ।''

ଯେତେଥର ତାଙ୍କ ସଙ୍ଗେ ଆଲୋଚନା କରିଛି, ସେତେଥର ତାଙ୍କ ବୁଦ୍ଧି, ବିଚାର ଓ ଜ୍ଞାନ ଦେଖି ମୁଁ ବିସ୍ମିତ ହୋଇଛି । ମନରେ ପୁଣି ସେ ଅମେଣ୍ଟା କୁତୂହଳ, —ଏତେ କଥା ସେ ଜାଣିଲେ କେଉଁଠୁ ? ପିଲାଦିନେ ସେ ଘରେ ଓଡ଼ିଆ ପଢ଼ିଥିଲେ, ପୁରାଣ ପାଠ, ଅନ୍ୟାନ୍ୟ ଓଡ଼ିଆ ବହି । ତା'ପରେ ଏଣୁ ତେଣୁ ଯେତେ ବହି ପାଇଛନ୍ତି ପଢ଼ିଛନ୍ତି । ସେ ସ୍କୁଲ୍ କଲେଜ୍‌ରେ ପଢ଼ି ନାହାନ୍ତି, ଆଲୋଚନା ସଭାରେ ବସି ନାହାନ୍ତି, ଘର କାମରେ ବ୍ୟସ୍ତ ରହିଲା ପରେ ବହିପଢ଼ା ବି ତାଙ୍କର କମିଯାଇଛି । ପିଲାଦିନେ ଓଡ଼ିଆ ଶାସ୍ତ୍ର ପୁରାଣରୁ ତତ୍ତ୍ୱ ବୁଝି ବୁଝି ପଢ଼ିବା ବି ସମ୍ଭବ ହୋଇ ନ ଥିବ । '

ଏକା ସେ ନୁହଁନ୍ତି, ଓଡ଼ିଆ ଘରେ ଅନ୍ୟାନ୍ୟ ଆତ୍ମୀୟାମାନଙ୍କୁ ବି ଦେଖିଛି, ତାତ୍ତ୍ୱିକ ଆଲୋଚନା ପଡ଼ିଲେ ପରିଷ୍କାର ଭାବେ ଯୁକ୍ତିଯୁକ୍ତ ଭାବେ ବିଶ୍ଳେଷଣ କରି କରି ସେମାନେ ବଡ଼ ବଡ଼ କଥା ବିଷୟରେ ଆଲୋଚନା କରନ୍ତି, ଅତି ସୁନ୍ଦରଭାବେ ନିଜର ଅଭିଜ୍ଞତାକୁ ମିଶାଇ ମିଶାଇ ଉଦାହରଣ ଦେଇ ବ୍ୟାଖ୍ୟା କରିପାରନ୍ତି । ଉପରଠାଉରିଆ କଥା ନୁହେଁ, ନିଦା କଥା, ଗହୀରିଆ ଜୀବନ ଦର୍ଶନ, ସେମାନେ ଠକନ୍ତି ନାହିଁ, କଥା ଜାଲରେ ତାଙ୍କୁ ଠକିହୁଏ ନାହିଁ । ଊଣା ଅଧିକେ ସମସ୍ତେ । କାହାର କଥା କହିବା ଭଙ୍ଗୀ ଅବା କେଉଁପରି, କିନ୍ତୁ ଯେଉଁ ଶବ୍ଦ ମାଧ୍ୟମରେ ବାହାରୁ; ଭିତରର ଆଲୁଅ ଛପି ରହେ ନାହିଁ, ବାରିହୁଏ । ଯେଉଁମାନଙ୍କ ପ୍ରକାଶଭଙ୍ଗୀ ବି ମାର୍ଜିତ, ତାଙ୍କ ତୁଣ୍ଡରେ ସେ ବ୍ୟାଖ୍ୟା ହୁଏ ଅତି ପ୍ରାଞ୍ଜଳ ଓ ବିଚକ୍ଷଣ ।

ସତେ ଅବା ଭାରତର ପ୍ରାଚୀନ ଦର୍ଶନ, ପ୍ରାଚୀନ ସଂସ୍କୃତି ଯୁଗ ଯୁଗ ହେଲା ଏ ଦେଶର ପବନରେ ମିଶି ରହିଛି, ନିଶ୍ୱାସରେ ଭିତରକୁ ଯାଏ । ସାଧାରଣ ନିରକ୍ଷର ମଳିମୁଣ୍ଡିଆ ମଣିଷ ବି ସେହି ଦର୍ଶନକୁ ନିଶ୍ୱାସ ନିଏ ।

ସେମାନେ ତାକୁ 'ଦର୍ଶନ' କହନ୍ତି ନାହିଁ, କୌଣସି ବଡ଼ ବଡ଼ ସଂଜ୍ଞା ଦ୍ୱାରା ତାକୁ ଅଭିହିତ କରନ୍ତି ନାହିଁ, ଯେସବୁ ତ 'ସାଧାରଣ କଥା', ନାଁ ଦେଲେ କିଏ ତାକୁ କହେ 'ବିଚାର' । ମା, ଭଉଣୀ ଓ ଘରର ଘରଣୀମାନେ ସେହି 'ବିଚାର' କଥା ଭାବନ୍ତି, କୁହାକୋହି ହୁଅନ୍ତି, ଜୀବନର ନାନା ଅଭିଜ୍ଞତାକୁ ସେହିସବୁ 'ବିଚାର' ଲଗାଇ ଅର୍ଥ କରନ୍ତି, ବୁଝିବାକୁ ଚେଷ୍ଟା କରନ୍ତି, ତାହାରି ଉପରେ ଭରାଦେଇ ଧୈର୍ଯ୍ୟ ପାଆନ୍ତି ଓ ଅନ୍ୟମାନଙ୍କୁ ଧୈର୍ଯ୍ୟ ଦିଅନ୍ତି, ନିଜେ ଜୀବନକୁ ସହନ୍ତି, ଉପଭୋଗ କରନ୍ତି, ଅନ୍ୟମାନଙ୍କୁ ସହି ଶିଖାନ୍ତି, ଟଳଟଳ ମଣିଷଙ୍କୁ ଡିରା ଦିଅନ୍ତି ।

ଯେଉଁ ସ୍ତ୍ରୀଲୋକ ଏ ଧାରାରୁ ବାହାରିଯାଏ, ଆଉ ଦଶଜଣ ତାକୁ ବୁଝାଇ ଶୁଝାଇ ବାଟକୁ ଆଣିବାକୁ ଚେଷ୍ଟା କରନ୍ତି, ନ ବଦଳିଲେ ସେ ନିନ୍ଦା ପାଏ ।

କେତେ ଇତିହାସ ଅଙ୍ଗେ ନିଭେଇ ନିଭେଇ ପଡ଼ି ରହିଛି ଏ ଦେଶର ମଣିଷ ସମାଜ, କେତେ ବିପତ୍ତି ଆସିଛି ଯାଇଛି । କିନ୍ତୁ ହାଣ୍ଡିଶାଳ ଆଉ ତୁଳସୀ ଚଉରା ରକ୍ଷାକରି ଘରର ସ୍ତ୍ରୀଲୋକମାନେ ଆବୋରି ରହିଛନ୍ତି 'ବିଚାର'କୁ, ସେ ପେଟ ପାଇଁ ଖାଦ୍ୟ, ଦେହ ପାଇଁ ଲୁଗା ନ ହେଉ, ସେ ମନ ପାଇଁ ଔଷଧ'।

ଦେଶରେ ବେଶୀ ବେଶୀ ଖେଳିଗଲା ନୂଆ ପ୍ରକାର ଦୃଷ୍ଟିଭଙ୍ଗୀ, —ମଣିଷର ଆଗ ଦରକାର ଧନ, କ୍ଷମତା, ପ୍ରଭୁତ୍ୱ, ପ୍ରତିଷ୍ଠା, ବୁଦ୍ଧିର ସାର୍ଥକତା, ଆପଣାର ସ୍ୱାର୍ଥୋନ୍ନତିରେ ଜୀବନର ଉପଭୋଗ ହେବ, ଅଧିକରୁ ଅଧିକ ଭୋଗ ଦ୍ୱାରା ଆନନ୍ଦ ମିଳିବ । ଆପଣା ଅହମିକାକୁ ଖୋରାକ୍ ଦେଇ ବଢ଼େଇ ପାରିଲେ, ମଣିଷର ଦରକାର ସ୍ୱାତନ୍ତ୍ର୍ୟ, ତା'ର ଦୁନିଆଁ ଖାଲି ସେ ନିଜେ, ତା ସ୍ତ୍ରୀ, ତା ପିଲାଏ, ଏତିକିକୁ ଘେନି । ପରଜନ୍ମ, ଆତ୍ମାର ତ୍ରାହି ଗତି, ପାରତ୍ରିକ ଆନନ୍ଦ, ଏସବୁ ତା ପକ୍ଷରେ ଅବାନ୍ତର, ଘୋଷୁଥାନ୍ତୁ ଏସବୁ ସେହିମାନେ, ଯେ ହାରିଗଲେଣି, ନିକମା, ହୀନବଳ, ବୁଢ଼ାବୁଢ଼ୀ, କରମ୍‌କୋଢ଼ୀ, ଦୁଃଖୀ । ସେ ଜନ୍ମ ହୋଇଛି, ନିଶ୍ଚୟ ମରିବ, କେବେ ମରିବ ଜଣାନାହିଁ, ଯେତେବେଳଯାଏ ବେଳ ଅଛି, ସେ ଆପଣା ସ୍ୱାର୍ଥ ବଢ଼ାଉଥାଉ, ପଛାରେ ନ୍ୟାୟ ଅନ୍ୟାୟ

ନାହିଁ, ଉଦ୍ଦେଶ୍ୟ ସିଦ୍ଧ ହେଲେ ହେଲା । ଏହିପରି କରି ପାରିବା ହିଁ ମଣିଷର ପାରିଲା ପଣ ।

କେମିତି ଏ ଦୃଷ୍ଟିଭଙ୍ଗୀ ଆସିଲା, କ୍ରମେ ଭାରତର ଗାଁ ଗହଳିର ପବନରେ ବି ମିଶିଗଲା ଏ ଧାରଣା ।

ବଡ଼ ସହଜରେ ଜିଭ ଓଲଟିଯାଏ କହିଦେବାକୁ, "ଯେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ ।" କିନ୍ତୁ କି ସତ ଅଛି ଏ ଉକ୍ତିରେ ? ପାଶ୍ଚାତ୍ୟ ଦେଶମାନଙ୍କରେ ବି ମଣିଷ ଥିଲେ, ଅଛନ୍ତି । ସେଠି ବି ଯୁଗେ ଯୁଗେ ଠିଆ ହୋଇଛନ୍ତି ମହାପୁରୁଷ, ଯୋଗୀ-ଋଷି, ସନ୍ଥ, ନ୍ୟାୟ ଆଉ ବିବେକର ବାଣୀ ଶୁଣାଇଛନ୍ତି । ସେଠି ବି ମଣିଷ ଲୋଡ଼ିଛନ୍ତି ଶାନ୍ତି, ପବିତ୍ରତା, ସ୍ନେହ, ମୈତ୍ରୀ, ସବୁ ସଦ୍‌ଗୁଣ ବଢ଼ାଇବାକୁ, ଅସଲ ମାନବିକତା ପଛରେ ଧାଇଁଛନ୍ତି, କିଏ କେତେ ଉପାୟରେ ନିଜ ଆଦର୍ଶବାଦ ଅନୁସରଣ କରୁ କରୁ ପ୍ରାଣ ତ୍ୟାଗ କରିଦେଇଛନ୍ତି ।

ଦେବତା କି ରାକ୍ଷସ ଜନ୍ମ ହେବା ପାଇଁ ପାଶ୍ଚାତ୍ୟ କି ପ୍ରାଚ୍ୟ ବୋଲି ଏ ପୃଥିବୀର କୌଣସି ଗୋଟିଏ ଅଞ୍ଚଳ ନିର୍ଦ୍ଦିଷ୍ଟ ହୋଇ ରହିନାହିଁ ।

ବୋଧହୁଏ ପୁରୁଣା ଲୋକେ କହୁଥିଲେ, ଆମେ ଅବିଶ୍ୱାସ କରୁଥିଲୁଁ, ସେଇଆ ଏ ନୂଆ ଦୃଷ୍ଟିଭଙ୍ଗୀର କାରଣ ଓ ପରିଚୟ, —ଯୁଗ-ଧର୍ମ, କଳିର ଧର୍ମ । ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ କରି ଓଡ଼ିଆରେ ଅନେକ ସନ୍ଥକବି ତାକୁ ରୂପ ଦେଇ ଯାଇଛନ୍ତି, "ମଣିଷର ମୂଲ୍ୟବୋଧ ଏମିତି ବଦଳିବ, ଏଇଆ ହେବ, ଅନ୍ଧାର ବହଳ ହେବ, ତା'ପରେ ପୁଣି ସୂର୍ଯ୍ୟ ଉଇଁବ, ସତ ଉପୁଜିବ ।"

ମଣିଷର ଅଲକ୍ଷ୍ୟରେ କେଉଁଠି ଶଙ୍ଖ ବାଜୁଛି, ଚକ୍ର ବୁଲୁଛି, ଛେଦୁଛି । ସାମ୍ନାରେ ଆମେ ଦେଖୁଛୁଁ ଘଟନା, ଗୋଟାଏ ଘଟନାକୁ ଆଉ ଗୋଟାଏ ଘଟନାର କାରଣ ବୋଲି କହୁଛୁଁ ।

କିନ୍ତୁ ପାଟନାରେ ଇସ୍କୁଲ୍‌ରେ ପଢ଼ିଲାବେଳେ ବାହାରର "ନୂଆ ଦୃଷ୍ଟିଭଙ୍ଗୀ" ସହିତ ମୋର ଚିହ୍ନାଜଣା ନ ଥିଲା । 'ଆମ ଘର' ଚଳୁଥିଲା ତା'ର ପୁରୁଣା ବାଗରେ, ପୁରୁଣା ମୂଲ୍ୟବୋଧରେ ।

ଆପେ ଆପେ ସେଇଥିରୁ ଗଢ଼ି ହେଉଥିଲା ମୋ ଜୀବନ ଚଳଣିର ବାଗ, ପୁରୁଣା ଶାସ୍ତ୍ରୋକ୍ତିମାନଙ୍କ ନିର୍ଦ୍ଦେଶ ଅନୁସାରେ ତିଆରି । ଗୁରୁଜନମାନେ, ହିତାକାଙ୍‌କ୍ଷୀମାନେ ବାରମ୍ବାର ସେହିଆ କହି ଆସିଛନ୍ତି, ସେହି ବାଟ ହିଁ ସୁବିଧା ଓ ଭଲ, ସତ ଓ ସଳଖପଣର ବାଟ, ସ୍ପଷ୍ଟବାଦିତା, ସାଧୁତା, ନିରାଡ଼ମ୍ବରତା, ନିରୀହତା, ଈଶ୍ୱରଙ୍କଠି ବିଶ୍ୱାସ, ଯଥାଶକ୍ତି କର୍ତ୍ତବ୍ୟ ପାଳନ । "ବାଟରୁ ଅବାଟକୁ ଯିବ ନାହିଁ, ନୀତିରୁ ଟଳିବ ନାହିଁ, ଯାହା ମନ ତାହା

ହୋଇଯାଉ'', ସେମାନେ କହୁଥିଲେ । ତା'ର ଠିକ୍ ଓଲ୍ଟା ଆଚରଣ କଲେ ମଣିଷ ହାବେଳି ପରି ଉଠନ୍ତି, ରାତିକା ରାତି କ'ଣ ନାଇଁ କ'ଣ ହୋଇଯାଆନ୍ତି, ତାଙ୍କର ସବୁ ସ୍ୱାର୍ଥ ସିଦ୍ଧ ହୁଏ, ସବୁ ଅଭୀଷ୍ଟ ପୂରଣ ହୁଏ, ଏପରି କେହି କହୁ ନ ଥିଲେ, ଏପରି ନମୁନା ବି ମନ ଉଣ୍ଡୁ ନ ଥିଲା ।

** ** **

ମ୍ୟାଟ୍ରିକୁଲେସନ୍ ଟେଷ୍ଟ୍ ପରୀକ୍ଷା ଆଗରୁ ରବି ପଡ଼ିଗଲା ବିଛଣାରେ, ଛାତି ଭିତରେ କ'ଣ କେଞ୍ଥିଲା ପରି ମାରିଦିଏ । ସେ ଶୋଇ ରହିଥାଏ, ତା ଛାତି ଉପରେ ଗରମ ପାଣି ବୋତଲ ଗଡ଼ାହୁଏ । ତା ଘରଯାକ ସମସ୍ତେ ଚିନ୍ତିତ, ଚିକିତ୍ସା ହେଉଥାଏ । ମଝିରେ ମଝିରେ ତା ଆଖିରୁ ଧାର ଧାର ଲୁହ ବୋହିଯାଏ, ସେ ନିଜେ ପଢ଼ିପାରୁ ନ ଥାଏ, ପରୀକ୍ଷା ଦେଇପାରିବ ନାହିଁ ବୋଲି ଆଶଙ୍କା କରୁଥାଏ ।

ଏପରି ଅବସ୍ଥାରେ ସେ କେମିତି ପାଠ ପଢ଼ିବ, ସେଥିପାଇଁ ସେ ଓ ମୁଁ ଗୋଟିଏ ଉପାୟ କଲୁଁ । ମୁଁ ତା ଖଟ ପାଖରେ ବସିଥାଏ । ବହି ଧରି ପାଠ କହିଯାଏ, ସେ ଶୁଣି ଶୁଣି ମନେ ରଖେ, ଶୋଇ ଶୋଇ ପଦ ଧରେ, ଘୋଷେ, ପୁଣି ମନରୁ କହେ । ଏ ଉପାୟ ଦ୍ୱାରା ତା ମନ, ତା ଦେହ ଯନ୍ତ୍ରଣାରେ ବାନ୍ଧି ନ ହୋଇ ପାଠ ପଡ଼ାରେ ଖେଳି ବୁଲିଲା, କିଛି ପାଠ ବି ମନେ ରହିଲା, ଆତ୍ମବିଶ୍ୱାସ ବଢ଼ିଲା । ମୋ ସମୟ ବି ଅକାରଣରେ ଗଲା ନାହିଁ । ତା କାମରେ ଲାଗିବା ଛଡା ମୋର ବି ବାରମ୍ବାର ପାଠ ରିଭିଜନ୍ ହେଲା । ପ୍ରାୟ ଦଶ ଦିନ ପରେ ସେ ସୁସ୍ଥ ହେଲା ।

ଟେଷ୍ଟ ସରିଲା, ଦିନେ ଆସିଲା ମ୍ୟାଟ୍ରିକୁଲେସନ୍ ପରୀକ୍ଷା ଦିନ । ଘୋଡ଼ାଗାଡ଼ିରେ ଚଢ଼ି ବାଙ୍କିପୁର୍ ଗଲି ପାଟ୍ନା କଲିଜିଏଟ୍ ସ୍କୁଲକୁ । ସାଙ୍ଗରେ ଆଉ କିଏ କିଏ ପରୀକ୍ଷାର୍ଥୀ ଗଲେ ମନେ ନାହିଁ, ସମ୍ଭବତଃ ରବି ବି ଗଲା, ଆଉ ଆମ ସାହିର କେହି କେହି, ପ୍ରଫୁଲ୍ଲ, ସୁରେଶ ଦତ୍ତ, ଅମିୟ । ନୂଆ ଜାଗା, ଅସଂଖ୍ୟ ପିଲା, ପାଟ୍ନା ସେଣ୍ଟରର୍ ସମସ୍ତେ, ମୁଁ ତାଙ୍କୁ ଚିହ୍ନି ନାହିଁ । ପରୀକ୍ଷା ପ୍ରଶ୍ନ ପାଇବା ଆଗରୁ ମନ ଚଞ୍ଚଳ ଥାଏ, ଛାତି ଧଡ଼ ଧଡ଼ ହେଉଥାଏ । ପ୍ରଶ୍ନ କାଗଜ ଦେଇଗଲେ । ଉଦ୍‌ବେଗ ବନ୍ଦ ହୋଇଗଲା । ବାହାର କଥା ଭୁଲିଗଲି ।

ସେହି ପରୀକ୍ଷା ଘରର ନାନା ଦୃଶ୍ୟ ମନେ ପଡ଼ିଯାଏ । କିଏ ଫୁସ୍ ଫୁସ୍ ହୋଇ ପଚରାପଚରି ହେଉଛନ୍ତି, କିଏ ଆତୁର ହୋଇ ନାନା ଅଙ୍ଗଭଙ୍ଗୀ

କରି ଆଉ କାହା ସାହାଯ୍ୟ ଲୋଡ଼ୁଛି, ପଦେ ଡ଼ାକ ଛାଡ଼ୁଛି, ପୁଣି ଜଗୁଆଳକୁ ଦେଖିଲେ ଚୁନି ହୋଇ ବସୁଛି । କିଏ କେଉଁ ବହି କି କାଗଜ ରଖିଥିଲା, ଜଗୁଆଳ ଛଡ଼େଇ ନେଇଗଲେ, ସେ ନିଃସହାୟ ହୋଇ ଅନେଇଛି । ଜଣକର 'ବିସ୍ଫୋରଣ' ବି ଦେଖିଲି, ଖୁବ୍ ତାଗଡ଼ା ଦେହ, ଓସାର ଛାତି, ଜଣେ ଜଗୁଆଳ ଶିକ୍ଷକ ତା ପାଖକୁ ଯାଇ କ'ଣ ବହି ଛଡ଼ାଇବାକୁ ଚେଷ୍ଟା କରିବାରୁ ସେ ଠିଆ ହୋଇପଡି ଛାତିରେ ହାତ ଛକି ଦେଇ ତାଙ୍କୁ ଧମକେଇ ଦେଲା, "ସାବଧାନ, ମତେ ଆପଣ ଚିହ୍ନି ନାହାନ୍ତି କି ?" ସେ ଜଗୁଆଳ ଚାଲିଗଲେ, ଆସିଲେ ଆଉ ଦି'ଜଣ, ତାକୁ କ'ଣ ବୁଝାବୁଝି କରି ତା'ଠୁଁ ବହି ଛଡ଼ାଇ ନେଇଗଲେ । ଘଣ୍ଟା ବାଜିଗଲା ପରେ ବାଯା ପରି କେତେ ପିଲା ଆହୁରି ରାମ୍ପି ପକାଉଥାନ୍ତି, ଆଉ ଟିକିଏ ସମୟ ଦେବାକୁ ଜଗୁଆଳଙ୍କୁ କେତେ ଅଳି କରୁଥାନ୍ତି । ଗୋଟାଏ ପରୀକ୍ଷା ସରିଲା ପରେ କି କାନ ଉତୁରା ପାଟି ! କାହା ମୁହଁରେ କି ଭାବଭଙ୍ଗୀ !

ସବୁ ସେହି ପୁରୁଣା ଦୃଶ୍ୟ ।

ପରୀକ୍ଷା ଗୋଟାଏ ପ୍ରକାଣ୍ଡ ବ୍ୟାଧିର ଆକ୍ରମଣ, ଗୋଟାଏ ବିପତ୍ତି । ସରିଗଲା ଦିନେ ।

ଜୀବନରେ ଅସରନ୍ତି ପରୀକ୍ଷା, ବାରମ୍ବାର ପରୀକ୍ଷା, କିନ୍ତୁ ସେହି ମୁହୂର୍ତ୍ତରେ ଲାଗୁଥାଏ, ମୋର ସବୁ ପରୀକ୍ଷା ସରିଗଲା । ମୁଁ କଳ୍ପନାରେ ଦେଖୁଥାଏଁ, ଆମ ଗାଁ, ବୋଉ ମୁହଁ, ଧୂଳି ଭାଇଙ୍କି, କାହ୍ନୁ ଭାଇଙ୍କି ଓ ଆଉ ଜଣେ ଅଚିହ୍ନା ମଣିଷ, – ସେ ମୋର ନୂଆ ଭାଉଜବୋଉ, ଧୂଳିଭାଇ ବିଭା ହୋଇଛନ୍ତି, ଏଥର ବୋଧହୁଏ ମୁଁ ତାଙ୍କୁ ଦେଖିବି ।

* * * * * *

ବାଙ୍କିପୁରକୁ ବେଶୀଥର ଯାଇନାହିଁ, କିନ୍ତୁ ବୁଲି ଯାଇଛି କେତେଥର । ସେଠିକି ଯିବା ଆରମ୍ଭ ହୋଇଥିଲା ଜୁଲାଇ ପହିଲା ୧୯୨୬ରୁ, ଯେଉଁଦିନ ପ୍ରଚଣ୍ଡ ପୋଡ଼ିରେ ବାପାଙ୍କ ଶବକୁ ନିଆଗଲା ଗଙ୍ଗାକୂଳକୁ ।

ମେଡ଼ିକେଲ କଲେଜ୍, ଇଞ୍ଜିନିଅରିଂ କଲେଜ୍ ଦେଖିବାକୁ କେତେଥର ଯାଇଛି । ସେଠି ଓଡ଼ିଆ ପିଲା ପଢୁଥିଲେ, କାହ୍ନୁଭାଇଙ୍କର ଚିହ୍ନା । ମେଡିକେଲ୍ କଲେଜ୍‌ରେ ଥିଲେ ରାୟକୃଷ୍ଣ ମହାନ୍ତି, ସେ ଆମ 'ଝରୁ ଭାଇ', ସୋନପୁରର ନବୀନ କିଶୋର ବିଦ୍ୟାଧର, ବୋଧପୁରର ବିଶ୍ୱମ୍ଭର ଦାସ, ଗୋପାଳ ପଟ୍ଟନାୟକ ଓ ଅନ୍ୟମାନେ । ମେଡ଼ିକେଲ୍ କଲେଜ୍‌ର ନାନା ପଦାର୍ଥ ଦେଖି ଡ଼ାକ୍ତରୀ ପଢ଼ା ପ୍ରତି ମୋର ଆଗ୍ରହ ବଳିଥିଲା, ସେଠି ସବୁ ବିସ୍ମୟକର ଲାଗୁଥିଲା ।

ମନେ ପଡୁଛି, ଥରେ ସେ ଓଡ଼ିଆ ଛାତ୍ରମାନଙ୍କ 'ସେଓତୀ' ନାଟକ, ଖୁବ୍ ଭଲ ଲାଗିଥିଲା ।

ମ୍ୟାଟ୍ରିକୁଲେସନ୍ ସେକେଣ୍ଡ୍ କ୍ଲାସ୍‌ରେ ହେବ ପରା, ଆମେ କେତେଜଣ ଆମ ଇସ୍କୁଲରେ 'ସେଣ୍ଟ ଜନ୍ ଆମ୍ବୁଲାନ୍‌ସ୍ ସୋସାଇଟି' ତରଫରୁ ଆୟୋଜିତ 'ଫାଷ୍ଟ ଏଡ୍' ତାଲିମ ନେଇଥିଲୁଁ, ଗୋଟିଏ ଛୋଟ ବହି ପଢ଼ିବାକୁ ପଡ଼ିଥିଲା, କେତେଗୁଡ଼ିଏ ବ୍ୟାଣ୍ଡେଜ୍ ବନ୍ଧା ବିଧି ଶିଖିବାକୁ ପଡ଼ିଥିଲା ଓ କେତେଗୁଡ଼ିଏ ରୋଗ ଓ ପ୍ରାଥମିକ ଚିକିତ୍ସା ବିଧାନ ବିଷୟରେ କିଛି କିଛି ଜାଣିବାକୁ ପଡ଼ିଥିଲା । ବାଙ୍କିପୁରରେ ଗୋଟିଏ ପରୀକ୍ଷା ଦେବାକୁ ପଡ଼ିଲା, ଗୋଟିଏ ସାର୍ଟିଫିକେଟ୍ ମିଳିଲା, ଦସ୍‌ତଖତ୍ କରିଥିଲେ ନୋରା ହିଲ୍ ।

ଆସେମ୍ବଲି ଦେଖିଯିବା, ମ୍ୟୁଜିଅମ୍ ଓ ଖୋଦାବକ୍ସ ଲାଇବ୍ରେରି ଦେଖିଯିବା ବି କେତେଥର ଘଟିଥିଲା ।

କେବେକେବେ ଓଡ଼ିଆ ନେତାମାନଙ୍କୁ ଓ ଓଡ଼ିଶାର ପ୍ରସିଦ୍ଧ ଲୋକଙ୍କୁ ଖାଲି ଆଖିରେ ଦେଖିବା ପାଇଁ ପାଟ୍‌ନା ଯାଉଁ । ଦୁଇଜଣ ବିଖ୍ୟାତ ଓଡ଼ିଆ ଆଇନ୍‌ଜୀବୀ ଥିଲେ, ଜଣେ ଶ୍ରୀ ଗଜେନ୍ଦ୍ର ପ୍ରସାଦ ଦାସ ଓ ଆଉ ଜଣେ ଶ୍ରୀ ପୀତାମ୍ବର ମିଶ୍ର । ସେମାନଙ୍କୁ ଦେଖିବାକୁ ବି ଯାଇଥିଲି, ମନେ ଅଛି ।

କେବେ କଦବା 'ସୁସାଇରା' ଓ ଅନ୍ୟାନ୍ୟ ସଭା ବି ଦେଖିଛି, ସେଠି ବହୁତ ଭିଡ଼ । ଦୁଇଥର ସର୍କସ୍ ଦେଖି ଓ କେତେଥର ବାଇସ୍କୋପ୍ ଦେଖି ବି ସେଠିକି ଯାଇଛି ।

ଉଚ୍ଚ 'ଗୋଲଘର' ଉପରୁ ପାଟ୍‌ନା ସହର ଦିଶେ ଗୋଟିଏ ବଡ଼ ବଗିଚା ପରି । ସେଠି ବହୁତ ତୋଟା, ଅନେକ ବଡ଼ ବଡ଼ ପୁରୁଣା ଘର, ନୂଆ ଘର, କେତେଠି ଖୁବ୍ ଓସାର ରାସ୍ତା, କେତେଠି ଗଳି-ଗୋଞ୍ଜ, ଦୋକାନ ବଜାର, ଅଚିହ୍ନା ଲୋକ ସାଲୁବାଲୁ । ମାଡ଼ି ପଡ଼େ । ଭଲ ଲାଗେ 'ଲନ୍'ର ପ୍ରକାଣ୍ଡ ପଡ଼ିଆ, ସଜାସଜି ବଗିଚା, କେତେଥର ସେଠି ଖେଳ ଦେଖିବାକୁ ଯାଇଛି ।

ଗର୍ଦ୍ଦନିବାଗ୍‌ରୁ ବାଙ୍କିପୁର ଗଲେ ଲାଗେ ମଫସଲରୁ ସହରକୁ ଗଲା ପରି । ଗର୍ଦ୍ଦନିବାଗ୍‌ରେ ଏଡ଼େ ପ୍ରକାଣ୍ଡ ସେକ୍ରେଟେରିଏଟ୍ କୋଠା, ତା ଉପରୁ ଉଠିଥାଏ ଅତି ଉଚ୍ଚ ଜଗତି, ଯେଉଁଠି ପ୍ରକାଣ୍ଡ ଘଣ୍ଟାଟିଏ ଥାଏ, ଛୁଟିବେଳେ ସେଠୁ ପିମ୍ପୁଡି ଦଳ ପରି ମଣିଷ ବାହାରନ୍ତି । ତଥାପି ସେ ସରକାରୀ ଦୃଶ୍ୟ ସତେ ଯେମିତି ମପାଚୁପା । ଅଲରା ବଲରା, କୋଳାହଳମୟ, ଚଞ୍ଚଳ ବାଙ୍କିପୁର

ଏ ଦେଶ ଲୋକଙ୍କ ଜୀବନର ସ୍ୱାଭାବିକ ଦୃଶ୍ୟ ଦେଖାଏ, ସେଠି କିଛି ବରାଦ୍‌-ଦିଆ ନୁହେଁ ।

କିନ୍ତୁ ସେ ପଡ଼ିଶା-ସହର ଅଚିହ୍ନା । ମନ ଆରେଇ ଯାଇଥାଏ ଚୁପ୍‌ଚାପ୍ ଖାଁ ଖାଁ ଗର୍ଦ୍ଦନିବାଗ ସହରକୁ ।

** ** **

ଗାଁରୁ ଚିଠି ଆସିଲା, ମୋ ବୋଉ ଓ ମୋ ଆଉ ଦୁଇ ଭାଇଙ୍କର ଭାରି ଇଚ୍ଛା ମୁଁ ଗାଁକୁ ଯାଇ ବୁଲି ଆସେଁ । ସେମାନେ ବଳେଇ ବଳେଇ ଲେଖିଥିଲେ, ସାନ୍‌ବର୍ଷ ହେଲା ମୁଁ କଟକ ଯାଇନାହିଁ, ନଅବର୍ଷର ହୋଇଥିଲି ବାହାରି ଆସିଛି, ବୋଉ ଖୁବ୍ ଅଧୀର ଆବେଗରେ ଅନାଇଁ ରହିଛି, ପ୍ରାୟ ବର୍ଷେ ହେବ ସେ ମୋ'ଠୁ ଗଲାଣି । ପରୀକ୍ଷା ତ ସରିଲା । କଲେଜ୍ ଖୋଲୁ ଖୋଲୁ ଆଉ ଚାରିମାସ ଯାଏ, ଇତ୍ୟବସରରେ ମୁଁ ଘରକୁ ଯିବା ଭଲ ।

ମ୍ୟାଟ୍ରିକ୍ ପରୀକ୍ଷା ପୂର୍ବରୁ ମୁଁ ଫର୍ମ ପୂରଣ କରି ଦେଇଥାଏଁ ଯେ, ପାଶ୍ କଲେ ପାଟ୍‌ନା ସାଇନ୍ସ କଲେଜ୍‌ରେ ପଢ଼ିବି । ନିଷ୍ପତ୍ତି ହେଲା ମୁଁ ଘରକୁ ଯାଇ ବୁଲି ଆସିବି ।

ବନ୍ଧୁମାନଙ୍କୁ ସେଇଆ କହି ମୁଁ ବିଦା ହେଲି । ୧୯୩୦, ମାର୍ଚ୍ଚ ମାସ ୧୧ ତାରିଖ, ଚପରାସୀ କାର୍ଯ୍ୟ କରୁଥିବା ପହିଲ୍‌ମାନ୍ ରାମ୍ ଅବତାର୍ ସିଂ ମତେ ନେଇ ଗୋଧୂଳି ବେଳେ ଷ୍ଟେସନ୍‌ରେ ଗାଡ଼ିରେ ବସେଇଦେଲେ । ଥାର୍ଡ୍ କ୍ଲାସ ଗାଡ଼ି, ବହୁତ ଭିଡ଼, ଗାଡ଼ି ଷ୍ଟେସନ୍‌ରେ ଥୁଆ ହୋଇଥିଲେ ବି କେତେ ଲୋକ ଲମ୍ବ ହୋଇ ଶୋଇପଡ଼ି ଜାଗା ମାଡ଼ି ବସିଥିଲେ । ଜଣକ ସଙ୍ଗରେ ରାମ୍ ଅବତାର୍ ସିଂଙ୍କର ବଚସା ଲାଗିଲା । ତା'ପରେ ରାମ୍ ଅବତାର ଛାତି ଫୁଲେଇ ବେକ ବଙ୍କେଇ ତା ଆଡ଼କୁ ଅନେଇ କହିଲେ, ''କ୍ୟା ?'' ସେତିକିରେ ସେ ଲୋକଟି ଉଠିପଡ଼ି ଜାଗା ଛାଡ଼ିଦେଇ ଘୁଞ୍ଚିଗଲା, ମୁଁ ବସିଲି ।

ପ୍ରାୟ ଚାଳିଶ ବର୍ଷ ତଳେ ରାମ୍ ଅବତାର୍ ସିଂଙ୍କର ସେହି ଠାଣି ମୋର ଏବେ ବି ସ୍ମରଣ ଅଛି । ତୁଣ୍ଡରେ ବେଶୀ କଥା ନାହିଁ, ନୀରବରେ କଥା କହୁଥାଏ, ଡ଼େଙ୍ଗା, ସଳଖ, ଓସାର ଛାତି, ସରୁ ଅଣ୍ଟା, ପହିଲମାନ୍‌ର ଚେହେରା, ସେତିକି ସାମାନ୍ୟ ପ୍ରଦର୍ଶନରେ କାମ ହୋଇଗଲା ।

ଗାଡ଼ି ଚାଲିଲା ।

ପାଟ୍‌ନା ପଛରେ ରହିଲା ।

ସେତେବେଳେ ତ ଜାଣି ନ ଥିଲି ଯେ, ପାଟ୍ନାରେ ମୋ ରହଣି ବି ସମାପ୍ତ ହେଲା, ଆଉ ଫେରିବି ନାହିଁ ।

ପଛେ ମୁଁ କଟକ ଆସିଲା ପରେ ନିଷ୍ପତ୍ତି ହେଲା ଯେ, ମୁଁ କଟକରେ ରହି କଲେଜ୍‌ରେ ପଢ଼ିବି, ଆଉ ପାଟ୍ନା ଯିବି ନାହିଁ ।

ରେଲ୍‌ରେ ମୁଁ ଏକୁଟିଆ ଆସୁଥାଏଁ, ମୋ ପକ୍ଷରେ ନୂଆ ଅନୁଭୂତି । ମତେ ଅନେକ ଉପଦେଶ, ଅନେକ ନିର୍ଦ୍ଦେଶ ଦିଆହୋଇଥାଏ; ତା'ର ସାରାଂଶ, —ରେଲ୍‌ରେ ଭାରି ଚୋରି ହୁଏ ।

ମୁଁ ଅନୁଭବ କରିଛି, ଏଇ ଧାରଣା ମନରେ ଥାଇ ଅନେକ ସମୟରେ ରେଲ୍‌ଯାତ୍ରା ବଡ଼ ଅପ୍ରୀତିକର ହୁଏ, ସବୁବେଳେ ଚାଉଁ ଚାଉଁ ଲାଗେ, କାଳେ ମୋ ଜିନିଷ କେହି ନେଇ ପଳେଇଲା କି !

ବୋଧହୁଏ ମୋ ଟ୍ରଙ୍କ୍‌ର ଦୁଇଟାଯାକ କଡ଼ା ଭିତରେ ଗୋଟାଏ ଲୁହା ଜଞ୍ଜିର ପୂରାହୋଇ ସିଟ୍‌ର ଗୋଡ଼ରେ କଡ଼ାଟାକୁ ଗୁରେଇ ସେଥିରେ ଗୋଟାଏ ତାଲା ପକାଇ ଦେଇଥାଏ । ବିଛଣା ଉପରେ ମୁଁ ନିଜେ ବସିଥାଏ ବା ଶୋଇଥାଏ । ଆଉ ମନେପଡୁଛି, ରାତିରେ ମତେ ଯେତେବେଳେ ବହୁତ ନିଦ, ମୋ ନିଦ ଭାଙ୍ଗିଗଲା, ଅନୁଭବ କଲି ଯେ, ସେପଟେ ଲମ୍ବ ହୋଇ ପଡ଼ିଥିବା ଜଣେ ମୋଟୀ ଦକ୍ଷିଣୀ ସ୍ତ୍ରୀଲୋକ ମୋ ମୁଣ୍ଡକୁ ବାରମ୍ବାର ପାଦରେ ଠେଲୁଛି, ଅଥଚ ତା ପାଇଁ ବହୁତ ଜାଗା ଅଛି, ତା ମୁଣ୍ଡ ଉପରେ ଜାଗା ଖାଲି ପଡ଼ିଛି ।

ସେ ଆକ୍ରମଣ ବି ବନ୍ଦ ହେଲା ।

ଏତେକାଳ ପରେ ମୁଁ ଓଡ଼ିଶାକୁ ଯାଉଛି ବୋଲି ମନରେ ମହୁତ ଆନନ୍ଦ ଥାଏ, ତା'ଛଡ଼ା ଘରକୁ ବାହୁଡ଼ିବାର ସ୍ୱାଭାବିକ ଆନନ୍ଦ । ଯୋଡ଼ିକଯାକ କଥା ମୁଁ ଭାବେଁ । ଓଡ଼ିଶା ବାହାରେ ରହି ଓଡ଼ିଶା ପ୍ରତି ମନ ଭାବପ୍ରବଣ ହୋଇ ଉଠୁଥିଲା । ଭାବୁଥିଲି, —ଆମର ଓଡ଼ିଶା, କେତେ ଯୁଗର ଯଶଗୌରବମୟ ଓଡ଼ିଶା, କେବେ ବିଚ୍ଛିନ୍ନ ଅଞ୍ଚଳ ଏକାଠି ମିଶି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବ ? କେବେ ପୁଣି ଫେରିଆସିବ ଅତୀତର ଗୌରବ ?

ଗାଁ'ର କଥା ସ୍ୱପ୍ନ ପରି ମନେ ପଡ଼ିଯାଉଥାଏ, ସେତେବେଳେ ମୁଁ ହୋଇଥିଲି ଆଠ ନଅ ବର୍ଷର । ପୁଣି ମନେ ପଡୁଥାଏ ସୋନପୁର । ଆଉ ରାତି ଅନ୍ଧାରରେ ଯେତେବେଳେ ରେଲ୍ ଚାଲିଥାଏ, କାନରେ ବାଜୁଥାଏ ଏକାପ୍ରକାର ଛନ୍ଦ, ହଠାତ୍ ମୁଁ ବେଶୀ ଭାବପ୍ରବଣ ହୋଇ ମୋର ମନେ ପଡୁଥାନ୍ତି ବାପା,

ମନେ ପଡୁଥାଏ, –ବାପା ଆଉ ମୁଁ ୧୯୨୩ରେ ଗାଁ'ରୁ ଚାଲି ଆସିଥିଲୁଁ, ଫେରୁଛି ମୁଁ ଏକୁଟିଆ ।

ଆଗ ମନେ ପଡ଼ିଥିଲା ପାଟ୍‌ନାରୁ ରେଲ୍ ଛାଡ଼ିବା ବେଳେ ।

ଖଡ଼୍‌ଗପୁରରେ ଗାଡ଼ି ବଦଳ ହେଲା ।

କିନ୍ତୁ ଗାଡ଼ିରେ ଜାଗା କାହିଁ ? ସବୁଠି ଖୁନ୍ଦାଖୁନ୍ଦି ।

ଗୋଟିଏ ଡବାରେ ଓଡ଼ିଆ ଶ୍ରମିକମାନେ ଭର୍ତ୍ତି ହୋଇଥାନ୍ତି, ବେଞ୍ଚରେ, ତଳେ, ଗାଡ଼ି ଦୁଆରମୁହଁ ପାଖରେ, ସବୁଠି ମଣିଷ । ଗାଡ଼ି ଛାଡ଼ିବା ବେଳ ପାଖ ହେଲା, ମୁଁ ପ୍ଲାଟ୍‌ଫର୍ମ ଉପରେ ଗାଡ଼ି ଦୁଆରମୁହଁ ପାଖେ ଠିଆ ହୋଇଥାଏଁ, ଭିତରକୁ ପଶିବା ଆଶା ନ ଥାଏ ।

ମନେପଡୁଛି, ନିରାଶ ହୋଇ ମୁଁ ପାଟିକରି କହିଲି, "ଶୁଣ ଭାଇ, ଆମର ଏତେ ଓଡ଼ିଆ ଭାଇ ଏଠି ଏକାଠି ବସିଛ, ସମସ୍ତେ କେଡ଼େ ଖୁସିରେ ଘରକୁ ଯାଉଛ, ଆଉ ମତେ କେହି ଜାଗା ଦେବ ନାହିଁ, ମୁଁ ଏଠି ଏକୁଟିଆ ପଡ଼ି ରହିବି ?" ସଙ୍ଗେ ସଙ୍ଗେ ଭିତରୁ ବହୁତ ପାଟି ଶୁଭିଲା "ଆସ ଭାଇ, ଆସ ଭାଇ, ଜାଗା ଅଛି ।" କେତେ ବେକ ପଦାକୁ ଉହୁଙ୍କି ପଡ଼ିଲା, କେତେ ହାତ ପଦାକୁ ଲମ୍ବି ଆସିଲା, ଚାହୁଁ ଚାହୁଁ ମୁଁ ଆଉ ମୋ ଜିନିଷପତ୍ର ଶୂନ୍ୟେ ଶୂନ୍ୟେ ଟେକାହେଇ କେତେ ମୁଣ୍ଡ ଉପରେ ବୁହାହୋଇ ଭିତରକୁ ଅଣାହେଲୁଁ, ଗାଡ଼ି ଛାଡ଼ିଦେଲା, ସେମାନେ ଖୁବ୍ ସ୍ନେହ ଆଦର କରି ମତେ ବସିବାକୁ ଜାଗା ଦେଲେ । ପାନ ଯାଚିଲେ । କେତେ କୁଶଳ ପ୍ରଶ୍ନ ପଚାରିଲେ ।

ଗତ ଅଣଚାଳିଶି ବର୍ଷ ଭିତରେ କେତେଥର ସେ ଘଟନାଟି ମୋର ମନେପଡ଼ିଛି । ସେତେବେଳେ ମୁଁ ଅନୁଭବ କରିଥିଲି, ବିଦେଶରେ ସାଧାରଣ ମଣିଷଙ୍କଠି ଆପଣା ଦେଶ ଲୋକଙ୍କ ସମ୍ପର୍କରେ ଜାତୀୟତାବୋଧ ଗୋଟିଏ ଜୀବନ୍ତ ଚେତନା, ସେଥିରେ କିମିଆଁ ଅଛି । ଆଉ ଅନୁଭବ କରିଥିଲି, ଦେଶର ସାଧାରଣ ଲୋକଙ୍କ କତିରେ ହୃଦୟର ଆବେଦନ ନିଷ୍ଫଳ ହୁଏନାହିଁ, ହୃଦୟ ହୃଦୟର କଥା ବୁଝେ ।

ସେହି ଅଚିହ୍ନା ଲୋକଙ୍କ ମେଳରେ ମତେ ଆପଣାର ଆତ୍ମୀୟ ସ୍ୱଜନଙ୍କ କତିରେ ଥିଲାପରି ଲାଗୁଥିଲା । ସେମାନେ ହସଖୁସିରେ ବେଳ କାଟୁଥାନ୍ତି । କିଏ ଜଣେ ଖଞ୍ଜଣିଟିଏ କାଢ଼ିଲା, ଭଜନ ବୋଲିଲା, କେତେ ଲୋକ ପାଳି ଧରିଲେ । ଖଞ୍ଜଣିମାଡ଼ ଓ ଭଜନ ଚାଲିଥାଏ ତାଙ୍କ ପାଟି ଘୋଳି ହେବାଯାକେ । ସତେ ଯେମିତି ମେଳା ମଉଛବ ।

ରାତି ବଢ଼ିଲା । ତଳେ ବସି ବସି ଢୁଳେଇ ଢୁଳେଇ କେତେଠିଁ ବି ଦି'ଜଣଙ୍କ ମୁଣ୍ଡ ଡାଇ ବାଜୁଥାଏ, ଘୁଞ୍ଚି ଯାଉଥାଏ, ପୁଣି ବାଜୁଥାଏ । କିଏ ଆଁ କରି ଘୁଙ୍ଗୁଡ଼ି ମାରୁଥାଏ । କିଏ ଗଡ଼ି ପଡୁଥିବା ଛୁଆକୁ ସମ୍ଭାଳି ପଛକୁ ଠେଲିଦିଏ, ପୁଣି ଢୁଳାଏ । ମୁଁ ଅପେକ୍ଷା କରିଥାଏ, ରେଲ୍ ଓଡ଼ିଶାରେ ପହଞ୍ଚିବା ବେଳେ ମୁଁ ଯେମିତି ଚେଇଁଥିବି । ଲକ୍ଷ୍ମଣନାଥ ହେଲା ।

** ** **

ବହୁତ ଆଶା ଘେନି ମୁଁ କଟକରେ ଓହ୍ଲାଇଲି । କାହ୍ନୁଭାଇ ଆସିଥିଲେ । ଭାରି ଖୁସୀ ହେଲି ।

ତା'ପରେ ଆଗ ଆଖିକି ଅଡୁଆ ଦିଶିଲା କଟକ ଷ୍ଟେସନ୍ । ଆଜିକାଲିକା କଟକ ଷ୍ଟେସନ ସେ ନୁହେଁ । ଏଡ଼େ ଟିକିଏ କ'ଣ ? ମୋଟେ ଅଳ୍ପ କେତେ ବଖରା ଘର, ଗୋଟିଏ ଖୋଲା ପ୍ଲାଟ୍‌ଫର୍ମ, ବଡ଼ ବି ନୁହେଁ । ଥାର୍ଡ଼କ୍ଲାସ୍ ଓ୍ୱେଟିଂ ରୁମ୍ ନାହିଁ କହିଲେ ଚଳେ, ଯାତ୍ରୀମାନେ ଷ୍ଟେସନ୍‌ର ମେଲା ବାଟଘର ଚଟାଣରେ ଗଡୁଥାନ୍ତି, ଷ୍ଟେସନ୍‌ରୁ ବାହାରି ପଦାକୁ ଗଲାବେଳେ ତାଙ୍କଠିଁ ଗୋଡ଼ ବାଜେ । କାହିଁ ପାଟ୍‌ନା ଷ୍ଟେସନ୍ ଆଉ ଯେ !

ପଦାରେ ମଟର ନାହିଁ, ଘୋଡ଼ାଗାଡ଼ି ଅଳ୍ପ କେତେଖଣ୍ଡ ଯେ, ବହୁତ ଭଡ଼ା, ଏକ୍କା ନାହିଁ, ଆମ ପାଇଁ ଥୁଆ ହୋଇଛି ଗୋଟାଏ ଏକବଳଦିଆ ଶଗଡ଼ଗାଡ଼ି, ଲୁଙ୍ଗି ପିନ୍ଧି ତା ଉପରେ କଳା ଫତୁଆଟିଏ ଗଳେଇ ଧଳା ଦାଢ଼ୀ ଝୁଲେଇ ପାଞ୍ଚଣ ଧରି ବସିଛି ଜଣେ ବୁଢ଼ା ମିଆଁ । ଏକବଳଦିଆ ଶଗଡ଼ ଗଡ଼ିଚାଲିଲା, ବଳଦ ବେକରେ ଘୁଙ୍ଗୁର ମାଳ ଝମର ଝମର ଶୁଭୁଥାଏ । ରାତି ସରି ଆସୁଥାଏ, ନୂଆ ଦିନର ଆଲୁଅ ଫିଟୁଥାଏ, ମୁଁ ଦେଖିଲି କଟକ ।

ବାଁ ପଟେ ବଡ଼ ହତା ଭିତରେ ନିଛାଟିଆ ହୋଇ ଠିଆ ହୋଇଥାଏ ବଡ଼ ଦୋ'ମହଲା କୋଠା ଧାଉଡ଼ିଗୁଡ଼ିଏ ।

କାହ୍ନୁଭାଇ କହିଲେ, ''ଏଇ ରେଭେନ୍‌ସା କଲେଜ ।''

ତା'ପରେ ଛାଡ଼ିଛାଡ଼ିକା କୋଠାଘର, ମଝିରେ ମଝିରେ ଦଳୁଆ ପୋଖରୀ, ଖାଲ, ଅରମା ଭର୍ତ୍ତି ଖାଲି ପଡ଼ିଆ, ଚାଳଘର ଓ ଖପରଲି ଘର ସନ୍ଧିରେ କେଉଁଠି କେଉଁଠି କୋଠାଟିଏମାନ ଥାଇ ସହରର ବସ୍ତି । ଗାଡ଼ ଗାଡ଼ ହୋଇ ନାଲି ରାସ୍ତା, ଦୁଇପଟ ଘର କାନ୍ଥରେ, ଅରମା ଗଛ ଉପରେ, ସଡ଼କରେ ନାଲି ଧୂଳିର ପୁଟ । ଏଠି ସେଠି ପୁରୁଷେ ଉଚ୍ଚର ନାଗଅଇରି ବଣ, ସେଠି ନାଲିଚା ନାଲିଚା ଫୁଲ ଫୁଟିଥାଏ । ସ୍ଥାନେ ସ୍ଥାନେ ବଡ଼ ବଡ଼ ତିନ୍ତୁଳି ଗଛରୁ ପେନ୍ଥା ପେନ୍ଥା ବିଚିତ୍ର ଫଳ ପରି ଅସଂଖ୍ୟ ବାଦୁଡ଼ି ଲଟକିଥାନ୍ତି, ଚିଁ ଚିଁ

ବୋବୋଉଥାନ୍ତି, ବେଳେ ବେଳେ ରାସ୍ତା କରପଟେ ପାଠିମାଙ୍କଡ଼ମାନେ ଦୌଡ଼ାଦୌଡ଼ି ହୁଅନ୍ତି, ଚାଳ ଉପରେ ଚଢ଼ନ୍ତି । ଖାଁ ଖାଁ ରାସ୍ତା, କେତେବେଳେ ଗୋଟିଏ ଯୋଡ଼ିଏ କେଁକଟର ଶଗଡ଼, ଝମର ଝମର ଏକବଳଦିଆ ଗାଡ଼ି, କେବେ କ୍ବଚିତ୍ ସାଇକଲ ଚଢ଼ାଳି । ଅଳ୍ପ ଲୋକ ଏକର ସେକର ହେଉଥାନ୍ତି, ଦିଶୁଥାନ୍ତି ଦୁର୍ବଳ, ଅକାରରେ ସାନ ।

ଆଖି ଆଗରେ ଧୂଳିଭର୍ତ୍ତି ଅସନା ସହର, ଲାଗୁଥାଏ ଯେପରି ଗୋଟିଏ ଖୁବ୍ ବଡ଼ ପୁଞ୍ଜୀଭୂତ ମଫସଲ ପରି ।

ନିଛାଟିଆ ନଈବନ୍ଧ ତଳେ, ବାଁ ପଟେ ନଈବାଲି, କାଠଯୋଡ଼ି ନଈ, ଆରପାଖେ ପେଟାଳିଆ ଗାଁ ଗଣ୍ଡା ।

ଏଇ ସହର କ'ଣ ମୁଁ ମୋ କଳ୍ପନାରେ ଦେଖୁଥିଲି ? କଳ୍ପନା ସଙ୍ଗେ ବହୁତ ଅମେଳ ହେଲା । ତୁଳନା ପାଇଁ ମୋ ଆଖି ଆଗରେ ଝଲସି ଉଠୁଥାଏ ପାଟ୍‌ନାର ନୂଆ ରାଜଧାନୀ, ସେଠି କେମିତି ଗାର କାଟିଲା ପରି ସଳଖ ସଳଖ ପକା ସଡ଼କ, ଦୁଇ କଡ଼ରେ ଧାଡ଼ି ହୋଇ କୋଠା, ସୁନ୍ଦର ବଗିଚା ଓ ତୋଟା, କେଡ଼େ ସଫା ସୁତୁରା । ଦିଶୁଥାଏ କ୍ଲକ୍-ଟାୱାର୍ ସମେତ ପାଟ୍‌ନା ସେକ୍ରେଟେରିଏଟ୍‌ର ବଡ଼ କୋଠା, ବାଙ୍କିପୁରର ଜାତିଜାତିକା ବଡ଼ କୋଠା, ଗହଳି, କେଡ଼େ ବଡ଼ ସହର ସେ ! ଆଉ ରେଲ୍‌ରୁ ଦେଖିଥିବା ଖଡ଼ଗପୁର, ସାତବର୍ଷ ପୂର୍ବେ ଦେଖିଥିବା କଲିକତା, କି ବିଶାଳ ସେ !

ଆଉ ଏଠି ! —ସେସବୁ ନାହିଁ । ସବୁ ମାନ୍ଦା ପଡ଼ିଯାଇଛି, ସବୁ ସତେକି ଅଡୁଆ ତଡୁଆ ହୋଇ ପଡ଼ିରହିଛି । ସତେ ଯେମିତି ଉତ୍ସାହ ନାହିଁ ।

ପୁଣି ମୋ ମନକୁ ଟେକିବାକୁ ଚେଷ୍ଟା କଲି । ହେଉ ସାନ, ହେଉ ଦରିଦ୍ର, ହେଉ ପଛେ ଯାହା, ଏ ଆମର, ଏଠି ହୃଦୟ ସହିତ ହୃଦୟ ଯୋଡ଼ିଦେଇ ଦୁଃଖସୁଖ କହିହେବ, ଏମାନେ ବୁଝିବେ । କେମିତି ହେଲା ଖଡ଼ଗପୁର ଷ୍ଟେସନ୍‌ରେ ? ସେମିତି । ଏଇ ସହର ସହିତ ମୋ ନିଜର ପରମ୍ପରା ଜଡ଼ିତ । ସେମାନେ ଏଇଠି ଆସି ରହୁଥିଲେ କେତେ କେତେ ବର୍ଷ, ଏ ତାଙ୍କର ସହର । ମସିଆ ଲୁଗା ପିନ୍ଧିଥାଉ, ଚେହେରା ଯେମିତି ହେଉ, ମା' ଯେ ସେ ମା', ମାଉସୀ ଯେଡ଼େ ସ୍ନେହ କଲେ ବି ମା' ନୁହେଁ । ଏ ସେହି ଓଡ଼ିଶାର ପ୍ରତୀକ ।

କି ଗୌରବମୟ ଅତୀତ ଏ କଟକର ! କେତେ ମହାପୁରୁଷ, କେତେ ରାଜା, କେତେ ବୀର, କେତେ କେତେ ନାମଜାଦା ବିଚକ୍ଷଣ ଲୋକ ଏଇଠି ରହି କେଡ଼େ କେଡ଼େ କାମ କରିଥିଲେ । ଏଇ ପଥରବନ୍ଧ ତା'ର ଗୋଟିଏ

ନମୁନା, ଏଇଠି କେଉଁଠି ଅଛି ପ୍ରସିଦ୍ଧ ବାରବାଟୀ ଦୁର୍ଗ । ସମଷ୍ଟିଙ୍କର ସ୍ମୃତି ରହିଛି ଏଇ ନାଳି ଧୂଳିରେ, ଥାଉ ଏଠି ଦାରିଦ୍ର୍ୟ ଆଉ ରୋଗ । ତା ବି କାହିଁକି ଘୋଟିଲା ? ଓଡ଼ିଶା ଶେଷଯାକେ ତା ସ୍ୱାଧୀନତା ରଖିଲା ଇଂରେଜର ଅଧୀନତା ସ୍ୱୀକାର କଲାନାହିଁ ବୋଲି ତ । ଅନ୍ୟମାନେ ଆଗ ଆଧୁନିକ ହେଲେ, ଓଡ଼ିଶା ପଛରେ ପଡ଼ି ରହିଲା, ଶୋଷିତ ହେଲା । ତେବେ, କେତେଦିନ ଏମିତି ପଡ଼ି ରହିବ ?

ନିଶ୍ଚୟ ତା'ର ବି ଦିନ ଆସୁଛି, ଓଡ଼ିଶା ଉଠିବ, କଟକ ବଦଳିଯିବ ।

କାହ୍ନୁଭାଇ କହିଲେ, "କଟକ ଆରେଇଯିବ, ବଳେ ତତେ ଭଲ ଲାଗିବ । ପଦାରୁ ଯେ ଆସେ, ଆଗ ତାକୁ କଟକ ଲାଗେ ଖାଁ ଖାଁ, ଚୁପ୍‌ଚାପ୍ । ତା'ପରେ ବୁଝିବୁ, କେତେ ତତ୍ପରତା ଅଛି ଏଠି । ଧୂଳି, ମଶା, ଗୋବର, ଜର, ଅସନା, ଦାରିଦ୍ର୍ୟ, ସବୁ ଅଛି ସତ, କିନ୍ତୁ ଏଠି ଦେଖିବୁ ସହରର ବସ୍ତି ଲୋକଙ୍କଠି ହୃଦୟ ଅଛି, ସାହସ ଅଛି । ଉଚିତ୍ କଥା କହିବାକୁ ସେମାନେ ଡରନ୍ତି ନାହିଁ, ତାଙ୍କ ଆଖି ଆଗରେ କାହାପ୍ରତି କିଛି ଗୋଟାଏ ଅନ୍ୟାୟ ଘଟିଲେ ସେମାନେ ଆଗେଇ ଆସନ୍ତି ।"

ତେଲେଙ୍ଗା ବଜାରରେ 'ମଇଧରପଡ଼ା ବସା'ରେ କାହ୍ନୁଭାଇ ଥାଆନ୍ତି । ତାଙ୍କ ବନ୍ଧୁମାନେ ମତେ ଦେଖି ଭାରି ଖୁସୀ ହେଲେ ।

ସେଦିନ ଆମେ ଖାଲି ଦେହରେ ଚାଲି ଚାଲି କାଠଯୋଡ଼ି ନଈକୁ ଗାଧୋଇବାକୁ ଗଲୁଁ । ଆମ ପରି ଅନେକେ ଚାଲିଥାନ୍ତି, ଅନେକେ ଗାଧୋଉଥାନ୍ତି । କଟକର ଆଉ ଗୋଟିଏ ବିଶିଷ୍ଟତା ମୋ ଆଖିରେ ପଡ଼ିଲା । ଏଠି ଖାଲି ଦେହ, ବେଶଭୂଷା କି ଆଡ଼ମ୍ବର କଥା କେହି ଭାବନ୍ତି ବି ନାହିଁ । ମନରେ ସଂକୋଚ ନାହିଁ, କିଏ କ'ଣ ଭାବିଲା, ସେ ଚିନ୍ତା ନାହିଁ । ସବୁ ମିଶି ଗୋଟିଏ ସ୍ୱଚ୍ଛନ୍ଦ ଆନ୍ତରିକତା । ଉପରେ ପଡ଼ି ସମଷ୍ଟିଙ୍କୁ ସମସ୍ତେ ଯାହା ମନ ତା ପଚାରି ପାରନ୍ତି, ଉପଦେଶ ଦେଇ ପାରନ୍ତି, ସେଥିରେ ଶ୍ରେଣୀ ଶ୍ରେଣୀ ଭିତରେ ପାଚିରି ନାହିଁ ।

ସେ ଥିଲା ଚାଳିଶି ବର୍ଷ ତଳର କଟକ । ସେ କଟକ ବଦଳିଛି ।

** ** **

କଟକ ଆସି କଟକ ଟ୍ରେଡ଼ିଂ କମ୍ପାନିରୁ ତିନିଅଣା ଦେଇ ସାନ ଟିପା ଖାତାଟିଏ କିଣିଲି, ସେଥିରେ ନିଜକୁ ଅଭିହିତ କଲି "ଭ୍ରମଣକାରୀ" ।

୧୯୩୦ ମାର୍ଚ୍ଚ ମାସ ୧୨ ତାରିଖ ଦିନ କଟକରେ ସକାଳେ ଖାଇସାରି ଆମେ ଗାଁକୁ ଚାଲିଗଲୁଁ; ସେହି ପୁରୁଣା ସିଢୁଆ ନଈ ବନ୍ଧେ ବନ୍ଧେ, ବାଟ

ସାତ ମାଇଲ୍ । ସାତବର୍ଷ ବିତିଯାଇଛି, ଏ ସାତବର୍ଷଯାକ ଗାଁ ମାଟି ମୁଁ ମାଡ଼ି ନାହିଁ, କିନ୍ତୁ ଗାଁର ସ୍ମୃତି ମୋ ମନ ଭିତରେ କେତେ ରଙ୍ଗ ଲାଗି ହୋଇ ବଢ଼ି ବଢ଼ି ଉଠିଛି । ବାଁ ପଟେ ନଈ କଣ୍ଠିଆ, ତା ତଳେ କେତେ ଖାଲରେ ଓସାର ନଈବାଲି, ତା'ପରେ ପାଣିଧାର, ତା ସେପାଖେ ଡୀଖ ଅତଡ଼ା ଉପରେ ତୋଟାର ଧାଡ଼ି । ବନ୍ଧ ଡାହାଣ ପଟେ ସ୍ଥାନେ ସ୍ଥାନେ ତୋଟା, କ୍ଷେତ, ଛାଡ଼ି ଛାଡ଼ିକା ଗାଁମାନଙ୍କ ଘର । ନଈବନ୍ଧ ବାଙ୍କ ଟପିଲେ ଯୋଡ଼ିଏ ଡେଙ୍ଗା ଡେଙ୍ଗା ଦେବଦାରୁ ଗଛ, ବହୁତ ଆଗରୁ ଜଣାଇଦିଏ, ଆମ ଗାଁ ପାଖ ହେଲା । ତା'ପରେ ବାଁ ପାଖେ ବନ୍ଧତଳେ ସେହି ଟୁବି ପୋଖରୀଟି, ସତୀଗାଡ଼ିଆ, ତା କରରେ ଆମ ଗାଁ ମଶାଣି, ଡାହାଣ ପଟେ ଖାଲୁଆ କ୍ଷେତ, ବଡ଼ ଦଳୁଆ ପୋଖରୀ, ତା ନାଁ ଘାଇ, ତା'ପରେ ଡେଙ୍ଗା ଡେଙ୍ଗା କିଆବଣ ଅଗଛିଆ ବାଡ଼ ଲମ୍ବିଯାଇଛି ଆମ ସାହି ମୁଣ୍ଡ ତୋଟାଯାକେ । ତା ସେକରେ ଆମ ସାହି ନଡ଼ିଆଗଛଗୁଡ଼ିକ । ଆଗକୁ, ବାଁ'ପଟେ କଣ୍ଠିଆ ମଝିରେ ବଡ଼ ଅରାଏ ମାଡ଼ି ବସିଛି ଲୋଟଣି କୋଚିଲାଗଛ, ସେଠି କୋଚିଲେଈ ଠାକୁରାଣୀ, ବନ୍ଧ ଡାହାଣପଟେ ଆମ ଘରର ଚାଳ, ସାହିର ଅନ୍ୟାନ୍ୟ ଘର । ସେହି ପୁରୁଣା ଦୃଶ୍ୟ । ଲାଗୁଥାଏ, ସତେ ଯେମିତି ସେ ଦୃଶ୍ୟ ମୋ ଭିତରେ ହିଁ ରହିଥିଲା ।

ବୋଉ ଆସି କୁଣ୍ଢେଇ ପକେଇ କାନ୍ଦିଲା, କୁହାଟ ଛାଡ଼ିଦେଇ ଧୂଳ ଭାଇ ଆସିଲେ, ଖଞ୍ଜାଯାକ ସମସ୍ତେ ଗଦାହୋଇ ପଡ଼ିଲେ । ସମସ୍ତେ ଭାରି ଖୁସୀ । ଏକାସଙ୍ଗେ ବହୁତ ପ୍ରଶ୍ନ, ବହୁତ ଉତ୍ତର । ଗୁରୁଜନମାନଙ୍କୁ ଗୋଡ଼ତଳେ ପଡ଼ି ଆଶୀର୍ବାଦ ନେଇ ଆସିଲି । ନୂଆ ଆମଦାନି ହୋଇ ଆସିଥିବା ଭାଉଜବୋଉଙ୍କୁ ଦେଖିଲି । ସେ 'ନୂଆବୋହୂ' ହୋଇ ବସିଥାନ୍ତି । ଲାଜ ଲାଜ ହୋଇ ଫୁସ୍‌ଫୁସ୍ କରି ଅଳ୍ପ ଅଳ୍ପ କଥା କହୁଥାନ୍ତି ।

ମତେ ଭାରି ଖୁସି ଲାଗୁଥାଏ । ମନେପଡୁଛି, କେତେ ପିଠାପଣାର ସୁଆଦ, ପାଟିକି ମସ୍‌ମସ୍ ଲାଗୁଥାଏ, —ପରମହଂସୀ ପାନର ବାସ୍ନା, ସାଧା ପାନ, ସେଥିରେ କର୍ପୂର ଦାନା, ଗୁଜୁରାତି, ଲବଙ୍ଗ, ଯାଇତ୍ରୀ ।

ତା'ପରେ ଘର ଘର ହୋଇ ଗାଁ'ବୁଲା, ସମସ୍ତିଙ୍କ ମୁହଁରେ ସ୍ନେହ ଉଚ୍ଛୁଳୁଥାଏ । ଅନେକେ ବାପାଙ୍କ କଥା ସ୍ମରଣ କରୁଥାନ୍ତି । ସମସ୍ତିଙ୍କର ଇଚ୍ଛା, ମୁଁ ତାଙ୍କରି ଘରେ ମାଣ୍ଡେଇ ରହେଁ, କୁଣିଆଁ ହୁଏଁ, ଜଣକ ଘରେ ଥିଲାବେଳେ ଆଉ ପାଞ୍ଚଜଣ ଡାକିଲେଣି । ସେମାନଙ୍କ ଆଖିରେ ମୁଁ ସତେକି ଆଶ୍ଚର୍ଯ୍ୟର ବସ୍ତୁ,

ନଅବର୍ଷ ଚାଲିଥିଲା, ଇସ୍କୁଲ୍ ଦେଖି ନ ଥିଲି ଯାଇଥିଲି, ଆଉ ଫେରିଆସିଛି କ'ଣ ଗୋଟାଏ ହୋଇ; ଏକୁଟିଆ ପାଟ୍‌ନାରୁ ଆସିଛି ।

ପୁଣି କଦମ-ଦାଣ୍ଡ, ନୀଳ ବଡ଼ବାପାଙ୍କ ଚୁଙ୍ଗି, ଯେଉଁଠି ଠାକୁର ବିମାନ ଥାଏ, କାଛଯାକ ଅସୁରମାନଙ୍କ ମୁଖା ମରା ହୋଇଥାଏ, ଠିକ୍ ତାଙ୍କ ପଲଙ୍କର ମୁହାଁମୁହିଁ ।

ପୁଣି ଆମ ଖଞ୍ଜା । ଆଗ ଧାଉଡ଼ିରେ ଦଇଦାଦି, ରାମଭାଇ ଓ ତାଙ୍କ ପିଲାଏ ଥା'ନ୍ତି । ତାଙ୍କର ଗ୍ରାମୋଫୋନ୍‌ଟିଏ ଥାଏ । ଦି'ପହରେ ସେ ଭାଉଜବୋଉ ଗ୍ରାମୋଫୋନ୍ ବଜାନ୍ତି, ଅନେକ ଓଡ଼ିଆ ରେକର୍ଡ଼ ଓ ବଙ୍ଗଳା ରେକର୍ଡ଼ ଥାଏ । ମୁଁ ବସି ଶୁଣେଁ । ମନେପଡୁଛି, ରେକର୍ଡ଼ ବାଜେ

> ''ଅଙ୍ଗେ ଅଙ୍ଗେ ବହ ନବ ତେଜ
> ସଙ୍ଗେ ସଙ୍ଗେ ମୋହ ମନୁ ତେଜ
> ଅମ୍ବରଚୁମ୍ବୀ କଣ୍ଠେ ଗାଅ
> ଜନନୀର ଜୟ ଜୟ ସଙ୍ଗୀତ ।''

ସେଦିନ ରାତିରେ ଥାଏ 'ଅରିଲୋ ମେଳଣ'' । ଅରିଲୋ ଆମ ଗାଁ'ରୁ ଚାରି ମାଇଲ୍ ହେବ, ମଝିରେ ବିଶ୍ୱାଳପଡ଼ା ଗାଁ ଓ ବହୁତ ଧାନ ଗହୀର । ଅରିଲୋର ଦୋଳ ମେଳଣ ଖୁବ୍ ବଡ଼ ଯାତ୍ରା, ବହୁତ ଆଡ଼ମ୍ବରରେ ହେଉଥିଲା, ଦୁଇଶହରୁ ବେଶୀ ଠାକୁର ବିମାନ ଆସୁଥିଲେ, ଲୋକ ହୁଅନ୍ତି ପ୍ରାୟ କୋଡ଼ିଏ ହଜାର । କାହା ବିମାନ ଆଗେ ଯିବ, କାହା ବିମାନ ଡାହାଣପଟେ ଯିବ, ଏଥିପାଇଁ କଳିଗୋଳ ହୋଇ ବେଳେ ବେଳେ ଗାଁ ଗାଁ ଲୋକଙ୍କ ଭିତରେ ମୁଣ୍ଡ ଫଟାଫଟି ହେଉଥିଲା । ବହୁତ ରୋଶ୍ନି, ବାଣ, ସଂକୀର୍ତ୍ତନ ଦଳ । ତହିଁଆରଦିନ ସକାଳେ ମୋ ଅପା ଶାଶୁଘର, ଅରଡ଼ିଆପଦା, ସେଠୁ ମାଇଲିଏ ବାଟ । ସେ ଗାଁକୁ କହନ୍ତି ମହୀଧରପଡ଼ା । ସେଠି ବି ଖୁବ୍ ଆଦର ମିଳିଲା । ଅପା ଘରେ ତ ସହଜେ । ତା'ପରେ, ଭିଣେଇଙ୍କର ଜଣେ ଦାଦିପୁଅ ଭାଇ ଶ୍ରୀ ରାମଚନ୍ଦ୍ର ମହାପାତ୍ର ବା ଗୁନବାବୁ, ତାଙ୍କ ସ୍ତ୍ରୀ ମୋ ବଡ଼ଭାଉଜବୋଉଙ୍କ ବଡ଼ଭଉଣୀ, ଯେତେଥର ମଇଧରପଡ଼ା ଗଲେ ସେମାନେ ବହୁତ ସ୍ନେହ ଆଦର କରି ଖୁଆନ୍ତି ।

ଗୁନବାବୁ ନ୍ୟାୟ ନିଶାପ କରନ୍ତି, କଳି ଭାଙ୍ଗନ୍ତି । ଲୋକେ କୌଣସି ସମସ୍ୟାରେ ପଡ଼ି ସମାଧାନର ବାଟ ଖୋଜିଲେ ସେ ବାଟ ବତାନ୍ତି । ନିମିତ୍ତ ପର୍ବରେ ସାହାଯ୍ୟ କରନ୍ତି । ବିଚାରବନ୍ତ ମାମଲତକାର ବୋଲି ତାଙ୍କର ଖ୍ୟାତି

ଥାଏ । ଡେଙ୍ଗା ସଳଖ ଚେହେରା, ବଡ଼ ବଡ଼ ଆଖିର ତୀକ୍ଷଣ ଦୃଷ୍ଟି, ଶୁଆଥଣ୍ଟିଆ ନାକ, ମୁହଁରେ ଗମ୍ଭୀର ଠାଣି, ସବୁ ମିଶି ତାଙ୍କ ବ୍ୟକ୍ତିତ୍ୱ ମର୍ଯ୍ୟାଦାବନ୍ତ ଓ ବିଶିଷ୍ଟ ଜଣାପଡୁଥାଏ । ସେ ବର୍ଣ୍ଣରେ କଳା । ତାଙ୍କଠି ଅନେକ ଓଡ଼ିଆ ଓ ବଙ୍ଗଳା ଉପନ୍ୟାସ ଥାଏ । ଉପନ୍ୟାସ କିଣିଆଣି ପଢ଼ିବା ତାଙ୍କର ବଡ଼ ସଉକ । ଖବରକାଗଜ ପଢ଼ିବା, ବାହାର ଦୁନିଆଁର ଖବର ରଖିବା, କାହା ସଙ୍ଗେ ସାହିତ୍ୟ, ସମାଜର ନୀତି ଅନୀତି, ଦେଶର ହାଲଚାଲ, କେତେ କେତେବେଳେ ସୁବିଧା ପାଇଲେ ଆଲୋଚନା କରିବା, —ଏ ସବୁଥିରେ ବି ତାଙ୍କର ସଉକ ଥିଲା । ମଫସଲରେ ରହି ଜମି ଜମିଦାରି ବୁଝି ଯେଉଁମାନେ ଜୀବନ ବିତାଉଥିଲେ, ସେମାନଙ୍କ ଭିତରେ ଏଭଳି ରୁଚି ଥିବା ଲୋକ ସେତେବେଳେ ବେଶୀ ନ ଥିଲେ । ବାରିବଗିଚା କରିବା, ନୂଆ ନୂଆ ଗଛ ଲଗାଇବା, ଚାଷରେ ନୂଆ ପଦ୍ଧତି ବିଷୟରେ ମନ ଖେଳାଇବା ବି ତାଙ୍କର କେତେଗୁଡ଼ିଏ ଗୁଣ ଥିଲା । ସେ ସହର ସହିତ ସମ୍ପର୍କ ରଖୁଥିଲେ, ଉତ୍ତର ଭାରତ ବୁଲି ଆସିଥିଲେ, ରୋକ୍‌ଠୋକ୍ କଥା କହୁଥିଲେ ଓ ଆଦୌ ଅଳସୁଆ ନ ଥିଲେ । ଛଅସ୍ତରି ବର୍ଷ ପରେ ବି ସେ ସାଇକଲ ଚଢ଼ି କଟକ ଯାଉଥିଲେ, ପଞ୍ଚାଅଶୀ ହେଲାଣି (୧୯୬୯ରୁ) । ସେତେବେଳେ ତାଙ୍କ ଅମାୟିକତା ଓ ଆତିଥ୍ୟ ଓ ତାଙ୍କ ଘରେ ଥିବା ଉପନ୍ୟାସଗୁଡ଼ିକ ମତେ ଆକୃଷ୍ଟ କରିଥିଲା ।

ମୋ ଭିଣେଇ ମଦନମୋହନ ମହାପାତ୍ର ସବୁଦିନେ ସ୍ନେହୀ ମଉଜୀ ଓ ଅମାୟିକ ମଣିଷ; ଯେତେ ଯାହା ଘଟୁ ସେ ନିଶ୍ଚିନ୍ତ, ସବୁବେଳେ ହସଖୁସି । ପରର ଦେଖି ସେ ଝରସରି ହୁଅନ୍ତି ନାହିଁ, ନିଜର ଭବିଷ୍ୟତ୍ ବା ଆର୍ଥିକ ଉନ୍ନତି ପ୍ରତି ତାଙ୍କର ନିଘା ହିଁ ନ ଥାଏ; ସବୁବେଳେ ସତେକି ଗୋଟିଏ ଉଦ୍ଦେଶ୍ୟ – ମନ ହାଲୁକା ରହିବ, ଖୁସି ଗପ, ହସ ଓ ବିଶ୍ରାମ ହେବ, ସମସ୍ତିଙ୍କ ସଙ୍ଗେ ବନ୍ଧୁତା ରହିବ, ଯେ ଶତ୍ରୁତା କରୁ ଛଳ ନାହିଁ । ତାଙ୍କର ଧର୍ମ, ଜୀବନରୁ ସୁଆଦ ଚାଖିବା ।

ଅରଡ଼ିଆପଦା ପରିବାରରେ ବହୁତ ମଣିଷ, ସେମାନେ ଜାତିଜାତିକା, ନାନାପ୍ରକାର ବିଶିଷ୍ଟତା ସେମାନଙ୍କଠି । ବହୁ ପ୍ରାଚୀନ ଜମିଦାର ସେମାନେ, ଆଖପାଖ ଗାଁ ଲୋକେ ତାଙ୍କୁ ଖାତିରି କରନ୍ତି । ସମସ୍ତିଙ୍କଠି ଗୋଟିଏ ଗୁଣ ସମାନ, —ମର୍ଯ୍ୟାଦାବୋଧ । ବଂଶକୁ ନିନ୍ଦା ଅପବାଦ ନ ମିଳୁ, ଏଥିପ୍ରତି ସମସ୍ତେ ଜାଗତିଆର ରହନ୍ତି ।

ଅରଡ଼ିଆପଦା ଅର୍ଥାତ୍ ମଇଧରପଡ଼ା ଆମେ ଅନେକ ଥର ଯାଇଛୁଁ ।

ମେଳଣ ଦେଖିସାରି ମଇଧରପଡ଼ା ବୁଲି ଆମେ ଗାଁକୁ ଫେରିଆସିଲୁଁ ।

ପ୍ରାୟ ଦଶଦିନ ପରେ ଦିନେ ସକାଳେ ମୁଁ ଚାଲି ଚାଲି ବୁଲି ବାହାରିଲି, ଯିବି ମାମୁଁଘର, ସିଂହାଳ, ଆମ ଗାଁରୁ ସିଧାବାଟରେ ପ୍ରାୟ ପନ୍ଦର ମାଇଲ୍, ମଝିରେ ଯୋଡ଼ିଏ ନଈ, ଗୋଟିଏ ନାଳ, ସିଂହାଳରୁ ଯିବି ବୋଧପୁର, ଆଉ ଦୁଇ ମାଇଲ୍, ସେଠି ମୋର ଗୋଟିଏ ଭଉଣୀର ଶାଶୁଘର । ଏ କୌଣସି ସ୍ଥାନରେ କୌଣସି ଜରୁରି କାମ ନ ଥାଏ । ଜରୁରି ଚେତନା ମୋ ମନ ଭିତରେ, ମୁଁ ଚାଲି ଚାଲି ଗାଁ ଗହଳି ବୁଲିବି, ସ୍ନେହୀଜନଙ୍କୁ ଦେଖିବି, ଗାଁ ମଣିଷଙ୍କୁ ଦେଖିବି, ସମସ୍ତେ ସତେକି ମୋର ଅତି ଆପଣାର, ଦେଖିବାକୁ ଆଖି ଝୁରୁଛି, ଚାଲିବାକୁ ଗୋଡ଼ ଖଇ ଖଇ ହେଉଛି ।

ମତେ ଲାଗେ, ମଣିଷଠି ଜୀବନପ୍ରାଚୁର୍ଯ୍ୟ ଯେତେବେଳେ ଥାଏ, ସେତେବେଳେ ବିନା ସ୍ୱାର୍ଥରେ ମଣିଷ ପ୍ରତି ପ୍ରକୃତି ପ୍ରତି ସ୍ନେହ ତା ଭିତରେ ଆପେ ଉଚ୍ଛୁଳି ଉଠେ, ସେ ଚାହେଁ ବୁଲିବ, ମିଶିବ, ବିନା କାମରେ ଗପିବ । ତେଣୁ ଟୋକାଏ ପଢ଼ାପଢ଼ି ଥୋଇଦେଇ ଖରାଏ ଖରାଏ ବୁଲନ୍ତି । ଘଣ୍ଟା ଘଣ୍ଟା ବିତିଯାଏ 'ଆଡ୍‌ଡା ଦିଅନ୍ତି', ସମୟର ମୂଲ୍ୟ, ନିଜର ହିତ, ହିସାବ କଷି ସମୟର ସଦ୍‌ବ୍ୟବହାର ଇତ୍ୟାଦି ଇତ୍ୟାଦି ହୋଇ ଯେତେ ନୀତିବାକ୍ୟ ସବୁ ତାଙ୍କ ଭଣ୍ଡାରି ଙ୍କାରେ ଯାଏ । ଜୀବନ-ପ୍ରାଚୁର୍ଯ୍ୟ ସରିଆସିଲେ ବଳେ ସେସବୁ ଭଣା ପଡ଼ିଯାଏ, ମଣିଷ ତୁନିହୋଇ ଘରେ ବସେ ।

ସକାଳେ ବାହାରିଲି । ସିଜୁଆ ନଈବାଲି ଜିକିଜିକି କରୁଥାଏ । ପାଣି ଉପରେ ହୀରାଖଣ୍ଡ ପରି କଅଁଳ ଖରା ଝଲଝଲୋଉ ଥାଏ । ନଈ ଏପାଖରୁ ସେପାଖ କେହି କେହି ପଶି ପଶି ଆସୁଥିଲେ, ଜଙ୍ଘେ ପାଣି । ନଈରେ ପଶି ଆରପାଖେ ଦେଉଳିରେ ପହଞ୍ଚିଲି । ପୁଣି ଥୋଡ଼ାଏ ଦଣ୍ଡା, ପଡ଼ିଆ, କରେ କରେ ଟେ ଟାମାଳ, ଦୂରେଇ ଦୂରେଇ ଗାଁ, ଖାଲି କ୍ଷେତ, ଆହୁରି ବାଲି ପଟା । ତା'ପରେ ପରମହଂସ ଗାଁ ପାଖେ ଶୁଖିଲା କାଠଯୋଡ଼ି ନଈ, ସେଠି କହନ୍ତି ପରମହଂସ ନଈ । ପରମହଂସରେ ଶିବମନ୍ଦିର ଅଛି, ଖୁବ୍ ବଡ଼ ଜାଗର ମେଳା ହୁଏ । ସେ ନଈରେ ପଶିଲି । ଆରପାଖେ ଗୋଟାଏ 'କରନାଳ' ଭିତରେ ପଶିଲି । ପହଞ୍ଚିଲି କନ୍ଦରପୁର । କଟକରୁ ବଡ଼ ସଡ଼କ କନ୍ଦରପୁର ଆସି ସେଠୁ ଡାହାଣେ ଜଗତ୍‌ସିଂପୁରକୁ, ବାଏଁ ତାରପୁର ଓ କୁଜଙ୍ଗକୁ ଯାଇଛି । ସେହି ବାଁ ପାଖେ ମୋ ବାଟ, ତାଳଦଣ୍ଡା ନାଳ କରେ କରେ ସଡ଼କ ।

କନ୍ଦରପୁରରେ ପହଞ୍ଚିଲା ବେଳକୁ ଉଦୁଉଦିଆ ଖରା । ପ୍ରାୟ ସାଢ଼େ ଏଗାରଟା ବେଳ । ଗୋଟିଏ ଅଚିହ୍ନା ବ୍ରାହ୍ମଣ ଘରୁ ପାଣି ମାଗି ପିଇଲି ।

ସେମାନେ ଆପଣାର ପରି ଦୁଃଖସୁଖ ହେଲେ, ବାଟ ବତେଇଲେ । ଚାରିମାଇଲ୍ ପରେ ସଁପୁର, ନାଳରେ ସେଠି ଲକ୍, କବାଟ ଅଛି, ତା ଉପରେ ପୋଲ । ତା'ପରେ ପାଇକା ନଈ ପାରି ହେଲି, ସେତେବେଳେ ନଈକୁ ଛେକିବାକୁ ବନ୍ଧ ପଡ଼ି ନ ଥିଲା, ଖୋଲା ଧାର । ଆହୁରି ଯୋଡ଼ିଏ ନାଳ ପଡ଼ିଲା । ସାଢ଼େ ବାରଟା ବେଳେ ମାମୁଁ ଘରେ ପହଞ୍ଚିଲି ।

ଆଗେ କେବେ ଯାଇ ନାହିଁ, ସୋନପୁରରେ କୈଳାସ ମାମୁଙ୍କୁ ଚିହ୍ନିଥିଲି, ସେ ସେଠିକି କେବେ କେବେ ଯାଆନ୍ତି । ସେ ସମସ୍ତଙ୍କ ସଙ୍ଗେ ଚିହ୍ନା କରାଇଦେଲେ । ସମସ୍ତେ ଭାରି ଖୁସି ହେଲେ, ''ଭଣଜା ଆସିଛନ୍ତି ।'' ପୂର୍ବେ ଭଣଜାର ବିଶିଷ୍ଟ ସ୍ଥାନ ଥିଲା, ପୁଅଠୁଁ ତାକୁ ଅଧିକ ଖାତିରି କରିବା ପ୍ରଥା ଥିଲା, ଢଗ ଥିଲା

''ଭଣଜା କୁଳ-ନନ୍ଦନ ।''

ଖୁବ୍ କ୍ଳାନ୍ତ ହୋଇ ପଡ଼ିଥାଏ, ଉଖୁଡ଼ା ଓ ଲଡୁ ଖାଇ ଶୋଇ ପଡ଼ିଲି ।

ସଞ୍ଜରେ ପାଇକା ନଈକୂଳକୁ ବୁଲିଗଲି । ନଈ କୂଳରେ ବନ୍ଧ ଉପରେ ବହୁତ ଗଛ, ତୋଟା । ଗହୀର ନଈ, କାଦୁଆ । ଠାଏ ଠାଏ ବାଳିସରା, ବିଶେଷତଃ ଗାଧୁଆ ତୁଠରେ ।

ଦେହକୁ ପବନ ସୁଖ ଲାଗୁଥାଏ । ମଣିଷ, ଗୋରୁଗୋଠ, ନଟେଇ ଧରି ସୂତା ଗୁରେଇ ଗୁରେଇ ଚାଲିଥିବା କେଁଉଟମାନେ, ଏଠି ସେଠି କାହା କୁଡ଼ିଆ, ଉଡ଼ନ୍ତା ଚଢ଼େଇ, ସବୁଥିକି ମୋ ମନରେ କୁତୂହଳ ଥାଏ ।

ସୋମନାଥ ମାମୁ ଦିନାକେତେ ସୋନ୍‌ପୁରରେ ଥିଲେ, ଗୋରା, ହସହସ, କୁଞ୍ଚୁକୁଞ୍ଚିଆ ବାଳ, ସୁନ୍ଦର ଚେହେରା । କେତେଥର ଗଡ଼ିଆରୁ ସୋନପୁର ଆସନ୍ତି । ସଙ୍ଗରେ ଆସେ ଗୋଟାଏ ବଡ଼ ଧଳା ଦେଶୀ କୁକୁର, ଫୁଲଛାଞ୍ଚୁଣୀ ପରି ତା'ର ଲାଞ୍ଜ । ନେହୁଳ, ତିତିର୍ ଚଢ଼େଇ, ଭାଲୁ ଓ କେବେ କେବେ ବାଘ କଥା ବି କହନ୍ତି । ସେ ମରିଯାଇଥାନ୍ତି । ମାଈଁଙ୍କୁ ମୁଁ ଆଗରୁ କେବେ ଦେଖି ନ ଥିଲି । ସେଦିନ ମାମୁଘରେ ପ୍ରଥମ ଦେଖା, ତାଙ୍କର ଯୋଡ଼ିଏ ସାନ ସାନ ପୁଅ, ବଡ଼ଟି ରମେଶ, ତାକନ୍ତି ରମା, ଚାରିବର୍ଷର ହେବ, ଭାରି ଭାବପ୍ରବଣ ଦିଶୁଥାଏ ତା'ର ବଡ଼ ବଡ଼ ଆଖି ଯୋଡ଼ିକ, ଚୁପ୍‌ଚାପ୍ ଅନେଇଁଥାଏ, ବୋଧହୁଏ ସେ ଆଖିରେ କେତେ କ'ଣ ଦେଖି କହି ଯାଉଥାଏ, ଭାବି ଯାଉଥାଏ, କିଛି କହୁ ନ ଥାଏ । ଟିପାଖାତାରେ ସେକଥା ବି ଲେଖିଲି । ଆଉ, ତା ମୁହଁକୁ ଚାହିଁ ଏକଥା ବି ଲେଖିଥିଲି ଯେ, ଭବିଷ୍ୟତ୍‌ରେ ତା'ର ଆର୍ଥିକ ଉନ୍ନତି ହେବାର ଖୁବ୍ ସମ୍ଭାବନା । ତିରିଶି ବର୍ଷ ପରେ ମୋର

ସେ ଧାରଣା ସତ ହେଲା । ତା ତଳେ ଦେଢ଼ବର୍ଷର ଉଲ୍ଲାସ । ସଦ୍ୟ ବୈଧବ୍ୟର ଦୁଃଖ ଓ ନିରାଶ୍ରୟତାରେ ମାଈଁ ଶୋକଗ୍ରସ୍ତା ଥିଲେ । ସ୍ୱାମୀ ଚାଲିଗଲେ । କୋଡ଼ରେ ଯୋଡ଼ିଏ ସାନ ସାନ ପୁଅ । ତଥାପି ତାଙ୍କର ଆଶ୍ଚର୍ଯ୍ୟ ଧୈର୍ଯ୍ୟ ସେତେ ଦୁଃଖରେ ତାଙ୍କୁ ଗୋଟିଏ ବିଶିଷ୍ଟ ମର୍ଯ୍ୟାଦା ଦେଇଥିଲା । ଟିପା ଖାତାରେ ତା ବି ଲେଖିଛି ।

ସେଦିନ୍ ୧୯୩୦, ମାର୍ଚ୍ଚ ୨୪ ତାରିଖ । ତହିଁଆର୍‌ଦିନ ମୁଁ ତେଇଦିଆ ନିଃପ୍ରାଃ ସ୍କୁଲ୍‌ରେ ପାଠପଢ଼ା ଦେଖିଲି । ପିଲାମାନଙ୍କ ବୁଦ୍ଧି ପରଖ କଲି, ସୋମପୁର ଡାକଘର ଓ ଆଖପାଖ ଅଞ୍ଚଳ ବୁଲିଲି । ତା'ପରେ ସଞ୍ଜବୁଡ଼େ ପହଞ୍ଚିଲି ବୋଧପୁର । ଜଗୁଦାଦିଙ୍କ ଦ୍ୱିତୀୟ ଝିଅ ସେ । ଥନ ଅପା, ଅନ୍ନପୂର୍ଣ୍ଣା । ଭିଣେଇ ପଞ୍ଚାନନ ଘରେ ଥିଲେ; ତାଙ୍କ ବାପା ବୋଉ ଥିଲେ । ଆଉ ଥିଲା ସାନ ଭାଇଟିଏ ତ୍ରିଲୋଚନ ବା ମୃଷା, ମୋର ପ୍ରାୟ ସମବୟସ୍କ ।

ଅପା ମତେ ଦେଖି କାନ୍ଦିଲା । ଭଉଣୀ ଘରକୁ ଭାଇ ଗଲେ ଭଉଣୀ ଆଗ କାନ୍ଦେ । ଖାଲି ପ୍ରଥା ନୁହେଁ, ବାପ ଘର କଥା ମନେ ପଡ଼ି କାନ୍ଦ ମାଡୁଥିବ । ବିଭାହେଲା ଝିଅଟି ତା ନିଜ ସଂସାରରେ ବାନ୍ଧି ହୋଇ ରହେ । ଆଗେ ନିଜ ବାପଘରକୁ ଯାଉଥିଲା କ୍ୱଚିତ୍ । ସିଂହାଳ ଗାଁରୁ ମୋ ବୋଉ ଆମ ଘରକୁ ବୋହୂ ହୋଇ ଆସିଥିଲା ତାକୁ ଚଉଦ ବର୍ଷ ବେଳେ, ବୋଧହୁଏ ଉଣେଇଶି କୋଡ଼ିଏ ବର୍ଷ ବେଳେ କେବେ ଥରେ ବାପଘର ଯାଇଥିଲା, ଆଉ ବାପଘର ଦେଖିନାହିଁ, ୬୯ ବର୍ଷ ବୟସ ଆରମ୍ଭ ବେଳେ ସେ ଏ ପୃଥିବୀରୁ ଗଲା ।

ଆରମ୍ଭ ହେଲା ସ୍ନେହ, ଆଦର, ଚର୍ଚ୍ଚା, ଅପା ଗୋଡ଼ ତଳେ ପଡୁନଥାଏ,– ''ମୋ ଭାଇ ଆସିଛି ।''

ମସ୍ତବଡ଼ ବସ୍ତି ବୋଧପୁର । କରଣ ହିଁ ବେଶୀ । ପାଞ୍ଚଟି ଖୁବ୍ ବଡ଼ ବଡ଼ କରଣ ସାହି । ଅପା ଘର କାନୁଗୋଇ ସାହିରେ । ଖୁବ୍ ଉଚ୍ଚ ପିଣ୍ଡା, ପଥର ପାହାଚ, କରେକେ ତୁଳସୀ ଚଉରା, ତା'ପରେ ଦାଣ୍ଡଘର, ସେ ବାଟ ଘର, ତା'ପରେ ଭିତରକୁ ଖଞ୍ଜା, ଅନ୍ୟାନ୍ୟ ଘର ।

ନାଗବାଲିରୁ କୁଣିଆ ଆସିଚି । ବୋହୂର ଭାଇ ଆସିଛି, ଅନେକ ଲୋକ ଦେଖିବାକୁ ଆସିଲେ, ପରୁଷ, ସ୍ତ୍ରୀ, ସାନ ପିଲା । ଅନେକ ମୋର ଥଟ୍ଟା ସମ୍ପର୍କ, ସେମାନେ ଥଟ୍ଟା କଲେ, ମୁଁ ତାଙ୍କୁ ନ ଚିହ୍ନେ ପଛେ । ଅଚିହ୍ନା ହେଲେ ବି ସମସ୍ତେ ଚିହ୍ନା ।

* * * * * *

ଦଶବର୍ଷ ପରେ ମନେ ପଡ଼ିଗଲା, ସେହି ସଞ୍ଜବୁଢ଼େ, ମୋ ଅପା ପାଖକୁ ବୁଲି ଆସିଥିଲା ନଅ ଦଶ ବରଷର ଭାରି ସୁନ୍ଦର ଝିଅଟିଏ । ସୁନା ପରି ଗୋରା, ଗରି ଗରି ହାତ ଗୋଡ଼, ମୁହଁଟି ସୁନ୍ଦର, ବହଳ ଓ ଢ଼ିପାଢ଼ିପା ଆଖିପତା, ଧନୁ ପରି, ବଡ଼ ବଡ଼ ଧାର ଆଖି, ଶାନ୍ତ ଦୃଷ୍ଟି, ହସ ହସ ମୁହଁ । ବହୁତ ସୁନା ଅଳଙ୍କାରରେ ଛାଉଣି ହୋଇଥାଏ, ଶାଢ଼ୀ ପିନ୍ଧିଥାଏ, ତା ମୁଣ୍ଡ ଖୋଲା ଥାଏ, ଝିକିଝିକି ଦିଶୁଥାଏ, ତା ଗଭାରେ କ'ଣସବୁ ଫୁଲ ଖୋସା ହୋଇଥାଏ । ସେ ପାନ ଚୋବେଇ ଚୋବେଇ ଓଠ ନାଲି କରିଥାଏ, ବୋଧହୁଏ ନାଲି ପାନ ରସ ତା ତଳି ଓଠ କଣରେ ଅଳ୍ପ ବହକି ଆସିଥାଏ । ତା କପାଳରେ ଚନ୍ଦନ ପାତି ନାଇଥାଏ ।

ତା'ର ବହୁ ବର୍ଷ ପୂର୍ବରୁ ମୁଁ ସୋନପୁରରେ ଥିଲାବେଳେ କଟକରୁ ଯେଉଁ ଓଡ଼ିଆ ବହି ଡ଼ାକରେ ମଗେଇ ନେଇଥିଲି, ସେଥିରେ ଗୋଟିଏ ବହି ନାଁ 'ଫୁଲ ଚାଙ୍ଗୁଡ଼ି' । ସରୁ ବହିଟିଏ, କିନ୍ତୁ ତା'ର କାଗଜ ମଲାଟ ଉପରେ ଗୋଟିଏ ସୁନ୍ଦର ଝିଅର ଛବି ଥିଲା । ଏ ଝିଅଟିର ଚେହେରା ଅନେକାଂଶରେ ସେହି ଛବି ପରି, ବୋଧହୁଏ ତେଣୁ ମୋର ମନେ ରହିଥିଲା ।

ଟିକିଏ ପଛେ ଜାଣିଲି, ସେ ଦିନ ସେ ଝିଅ ଓ ତା ବଡ଼ ଭାଇ ଦୁହିଙ୍କର ଜନ୍ମଦିନ ।

ଅପା କହିଲା ''ଆଇଚ ? ମୋ ଭାଇକି ଦେଖ । ଯେ ମୋ ଶଶୁରଙ୍କ ଭଉଣୀ ହେବେ ରେ ।''

ଅପା ମୋ'ଠୁଁ ପ୍ରାୟ ଦଶବର୍ଷ ବଡ଼ । ଆଉ ତା ଶଶୁର ତ ବୁଢ଼ା ଲୋକ ।

ଅପାର ''ଶଶୁରଙ୍କ ଭଉଣୀ'' କେତେ କ'ଣ କହିଯାଉଥାଏ, ମତେ ଅଚିହ୍ନା ଲୋକ ଦେଖି ସେ ଚାଲିଗଲା ।

ଅପା ବୁଝେଇଦେଲା, ''କାଶୀନାଥଙ୍କୁ ଜାଣିନାହୁଁ ?''

ଏମିତି ସ୍ୱରରେ କହିଲା, ଯେପରି କାଶୀନାଥ ଜଣେ ଅତି ପ୍ରସିଦ୍ଧ, ଅତି ଜଣାଶୁଣା ବିଶିଷ୍ଟ ମଣିଷ, ''ତାଙ୍କରି ସବା ସାନ ଝିଅ ମ, ତାଙ୍କ ତଳ ଭାଇ ହରେକୃଷ୍ଣ ତାକୁ ଝିଅ କରି ନେଇଛନ୍ତି । ଭାରି ଗେହ୍ଲା । ହବ ନାହିଁ କାହିଁକି ।''

''କାଶୀନାଥ କିଏ ଅପା ?''

ଅପା ଆଖି ଖୋଷିଦେଲା, ଫୁସ୍ ଫୁସ୍ କରି କହିଲା, ''ହଇରେ ତୁ କାଶୀନାଥଙ୍କୁ ଚିହ୍ନିନାହୁଁ ?'' ଚିହ୍ନିବାର କାରଣ ନଥିଲା, ଅପା ଶାଶୁ ଘରକୁ

ମୋର ଯିବାର ସେହି ପ୍ରଥମ ଥର । ତା ଘରେ ମୁଁ ରହିବାର ମୋ ଜୀବନର ପ୍ରଥମ ଓ ଶେଷଥରକ ସେ ।

ଅପା କହିଲା, "ସେ ପରା ଏ ବୋଧପୁରର ସବୁଠୁ ମାନ୍ୟତା ମଣିଷ, କରଣ ସମାଜର ମୁରବ୍ବି, ଏ ଖଣ୍ଡମଣ୍ଡଳଯାକର ସବୁଠୁ ବଡ଼ ମାମଲତ୍‌କାର, ଏଡ଼େ ନ୍ୟାୟପରାୟଣ ବିଚାରବନ୍ତ ଧାର୍ମିକ ପୁରୁଷ ଯେ, ସମସ୍ତେ ତାଙ୍କୁ ଖାତିରି କରନ୍ତି । ତାଙ୍କୁ ଏଠି ଦଶକୋଶ ଭିତରେ କିଏ ନ ଜାଣେ, କିଏ ମାନ୍ୟ ନକରେ ! କେତେ କେତେ ଦୂରରୁ ଲୋକ ଆସନ୍ତି ତାଙ୍କ ପାଖରେ କେଡ଼େ କେଡ଼େ କଳିଗୋଳ ତୁଟେଇଦେବା ପାଇଁ, ଯାହା କହିବେ ଖଣ୍ଡା ଦାଢ଼, ଏପଟ ନୁହେଁ କି ସେପଟ ନୁହେଁ, ସେ ଯାହା କହନ୍ତି ଲୋକେ ସେଇଆ ମାନନ୍ତି, ମକଦମା ହୁଏ ନାହିଁ, କଚିରିକି ଲୋକେ ଯାଆନ୍ତି ନାହିଁ, ଆଉ ସେ ତ କାହାଠୁ ଶାଗ ପତ୍ରଟିଏ ନିଅନ୍ତି ନାହିଁ । ତାଙ୍କର କ'ଣ ନାହିଁ ? ଜ୍ଞାନ ଯେମିତି, ଧନ ସେମିତି, ମାନ ସେମିତି, କେଉଁ କାଳର ଖାନ୍ଦାନି ଘର, ଜମି, ଜମିଦାରି, ଜମିଦାରିରେ ତାଙ୍କର ଭାଗେ ତ ଆମର ଭାଗେ । ଏଡ଼େ ବଡ଼ ମଣିଷ ସିନା, ଦେଖିବୁ କେଡ଼େ ସରଳ, କେଡ଼େ ସାଧାସିଧା, ବଡ଼ ତାଙ୍କ ମନ ଆଉ ବିଚାର । ଧୂଳଭାଇ, କାହ୍ନୁ ତାଙ୍କୁ ଭାରି ଭକ୍ତି କରନ୍ତି, ଭାବିଥିଲି ତୁ ବି ଜାଣିଥିବୁ । ଦୁଃଖୀ ରଙ୍କୀଙ୍କି ବହୁତ ଦିଅନ୍ତିରେ, ତାଙ୍କରି ନାଁରେ ତ ଏ ଘରର ନାଁ ।"

କାଶୀନାଥ ମହାନ୍ତିଙ୍କ ବିଷୟରେ ଅନ ଅପା ଏ ଯେଉଁ ବର୍ଣ୍ଣନା କଲା, ସେତେବେଳେ ଓ ତା ପରେ ସେଠି ଓ ଅନ୍ୟତ୍ର ଅନ୍ୟ ଯାହା ଯାହାଠୁଁ ମୁଁ ଶୁଣିଲି, ଅବିକଳ ସେ ବର୍ଣ୍ଣନା ।

ସେତେବେଳେ ଓଡ଼ିଶା ମଫସଲରେ କେଉଁଠି କେଉଁଠି ସେହିପରି ଜଣେ ଜଣେ ସର୍ବଜନ-ସମ୍ମାନନୀୟ ମଣିଷ ଥିଲେ, ସମାଜ ଉପରେ ସେମାନଙ୍କର ବହୁତ ହିତକାରୀ ପ୍ରଭାବ ପଡୁଥିଲା । ସେହିମାନେ ହୋଇଥିଲେ ପାରମ୍ପରିକ ନୀତି, ଆଦର୍ଶ ଓ ସଂସ୍କୃତିମନ୍ତ ଆଚାର ଓ ବିଚାରର ଦୃଷ୍ଟାନ୍ତ ଓ ରକ୍ଷକ ଉଭୟ । ଲୋକେ ସେହିମାନଙ୍କୁ ଅନୁକରଣ ଓ ଅନୁସରଣ କରୁଥିଲେ, ତାଙ୍କ କଥା କେହି ତଳେ ପକାଉନଥିଲେ । ସେମାନେ ହୋଇଥିଲେ ଜନତାଙ୍କ ନେତା, ତାଙ୍କୁ ଭୋଟ୍ ଦେଇ କେହି ବାଛନ୍ତି ନାହିଁ, ସରକାର ତାଙ୍କୁ ପଦ ପଦବୀ କି କ୍ଷମତା ଦିଅନ୍ତି ନାହିଁ, ଲୋକେ ଆପେ ମାନନ୍ତି, ମରିଗଲେ ହଜାର ହଜାର ଗାଁଲୋକ ହାୟ ହାୟ କରନ୍ତି, କାନ୍ଦନ୍ତି । ସଂକୀର୍ତ୍ତନ କରି କରି ହଜାର ହଜାର ଲୋକ ତାଙ୍କ ଶବକୁ ଶ୍ମଶାନକୁ ନିଅନ୍ତି, ସେମାନେ ରହିଯାଆନ୍ତି

ପୁରୁଷ ପୁରୁଷଯାକେ ଗାଁ ଲୋକଙ୍କ ସ୍ମୃତିରେ । କେବେ ଅବା କାହାରି କାହାରି ସ୍ମୃତି ରଖିବାକୁ ବର୍ଷକେ ଦିନେ ମେଳାଟିଏ ହୁଏ ।

ପୂର୍ବେ ଗାଁ ମାମଲତକାର କହିଲେ ଏଇଆ ବୁଝାଉଥିଲା । ତା'ପରେ ଗାଁ ମାମଲତକାରର ଅର୍ଥ ହେଲା ଶୋଷକ, ଘରଭଙ୍ଗା, ଯେ ମକଦ୍ଦମା ଲଗାଇଦିଏ । ତା'ପରେ ଆହୁରି ପାହାଚେ ନୂଆ ଅର୍ଥ ହେଲା ଟାଉଟର ।

କାଶୀନାଥ ମହାନ୍ତିଙ୍କୁ ମୁଁ ସେହି ରାତିରେ ଦେଖିଲି, ବର୍ଣ୍ଣରେ ଶ୍ୟାମଳ, ଡେଙ୍ଗା ଲୋକ, ବଡ଼ ମୁହଁ, ବେକରେ ସରୁ ମାଳି, ମୁଣ୍ଡବାଳ ଫିରେଇ କଟା ହେବା ପରିବର୍ତ୍ତେ ଏକାଠି ପଛଆଡ଼କୁ କୁଣ୍ଡା ହୋଇ ମେଞ୍ଚି ପଡ଼ିଛି । ବଳାଗଣ୍ଠିଯାକେ ଲୁଗା ପଡ଼ିଥାଏ, କୁଞ୍ଚ ଖୋସା ହୋଇଥାଏ । ଖୋଲା ଦେହରେ ଚାଦର ଖଣ୍ଡେ । ତାଙ୍କର ଓସାର କପାଳ, ଧନୁ ପରି ଭ୍ରୂଲତା, ବହଳ ଓ ଢ଼ିପା ଢ଼ିପା ବଡ଼ ବଡ଼ ଆଖି, ଆଖିର ଚାହାଣି ଖୁବ୍ ତୀକ୍ଷ୍ଣ, ବଡ଼ ନାକ, ଲମ୍ୱାଳିଆ ମୁହଁ, ଚଉଖୁଣ୍ଟା ଚିବୁକ । ଓଠ ସତେ ଯେମିତି କୌତୁକ ଅନୁଭବ କରି ହସିଲା ଭଙ୍ଗୀରେ ରହିଛି, କିନ୍ତୁ ବେଳେ ବେଳେ ମୁହଁ ଖୁବ୍ ଗମ୍ଭୀର । ତାଙ୍କୁ ଦେଖି ଲାଗୁଥିଲା, ସେ ଦେଖୁଥିଲେ ଓ ଭାବି ପାରୁଥିଲେ ଖୁବ୍, କହୁଥିଲେ ଅଳ୍ପ, ସେ କଥା କହିବା ମାତ୍ରେ ସମସ୍ତେ ତୁନି ହୋଇ ତାଙ୍କ ମୁହଁକୁ ଅନାଇଁ ଶୁଣନ୍ତି, ତାଙ୍କୁ ପ୍ରତିବାଦ କରିବାକୁ କେହି ସାହସ କରନ୍ତି ନାହିଁ । ବେଳେ ବେଳେ କାହା କଥା ଉପରେ ସେ ଏପରି ପଦେ ପଦେ ବିଶ୍ଳେଷଣାତ୍ମକ ମନ୍ତବ୍ୟ କରିଦିଅନ୍ତି ଯେ, କହିବା ଲୋକର କଥାର ଭୁଲ୍ ବା ଉଦ୍ଭଟତା ଆପେ ବାରି ହୋଇପଡେ । ଲୋକଙ୍କର ଡ଼ର, କାଳେ ତାଙ୍କ ଆଗରେ କାଇଲ ହେବେ । ଶୁଣିଛି, ସେ କାହାରିକି ଗାଳି ଦିଅନ୍ତି ନାହିଁ, ଅତି ରାଗିଲେ ଶ୍ଳେଷୋକ୍ତି ପଦେ । ତାଙ୍କ ଜୀବନରେ ପ୍ରଧାନ ଥିଲା ତାଙ୍କ ନୀତି, ଯାହା ସେ ଠିକଣା ଭାବିବେ ତା କରିବେ, ବାଟରୁ ବଦଳିବେ ନାହିଁ । ସେ ପରମ୍ପରାବାଦୀ ଓ ପ୍ରାଚୀନପନ୍ଥୀ, ନୂଆ କଥାରେ ଭାସିଯାଆନ୍ତି ନାହିଁ । ସମସ୍ତେ ତାଙ୍କୁ ବଡ଼ ବୋଲି ମାନୁଥିଲେ, ସେ ନିରପେକ୍ଷ ନ୍ୟାୟର ଅବତାର, ସବୁ ଜାତି ସବୁ ଶ୍ରେଣୀ ସମସ୍ତିଙ୍କ ତୁଣ୍ଡରେ ଖାଲି ତାଙ୍କରି ନାଁ ।

ଖୁବ୍ ବଡ଼ ପରିବାର ତାଙ୍କର । ମାୟାଧର ମହାନ୍ତି ଜଣେ ଲୋକ । ତାଙ୍କର ହେଲେ ତିନିପୁଅ, ଦୀନବନ୍ଧୁ, କୃପାସିନ୍ଧୁ ଓ ନୀଳକଣ୍ଠ । ବଡ଼ ଦୀନବନ୍ଧୁ ନିଃସନ୍ତାନ ହେଲେ, ସେ ତାଙ୍କ ଦଳଭାଇ କୃପାସିନ୍ଧୁଙ୍କର ଦ୍ୱିତୀୟ ପୁଅ ସୋମନାଥଙ୍କୁ ପୁଅ କଲେ । ସୋମନାଥଙ୍କର ଗୋଟିଏ ପୁଅ ଲକ୍ଷ୍ମୀଧର । ସେ ଆମ ଅନ ଅପାର ଶଶୁର, ପଞ୍ଚାନନ ଓ ତ୍ରିଲୋଚନଙ୍କ ବାପ ।

କୃପାସିନ୍ଧୁଙ୍କର ସାତ ପୁଅ ହେଲେ । ବଡ଼ ସାଧୁଚରଣ, ସଂସ୍କୃତରେ ପାଣ୍ଡିତ୍ୟ ଥିଲା, ସେ ବିଦ୍ୱାନ୍, ଧାର୍ମିକ ଓ ସନ୍ଥ ଶ୍ରେଣୀର ବୋଲି ଖ୍ୟାତି ଅର୍ଜିଥିଲେ । ପଛେ ତାଙ୍କ ନାଁରେ ତାଙ୍କ ପୁତୁରା ବଂଶୀଧର ତାଙ୍କ ଗାଁ ପାଖେ ନାନ୍‌ପୁରରେ ହାଇସ୍କୁଲ ଓ ବୋର୍ଡିଂ କଲେ, ତା ନାଁ ରହିଲା "ସାଧୁଚରଣ ବିଦ୍ୟାପୀଠ" । ସାଧୁଚରଣଙ୍କର ପୁଅ ନଥିଲେ, ଖାଲି ଝିଅଟିଏ, ଉତ୍ତାରଣରେ ବିଭା ହୋଇଥିଲେ । ସେ ଝିଅର ପୁଅ ଶ୍ରୀ ରାଜ୍‌କିଶୋର କାନୁନ୍‌ଗୋ, ପଛେ ବାଲିକୁଦା ମାଇନର୍ ସ୍କୁଲରେ ତାଙ୍କ ସଙ୍ଗେ ଚିହ୍ନା ହେଲା । ସେଠି ସେ ସୁଦକ୍ଷ ହେଡ୍‌ମାଷ୍ଟର ଥିଲେ, ସାଧୁତା, ସତ୍ୟ, ଅହିଂସା, ସରଳତା, କଠୋର କର୍ତ୍ତବ୍ୟପାଳନ, ନମ୍ରତା, ସୌଜନ୍ୟ, ଧର୍ମ ସାହିତ୍ୟ ପାଠ, ଶରୀର ଶ୍ରମ ଆଦି ଆପଣା ଜୀବନରେ ଅଙ୍ଗୀଭୂତ କରିଥିଲେ । ବୃଦ୍ଧକାଳରେ ବି ସେହିପରି ରହିଛନ୍ତି । ସେ ସଂସ୍କୃତ ଭଗବତ୍ ଗୀତା ଓ ମୈଥିଳୀ ତୁଳସୀରାମାୟଣ ଆଦି ଅନେକ ଧର୍ମଗ୍ରନ୍ଥକୁ ଓଡ଼ିଆ ପଦ୍ୟରେ ଅନୁବାଦ କରି ଛପାଇଛନ୍ତି ।

କୃପାସିନ୍ଧୁଙ୍କ ଦ୍ୱିତୀୟ ପୁଅ ସୋମନାଥଙ୍କୁ ତାଙ୍କ ବଡ଼ ଭାଇ ଦୀନବନ୍ଧୁ ପୁଅ କରି ନେଲେ ।

ତୃତୀୟ ପୁଅ ଅନନ୍ତଚରଣ । ତାଙ୍କର ଦୁଇ ପୁଅ, ଶ୍ରୀଧର ଓ ସର୍ବେଶ୍ୱର । ଶ୍ରୀଧର ମହାନ୍ତିଙ୍କୁ ବର୍ତ୍ତମାନ ଅଶୀ ଉପରେ ହେବଣି, ପୂର୍ବେ ସେ କଲିକତାରେ ଜଣେ ଜଣାଶୁଣା ବ୍ୟବସାୟୀ ହୋଇଥିଲେ । ଉନବିଂଶ ଶତାବ୍ଦୀ ଶେଷ ଆଡ଼କୁ, ଯେତେବେଳେ ବ୍ୟବସାୟ କ୍ଷେତ୍ରକୁ ଓଡ଼ିଆମାନେ ଯାଉ ନ ଥିଲେ, ସେତେବେଳେ ଶ୍ରୀଧରବାବୁ କଲେଜ ଛାଡ଼ି ଚିଲିକାରେ ବୁଲି ବୁଲି ମାଛ ରପ୍ତାନି ବ୍ୟବସାୟ ଆରମ୍ଭ କରିଥିଲେ । ସେ ହିଁ ପ୍ରଥମେ ଚିଲିକା ମାଛକୁ କଲିକତା ପଠାଇ କେଉଟମାନଙ୍କୁ ଲାଭବାନ୍ କରାଇବାକୁ ଲାଗିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଚିଲିକା ଗଲେ ଶ୍ରୀଧର ମହାନ୍ତିଙ୍କ ପାଖେ ରହନ୍ତି, ତାଙ୍କୁ ଭଲ ପାଉଥିଲେ । ତା'ପରେ ସେ ଯୁଗରେ ସେ ମୟୂରଭଞ୍ଜର ଶିମିଳିପାଳ ଜଙ୍ଗଲ ଓ କୋରାପୁଟର ମାଲ୍‌କାନଗିରି ବଣ ବି ବୁଲି କେତେବର୍ଷ କାଠ ବ୍ୟବସାୟ କଲେ । ତା'ପରେ ଦ୍ୱିତୀୟ ମହାଯୁଦ୍ଧଯାକେ କଲିକତାରେ ରହି ବ୍ୟବସାୟ କଲେ । ଖୁବ୍ ଗୋରା ଖୁବ୍ ଡେଙ୍ଗା ଶ୍ରୀଧର ବାବୁ ତାଙ୍କ ସମୟର ଜଣେ 'ଆଧୁନିକ', କେତେ ବିଷୟରେ ବି ସଂସ୍କାରକ, ଜଣେ ବୁଦ୍ଧିମାନ୍, ଆଶାବାଦୀ, ସାହସୀ ଓ ଟାଣୁଆ ମଣିଷ । ସର୍ବେଶ୍ୱର ବି କଲେଜ ଛାଡ଼ି ବ୍ୟବସାୟ ଧରିଥିଲେ, ଯୌବନ ଅବସ୍ଥାରେ ହଠାତ୍ ମରିଗଲେ ।

ଅନନ୍ତଚରଣଙ୍କ ତଳେ କାଶୀନାଥ, ତାଙ୍କର ଦୁଇ ପୁଅ ବଂଶୀଧର ଓ ଦିବାକର, ତିନିଝିଅ ।

୧୯୩୦ରେ ମୁଁ ଦେଖିଲାବେଳକୁ ବଂଶୀଧର ମହାନ୍ତି ସତେଇଶି ଅଠେଇଶି ବର୍ଷର ଯୁବକ । ଡ଼େଙ୍ଗାରେ ଶ୍ରୀଧର ୬ ଫୁଟ ଏକ ଇଞ୍ଚ ହେଲେ ବଂଶୀଧର ୬ଫୁଟ ଓ ତାଙ୍କ ତଳ ଦିବାକର ୫ ଫୁଟ ୧୧ ଇଞ୍ଚ ହେବେ । ଖୁବ୍ ଗୋରା, ଅତି ସୁନ୍ଦର ଚେହେରା, ମୁଣ୍ଡରେ ବହଳ ଢ଼େଉଢ଼େଉକା କଳା ବାଳ ମଝିରୁ ଦି' ଭାଗ ହୁଏ, ସବୁବେଳେ ହସ ହର୍ଷ, ପ୍ରଫୁଲ୍ଲ । ସେ ବି କଲେଜ୍ ଛାଡ଼ି ବ୍ୟବସାୟ ଧରିଲେ, ତାଙ୍କର ବ୍ୟବସାୟ ଧାନ ଚାଉଳ । ଉପକୂଳର ବହୁତ ଆଡୁ କିଣନ୍ତି, କଟକ ମାଲ୍‌ଗୋଦାମରେ ବିକନ୍ତି, ୧୯୩୦ରେ ରେଭେନ୍‌ସା କଲେଜ୍ ହଷ୍ଟେଲକୁ ଚାଉଳ ଯୋଗାଉଥିଲେ । ଯେତେବେଳେ ମାଲ୍‌ଗୋଦାମ୍‌ର ବ୍ୟବସାୟ ମୁଖ୍ୟତଃ ମଇମନ୍, କଚ୍ଛି, ମାରୱାଡ଼ି ବ୍ୟବସାୟୀମାନଙ୍କ ହାତରେ ଥିଲା, ସେତେବେଳେ ସେମାନଙ୍କ ସହିତ ପ୍ରତିଯୋଗିତା କରି ଠିଆ ହୋଇ ବଢ଼ି ପାରିଥିଲେ ସେ । ଅନେକ ଓଡ଼ିଆ ବ୍ୟବସାୟୀଙ୍କୁ ସେ ସାହାଯ୍ୟ କରିଛନ୍ତି । ଓଡ଼ିଆ ହେଉନ୍ତୁ ବା ଅଣଓଡ଼ିଆ ହେଉନ୍ତୁ, ଚାଉଳ ସଂପର୍କରେ ତାଙ୍କର ଅଭିଜ୍ଞ ବିଶାରଦ ଉପଦେଶ ଅନେକ ବ୍ୟବସାୟୀ ଲୋଡ଼ନ୍ତି ଓ ବ୍ୟବସାୟୀ ସଂପର୍କରେ ତାଙ୍କ ପରାମର୍ଶକୁ ସମ୍ମାନ କରନ୍ତି । ସେ ବିଶ୍ୱାସ କରନ୍ତି, ବ୍ୟବସାୟ ପରର ହିତକୁ ପ୍ରଧାନ ଲକ୍ଷ୍ୟ ଦେବ, ପରର କ୍ଷତି ସାଧନକୁ ନୁହେଁ । ରାତି ରାତି ବଡ଼ ଲୋକ ହେବାକୁ ମନ କଲେ ନିଜର ଓ ଅନ୍ୟମାନଙ୍କର ବିପଦ ଘଟିବ, ଭଗବାନ ସହିବେ ନାହିଁ । ତାଙ୍କ ମତରେ, ସ୍ୱଳ୍ପ ଲାଭ ହେଲେ ବି ଚାଉଳ ବ୍ୟବସାୟ ଏପରି ଏକ ବ୍ୟବସାୟ, ଯହିଁରେ କ୍ଷେତର ଚାଷୀ ମୂଲିଆ, ଧାନ ଉଷେଇଁବା ଧାନ କୁଟିବା ଲୋକ, ଚାଉଳ କଳର ମଜୁରିଆ, ବସ୍ତା ସିଲେଇ କରିବା ଲୋକ ଓ ବସ୍ତା ବୋହିବା ଲୋକ ଲଗାଏତ୍ ବ୍ୟବସାୟୀ ପର୍ଯ୍ୟନ୍ତ ଅସଂଖ୍ୟ ଲୋକ ପୋଷି ହୁଅନ୍ତି, ତେଣୁ ସେ ହିତକର । ନିଜେ ସେ ସେତେ ଖାଇବାକୁ ସୁଖ ପାଆନ୍ତି ନାହିଁ, କିନ୍ତୁ ଖୁଆଇବାକୁ ତାଙ୍କର ବହୁତ ଆନନ୍ଦ, କାହାର ନିମିତ୍ତ ପର୍ବ ହେଲେ ସେ ପରଶିବା, ଖୁଆଇବା ଭାର ନିଅନ୍ତି, ନିଜେ ଖାଆନ୍ତି ନାହିଁ । ସେ ପର ପାଇଁ ଖଟନ୍ତି, ଘର ପାଇଁ କମ୍ । ଅକୁଣ୍ଠିତଭାବେ ଅନ୍ୟମାନଙ୍କ ଉପକାର କରନ୍ତି, କହନ୍ତି ନାହିଁ, ପ୍ରତିଦାନ ଖୋଜନ୍ତି ନାହିଁ । ସେ ଦୁଃଖରେ କି କ୍ଷତିରେ ବିବ୍ରତ ହୁଅନ୍ତି ନାହିଁ, ଟଳନ୍ତି ନାହିଁ, ସୁଖରେ ଖୁସି ହୁଅନ୍ତି ନାହିଁ । ସେ ନିନ୍ଦା କରନ୍ତି ନାହିଁ କି ଖୁସାମତ କରନ୍ତି ନାହିଁ, ଡରନ୍ତି ନାହିଁ କି ଆପଣା ସୌଜନ୍ୟ,

ବିନୟ, ଶିଷ୍ଟାଚାର ଭୁଲନ୍ତି ନାହିଁ । ତାଙ୍କର ବିଚିତ୍ର ମନୋବଳ । ଥରେ ତାଙ୍କର ହାର୍ଣ୍ଣିଆ ଅପରେସନ୍ ହେଉଥିଲାବେଳେ ସେ କହିଲେ ଯେ, ତାଙ୍କ ଆଖି ଖୋଲା ରହିବ ଓ ସେ ନିଜେ ଦେଖୁଥିବେ । ସେହିପରି କରାଗଲା । ସେ ଆପଣା ଘରୋଇ କାମ ନିଜେ କରିବାକୁ ଭଲ ପାଆନ୍ତି । ନିଜର ସବୁ କାମ ନିଜେ ତଦାରଖ କରନ୍ତି । ଯେତେ ଶ୍ରମ ପଡୁ ପଛେ । ରାତିରେ ଚାରିଘଣ୍ଟା ଶୁଅନ୍ତି । ତାଙ୍କର ନୀତି, "ଆରାମ, ହାରାମ ହୈ ।" ଯାହା ଯାହା ତାଙ୍କ କର୍ତ୍ତବ୍ୟ ବୋଲି ଭାବନ୍ତି, ସାନଠୁ ବଡ଼ଯାକେ ସବୁ ସେ ନିଜେ କରନ୍ତି, ଆଉ କାହା ଉପରେ ନିର୍ଭର ନାହିଁ । ମଣିଷର ଉନ୍ନତ ମୂଲ୍ୟବୋଧକୁ ଓ ବିବେକୀ ବିଚାରକୁ ସେ ବେଶୀ ଦାମୀ ଭାବନ୍ତି, ନିଜେ ତାହାରି ଉପରେ ଅନୁପ୍ରାସ ଦିଅନ୍ତି । ତାଙ୍କଠି ଅହମିକା ନାହିଁ, ଆଶା ନିରାଶା ନାହିଁ, ସେ ବିଚକ୍ଷଣଭାବେ ବୁଦ୍ଧିମାନ୍ ଓ ଅସାଧାରଣ ଭାବରେ କର୍ମଠ । କିନ୍ତୁ ସେ ସମ୍ପୂର୍ଣ୍ଣ ଅନାସକ୍ତ, ସବୁଥିରେ ଈଶ୍ୱରଙ୍କ ଉପରେ ନିର୍ଭର । ଦୈନିକ ୧୮ ଘଣ୍ଟା ଚେଇଁବା ଭିତରୁ ତାଙ୍କର ପ୍ରାୟ ୩ ଘଣ୍ଟା କଟେ ପୂଜାରେ ଓ ଧର୍ମଶାସ୍ତ୍ର ପଢ଼ାରେ, ନିତ୍ୟକର୍ମ ଛଡ଼ା ଆଉ ପ୍ରାୟ ୧୪ ଘଣ୍ଟା ନିଜ ଧନ୍ଦାରେ, ବୟସ ପ୍ରାୟ ୭୦ ହେବ ।

ମାଲ୍‌ଗୋଦାମ୍‌ରେ ବ୍ୟବସାୟ ଆରମ୍ଭ କରି କଣ୍ଟ୍ରୋଲ୍ ଆରମ୍ଭ ବେଳୁ ସେ ସରକାରୀ ପର୍ଚ୍ଚେଜିଂ ଏଜେଣ୍ଟ୍ ହେଲେ । ତା'ପରେ ନାନା ବ୍ୟବସାୟ ସଂସ୍ଥାରେ ଡାଇରେକ୍ଟର ବା ପୃଷ୍ଠପୋଷକ ହେଲେ ଓ କଟକରେ ଗୋଟିଏ ବଡ଼ ଚାଉଳକଳ ବସାଇଲେ, ସେଠି ଅଟା ଓ ଗୋରୁଖାଦ୍ୟ ବି ତିଆରି ହେଲା । କଟକରେ ମହତାବ୍ ରୋଡ୍ (ଛତ୍ରବଜାର)ରେ ସେ ଥାଆନ୍ତି । ସେ ଓଡ଼ିଶା ବ୍ୟବସାୟୀ ସଂଘର ସଭାପତି ହେଲେ ।

ଗୁଣରେ ସେ କାଶୀନାଥ ମହାନ୍ତିଙ୍କ ପ୍ରତିରୂପ । ଜଣେ ସଚ୍ଚୋଟ, ନୀତିମନ୍ତ, ବିବେକୀ, ହୃଦୟବାନ୍, ମର୍ଯ୍ୟାଦାବନ୍ତ, ବୁଦ୍ଧିମାନ୍, ଅଭିଜ୍ଞ ବ୍ୟକ୍ତି ଓ ବ୍ୟବସାୟୀ ହିସାବରେ ସେ ଖୁବ୍ ଜନପ୍ରିୟ ଓ ସମ୍ମାନିତ । ଯେ ଯାହା ଭାବୁ, ସେ ଆପଣା ନୀତିରୁ ଏପଟ ସେପଟ ହୁଅନ୍ତି ନାହିଁ, ଆପଣା ବିଚାରରେ ଚଳନ୍ତି, ଆପଣା ପ୍ରତିଶ୍ରୁତି ରଖନ୍ତି, ତାଙ୍କ ବିଚାର ଉପରୋଧହୀନ, ସେ ସ୍ପଷ୍ଟବାଦୀ । ଧନ ଅର୍ଜ୍ଜନ ଓ ବ୍ୟବସାୟ କ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସ୍ଥାନକୁ ଉଠି ମଣିଷ ତଥାପି କେମିତି ତା ମନୋବଳ, ବିଚାର ଓ ଆଚରଣ ଦ୍ୱାରା ବିନମ୍ର, ନିରୀହ, ଅନାସକ୍ତ ରହିପାରେ, ନିରହଙ୍କାର, ନିରାଡ଼ମ୍ବର, ନିରାଭରଣ ହୋଇ ସର୍ବଦା ଭଗବତ୍ ସ୍ମରଣ କରି କରି କଠିନ ଶ୍ରମମୟ ଜୀବନ ଆଦରି ନେଇପାରେ,

ଗୀତାର ଉପଦେଶକୁ ଆପଣାର ସାଧାରଣ ଜୀବନରେ କେତେ ଅଂଶରେ ଆଚରଣ କରିପାରେ, ଫଳ ପ୍ରତି ବୀତସ୍ପୃହ ରହିପାରେ, ଲୋକଚରିତ୍ର ଅଧ୍ୟୟନରେ ଅସାଧାରଣ ପାରଦର୍ଶିତା ଓ ଅଭିଜ୍ଞତା ଥାଇ ଉଦାର ଓ କ୍ଷମାଶୀଳ ହୋଇପାରେ, ସେ ତାହାରି ଗୋଟିଏ ଅଦ୍ଭୁତ ଦୁଷ୍ପ୍ରାପ୍ୟ ଉଦାହରଣ । ମୁଁ ଏ ବିଚିତ୍ର ଚରିତ୍ରକୁ ପାଖରୁ ଦେଖିବାକୁ ଯୋଗ ପଡ଼ିଲା ଆହୁରି ୧୦/୧୨ ବର୍ଷ ପରେ ବା ଆହୁରି ଡେରିରେ, ୧୯୩୦ରେ ନୁହେଁ । ସେତେବେଳେ ମୋର ବିଶ୍ୱାସ ଜନ୍ମିଲା ଯେ, ବୃତ୍ତିଗତ ଶ୍ରେଣୀ ବିଭାଗ ଦ୍ୱାରା କାହାରି ମଣିଷପଣିଆକୁ ମୂଲ୍ୟ ଦେଇହୁଏ ନାହିଁ, ଜଣେ ବ୍ୟବସାୟୀ ବା ପୁଞ୍ଜିପତି ହେଲା ବୋଲି ଯେ ସେହି କାରଣରୁ ତା'ର ମଣିଷପଣିଆ ଊଣା ହୋଇଯାଏ, ତା ସତ ନୁହେଁ ।

ସେ ତାଙ୍କର ଝିଅକୁ ଓ ପୁଅମାନଙ୍କୁ ଉଚ୍ଚଶିକ୍ଷା ଦେଲେ । ବଡ଼ପୁଅ କାର୍ତ୍ତିକ ପ୍ରସାଦ ଯନ୍ତ୍ରପାତି ବ୍ୟବସାୟ କଲା । ଆର ପୁଅ ଗଣେଶ ପ୍ରସାଦ ଆମେରିକାରେ ମେଟାଲର୍ଜିରେ ଏମ୍. ଟେକ୍ ଓ ପିଏଚ୍.ଡି. ସାରି ଫ୍ଲୋରିଡ଼ା ୟୁନିଭର୍ସିଟିରେ ସେହି ବିଦ୍ୟାରେ ମୁଖ୍ୟ ଅଧ୍ୟାପକ ହେଲା, ଝିଅ ଏମ୍.ଏ. ପଢ଼ିଲା, ବିଭା ହେଲା, ଦେବୀ ପ୍ରସାଦ ରାୟପୁରରେ ପବ୍ଲିକ୍ ସ୍କୁଲରେ ପଢ଼ି ବ୍ୟବସାୟ ଧରିଲା । ସତ୍ୟ ପ୍ରସାଦ କଲେଜ୍‌ରେ ପଢ଼ିଲା । ନାତିନାତୁଣୀମାନେ ଭଲ ଛାତ୍ର ହେଲେ ।

ବଂଶୀଧରଙ୍କ ତଳେ ଦିବାକର । ଗାଁ'ରେ ରହନ୍ତି, ଜମିବାଡ଼ି ବୁଝନ୍ତି, କଳିକଜିଆ ଭାଙ୍ଗନ୍ତି, ଗାଁ'ର ଉନ୍ନତିରେ ଓ ଗାଁ ଅଞ୍ଚଳରେ ପରର ଭଲମନ୍ଦରେ ସାହାଯ୍ୟ କରନ୍ତି । ସ୍ନେହୀ, ଶାନ୍ତ, ସରଳ, ନମ୍ର, ଉଦାର ମଣିଷ, କୌଣସି ଅଡୁଆରେ ନ ଥାନ୍ତି, ସବୁବେଳେ ପ୍ରସନ୍ନ, ଖୁବ୍ ମେଳାପୀ । ତାଙ୍କ ସାଧୁତା ଓ ନିରପେକ୍ଷ ମତ ଉପରେ ଗାଁ ଲୋକଙ୍କର ଅଟଳ ବିଶ୍ୱାସ । ସେ ଗାଁକୁ ଭଲ ପାଆନ୍ତି, ଶାନ୍ତି ଭଲ ପାଆନ୍ତି । ସେ ଚେହେରାରେ ତାଙ୍କ ବାପାଙ୍କ ପରି, ଡେଙ୍ଗା, ଶ୍ୟାମଳ ବର୍ଣ୍ଣ । ତାଙ୍କର ଗୋଟିଏ ପୁଅ, ନୃସିଂହ ପ୍ରସାଦ, ସେ ବି ଗାଁରେ ହିଁ ରହିଲା । ୧୯୩୦ରେ ଦିବାକର ନାନ୍‌ପୁରରେ ଗୋଟିଏ ଗୋଦାମ ଆରମ୍ଭ କରିଥାନ୍ତି, କିନ୍ତୁ ତାଙ୍କର ମାର୍ଗ ବ୍ୟବସାୟ ନୁହେଁ, ଜଞ୍ଜାଳ ତାଙ୍କୁ ଅଡୁଆ ।

ବଂଶୀଧରଙ୍କୁ ତାଙ୍କ ଦାଦି ହରେକୃଷ୍ଣ ପୁଅ କଲେ । କିନ୍ତୁ ପୁଅ କରିବା ନ କରିବାର ବିଶେଷ ତାତ୍ପର୍ଯ୍ୟ ନ ଥିଲା । ସେମାନେ ସମସ୍ତେ ବଡ଼ ସାନ ମାନି ସ୍ନେହ ମମତାରେ ବାନ୍ଧିହୋଇ ଏକ ପରିବାର ପରି ଚଳୁଥିଲେ, ପାତର

ଅନ୍ତରର ପ୍ରଶ୍ନ ନ ଥିଲା । ସେ ସଂହତି ଏବେ ବି ପୁରୁଣା ପରିବାରମାନଙ୍କଠି ରହିଛି । ତାହାର ଗୋଟିଏ ବିଶିଷ୍ଟତା ଥିଲା, ଖାଲି ନିଜ ଘରେ କି ଗାଁରେ ନୁହେଁ, ଅନ୍ୟ ଗାଁ'ର ବନ୍ଧୁବାନ୍ଧବମାନଙ୍କୁ 'ପଚାରିବା' । 'ପୁଣ୍ୟ-ପର୍ବ'ରେ ସେମାନଙ୍କର ଯେତେବେଳେ ବନ୍ଧୁବାନ୍ଧବଙ୍କ ପାଇଁ ଲୁଗା କିଣା ହୁଏ, ସେ ଗୋଟିଏ ଦୃଶ୍ୟ, କେଉଁ ଗାଁ'ରେ ଥିବା କାହାର କେଉଁ ପୁଅ କି ଝିଅକୁ କେଡ଼େ ଲୁଗା ଦରକାର, ବଂଶୀବାବୁ ତା ବି ମନେ ରଖିଥାନ୍ତି । ନିଜେ କିଣି ଆଣନ୍ତି । ଏ ଯୁଗରେ ବନ୍ଧୁବାନ୍ଧବ ସମ୍ପର୍କ ଲୁପ୍ତ ହୋଇଯାଉଛି, ପରିବାର ଆପଣାସାର୍ଥିକା, କିନ୍ତୁ ଅନ୍ୟାନ୍ୟ ଅନେକ ପୁରୁଣା ସଂସ୍କାର ପରି ସେମାନେ ସେ ପ୍ରାଚୀନ ଆଚାରକୁ ସଂସ୍କାର ପରି ମାନନ୍ତି ।

ତିନି ଭଉଣୀରୁ ବଡ଼ ଭଉଣୀ ବିଭାହେଲେ ଚନ୍ଦ୍ରକିଶୋର ଦାସ (ବେଙ୍ଗବାବୁ)ଙ୍କ ତଳଭାଇ ଦେବେନ୍ଦ୍ର କିଶୋରଙ୍କୁ, ସେ କଟକ ଜିଲ୍ଲାବୋର୍ଡ଼ ଭାଇସ୍ ଚେୟାରମ୍ୟାନ୍ ଥିଲେ । ସେମାନେ ବି ପୁରୁଣା ଖାନ୍‌ଦାନ୍ ଘର, ଫକୀରମୋହନ ସେନାପତିଙ୍କୁ ଭୂୟାଁମାନେ ବନ୍ଦୀ କରିଥିଲାବେଳେ ଏତେ ପାନ ଏତେ ଗୁଆ ପଠାଅ ବୋଲି ସେ ଯେଉଁ ଓଡ଼ିଶା ଗଡ଼ଜାତ ମାହାଲ ସୁପରିଣ୍ଟେଣ୍ଡେଣ୍ଟ୍ ରାୟବାହାଦୁର ନନ୍ଦକିଶୋର ଦାସଙ୍କୁ ଚିଠି ଲେଖିଥିଲେ, ସେ ସେମାନଙ୍କ ଅଜା । ତା ତଳ ଭଉଣୀ ବିଭାହେଲେ ଶିକ୍ଷାବିତ୍ ବନବିହାରୀ ପଟ୍ଟନାୟକଙ୍କୁ ।

ସବ୍‌ବା ସାନଭଉଣୀ, ଯାହା ଜନ୍ମଦିନ ଭୋଜିକୁ ମୁଁ ଯାଇଥିଲି । ତା ନାଁ ଆଦରମଣି, ଡାକ ନାଁ ଗଜି । ତା'ର ଯୋଡ଼ିଏ ବୋଉ, ଯେ ଜନ୍ମ ଦେଇଥିଲା, ଦୁଧ ଦେଇଥିଲା, ତା'ର 'ଦୁ'ବୋଉ, ଭାରି ସୁନ୍ଦର ଚେହେରା । ଆରଟି ତା 'ବୋଉ', ଯେ ତାକୁ ପାଳିଥିଲା, ଜୀବନରୁ ବଳି ଭଲ ପାଉଥିଲା ।

କାଶୀନାଥ ମହାନ୍ତିଙ୍କ ତଳେ ଶ୍ୟାମସୁନ୍ଦର, ତାଙ୍କର ଯୋଡ଼ିଏ ଝିଅ, ବଡ଼ଝିଅ ନରୁଆରେ ବିଭା ହୋଇଥିଲା, ସାନଝିଅ ସୁପ୍ରସିଦ୍ଧ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ବଡ଼ଭାଉଜ ।

ତାଙ୍କ ତଳେ କୃଷ୍ଣଚରଣ, ସେ ବାତୁଳ ଥିଲେ, ମରିଗଲେ ।

ସବା ସାନଭାଇ ହରେକୃଷ୍ଣ । ସେ ବି ଉଚ୍ଚତାରେ ଛ' ଫୁଟ୍ ହେବେ, ଗୋଲ୍‌ଗାଲ୍, ଖୁବ୍ ମୋଟାସୋଟା, ଶାନ୍ତଶିଷ୍ଟ ମେଳାପୀ ମଣିଷ, ଏଣ୍ଟ୍ରାନ୍‌ସ ପଢ଼ିଥିଲେ, ସେ ଖଣ୍ଡପଡ଼ାରେ ଦେବାନ୍ ଥିଲେ । ବଂଶୀଧର ଓ ତାଙ୍କ ସାନଭଉଣୀକୁ ପୁଅ ଝିଅ କରିଥିଲେ ।

ସେମାନଙ୍କ ଦାଦି ନୀଳକଣ୍ଠ, ସେ କୃପାସିନ୍ଧୁଙ୍କର ସାନଭାଇ । ନୀଳକଣ୍ଠଙ୍କର

ତିନିପୁଅ, ରଘୁନାଥ, କାହ୍ନୁଚରଣ, ଗୋପୀନାଥ । —ନାଥ ପରେ କାହ୍ନୁଚରଣ ଓ ତା'ପରେ ଗୋପୀନାଥ ନାଁ ଦେବା ଏ ଆମ ଘର ଛଡ଼ା ଅନ୍ୟ ଗୋଟିଏ ଉଦାହରଣ ।

ରଘୁନାଥଙ୍କର ତିନିପୁଅ, ଜଣେ ଦର୍ପନାରାୟଣ, ସେ ହାଇଦ୍ରାବାଦ୍‌ରେ ମିଲିଟେରି ବିଭାଗରେ ଚାକିରି କରୁଥିଲେ । ପଛେ ଅବସର ନେଲେ, ପିଲାଏ ଉଚ୍ଚଶିକ୍ଷିତ, ଭଲ ଛାତ୍ର ହେଲେ, ସେମାନେ ଉଦ୍‌ଯୋଗୀ, ବଡ଼ପୁଅ ଯତୀନ୍ଦ୍ରମୋହନ ଲେଖକ ହେଲା ଓ ଠାକୁର ଅନୁକୂଳଚନ୍ଦ୍ରଙ୍କ ଭକ୍ତ ହେଲା । କାହ୍ନୁଚରଣଙ୍କର ଯୋଡ଼ିଏ ପୁଅ, ଗୋପୀନାଥଙ୍କର ଗୋଟିଏ ଝିଅ, ସେ ପାଟନାର ଜଗତ୍‌ବାବୁଙ୍କ ସ୍ତ୍ରୀ ବସନ୍ତଦେବୀଙ୍କ ମା' ।

ଏ ସମସ୍ତିଙ୍କ ମୂଳରେ ଯୋଡ଼ିଏ ମଣିଷ, ଜଣେ ମାୟାଧର ମହାନ୍ତି ଓ ତାଙ୍କ ସ୍ତ୍ରୀ । ଗୋତ୍ର ଭାରଦ୍ୱାଜ ।

ଏମିତି ସେ ଗାଁରେ ବହୁତ କରଣ ପରିବାର । ପ୍ରାୟ ଦୁଇଶହ ଘର, ସେମାନଙ୍କର ବହୁତ କାହାଣୀ, କିଏ କେତେବେଳେ କେଉଁ କ୍ଷେତ୍ରରେ ନାଁ ଡାକ ହୋଇଥିଲେ ଓ ହୋଇଛନ୍ତି । ସେହିପରି କେତୋଟି ପ୍ରାଚୀନ ବ୍ରାହ୍ମଣ ପରିବାର, ହୋତା, ରଥ, ପଣ୍ଡା । ଆଉ ଅନ୍ୟମାନେ ।

ମହାନଦୀ ଉପତ୍ୟକାର ପଞ୍ଚ 'ବ' କାର ହୋଇ ପାଞ୍ଚଟି ପୁରୁଣା କରଣ ପେଣ୍ଠ, ଥଟ୍ଟାରେ ଚିଡ଼େଇବାକୁ ଢଗ କୁହାଯାଏ—

"ବିରୋଳ ବିରିବାଟିଶ୍ଳ ବୋଧପୁର ତଥୈବଚ
ବିରିଡ଼ି ବେଣ୍ଟକାରଣ୍ଡ ପଞ୍ଚୈତେ—"

ଯେତେ ଗରିବ ହେଲେ ସୁଦ୍ଧା ନିଜେ ହଳ ଧରନ୍ତି ନାହିଁ, ମୂଲ ଲାଗନ୍ତି ନାହିଁ, ପ୍ରାଚୀନ ଆଭିଜାତ୍ୟ ରୋକିଦିଏ । କିଛି ନ ଥିଲେ ବି ସେମାନେ ଅଭିଜାତ, ସାମନ୍ତ, 'ଶ୍ରୀକରଣ ଶ୍ରୀ—' । ଏ ଯୁଗର ଧାରଣା ଘେନି ଆମେ ତାଙ୍କୁ ହସିବୁଁ, କହିବୁଁ ତୁମେ ମଧ୍ୟଯୁଗୀୟ, ସେ ଯୁଗ ଧାରଣା ଘେନି ସେମାନେ ବି ଆମକୁ ହସନ୍ତେ, କହନ୍ତେ ତୁମେ ଅପଦାର୍ଥ । ଜମି ଜମିଦାରି ଘେନି ହାତରେ ନ କରି ଅନ୍ୟଦ୍ୱାରା କାମ କରାଇ ସେମାନେ ବଞ୍ଚୁଥିଲେ । କେତେବେ ରାଜାଘରେ ଚାକିରି କରି ବଞ୍ଚୁଥିଲେ । ସମୟ ବଦଳିଗଲା, ପୁରୁଣା ସଂସ୍ଥା ଦୁର୍ବଳ ହେଲା, ପୁରୁଣା ଘରର ଶିରୀ ତୁଟିଲା, କିନ୍ତୁ ଅନୁଧାନ କରିବା କଥା ଯେ, ସମୟ ବଦଳିଗଲା ପରେ ସେମାନେ ତା ସହିତ ଖାପିଲେ

କେମିତି । ପ୍ରାଚୀନ ସଂସ୍କାରକୁ ସତେ ଯେମିତି ଭଗବାନଙ୍କ ଆଦେଶ ଭାବି ସେମାନେ ବେଳରେ ମାଳି ନାଉଥିଲେ, ଘର ଆଗରେ ଚଉରା ରଖୁଥିଲେ, ନାନାପ୍ରକାର ପ୍ରଥା ମାନୁଥିଲେ । ଜୋତା ରହିବ ଦାଣ୍ଡ ଘରେ । ଲୁଙ୍ଗୀ ପିନ୍ଧିଲେ ଦୂର୍ ଦୂର୍ କରିବେ, "ଛି ! ଫାଲ୍‌ଟା ମାରିଚି !" ଅପାଘର ଦାଣ୍ଡପିଣ୍ଡାରୁ ଠାଏ ତଳକୁ ଓହ୍ଲେଇ ପଡ଼ିଲି, ଅପା କହିଲା "ଛୁଆଁତା ହେଲୁରେ, ଲୁଗା ବଦଳ୍, ସେଠିକି ଗଲେ ପରା ଛୁଆଁତା ହୁଅନ୍ତି !" ଆଚାର ବ୍ୟବହାରରେ ଏପରି ଅନେକ କଥା କରିବାକୁ ପଡ଼ିବ, ଯାହାକୁ କହନ୍ତି 'ସଣ୍ଣା' । କେତେ ବିଧି ସିଧି ନିରର୍ଥକ, ନିଃସାର, ଖାଲି ଅନ୍ଧବିଶ୍ୱାସରୁ ତା'ର ଜନ୍ମ । କିନ୍ତୁ ଏସବୁ ମିଶି ଶିଖାଏ ଗୋଟାଏ ସ୍ୱଷ୍ଟ ନୀତିରେ ଚାଲିବାକୁ ଅଭ୍ୟାସ, ସେଥିପାଇଁ ଧୈର୍ଯ୍ୟ ସହକାରେ ଶୃଙ୍ଖଳା ମାନିବା ଅଭ୍ୟାସ ଶିଖାଏ, ସେ ନୀତିର ଲକ୍ଷ୍ୟ ଓ ଭିତ୍ତି ହିସାବରେ କେତେକ ମୌଳିକ ମୂଲ୍ୟବୋଧ ଶିଖାଏ ।

ସେମାନଙ୍କର ସେ ମୂଲ୍ୟବୋଧରେ ପ୍ରଧାନ ଥିଲା ଇଜ୍ଜତ୍ ସ୍ଥାନ । ସେମାନେ ଭାବୁଥିଲେ, ଜୀବନଠଉଁ ଇଜ୍ଜତ୍ ବଡ଼, ସୁଖ ଓ ନିରାପତ୍ତାଠୁଁ ତ ଇଜ୍ଜତ୍ ବହୁତ ବଡ଼ । ନଅଙ୍କ ଦୁର୍ଭିକ୍ଷ ବେଳେ ତାଙ୍କ ଭିତରୁ ଯେଉଁମାନେ ଅଭାବରେ ପଡ଼ିଲେ, ଅନେକେ ଅନ୍ନଛତ୍ରକୁ ଗଲେ ନାହିଁ, ଘରେ କବାଟ କିଳିଦେଇ ଉପାସରେ ମଲେ । ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁ ପୁରୀ ଜିଲ୍ଲା ଦୁର୍ଭିକ୍ଷବେଳେ ଦେଖିଥିଲେ, ସେମାନେ କବାଟ କିଳିଥିଲେ, ସେ କାନ୍ଦି କାନ୍ଦି କବାଟ ସାମ୍ନାରେ ସାହାଯ୍ୟ ଥୋଇଦେଇ ପାଟିକରି ଡାକି ଡାକି ଆସନ୍ତି ।

ଏ ଯୁଗ ଆସିଲା, ବେଳ ବଦଳିଲା । ସେମାନଙ୍କ ଇଜ୍ଜତ୍‌ବୋଧ ସେମାନଙ୍କୁ ଆହୁରି ତତ୍ପର, ଉଦ୍‌ଯୋଗୀ, ପରିଶ୍ରମୀ କଲା । ଘରେ ମାଇପେ ହାତେ ହାତେ ସବୁ କାମ କଲେ, ଜମିବାଡ଼ି, ଭାଗଚାଷ, ଗଛମାଛ ଖବର ବି ବୁଝିଲେ, ମିଣିପେ ଦାନ୍ତ ଚିପି ଦୁଃଖକଷ୍ଟ ଦେହେ ଦେହେ ସହି ବିଦେଶ ଗଲେ, କିଏ ଆସାମ କି ବର୍ମା ସେଟ୍‌ଲ୍‌ମେଣ୍ଟ୍ କାମରେ, କିଏ ହାଇଦରାବାଦ୍ କି ଲାହୋର୍, କିଏ ଓଡ଼ିଶା ଗଡ଼ଜାତ, କିଏ କୁଆଡ଼େ । ସେହି ଇଜ୍ଜତ୍‌ବୋଧ ହିଁ ବାଧକଲା ପିଲାଙ୍କୁ ପାଠ ପଢ଼ାଇବା ପାଇଁ, "ପଢ଼ ନ ହେଲେ ମର, ଅନ୍ୟ ବାଟ ନାହିଁ, ଯଦି ପଢ଼ିବ ତେବେ 'ମଣିଷ ହେବ' ।" ସେହି 'ମଣିଷ ହେବା' ମାନେ କିଛି ଗୋଟାଏ ସରକାରୀ ଚାକିରି ପାଇବା, କ୍ୱଚିତ୍ କିଛି ଅର୍ଥକାରୀ ସ୍ୱାଧୀନ ବୃତ୍ତି, —ଓକିଲ କି ଡାକ୍ତର କି ଛୋଟ ଅବା ବଡ଼ ବ୍ୟବସାୟୀ । ଯେ ତା ନ ପାଇଲେ ସେ ବି ବୁଦ୍ଧି ଖେଳାଇ କିଛି ଚାକିରି

ଖୋଜିଲେ, କାହା ଗୁମାସ୍ତା କି ପାଞ୍ଜିଆ, ଚାହାଳି ଖୋଲିଲେ, କି ଗାଁରେ ଦୋକାନ ପକାଇଲେ, କେଉଁଠି ସଙ୍ଗୀତ ଆଖଡ଼ା 'ଗୁରୁ' କି ମୃଦଙ୍ଗ ଶିଖାଇବା ଗୁରୁ ହେଲେ, ସହରରେ କେଉଁଠି କିଛି ନିଯୁକ୍ତି ଖୋଜିଲେ, ଚାଲିଲେ କେଉଁ କଳକାରଖାନାକୁ ।

ବଞ୍ଚିବାକୁ ନାନା ବୁଦ୍ଧି, ଭଲ ଅବା ମନ୍ଦ ।

ମନ୍ଦ ବୁଦ୍ଧି କଲେ ଗାଁରେ ନୁହେଁ, ଏପରି ଦୂରରେ କେଉଁଠି, ଯେଉଁଠୁଁ ସେ ଖବର ଗାଁକୁ ଆସିବ ନାହିଁ, ନିନ୍ଦା ରଟିବ ନାହିଁ । ଇଜ୍ଜତ୍ ତଳେ ପଡ଼ିଲା ଭଳି ଗାଁରେ କିଛି କରିବାକୁ ହେବନାହିଁ । ସେଠି ସେହି ପୁରୁଣା ରାୟ, ''ଛି ଛି ! ପେଟ ପୋଡ଼ିଲା ବୋଲି ହାଡ଼ି ଘରେ ପଶିଲା !''

ଥାଉ ଘର ଭିତରେ ନିଃସହାୟ ରୋଗୀ କି ରୋଗିଣୀ, ଔଷଧ ଓ ଚିକିତ୍ସା ନ ପାଇ ସେ ଧୀରେ ଧୀରେ ମରୁଛି, ଥାଉ ଚିରାକନା – କୁଢ଼, ହାଣ୍ଡି ଖାଲି ପଡ଼ିଥାଉ, ଦାଣ୍ଡ ଚିକ୍କଣ ଥିବ, ଦାଣ୍ଡକୁ ବାହାରିଲେ ମୁହଁ ଚିକ୍କଣ ଥିବ, ଦେହରେ ଖଣ୍ଡେ ସଫାଲୁଗା, ତେନ୍ତୁଳିଆ ବିଛାପରି ସେ ଲୁଗାରେ ଲମ୍ବା ବିଛା-ବାଳିଆ ସିଲେଇ ଜାଗାଟା କେଉଁଠି ଭିତରେ ଖୋସା ହୋଇଥିବ, କିଏ ବା ପରକୁ ଶୁଣେଇ ଶୁଣେଇ ଥୋଡ଼ାଏ ଡମ୍ଫ କଥା କହୁଥିବ, –ଖାଲି ଗୋଟାଏ ଭେକ । କିଏ ବା ସେପରି କହୁନାହିଁ, ତୁନି ଅଛି, କିନ୍ତୁ ସେ ଦାନ୍ତ ଚିପିଛି । ଉଦ୍ଦେଶ୍ୟ ସେହି ଗୋଟାଏ, ନିଜର ଦାରିଦ୍ର୍ୟ ଅପାରଗତାର ଖବର ପଦାରେ କେହି ଜାଣିବେ ନାହିଁ, ସେସବୁ 'ଘରର ଗୁମର, ଫିଟିଗଲେ ମହତ ତଳେ ପଡ଼େ ।'

ସବୁବେଳେ ସେହି ''ଇଜ୍ଜତ୍ – ଇଜ୍ଜତ୍ – ଇଜ୍ଜତ୍ ।'' ସେହିଆ ଦେଖାଇ ହେବାକୁ ଅନେକଙ୍କର ଉଦ୍ଧତ, ଗର୍ବିତ ଭାବ, ନାକ ଅଗରେ ଅଇଁଗୁଣ, ଅଭିମାନ । ବିବାହ ଉତ୍ସବମାନଙ୍କରେ କେତେ ଉଭଟ ବ୍ୟବହାର, କେତେ ଅଡ଼ାଅଡ଼ି ରୁଷାରୁଷି । ମୋର ମନେପଡୁଛି କଲେଜ୍ ପଢ଼ା ଶେଷଆଡ଼କୁ କାହା ବିଭାଘରକୁ ମୁଁ ଯାଇଥାଏଁ, ହଠାତ୍ ଭଣ୍ଡାରୀ ହଜିଗଲା, କୁଣିଆ ସାଥୀତମାନେ ଠିଆହେଲେଣି, ଗୋଡ଼ ଧୋଇଲେ ଫୁଲଚନ୍ଦନ ନାଇବେ, ମହାପ୍ରସାଦ ପାଇବେ । ତେଣୁ ମୁଁ ସ୍ୱେଚ୍ଛାସେବକ ହୋଇ କାନ୍ଧରେ ଗାମୁଛା ପକାଇ ବାଲ୍ଟି ପାଖରେ ଢାଳ ଧରି ଠିଆହେଲି, ଡାକିଲି ''ଆସିବା ହେଉନ୍ତୁ ।'' ଜଣେ ମୁରବ୍ବି ଭଳିଆ କୁଣିଆ ଆସି ପିଢ଼ା ଉପରେ ଜୋତା ପିନ୍ଧା ଗୋଡ଼ ଥୋଇଦେଲେ । ଜୋତାଟି ପୁରୁଣା, ତାଳିପକା କିନ୍ତୁ ସେଥିରେ କାଦୁଅ ବି ଲାଗିନାହିଁ । କହିଲି ''ଆଜ୍ଞା ଜୋତା ଖୋଲନ୍ତୁ ।''

ସେ ଗମ୍ଭୀର ହୋଇ କହିଲେ, ''ପାଦ ଧୋଇଦିଅ ।''

''ଆଜ୍ଞା ଦୟାକରି ଜୋତାଟା ଓହ୍ଲାନ୍ତୁ ।''

ସେ ଜୋତାମଡ଼ା ପାଦକୁ ବଢ଼ାଇଦେଇ କହିଲେ ''ପାଦ ଧୁଅ, ଡେରି ହେଲା ।''

ମୁଁ ତାଙ୍କ ମୁହଁକୁ ଅନାଇଁ ଟିକିଏ ହସିଦେଇ ସେ ଜୋତାମଡ଼ା ପାଦ ଉପରେ ଲୋଟାଏ ପାଣି ଢାଳିଦେଲି ।

ସେ ଗର୍ଜି ଉଠି କହିଲେ ''ଏଁ ! ଏଡ଼େକଥା ! ମତେ ଘାସକଟା କରି ପାଇଲ ? ଜାଣିଚ ମୁଁ କିଏ ? ମୁଁ କିଏ ?

ରାଗରେ ''ମୁଁ କିଏ ? ମୁଁ କିଏ ?'' ବୋଲି ଚଢ଼ି ଚଢ଼ି ରଡୁଥାନ୍ତି, ସତେ ଯେପରି ''କୋଽହମ୍ ? କୋଽହମ୍ ?''

ତା'ପରେ ତାଙ୍କ ଦଫାଦାର୍ ପିତା ସେଟ୍ଲମେଣ୍ଟ ଅମିନ୍ ଭ୍ରାତା ଆଦିଙ୍କ ପରିଚୟ ଗାଇ କହିଲେ, ''କୋଡ଼ିଏ ବର୍ଷ ହେଲା ମୁଁ – ପ୍ରେସ୍‌ରେ କମ୍ପୋଜିଟର୍, ମତେ କ'ଣ କରି ପାଇଲ, ଏଁ ?''

ସେଠି ବି ଇଜ୍ଜତ୍‌ର କାଚ ଥାଳିଆ ତଳେ ପଡ଼ିଯାଇଥିଲା ଭାବି ତାଙ୍କର କ୍ରୋଧ ଉପୁଜିଥିଲା ।

କିନ୍ତୁ ମାନ ମହତ, ସଣ୍ଣା, ସଂସ୍କୃତି, ମର୍ଯ୍ୟାଦାବୋଧ, ସୌଜନ୍ୟ ଶିଷ୍ଟାଚାର, ଆତିଥେୟତା ଇତ୍ୟାଦି ଗୁଣରେ ବୋଧପୁର ଓ ତା' ପରମ୍ପରାର ନାଁ ଥିଲା । ଅନ୍ୟାନ୍ୟ ଅନେକ ଗାଁରେ ସେକଥା ପଡ଼େ, ତା'ର ଦୃଷ୍ଟାନ୍ତ ଦିଆହୁଏ, ପୁରୁଣା କରଣ ସମାଜର ରୀତିନୀତି ଓ ଚଳଣି ବିଷୟରେ ବୋଧପୁରରେ ଚଳୁଥିବା ଆଚାରକୁ ନଜିର ଦିଆହୁଏ । ସେଠି ଅଧିକାଂଶ କରଣ ପରିବାରଙ୍କର ଜମିବାଡ଼ି ଥିଲା, ଅବସ୍ଥା ସ୍ୱଚ୍ଛଳ ଥିଲା । ସମସ୍ତିଙ୍କ ଘର ମେଲା ଫରଚା, ଦମ୍ଭିଲା, ଖଞ୍ଜାରେ ବହୁତ ଘର, ଦାଣ୍ଡଠୁଁ ଘରପଣ୍ଡନ ଛ'ଫୁଟ ଉଚ୍ଚ, ବାରିଆଡ଼େ ପରିବା ବାରି, ତୋଟା, ପୋଖରୀ । ବହୁତ ନଡ଼ିଆଗଛ ଓ ଆମ୍ବଗଛ, ଘରଗୁଡ଼ିକ ଯେପରି ବଗିଚା ଓ ତୋଟା ଭିତରେ ରହିଥାଏ । ଘର କତିରେ ଉଚ୍ଚ ପାଳଗଦା, ଗୁହାଳରେ ଗାଇ ବଳଦ, କାହାରି କାହାରି ଅଲଗା ଧାନ ଅମାର । ଅନେକ ଘର ପୁରୁଣା ଖାନ୍ଦାନି, ସେତେବେଳେ ବି ତାଙ୍କର ବହୁତ ସମ୍ପତ୍ତିବାଡ଼ି ।

ଧାଡ଼ି ଧାଡ଼ି ଘର, ମାଳ ମାଳ ଘର, ବହୁତ ଖଞ୍ଜା, ଘରେ ଘରେ ଲୋକ ଭରି ।

ଦୁଆରମୁହଁ ତୁଳସୀ ଚଉରାମାନଙ୍କ ମୂଳେ ସଞ୍ଜ ସଳିତା ଜଳିଲା, ଘରୁ ଘରୁ ଝୁଣା ଧୂଆଁ ବାହାରି ଦାଣ୍ଡ ମହକିଲା, ପ୍ରତି ଘରୁ ଶଙ୍ଖ ବାଜିଲା, ଦାଣ୍ଡପିଣ୍ଡାରେ ଟିକିଳୁଆଙ୍କ ଚହଳ ଶୁଭିଲା, ଠାଏ ଠାଏ ଗାଈ ବାଛୁରୀ ଡକାଡକି ହେଲେ, ମୁଁ ଓ ମୋ ଅପା ଦିଅର ମୂଷା ଗଲୁଁ ଦେଉଳକୁ ଆଳତୀ ଦେଖି । ଗାଁ ମଝିରେ ନଡ଼ିଆ ଗଛ ବେଢ଼େଇ ହୋଇ ମନ୍ଦିର ବେଢ଼ା, ସେଥିରେ ଫୁଲବଗିଚା, ଶ୍ରୀ ଲକ୍ଷ୍ମୀନୃସିଂହ ମନ୍ଦିର । ମୁଖଶିଆଳି ସମେତ ଦେଉଳଟି ପୁରୁଣା, ଭିତରେ ସୁନାର ଲକ୍ଷ୍ମୀନୃସିଂହ ବିଗ୍ରହ, କେଉଁ ଶହ ଶହ ବର୍ଷର, ଶୁଣାଯାଏ, ସେ ବିଗ୍ରହ ପାଇକା ନଈର ଗହୀର ମଳିଆ ଗଣ୍ଡ ଭିତରୁ ମିଳିଥିଲେ । ବୋଧପୁରର ସେ ଇଷ୍ଟଦେବତା । ତାଙ୍କର ଜମିବାଡ଼ି, ବହୁତ ଯାନିଯାତ, ଖଞ୍ଜା ସେବକ ଓ ଭୋଗ । ବୀର କାହାଳି ବାଜିଲା, ଶଙ୍ଖ ବାଜିଲା, ଠାକୁରଙ୍କର ଆଳତି ହେଲା । ଗମ୍ଭୀର ଶାନ୍ତିମୟ ପରିବେଶ ।

ନୃସିଂହ ବୋଧପୁର ଗ୍ରାମବାସୀଙ୍କର ଇଷ୍ଟଦେବତା ।

ଗାଁ'ର ଅନ୍ୟପଟେ ବେଢ଼ା ଭିତରେ ଲୋକନାଥ ମହାଦେବ, ଆଉ ଠାଏ କୋଚିଳେଈ ଠାକୁରାଣୀ ।

ସେଦିନ ରାତି ଦଶଟା ବେଳ ହେବ, ଭାତ ନ ଖାଉଣୁ ମୁଁ ଶୋଇ ପଡ଼ିଥିଲି । ନିଦ ଭାଙ୍ଗିଯାଇ ଶୁଭିଲା ଦାଣ୍ଡଦୁଆରେ କିଏ ଥଟ୍ଟା କଲାପରି ଡାକୁଛି, ''ନାଗବାଲିରୁ କୁଣିଆ ଆଇଚନ୍ତି ପରା, ହୋ ନାଗବାଲି କୁଣିଆ !'' କିଏ ଯାଇ ପଦାରେ କ'ଣ କହିଦେଇ ଆସିଲା ।

ଅପା କହିଲା, ''କାଶୀନାଥ ନିଜେ ତତେ ଡାକି ଆସିଥିଲେ ରେ । ଯେମିତି ଶୁଣିଲେ ତୁ ଆସିଚୁ, ସେମିତି ନିମନ୍ତ୍ରଣ କରିବାକୁ ନିଜେ ଚାଲି ଆସିଲେ । ଆଜି ସେଇଠି ସମସ୍ତେ ଖାଇବା । ତାଙ୍କ ବଡ଼ପୁଅ ସାନ ଝିଅଙ୍କ ଜନ୍ମଦିନ ଯେ, ସେ ସବୁ ଗାଁ ଭାଇଙ୍କି ଡାକିଛନ୍ତି ।''

''ସେଇ ନିମନ୍ତ୍ରଣ କରୁଥିଲେ, ହୋ ନାଗବାଲି କୁଣିଆ ହୋ ନାଗବାଲି କୁଣିଆ !''

''ତୋର ଥଟ୍ଟା ହେବେ ମ, ସେ ପରା ମୋର ଅଜାଶଶୁର, ତତେ ନାତି ଲେଖା କଲେ ଆଉ କ'ଣ ।''

ଗଲୁଁ । ସେଇଠି ଦେଖିଲି କାଶୀନାଥ ମହାନ୍ତିଙ୍କି । ଦଣ୍ଡବତ ହେଲି ।

ପତ୍ର ପଡ଼ିଲା, ଲାଗିଲା । ବହୁତ ଲୋକ ଆସିଥାନ୍ତି । ସେ ବୁଲି ବୁଲି ପରସା ତଦାରଖ କରୁଥାନ୍ତି । ବେଳେ ବେଳେ ମଉଜି କଥା କହୁଥାନ୍ତି ।

ସେ ମୋ ଆଡ଼କୁ ନିଘା କଲେ । ମୁରୁକି ମୁରୁକି ହସୁଥାନ୍ତି । ପଚାରିଲେ "ତୁମ ବେକରେ ମାଳି ନାହିଁ କାହିଁକି ?" ସମସ୍ତଙ୍କ ଆଖି ମୋ ଉପରେ ପଡ଼ିଲା ।

ମନେ ନାହିଁ ମୁଁ କ'ଣ କ'ଣ କହିଲି, ମାଳି ପିନ୍ଧିବା ଆଦୌ ଦରକାର ନାହିଁ, ଧର୍ମ ପାଳିବା ସଙ୍ଗେ ମାଳିର ବି କିଛି ସମ୍ବନ୍ଧ ନାହିଁ, ଏଇଆ ମୁଁ ବୁଝାଇ କହିଲି । ସେ ସେମିତି ମୁରୁକି ମୁରୁକି ହସୁଥାନ୍ତି । ମୋ ସଙ୍ଗେ ଯୁକ୍ତି କରୁଥାନ୍ତି । ମୋ ମୁହଁକୁ ଆଖିକୁ ଅନାଉଁଥାନ୍ତି । ମୁଁ ନମ୍ର ଶାନ୍ତ ହୋଇ ମୋ ଯୁକ୍ତି କରୁଥାଏଁ, ଗୀତାରୁ କ'ଣ କହି ମୋ କଥାକୁ ସା' ଦେଲି, ସ୍ୱାମୀ ବିବେକାନନ୍ଦଙ୍କର କେତେଗୁଡ଼ିଏ ଲେଖା ପଢ଼ିଥିଲି, ସେଥିରୁ ବି କହିଲି । ସେ ତାଙ୍କ ମତ ଛାଡ଼ିଲେ ନାହିଁ, କିନ୍ତୁ ମୋ କଥା ଶୁଣି ଖୁସୀ ହୋଇ ଟିକିଏ ବାହ୍ ବାହ୍ କଲେ, ମୁଁ ତଳକୁ ମୁହଁ ପୋତିଲି, ଭାରି ଲାଜ ମାଡ଼ିଲା । ଅଚିହ୍ନା ହେଉନ୍ତୁ, ପ୍ରାୟ ସତୁରି ବର୍ଷ ବୟସ୍କ ମାନ୍ୟତା ସମାଜପତି, ଗୁରୁଜନ ସ୍ଥାନୀୟ ।

ମୁଁ ଆସିଲା ଉତ୍ତାରୁ ଅନ୍ୟମାନଙ୍କ ଆଗରେ ପ୍ରଶଂସା କରି କହିଲେ, "କେଡ଼େ ଟିକିଏ ପିଲା, ତଥାପି —" ଇତ୍ୟାଦି ।

ତହିଁଆରଦିନ ଅପା କାହାଠୁଁ ଶୁଣି ମତେ କୁଣ୍ଢାଇ ପକେଇଲା, ମୋ ଆଗରେ କହିଲାବେଳେ ତା ଆନନ୍ଦ କହିଲେ ନ ସରେ । ଯେପରି ସେ ମୋର କେଡ଼େ ବଡ଼ ସୌଭାଗ୍ୟ କି ଯଶପ୍ରାପ୍ତି ସମ୍ବାଦ ଶୁଣିଛି ! ତା ଆନନ୍ଦ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ସେ କହିଲା, "ଆରେ ତୁ ତାଙ୍କ କଥା ଜାଣିନାହୁଁ ? କେ଼ ତାଙ୍କ ଆଗରେ ମୁହଁ ଫିଟେଇବାକୁ ସାହସ କରନ୍ତି ନାହିଁଟି, ସେ ସାକ୍ଷାତ୍ କ୍ଷୁରଧାର, ଟିକିଏ ଭୁଲ୍ ହେଲେ ଜାଇଲ୍ ଧରିଦେବେ, ଆଉ ତୁ ଏଡ଼େ ବକଟେ ପିଲା, ତୁ ତାଙ୍କୁ ଏମିତି ଯୁକ୍ତିଯୁକ୍ତ ଉତ୍ତର ଦେଲୁ ଯେ, ସେ ନିଜେ ପଛେଇ ଗଲେ, ଓଲଟି ତତେ କେତେ ପ୍ରଶଂସା କଲେ, କଲ୍ୟାଣ କଲେ । ଏମିତି ଆଉ କାହାରି ଭାଗ୍ୟରେ ହେଇଚି ନା ? କାଶୀନାଥଙ୍କ ତୁଣ୍ଡରୁ ପ୍ରଶଂସା, ପୁଣି ଏମିତି ପ୍ରଶଂସା !"

ତାଙ୍କ ବିଷୟରେ ଅପ୍ପ ଅପାର ଯେ ଅତି ଉଚ୍ଚ ଧାରଣା ଥିଲା, ତା ନିଃସନ୍ଦେହ ବୋଲି ଜାଣିଥିଲି । ତହିଁଆରଦିନ ବୋଧପୁର ବୁଲିଗଲି, ଆଉ ଅନେକେ କୁତୂହଳୀ ହୋଇ ମତେ ଦେଖିବାକୁ ଆସିଲେ, ସତେଯେମିତି ମୁଁ ଗଡ଼ ଜିତିଛି, ସେମିତି ତୁଣ୍ଡେ ତୁଣ୍ଡେ ସମ୍ବର୍ଦ୍ଧନା କଲେ, "ବାଃ ! ବାଃ !

କାଲି କାଶୀନାଥ ମହାନ୍ତିଙ୍କୁ ଯେଡ଼େ ସୁନ୍ଦର ଉତ୍ତର ଦେଇ, ତାଙ୍କ ପରି ଜ୍ଞାନୀ ଲୋକ, ସେ ଯାହା କହୁଥାନ୍ତି ଯୁକ୍ତି ଉପରେ ତା'ର ଠିକ୍ ଠିକ୍ ଉତ୍ତର ଦେଉଥାଅ, ସେ ନିଜେ ବି କେଡ଼େ ଖୁସୀ ହେଇଗଲେ । ଏତେ ଅଳ୍ପ ବୟସରେ ଏତେ ବୁଦ୍ଧି ! ଆଶ୍ଚର୍ଯ୍ୟ ପରା ! ଚାରିଆଡ଼େ ହୁରି ପଡ଼ିଛି ।''

ମତେ ବି ଭାରି ଆଶ୍ଚର୍ଯ୍ୟ ଲାଗିଲା କ'ଣ ଏମାନେ କହୁଛନ୍ତି ! ପ୍ରଶଂସା ଶୁଣି ଲାଜ ମାଡୁଥାଏ, ଛି ଛି, —ମୁଁ କ'ଣ ପରୀକ୍ଷା ଦେବାକୁ ଆସିଛି ? କହୁ କହୁ କ'ଣ କହିଦେଲି, ଯଦି ମାନେ ମାନେ ଚାଲିଆସିଛି ଭାଣ୍ଡିଆ ହୋଇନାହିଁ କି ଅସୌଜନ୍ୟ ଦେଖାଇନାହିଁ, ସେହି ବଡ଼ ଭାଗ୍ୟ ।

କିନ୍ତୁ ପୁଣି କାହା ଦୁଆରମୁହଁରେ ହେଲାବେଳକୁ,

''କାଲି କାଶୀନାଥ ମହାନ୍ତିଙ୍କୁ—''

''ଓଃ !'' ମୁଁ ହୁଁ କରେ । କିନ୍ତୁ ତା ପରିଣାମ ଆହୁରି, ''ଦେଖୁନ, କେଡ଼େ ବିନୟୀ । ସାନ ପିଲାଟିଏ ହେଲେ କ'ଣ ହେଲା, ନମ୍ରତି ଫଳିନୋ—

ପୁଣି ପଚା, ପଚା,

''ମୂଷା, ବୁଲିଯିବା—''

ସେ ଭାରି ଖୁସୀ, ମୋ ସାଙ୍ଗ ଛାଡ଼େ ନାହିଁ, ମୁଁ ତା ଆଖିରେ ଗୋଟାଏ ବୀର । ମୁଁ ଡନ୍ କ୍ୱିକ୍‌ଶୋଟ୍ ଆଉ ସେ ସାଙ୍କୋ ପାନ୍‌ଜା ।

ତହିଁଆରଦିନ ଦି'ପହରେ ଅପା ସଙ୍ଗରେ ତା ସାହି ବୁଲୁ ବୁଲୁ ପୁଣି କାଶୀନାଥ ମହାନ୍ତିଙ୍କ ଘରକୁ ଯାଇଥିଲି । ଧାଡ଼ିଏ ବଡ଼ଘର, ପିଣ୍ଡା ଉପରେ ପାଲିଙ୍କି ସବାରି ଥୁଆ ହୋଇଥାଏ, ଚାଳ ତଳେ ଲମ୍ବ ହୋଇ ବନ୍ଧା ହୋଇଥାଏ ଗୁରିଆ ହୋଇଥିବା ସତରଞ୍ଜି ଓ ଗାଲିଚା, କାଶୀନାଥଙ୍କ ସ୍ତ୍ରୀ ଓ ଆଉ କିଏ କିଏ ଥିଲେ ।

ସେ ରାତି ପରେ ଆଉ ଶ୍ରୀ କାଶୀନାଥ ମହାନ୍ତିଙ୍କୁ ମୁଁ ଦେଖିନାହିଁ । ୧୯୩୪ରେ ଇହ ସଂସାରରୁ ଗଲେ, ଦେବୀ ପାଣିରେ ପଡ଼ିବା ପଛେ ପଛେ । ପଚାରି ଦେଇଗଲେ ''ଦେବୀ ପାଣିରେ ପଡ଼ିଲେ ତ ?'' ୧୯୩୦ର ସେହି ଥରକ ପରେ ଆଉ ମୁଁ ତାଙ୍କ ଗାଁକୁ ଯାଇନାହିଁ କି ସେମାନଙ୍କୁ କାହାରିକି ଦେଖିନାହିଁ । ତା'ପରେ ୧୯୪୦ ମାର୍ଚ୍ଚ ମାସରେ ମୁଁ କୋରାପୁଟ୍‌ରେ ଥାଏଁ, ହଠାତ୍ ମୋ ବଡ଼ଭାଇଙ୍କଠୁଁ ଚିଠି ପାଇଲି ଯେ, ସେ କାଶୀନାଥ ମହାନ୍ତିଙ୍କ ସାନଝିଅ ଅର୍ଥାତ୍ ବଂଶୀଧର ମହାନ୍ତିଙ୍କ ସବା ସାନଭଉଣୀ ସହିତ ମୋର

ବିଭାଘର ସ୍ଥିର କରି ମହାପ୍ରସାଦ ନିର୍ବନ୍ଧ କରିଦେଇଛନ୍ତି । ୧୯୪୦ ମେ' ମାସ ୩୦ ତାରିଖରେ ବୋଧପୁରରେ ବିଭାଘର ହେଲା ।

* * * * * *

ହୀରା ଅପା ମୋ ବାପାଙ୍କର ଠିକ୍ ତଳ ଭଉଣୀ, ଶଂଖ ପରି ଗୋରା, ଭାରି ସୁନ୍ଦର ତା ଗଢ଼ଣ । ଦଶହରା ଦେବୀ ମୂର୍ତ୍ତି ପରି । ଆଉ ଦଶହରାକୁ କଟକରେ ଯେଉଁ ହାତୀଦାନ୍ତ ବର୍ଣ୍ଣର ମହାଦେବ ମୂର୍ତ୍ତି ହୁଅନ୍ତି, ଭାରି ସୁନ୍ଦର, ଡେଙ୍ଗା, ମୋଟା ସୋଟା, ଟିକିଏ ଥନ୍ତଲପେଟା, ଠିକ୍ ସେମିତି ଆମ ପିଇସା ଶ୍ରୀ ଅନନ୍ତ ଚରଣ ମହାନ୍ତି । ତାଙ୍କର ଗୋଟିଏ ପୁଅ, ସାଧୁଭାଇ, ସାଧୁଭାଇର ଆଗ ଆଗ ତିନି ଝିଅ, ନିଖୁ, ଗଜି, ମନୁ, ତା'ପରେ ଗୋଟିଏ ପୁଅ, ତାରିଣୀଚରଣ । ପଛେ କେବେ କୁଆଡ଼େ ନିଖୁର ବିଭାଘର ହେଲା ନଗସପୁରର ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକଙ୍କ ସଙ୍ଗେ । ଜନକଂଗ୍ରେସ ସ୍ୱତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳରେ ସେ ଓଡ଼ିଶାର ମାନ୍ୟବର ରାଜସ୍ୱମନ୍ତ୍ରୀ ହେଲେ ।

ସେତେବେଳେ ହୀରାଅପା, ପିଇସା, ସାଧୁଭାଇ ଓ ଭାଉଜବୋଉ, ତାଙ୍କ ପିଲାଏ ସମସ୍ତେ ଥା'ନ୍ତି । ଟିପା ଖାତାରେ ଲେଖିଛି ବୋଧପୁର ପହଞ୍ଚିବା ଆରଦିନ ୨୬.୩.୩୦ରେ ମୁଁ ତାଙ୍କ ଘରକୁ ଗଲି । ସେମାନେ ଭାରି ଖୁସୀ ହେଲେ । ସେଠି ଦିନ ଓଳି ରହିଲି । ଶୁଣିଛି, ତାଙ୍କ ଘର ବୋଧପୁରର ସବୁଠୁ ଖାନ୍ଦାନ୍ ଓ ନାଁ ଡ଼ାକ୍ ଘର ଥିଲା ।

ହୀରା ଅପା ଓ ଅନନ୍ତ ପିଇସାଙ୍କର ଯେଉଁ ଏକମାତ୍ର ପୁଅ, ସାଧୁଚରଣ, ସେ ପାଗଳ ହୋଇଯାଇଥାଏ । ବର୍ଣ୍ଣରେ ସେ ଶ୍ୟାମଳ, ଚେହେରା ହାଡୁଆ, ଧଡ଼ିଆ, ସେ ବିଚରା କାହାରି କିଛି ଅନିଷ୍ଟ କରେ ନାହିଁ । ସେ ଖାଲି ତା ଛାଏଁ ବସି ମନକୁ ମନ କଥା ଭାଷା ହେଉଥାଏ । ଯତେ ଯେମିତି ସେ ତା ଆଖି ଆଗରେ କୌଣସି ଅନ୍ୟ ମଣିଷକୁ ଦେଖୁଛି, ତାହାରି ସଙ୍ଗରେ କ'ଣ କଥାଭାଷା ହେଉଛି, ଅଧେ ଉତ୍ତର ମନେ ମନେ ଦେଉଛି, ଅଧେ ଭାଷା ଦ୍ୱାରା ।

ତା'ପ୍ରତି ମୋର ବହୁତ ସହାନୁଭୂତି ଓ ବହୁତ କୁତୂହଳ ହେଲା । ତା କଥାଭାଷାର ସାମନ୍ୟ ନମୁନା ମୁଁ ସେଦିନ ଟିପା ଖାତାରେ ଟିପିଥିଲି । ସେ କହୁଥାଏ,

''ହଁ, ତୁ ତାଳଗଛରେ ଅଛୁ ?.....

ଆଚ୍ଛା, କାହିଁକି ଅଛୁ ?..... ଇଚ୍ଛା.....

ତାକୁ ପୋଷିବ ତେମେ ?.....

ହଁ..... ଆରେ ତା ଲାଙ୍ଗୁଡ଼ରେ ଯେ କ'ଣ ? ତେମେ ତାକୁ ପୋଷିବ ?

ମୋ ବୋପାଲୋ !''

ଆଉ ଦିନେ ବି ମୁଁ ବୋଧପୁରରେ ରହିଲି, ଅନପା ଘରେ, ୨୮ ମାର୍ଚ୍ଚ ସକାଳଯାକେ । ମୃଷାକୁ ଧରି ସକାଳେ ଓ ଦିନରେ ଖରାଏ ଖରାଏ ବୁଲୁଥାଏଁ । ମୃଷା ମତେ ଆଖପାଖ ଅଞ୍ଚଳ ସବୁ ବୁଲାଇ ଦେଖାଇଲା । ଦେଖିବାର କିଛି ନ ଥାଏ, ଖାଲି ଗଛ, ଘର, ଲୋକ, କ୍ଷେତ, ନଈ । ମୃଷା କେତେ କେତେ ଘଟନା କହୁଥାଏ । ଗପୁ ଗପୁ ବୁଲୁ ବୁଲୁ ଆମେ ନାନ୍‌ପୁର ଗଲୁଁ, ବାଟ ୩ ମାଇଲ୍ । ପାଇକା ନଈରେ ଡ଼ଙ୍ଗା ବୁଡ଼େଇ ରଖି ମାଛ ଧରିବା ପଦ୍ଧତି ମୁଁ ନୂଆ ଦେଖିଲି । ଗୋଟାଏ ଡ଼ଙ୍ଗାରେ ଗଛ ଡ଼ାଳ, କିଆ ଘୋଡ଼ା ଆଦି ପୂରାଇ ଲୋକେ ତାକୁ ପାଣିରେ ବୁଡ଼ାଇ ଦିଅନ୍ତି । ରାତିରେ ବୁଡ଼ାଇ ରଖି ତହିଁ ଆରଦିନ ଉଠାଇ ଦେଖିଲା ବେଳକୁ ଡ଼ାଳପତ୍ର ସନ୍ଧିରେ ମହଣ ମହଣ ମାଛ । ଦେଖିଲି ପ୍ରସିଦ୍ଧ ମଳିଆ ଗଣ୍ଡ, ସେଠି ଅକାତ ପାଣି । ମାଛର ଖଣି ସେ । ପିଲାଦିନେ କେତେ ମୁଁ ଶୁଣିଛି ପାଇକା ନଈର ମଳିଆ ଗଣ୍ଡ କଥା, ସେଠି କୁଆଡେ କବାଟ ଫାଳ ପରି ବଡ଼ ବଡ଼ ଚିତଳ ମାଛ । ମଳିଆ ବାଙ୍କରେ ବୋଧପୁରର ମଶାଣି ।

ତୋଟାଳିଆ ଗାଁ, ଛାଇ ଛାଇଆ । ଖରାବେଳେ ଶୀତଳ । କୋଇଲି ବୋବୋଉଥାଏ । କୁମ୍ଭାଟୁଆ ବୋବାଏ । ହନୁମାଙ୍କଡ଼ ଗଛକୁ ଗଛ ଡ଼ିଅନ୍ତି, ବେଳେବେଳେ ଲୋକେ ହୁରୁଡ଼ାନ୍ତି । ନଈକୂଳିଆ ପବନ ଦେହକୁ ଆଉଁସେ । ନଈ ସେ ପାଖ ଧୂଆଁଳିଆ ଦିଶେ । ୧୯୩୦ ମାର୍ଚ୍ଚ ମାସ ୨୮ ତାରିଖ ସକାଳେ ଅପା ଘରୁ ଖାଇ ପିଇ ବହାରିଲି । ଚାଲି ଚାଲି ସଂପୁର ଆସିଲି । ଆଉ କନ୍ଦରପୁର ନ ଯାଇ ତାଳଦଣ୍ଡା ନାଳ କରେ କରେ ବିରିବାଟି ଆସିଲି ।

ବିରିବାଟିରେ ଗାଁ ସେମୁଣ୍ଡରେ ହାବୋଡ଼ିଲେ ଜଣେ ଅଚିହ୍ନା ଗ୍ରାମବାସୀ, କୁଆଡ଼େ ଯାଉଥିଲେ, ଖଣ୍ଡେ ବାଟ ଏକାଠି ଚାଲିଲୁଁ, ଖୁବ୍ ଖରା, ଗୋଟିଏ ଗଛ ମୂଳେ ବସିଲୁଁ । ସେ ଲୋକଟିକୁ ବତିଶି ବର୍ଷ ହେବ, ନାଁ କହିଲା ନିତ୍ୟାନନ୍ଦ ମହାନ୍ତି, ଘର ନିମେଇଷାପୁର୍, ବରିବାଟି ପାଖ । ସେ କହିଲା, ସେ ହାତ ଦେଖି ଜାଣେ । ସଙ୍ଗେ ସଙ୍ଗେ ମୋ ହାତ ଦେଖିଲା ।

କହିଲା ''ତମ ହାତରେ ଶିବଙ୍କ ଡ଼ମ୍ବରୁ ଓ ବିଷ୍ଣୁଙ୍କ ପଦ୍ମ ଅଛି, ତୁମେ

ମହାନ୍ ବ୍ୟକ୍ତି ହେବ, ସୁଖୀ ହେବ, ଜୀବନଯାକ ଆଉ କେବେ ରୋଗରେ ପଡ଼ିବ ନାହିଁ, ତୁମର ବହୁତ କ୍ଷମତା ବହୁତ ପ୍ରତିପତ୍ତି ରହିବ, ତୁମର ସ୍ତ୍ରୀ ହେବ ଚିତ୍ରିଣୀ ଶ୍ରେଣୀର, ବହୁତ ଗୁଡ଼ିଏ ସନ୍ତାନ ହେବ, ୭୫ ବର୍ଷ ପରମାୟୁ ହେବ ।'' ତାଙ୍କୁ ମୁଁ ପଛେ ଚିଠି ଦେବି ବୋଲି ତାଙ୍କ ଠିକଣା ବି ଟିପି ଆଣିଲି । ଆଉ କେବେ ଦେଖିନାହିଁ କି ଚିଠି ଦେଇନାହିଁ । ବହୁତ ଥର ରୋଗରେ ପଡ଼ିଲି । ଆଇ.ସି.ଏସ୍ ପରୀକ୍ଷା ବି ଦେଇ ଶେଷରେ ସବ୍‌ଡ଼ିପୋଟି ହୋଇ ଚାକିରିଟିଏ କଲି ଓ ଚାକିରି କ୍ଷେତ୍ରରେ ହଇରାଣ ହୋଇ ଶେଷରେ ଏ.ଡି.ଏମ୍ ଶ୍ରେଣୀରେ ଥାଇ ପେନ୍‌ସନ୍ ନେଲି, ଜାଗତିକ ସାଫଲ୍ୟ ମୁଁ ବେଶି ପାଇ ନାହିଁ । ସ୍ତ୍ରୀ କେଉଁ ଶ୍ରେଣୀର ମୁଁ ଜାଣେ ନାହିଁ, କି ଭାବିନାହିଁ, ସନ୍ତାନ ଛଅଟି, ବହୁତ ଗୁଡ଼ିଏ ନୁହନ୍ତି ।

ମଫସଲ ଗାଁ'ର ହାତ ଦେଖାଳିଟି ଅତି ଆଗ୍ରହରେ କହିଯାଇଥିଲା । ମନେ ପଡ଼େ, ଅତି ସାନ ହୋଇଥିଲି, ଆମ ଖଞ୍ଜାରେ କିଏ ଜଣେ ବସନ୍ତିଆ ହାତ ଦେଖୁଥିଲା, ମୁଁ ପାଞ୍ଚ ବର୍ଷର କି କେତେ । ସେ କହିଥିଲା, ''ଯେ ଗୋଟିଏ ସ୍ତ୍ରୀଲୋକଙ୍କୁ ଧରି ପଳେଇବ ।'' ଭାରି ହସ ଲାଗିଥିଲା ।

ନିତ୍ୟାନନ୍ଦ ମହାନ୍ତି କହିଛି, ମୁଁ 'ଗ୍ରେଟ ମ୍ୟାନ୍' ହେବି । ଚାଲିଚି ମୁଁ, ଭାବୀ ଗ୍ରେଟ୍ ମ୍ୟାନ୍, ଟେଙ୍କାବଣ ମାଡ଼ି, କୋଇଲିଖିଆ କଣ୍ଟା ଦାଉରୁ ଅଙ୍ଗକେ ବର୍ତ୍ତି, ଟାଇଁ ଟାଇଁ ଖରା, ଝାଇଁ ଝାଇଁ ପବନ, ଚାଲିଛି ଏକୁଟିଆ, ଘରଦ୍ୱାର ତୋଟା ବାରି ନାହିଁ, ଦଣ୍ଡା ପଡ଼ିଛି, ତାପରେ ଦେଖିଲି ମୁଁ ଉଦୁଉଦିଆ ଦି'ପହରେ ବୁଲୁଛି ଗୋଟାଏ ପ୍ରକାଣ୍ଡ ମଶାଣି ଭିତରେ, ଏଠି ସେଠି ଅଙ୍ଗାର, ପାଉଁଶ, ଗାଡ଼, ଖପରା କୋକେଇ ବାଉଁଶ, ଛିଣ୍ଡା ହେଂସ ସପ, ଆଉ – ମଣିଷ ହାଡ଼ ।

ମଣିଷ ମୁଣ୍ଡଗୁଡ଼ାକ ଏଠି ସେଠି ଦାନ୍ତ ଦେଖାଇ ମତେ ଖତେଇ ହେଉଛନ୍ତି, ଚମ ନାହିଁ, ମାଂସ ନାହିଁ, ଢିକି ଢିକି ହାଡ଼, ସାନ ସାନ ବାଲି ଧୂଳି ଛିଣ୍ଡା ପତ୍ର ଉଡ଼ିଁରି ଘୂରି ଘୂରି ମାଡ଼ି ଚାଲିଛି । ମନେ ପଡ଼ିଲା, ମଶାଣି, ଭୂତ, ପ୍ଲାନ୍‌ଚେଟ୍ । ଖରାରେ ଝାଳ ଫିଟିଯାଉଛି, ପାଟି ଅଠା ଅଠା, ତରଂ ତରଂ ହୋଇ ପଛକୁ ଅନାଉଁଛି । ପୁଣି ଭାବୁଛି, କାହିଁ କିଏ ? କାହିଁ ଭୂତ ? ମଶାଣିର ବୈରାଗ୍ୟ ଚିନ୍ତା ମନରେ ପଶୁଛି, ମନ କହୁଛି ''ଆହା ! କୁଆଡ଼େ ଗଲେ ? କିଏ ଥିଲେ ସେମାନେ ?''

ଯାହା ହେଉ, ନାକ ସଳଖା ଚାଲିଛି, ପରମହଂସ ନଇ ପଡ଼ିଲା, ପଶି ଆସିଲି । କ୍ଷେତ ବାଟେ ଚାଲୁ ଚାଲୁ ବାଟବଣା ହେଲି । କେଉଁ ଗୋଟାଏ ଗାଁ ଦିଶିଲା, ସେହିଆଡ଼େ ଗଲି । ସେ ଗାଁ ପଟଣା । ଖୁସି ହେଲି । ପଟଣାରେ ଧ୍ରୁବଭାଇଙ୍କ ଶଶୁର ଘର, ତାଙ୍କ ଖୁଡ଼ୁତାଶୁର ବାନାମ୍ବର ଦାସ । ବାଟ ପଚାରି ପଚାରି ତାଙ୍କ ଘରକୁ ଗଲି । ଆଗରୁ କେବେ ଆସି ନଥିଲି । ପୁଣି ବନ୍ଧୁ ଘରେ କୁଣିଆଁ । ଆତିଥ୍ୟ ।

* *   * *   * *

ବେଣ୍ଟକାର ଓ ପଟଣା ଲଗାଲଗି ଗାଁ, ଦୁଇ ଗାଁ ମିଶିଲେ ବୋଧପୁରଠୁଁ ବହୁତ ବଡ଼ କରଣ ବସ୍ତି । ସେମାନଙ୍କର ବି ଖୁବ୍ ପୁରୁଣା ଖାନ୍ଦାନି ଘର, ଜମି ଜମିଦାରି, ଚାକିରି ଓ ଅନ୍ୟାନ୍ୟ ନାନା ବେଉସା । କଟକ ସେଠୁ ଚାରି ପାଞ୍ଚ ମାଇଲ୍, ମଝିରେ କାଠଯୋଡ଼ି । ସେ ଗାଁରେ ବହୁ କ୍ଷେତ୍ରରେ ବହୁତ ପ୍ରସିଦ୍ଧ ଲୋକ, ବହୁତ ଉଚ୍ଚ ଶିକ୍ଷିତ, ବିଦେଶ ଶିକ୍ଷିତ, ବହୁତ ସରକାରି ଚାକିରିଆ, କେତେକ ବ୍ୟବସାୟୀ ଓ ଅନ୍ୟାନ୍ୟ ବୃତ୍ତିଧାରୀ । ବେଣ୍ଟକାର ଓ ପଟଣାରେ ବହୁକାଳୁ ଆମର ବହୁତ ବନ୍ଧୁବାନ୍ଧବ ସଂପର୍କ, ପୁଣି ସେମାନଙ୍କ ନିଜ ନିଜ ଭିତରେ ବି ବୈବାହିକ ସଂପର୍କ । ସେହି ବେଣ୍ଟକାରର ପ୍ରସିଦ୍ଧ ସଦେଇ ବାବୁ, ମୋ ବାପାଙ୍କର ବଡ଼ ମାମୁଁ । ସେହି ଗାଁର କବି ବାଳକୃଷ୍ଣ ପଟ୍ଟନାୟକ, ମଧୁବାବୁଙ୍କ ଶିଷ୍ୟ, ଜନ୍ମ ୧୦.୧.୧୮୭୪, ପଞ୍ଚାନବେ ବର୍ଷ ହେଲାଣି, ସେ ମୋ ବାପାଙ୍କ ପିଇସୀଙ୍କ ପୁଅ । ଏପରି ଅନେକେ । ପଟଣାର ପ୍ରସିଦ୍ଧ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଖ୍ୟାତନାମା ସାହିତ୍ୟିକ ଓ ଗବେଷକ ପଣ୍ଡିତ । ସେହି ଗାଁର କବିରାଜ ଦୟାନିଧି ଆଚାର୍ଯ୍ୟ, ବହୁକାଳୁ କଟକରେ ତାଙ୍କ ଦୋକାନ । ଆଧୁନିକ ପ୍ରସିଦ୍ଧ ନାଟ୍ୟକାର ମନୋରଞ୍ଜନ ଦାସ ବି ପଟଣା ଗାଁର, ସେ ଧ୍ରୁବଭାଇଙ୍କର ଗୋଟିଏ ଶ୍ୟାଳକ । ସେଠି ଆଚାର୍ଯ୍ୟ ଓ ହୋତା ଆଦି ଆହୁରି କେତେ ପୁରୁଣା ଖାନ୍ଦାନି ବ୍ରାହ୍ମଣ ପଣ୍ଡିତଙ୍କ ନିବାସ । ଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟ ଭିତରେ ଅତି ଆଦୃତ ଓ ଖ୍ୟାତ 'ନନ୍ଦ ବାବା', — ସେ ଦେହ ଛାଡ଼ିଲେଣି, ସେହି ପଟଣାର, ସେ ଜଗୁଦାଦିଙ୍କ ଶ୍ୟାଳକ ।

ମଝିଆ ଭାଉଜବୋଉଙ୍କର ବାପା ମରି ଯାଇଥାନ୍ତି । ତିନି ଦାଦି, ନଟବର, ସେ ଗାଁ ଜମିବାଡ଼ି ବୁଝନ୍ତି, ବାନାମ୍ବର, ସେ କଟକରେ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ଅଫିସରେ କିରାନି ଥାଆନ୍ତି, ଆର୍ତ୍ତ, ସେ କୁଜଙ୍ଗର ଅନନ୍ତପୁରରେ ଥାଆନ୍ତି, ଆଉ ଗୋଟିଏ ଭାଇ ବି ମରିଥିଲେ, ତାଙ୍କ ସ୍ତ୍ରୀ ଓ ତାଙ୍କ ପୁଅ ଚାରୁ

ସେଇଠି ଥାଆନ୍ତି । ଭାଉଜବୋଉଙ୍କର ଗୋଟିଏ ଭାଇ, ସେ ବଡ଼, ପ୍ରତାପ ଚନ୍ଦ୍ର ଦାସ, ଡ଼ାକନ୍ତି ସାରଦା, ସେ ବି.ଏ ପାଶ୍ କରି କଟକରେ କମିସନର ଅଫିସରେ ଚାକିରି କରୁଥିଲେ । ଭାଉଜବୋଉଙ୍କ ଉପର ଭଉଣୀ ବିଭା ହୋଇଥାନ୍ତି, ସେ ବାଳକୃଷ୍ଣ ପଟ୍ଟନାୟକଙ୍କ ବଡ଼ ବୋହୂ । ବାନାମ୍ବରଦା ଓ ସାରଦାଭାଇ କଟକରେ କାଳୀଗଳିରେ ରହୁଥିଲେ । ସମସ୍ତିଙ୍କ ପିଲାଏ ଥିଲେ ଗାଁରେ । ଭାଉଜବୋଉଙ୍କ ତଳେ ଆହୁରି ଦୁଇ ଭଉଣୀ, ନଟିଆ'ଦାଙ୍କର ବି ଝିଅଟିଏ, ବାନାମ୍ବରଦା'ଙ୍କର ସାନ ସାନ ଝିଅ-ଯୋଡ଼ିଏ, ଯୋଡ଼ିଏ ଭାଉଜବୋଉ, ଏମାନେ ମୋର ଥଟ୍ଟା ସଂପର୍କ । କିନ୍ତୁ କେତେବେଳେ ପାନରେ ଲଙ୍କାମରିଚ, କଦଳୀପତ୍ର ଭଙ୍ଗା କି ଏହିପରି ଛଡ଼ା ଅନ୍ୟ ଥଟ୍ଟା ସେମାନେ କରନ୍ତି ନାହିଁ । ଝିଅମାନେ ଆଡ଼ ହୁଅନ୍ତି । ଭାଉଜମାନେ କେତେବେଳେ ପଦେ ଥଟା କଥା କହନ୍ତି, ନହେଲେ ନାହିଁ । ଚାରୁଭାଇ ଥଟା କରେ ନାହିଁ, ଢେଙ୍ଗା କସରତିଆ ଯୁବକ, ସେ ପୁଲିସ୍ ହାବିଲ୍‌ଦାର୍ ହେଲା । ଆଉ ଅନ୍ୟାନ୍ୟ ଖୁଡ଼ୁତାଶୁରଙ୍କ ପୁଅମାନେ ଖୁବ୍ ସାନ ସାନ, କିଏ ଲଙ୍ଗଳା, କିଏ ଚାରି ବର୍ଷର, ଭବିଷ୍ୟତର ପ୍ରସିଦ୍ଧ ନାଟ୍ୟକାର ସେତେବେଳର 'ବାବୁ' ବୋଧହୁଏ ଚାରିବର୍ଷର । ସାରଦା ବାବୁଙ୍କ ବୋଉଙ୍କୁ ଆମେ ଡାକୁଁ ମାଉସୀ, ବଡ଼ ଭାଇ 'ରତନି ଅପା'; ସେ ଆମର ଗୋଟିଏ ପିଇସୀର ଝିଅ ।

ବହୁତ ସ୍ନେହ ଆଦର ମିଳିଲା ସେ ଘରେ, ସେଥିରେ କୃତ୍ରିମତା ନ ଥିଲା, ଆଡ଼ମ୍ବର ନଥିଲା, ସେ ଆନ୍ତରିକ, ସତ । ମୁଁ ତାଙ୍କ ଝିଅର ଦିଅର, ସେତିକିରେ ମୁଁ ତାଙ୍କ ଘରର ଜଣେ, ଆପେ ଆଦରିନେଲେ ।

ବୋଧହୁଏ ଛୁଟିଦିନ ଥିଲା, ତେଣୁ ବାନାମ୍ବର ଦାଦା ଓ ସାରଦାବାବୁ ଆସିଥିଲେ । ବାନାମ୍ବର ଦାଦା ଆଉ ନାହାନ୍ତି, ସବୁବେଳେ ହସ ହସ, ସବୁବେଳେ ସମୟ ଓ ଦେହ ବଳ ଖଟେଇ ପରକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ, କଟକ ବସାକୁ ଯେ ଆସୁ, ସେ ଆଗ ଚର୍ଚ୍ଚା କରିବେ, ଆଶ୍ରୟ ବ୍ୟବସ୍ଥା କରିବେ, ସୌଜନ୍ୟ ଶିଷ୍ଟତା ସବୁବେଳେ, ଖୁବ୍ ଧୀର ସ୍ଥିର ଓ ବୁଦ୍ଧିମାନ୍ । ଚେହେରା ଖୁବ୍ ସୁନ୍ଦର, ଗୋରା, ଗୋଲ୍‌ଗାଲ୍, କୁଞ୍ଚୁକୁଞ୍ଚିଆ ବାଳ । ସେ ନୈରାଶ୍ୟବେଳେ ପ୍ରବୋଧ ଦିଅନ୍ତି, ଧନ୍ଦି ହେଲେ ବୁଦ୍ଧି ଦିଅନ୍ତି, ସବୁବେଳେ ଉତ୍ସାହ ଦିଅନ୍ତି ଓ ପରର ଶୁଭକାମନା କରନ୍ତି । ତେଣୁ ତାଙ୍କର ଅସଂଖ୍ୟ ବନ୍ଧୁ, ବନ୍ଧୁ ସଂଖୋଳିବାରେ ବହୁତ ସମୟ ଦିଅନ୍ତି । ଆର୍ତ୍ତଦା'ଙ୍କ ଚେହେରା କେତେକାଂଶରେ ସେହିପରି, ସେ ସେମିତି ସ୍ନେହୀ, କିନ୍ତୁ ଟିକିଏ ଗମ୍ଭୀର । ନଟବର ଦାଦା

ଚେହେରାରେ ପହିଲମାନ୍ ପରି, ଦେହଯାକ ପରିସ୍ଫୁଟ କରତ୍ା ମାଂସପେଶୀ, ଖୁବ୍ ଗୋରା, ବେଶ ହୁଅନ୍ତି ଗାଉଁଲି ଲୋକ ପରି, ସେ ଭାରି ସରଳ ମଣିଷ, ବହୁତ ହସ କଥା କହନ୍ତି । ସାରଦା ଭାଇ ସ୍ନେହୀ, ମେଳାପୀ, ଅତି ଅମାୟିକ । ଆକାରରେ ଟକିଏ ସାନ, ଗୋରା, ସାଧାରଣ ସ୍ୱାସ୍ଥ୍ୟ । ଖୁବ୍ ଧୈର୍ଯ୍ୟ ଓ ବିଚାର ।

ସେ ବି ସେମିତି ଗୋଟିଏ ଘର, ଖୁବ୍ ପୁରୁଣା ଆଭିଜାତ୍ୟ, ଅତୀତରେ ବହୁତ ଖାନ୍ଦାନ୍ ବଡ଼ଲୋକ, କ୍ରମେ ସେ ବିଭବ କମିଛି, ତଥାପି ନିଜର ଚଳଣି ପାଇଁ ଯଥେଷ୍ଟ ଥିଲା । ଘର ପଛଆଡ଼େ ପୋଖରୀ, ଖଞ୍ଜାରେ ଅମାର । ପୁରୁଣା କାଳିଆ ଘର, ସେମିତି ଚତୁଷ୍କୋଣ ଖଞ୍ଜା, ବହୁତ ବଖରା, ବଡ଼ ବଡ଼ ଫରଚା ଘର, ମଝିରେ ଫରଚା ଦୁଆର, ବାହାରେ ବଡ଼ ଗୁହାଳ, ସେଥିରେ ଗୋରୁ ବଳଦ । ସେଠି ବି ମୋଟ ମୋଟ କବାଟ, ଲୁହା ଗୋବ ମରା, ବଡ଼ ବଡ଼ ପଲଙ୍କ, ପିଣ୍ଡାରେ ପାରା । ଭାଡ଼ିରେ ପାରା, ଘରେ ବହୁତ ବିଲେଇ କୁକୁର, ପିଞ୍ଜରାରେ ଶୁଆ ।

ସାରଦାଭାଇ ଜୀବନଯାକ ଭାଇ ପରି ମୋର ହିତ କାମନା କରି ଆସିଛନ୍ତି । ସମସ୍ତିଙ୍କ ପ୍ରତି ସବୁବେଳେ ସେ ସହାନୁଭୂତିଶୀଳ, ଆପଣା ସାଧ୍ୟ ଅନୁସାରେ ସାହାଯ୍ୟ କରିବାକୁ ପ୍ରସ୍ତୁତ, ବନ୍ଧୁସ୍ନେହୀ, ଜନପ୍ରିୟ । ତାଙ୍କଠି ବିଶେଷ ଗୁଣ ତାଙ୍କର ପରିବାରର ସମସ୍ତିଙ୍କ ପ୍ରତି ଦାୟିତ୍ୱବୋଧ ।

ସେ ପରିବାରର ବିଶିଷ୍ଟତା ବି ତାର ଏକତା । ମୁଁ ଦେଖିଲାବେଳକୁ ସେମାନେ ସମସ୍ତେ ଏକାଠି, ରୋଷେଇ ହୁଏ କୋଠରେ । ବଡ଼ଭାଇ ମରିଯାଇଛି, କିନ୍ତୁ ବାନାୟର ଦାଦା ଦିନେ ତା ପିଲାଙ୍କୁ ତା ଅନୁଭବ କରାଇ ଦେଇନାହାନ୍ତି, ସେମାନଙ୍କର ସବୁ ସମସ୍ୟା ସେ ମୁଣ୍ଡକୁ ନେଇଥାନ୍ତି, ତାଙ୍କର ସବୁ ଅଳି ଅର୍ଦ୍ଦଳି ତାଙ୍କରି ପାଖେ । ସାରଦା ଭାଇ ଆଖି ବୁଜିଦେଇ ତାଙ୍କରି ନିର୍ଦ୍ଦେଶ ମାନି କାମ କରେ । ପରିବାରର ସମସ୍ତିଙ୍କ ପ୍ରତି ସେମାନଙ୍କର ସେହିପରି ସ୍ନେହ ଓ ଯତ୍ନ ।

ସେମାନଙ୍କର ନିଜର ସମସ୍ୟା ଥିଲା, ଯୋଡ଼ିଏ ଝିଅ ବିଭା ହୋଇଥାନ୍ତି, ଆଉ ଏତେଗୁଡ଼ିଏ ବିଭା ହେବେ, କରଣ ଘରେ ପ୍ରତି ଝିଅବିଭାକୁ ବହୁତ ଖର୍ଚ୍ଚ, ବରପକ୍ଷ ଦବାନବା ଦାବୀ ନକଲେ ସୁଦ୍ଧା କନ୍ୟା ପକ୍ଷକୁ ଦାଣ୍ଡ ଜଗିବା ଦରକାର ପଡ଼େ, ଭୋଜି ଓ ବନ୍ଧୁକୁଟୁମ୍ବଙ୍କୁ ଲୁଗାପଟା ଦେବାକୁ ତ ପଡ଼ିବ,

ସେମାନଙ୍କର ବନ୍ଧୁକୁଟୁମ୍ବ ବହୁତ ବହୁତ, ନଦେଲେ 'ବନ୍ଧୁ କଟଯିବ', 'କଥା ଶୁଣିବାକୁ ହେବ' । ତା ଛଡ଼ା ଯେଉଁ ଛୁଆମାନେ ଅଛନ୍ତି, ସେମାନେ ମଣିଷ ହେବେ, ପାଠ ପଢ଼ିବେ, ସାରଦା ଓ ଚାରୁଙ୍କ ବିବାହ ସାରିବାକୁ ପଡ଼ିବ । ଘରର ଚଳଣି ଲାଗି ମଧ୍ୟ ଅନେକ ପ୍ରକାର ଆବଶ୍ୟକତା ରହିଛି ।

ଥାଉ ସେ ଆବଶ୍ୟକତା, ହେଲାବେଳେ ହେବ, ଯେତିକି ବଳ ପାଇବ ସେତିକି ହେବ, ନହେଲେ ନହେବ । ସେକଥା କେହି ତୁଣ୍ଡରେ ବି ଧରନ୍ତି ନାହିଁ, ସେଥିପାଇଁ ଧନ୍ଦି ହୋଇ ମୁହଁ ଶୁଖାନ୍ତି ନାହିଁ, କାହା ପାଖରେ ଅଭିଯୋଗ କରନ୍ତି ନାହିଁ । ସେହି ଏକ ଚେତନା, ଯାହା ସବୁ ସମ୍ଭ୍ରାନ୍ତ ଘରେ ଦେଖିଛି, – ''ଇଜ୍ଜତ ।'' ସେହି ଏକ ଉପାୟ, ଧୈର୍ଯ୍ୟ, କିନ୍ତୁ ହାତଗୋଡ଼ ଚାଲୁଥିବ, ନିଶ୍ଚେଷ୍ଟ ହେବ ନାହିଁ ।

** ** **

ଏହି ପ୍ରାଚୀନ ଅଭିଜାତ ଶ୍ରେଣୀର ପୁରୁଖା ସ୍ତ୍ରୀ-ପୁରୁଷଙ୍କଠାରୁ ମୁଁ ଗୋଟିଏ ଜୀବନ-ନୀତି ବାରମ୍ବାର ଅନେକ ସ୍ଥାନରେ ଶୁଣିଛି :-

''ଆଚ୍ଛା ଦେଖ, ପୁରୁଣା ଘରୁଆ ନୂଆ ଘରୁଆ, ଖାନ୍ଦାନି ସାଆନ୍ତ, ନୂଆ ବଡ଼ଲୋକ, ଯାଙ୍କ ଭିତରେ ପ୍ରଭେଦ ସବୁ କଣ ?''

ଗୋଟାଏ ତ ସହଜେ ଦେଖିବ, ପୁରୁଣା ଘରଟା ଭଙ୍ଗା ଦଦରା ଆଉ ନୂଆ ଘରଟା ଦରହ, ପୁରୁଣାଟା ଦବୁଛି, ନୂଆଟା ଉଠୁଛି, ଏତ ଭଗବାନଙ୍କ ନିୟମ, ଆଚାର ବିଚାର, ତଫାତ୍ କଣ ?

ଖାନ୍ଦାନି ଘରର ମଣିଷ ଅଧୀର ଉଚାଟ ହୁଏ ନାହିଁ, ସେ ଆଙ୍ଗୁଠି ପଗ ଗଣି ଗଣି କହିଦେବ, ତାର କେତେ ପୁରୁଷରେ କେତେ ଉଠୁ-ପଡ଼, ସଂସାରରେ କିଛି ଚିରସ୍ଥାୟୀ ନୁହେଁ । ଦିନ ହୋଇଥିଲେ ସେ ବୁଝିଥିବ, ରାତି ଆସିବ, ତେଣୁ ସେ ଅଧୀର ହେବ ନାହିଁ, ଦୁଃଖ ପଡ଼ିଲେ ସରିଗଲା ବୋଲି ତା'ଠିଁ ହାଁ' ପଶିଯିବ ନାହିଁ, ସୁଖ ଆସିଲେ ସେ ଛାତି ଫୁଲେଇବ ନାହିଁ, ଧନ ଆସିଲେ ଧନକୁ ଦେଖେଇ ବୁଲିବ ନାହିଁ, ଗାଲ ବୁଲିବ ନାହିଁ, ଗପି ବୁଲିବ ନାହିଁ । ସେ ଡ଼ାକି ହାକି କହି ବୁଲିବ ନାହିଁ ମୁଁ ଏତେ ଟଙ୍କା ଖର୍ଚ୍ଚ କରି ଘର ତୋଳାରେ, ମୋ ରନ୍ଧାରେ ଏତେ ଖର୍ଚ୍ଚ, ମୋ ଖଟ ପଲଙ୍କ ଏତେ ଦାମ୍, ଗାଡ଼ିଘୋଡ଼ା ଏତେ ଦାମ୍ । ସେ ଆଦୌ କାଉ ପରି ହେବ ନାହିଁ । ତା'ଠିଁ ବଳ ଥିଲେ ସେ ପରର ହାତଟା ବେକଟା

ମୋଡ଼ିବ ନାହିଁ, ବଳ ନ ଥିଲେ ଦ୍ରାହି ଦ୍ରାହି ବୋବେଇବ ନାହିଁ । ଲାଭ ଆଶାରେ ସେ ଅମର୍ଯ୍ୟାଦା କାମ କରିବ ନାହିଁ, କାହା ଚୋରା ସଫା କରିବ ନାହିଁ କି ପଇସା ଲୋଭରେ ଇଜ୍ଜତ୍‌କୁ ବିକିବ ନାହିଁ । ସେ ଯେତେବେଳେ ଜାଣିବ ଶେଷ ସମୟ ଆସିଗଲା, ସେତେବେଳେ ବି ଆପଣା କର୍ତ୍ତବ୍ୟ କରିବ, ଠାକୁରଙ୍କ ନାମ ନେବ, ଦେହ କାଠ କରି ମରଣକୁ ଅପେକ୍ଷା କରିବ । ସେ ଭୀରୁ ପରି ଥରିବ ନାହିଁ । ସେ ଖାଇବା ପାଇଁ ଯେମିତି ଟକଟକ ହବ ନାହିଁ, ଭୋଗ ପାଇଁ ସେମିତି କୁକୁର ପରି ହେବ ନାହିଁ । ସେ ଜାଣେ ତା ପୂର୍ବ ପୁରୁଷ ପରଙ୍କୁ ଖୋଇ ଖୋଇ ଫତୁର ହେଲେ, ସେ ପରଙ୍କୁ ଖୋଇ ସନ୍ତୋଷ ପାଇବ । ସେ ଧନଦରବଠୁଁ, ଇନ୍ଦ୍ରପଦ କି ବୈକୁଣ୍ଠ ପାଇବାଠୁଁ ଅଧିକ ମଣିବ ଆପଣା ବିଚାରରେ ଚଳିବାକୁ, ତାର ବଡ଼ ମନ, ବଡ଼ ଆଖି, ଛୋଟ କଥା, ଛି ! ସେ ନାଁ ନବାକୁ ବି ଆଗ୍ରହ ଦେଖାଇବ ନାହିଁ, ସେ ଜାଣେ, କାହାର କୋଉ ନାଁ ରହେ ?

ଏଇଆ ତା ପୂର୍ବପୁରୁଷଙ୍କ ସଂସ୍କାର, ଏଇଆ ସେ ମାନିବ, ଏମିତି ଚଳିବ, ଯାହା ତାର ହଉ । ଧ୍ୱଂସ ହେଲେ ବି ତାର ଏତେଟିକିଏ ଅନୁଶୋଚନା ନାହିଁ, ଜାଣିବ ଏ ଭଗବାନଙ୍କ ଇଚ୍ଛା, କଳିଯୁଗରେ ଏଇଆ ତ ହୁଏ ! ଆଉ ଦୁନିଆଁ ଯଦି କେବେ ମୂଲ କରେ, ତେବେ ବଳେ କହିବ ହାତୀ ମଲେ ବି ଲକ୍ଷେ ଟଙ୍କା, କୁକୁରଟା ବଞ୍ଚିଥିଲେ ବି କାହୁଁ ସରି ହବ ।

ଆଉ ଯେ ଖାନ୍ଦାନି ନୁହେଁ, ତାଠିଁ ଏ ଗୁଣ କ୍ୱଚିତ୍, କୋଉ ମଣିଷ ନିଜ ଗୁଣରେ ସିନା ମହତ୍ ହେବ, ଶ୍ରେଣୀ ହିସାବରେ ଯଦି ଗୁଣ ଦେଖିବ, ତେବେ କାହୁଁ-ଅଇଲାଙ୍କଠିଁ ଶ୍ରେଣୀ ହିସାବରେ ଏଗୁଣ ପାଇବ ନାହିଁ, ସେତ ଭାତକୁ ଦେହଯାକ ବୋଳି ବୁଲିବେ, ଧନକୁ ଦାନ୍ତରେ ନାକରେ କାନରେ ଦେହରେ ଝୁଲେଇ ବୁଲିବେ, ସବୁବେଳେ ତାଙ୍କ ମନ ଦକ ଦକ – ଆମକୁ କିଏ ବେଖାତିରି କଲା କି ? ଆମ ବଡ଼ ପଣ ସମସ୍ତେ ଜାଣିଲେ କି ନାଇଁ ? ସେତ ଦର୍ପ ଦେଖାଇ କହି ବୁଲିବ – ଆରେ ରଖ୍ ତୋ ଜାତି, ତୋ ଖାନ୍ଦାନି, ମୋ ଜାତି ମୋ ଖାନ୍ଦାନି ମୋ ଟଙ୍କା ସିନ୍ଦୁକରେ । ମଣିଷଙ୍କୁ ବାର ହୀନଅବସ୍ଥା କରି ଅପମାନ ଲାଞ୍ଛନା ଦେଇ ଉଘେଇ ସାନ୍ଧି ସେ ଚାହିଁବ ସମସ୍ତେ ହାଡ଼ ଭିତରେ ବି ବୁଝନ୍ତୁ ସେ ବଡ଼ଲୋକ, ସେ ପ୍ରତାପୀ । ସେ ଖାନ୍ଦାନ୍‌ର ଠିକ୍ ଓଲ୍ଟା, ସବୁଥିରେ, ସେ ସବୁପ୍ରକାର ଉପାୟ କରିବ ଆହୁରି ଫୁଲିବାକୁ, ଧର୍ମ ଅଧର୍ମ ନୀତି ଅନୀତି ତାଠିଁ ନାହିଁ, ବିଚାର ନାହିଁ, କ୍ଷମା

ନାହିଁ, ବିଶ୍ୱାସ ନାହିଁ, ସତ ନାହିଁ । ସେ ସୁଖର ଦୁଃଖର ନୁହେଁ । ସମଦର୍ଶୀ ନୁହେଁ, ସ୍ୱାର୍ଥ ତା'ର ଆଗ ।

ସେମିତି ଧୈର୍ଯ୍ୟ ବି ତାଠିଁ ନାହିଁ । ସେ କାଉ ପରି ହେବ, କୁକୁର ପରି ହେବ, ପିମ୍ପୁଡ଼ି ପରି ପଖ୍ ଲାଗି ଉଡ଼ିବ, ପଡ଼ିବ, ହାଣ୍ଡେକି ପରି ହୁ କରି ଉଠି ହୁ କରି ନିଭିବ । ପୁରୁଷ ପୁରୁଷ ବ୍ୟାପୀ କେତେବେଳେ ଘୋଡ଼ାଚଢ଼ା, କେତେବେଳେ ଘାସକଟା ହେବାର ଅଚଳନ୍ତି କାଳ-କାଳର ଚେତନା ତାଠିଁ ନାହିଁ ।

କଳିଯୁଗରେ ବଡ଼ ବୋଲାଉଥିବେ ସେହିମାନେ, ଶାସ୍ତ୍ରପୁରାଣରେ ଆଗତ କଥା ଲେଖା ଅଛି । ଲୋକେ ତାଙ୍କଠୁଁ ଦେଖି ଶିଖି ଭ୍ରଷ୍ଟ ହେବେ । ସେଇଆ ଯଦି ଭଗବାନଙ୍କ ଇଚ୍ଛା, କିଏ ଅନ୍ୟଥା କରିବ ?

ଖାନ୍ଦାନ୍ ଆପଣା ହୃଦ-କମଳ ଭିତରେ ଥିବା ଭଗବାନଙ୍କୁ ସାକ୍ଷୀ କରି ଆପଣା ବିବେକ ଅନୁସାରେ କାମ କରିଯିବ । ସାରୋଳାଦାସ ଭାରତ ପୋଥିରେ କଣ ଲେଖିଲେ ? ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ, ଭୂରିଶ୍ରବା, ଶଲ୍ୟ, ମହାବୀର କର୍ଣ୍ଣ, ଏମାନେ କଣ ଜାଣିନଥିଲେ ଯେ ବେଳ ଆସିଲା, ଏମାନେ ମରିବେ ? ଜାଣିଶୁଣି ସଜ୍ଞାନରେ ଆମେ ଧ୍ୱଂସ ଭିତରକୁ ଚାଲିଲୁଁ, ଦେଖି ଦେଖି ମରଣକୁ ହସି ହସି କର୍ତ୍ତବ୍ୟରୁ ଟିକେ ନ ଘୁଞ୍ଚି ସେମାନେ ଆପଣା ବିବେକ ଅନୁସାରେ କାମ କରି କରି ଟଳି ପଡ଼ିଲେ । ଆମ ଦେଶର ଖାନ୍ଦାନ୍ ସେପରି, ଯେଉଁଗୁଡ଼ାକ ତା ହୁଅନ୍ତି ନାହିଁ, ସେ ଖାନ୍ଦାନୀ କୁଳରେ ଜନ୍ମ ହେଲେ ବି ଆମେ କହୁଁ ତାଙ୍କ ବୁନିଆଦ୍ ଠିକ୍ ନାହିଁ, କୋଉଠି ଖାଦ ମିଶିଯାଇଛି, କୋଉଁ ପୁରୁଷରେ ସଙ୍କର ମିଶିଗଲା, ସେଗୁଡ଼ାକ ଖେଚର, ଠାକୁରଙ୍କ ଅଭିଶାପ ପରି ଘରବୁଡ଼ାବେଳକୁ ଘୋଡ଼ାମୁହାଁ ପୁଅ । ଯେମିତି ଶ୍ରୀ ରାମଚନ୍ଦ୍ର ବି ରାଜବଂଶରେ ଜନ୍ମ ହୋଇଥିଲେ, ଆଉ କେତେ ଅନାଚାରୀ ଅତ୍ୟାଚାରୀ ରାଜାରାଜୁଡ଼ା ବି କେତେବେଳେ କେଉଁ ପବିତ୍ର ବଂଶ ନାଁ ଧରି ମୁକୁଟ ଗଳାନ୍ତି । ତେବେ ଯାତ୍ରାବାଲା ବି ମୁକୁଟ ପିନ୍ଧେ ଯେ, ଯାତ୍ରା ମୁକୁଟ ବଜାରରେ ମିଳେ ।

ତେବେ, ହଁ, ଯେ ସିନା ଗଲା ମୋଟାମୋଟିରେ ଦୁଇଟି ଶ୍ରେଣୀର ଦୁଇଟି ବିଶିଷ୍ଟ ଗୁଣ, ଯା ମାନେ ନୁହେଁ ଯେ, ଯେ ଯେଉଁ ଶ୍ରେଣୀରେ ଜନ୍ମ ନ ହୋଇଛି, ତାଠିଁ ସେ ଗୁଣ ନ ଫୁଟିବ । ତା ଯଦି ହୋଇଥାନ୍ତା, ତେବେ ତ ଖାଲି ଏକୁଟିଆ ବଡ଼କୁଳର ମଣିଷଙ୍କଠି ସବୁ ବଡ଼ ବଡ଼ ଗୁଣ

ବାହାରନ୍ତା । ବଂଶ, ବୁନିଆଦି ଏଥିରେ ଯାହା ଭଲ ଗୁଣ ଥାଏ, ସେ ସେ ବଂଶର ଅନ୍ୟମାନଙ୍କୁ ସେଇ ଗୁଣର ମହତ୍ତ୍ୱ ଶିଖାଏ, କିନ୍ତୁ ଅସଲ କଥା, ଗୁଣଟା ନିର୍ଭର କରେ ମଣିଷର ନିଜ ଉପରେ । ସେ କେଉଁ ବୁଦ୍ଧି କରିବ, ତା କାମରୁ କି ଗୁଣ ବାହାରିବ, ସେଥିପାଇଁ ସେ ନିଜେ ସିନା ଚେତିବା ଲୋଡ଼ା । ନ ଥାଉ ତା'ର ବଡ଼ ବୁନିଆଦି କି ଯାଏ ସେଥିରେ । ଯଦି ସେ ନିଜେ ମହତ୍ ହୋଇପାରିଲା, ସେ ହେବ ତା ପୁଅ ନାତିଙ୍କ ପାଇଁ ବୁନିଆଦ, ଦୁନିଆଁର ଆଉ ଶହେଜଣ ତାଠୁଁ ଶିଖି ମହତ୍ ହେବେ । ସକଳ ଘଟେ ପରା ନାରାଏଣ, ଏ ଦୁନିଆଁରେ ସାନ କିଏ ? ଭିତରର ନାରାଏଣଙ୍କୁ, ପୁଣି ବାହାରର ନାରାଏଣଙ୍କୁ ଚିହ୍ନିପାରିଲେ ତ ମଣିଷ ଦେବତା ହବ । ଯାହା ମନ ତା ହଉ ତା ଜାତି କି କୁଳ କି ଧର୍ମ କି ବୋଲି । ଏ ସଂସାରରେ ସବୁଦିନେ ସବୁକାଳେ ନୂଆ ନୂଆ ବଂଶର ମୂଳଦୁଆ ପଡୁଛି, ହଜାର ହଜାର ନୂଆ ଲୋକ ନୂଆ ନୂଆ ଖାନ୍ଦାନିର ପରମ୍ପରା ତିଆରି କରୁଛନ୍ତି, କେମିତି ? ଆପଣା ଗୁଣ କର୍ମ ଦ୍ୱାରା । ସେମିତି, କେତେ କେତେ ଖାନ୍ଦାନି ବଂଶର ପରମ୍ପରା ଧୂଳିରେ ମିଶୁଛି, କେମିତି ? କ'ଣ ଗରିବ ହୋଇଗଲେ ବୋଲି ? ତା ନୁହେଁ । ଅସଲ ଖାନ୍ଦାନି କହିଲେ ଯେଉଁ ଯେଉଁ ମହତ୍ ଗୁଣ ବୁଝାଏ, ତାକୁ ଛାଡ଼ିଲେ ବୋଲି, ମହତ ବିକିଲେ ବୋଲି । ମହତ ଗଲେ ଆଉ ମିଳେ ?''

କେତେଥର କେତେଠିଁ ଶୁଣିଛି ଏ ବ୍ୟାଖ୍ୟା, ତା'ର ଲେଖା ନାହିଁ । ଘରେ ବାପା, ବୋଉ, ଭାଉଜମାନେ, ଭାଇମାନେ, ଖଞ୍ଜାରେ ବଡ଼ାପାମାନେ, ଦାଦିମାନେ, ଖୁଡ଼ୀମାନେ, ଭାଉଜମାନେ, ଅନ୍ୟ ଗାଁ'ରେ ବନ୍ଧୁବାନ୍ଧବମାନେ, ନିକଟ କି ଦୂରର, ଅନ୍ୟାନ୍ୟ ମୁରବ୍‌ବିସ୍ଥାନୀୟ ଲୋକମାନେ, ସେମାନେ କହନ୍ତି । ଏକଥା କହେ ଓଡ଼ିଶାର ଧୂଳିମାଟି । ଉଚିତ ଅନୁଚିତ ଆଲୋଚନା ପଡ଼ିବାକୁ କାରଣ ଘଟେ, କେତେବେଳେ ପୁରାଣ ଶୁଣୁ ଶୁଣୁ, କେତେବେଳେ ଆଉ କାହାର କେଉଁ ଆଚରଣ ଚର୍ଚ୍ଚା କରୁ କରୁ । ସେତେବେଳେ ସେମାନେ କହନ୍ତି ।

ବିଚାର ବେଳେ ଉପରୋଧ ନାହିଁ, ପକ୍ଷପାତ ନାହିଁ, ନିଜ ଭାବପ୍ରବଣତାର ଟଳଟାମି ନାହିଁ, ସେମାନେ 'ଧର୍ମଯୁଧେଷ୍ଠି' । । ସାରୋଳଦାସେ ହଜାରେ ବର୍ଷ ତଳେ ରଖିଦେଇ ଯାଇଛନ୍ତି ତା ମୂର୍ତ୍ତି ତାଙ୍କ 'ମୋହାଭାରଥ ପୋଥିରେ' ।

ବୋଧପୁର କାଶୀନାଥ ମହାନ୍ତିଙ୍କ ବଡ଼ଭାଇ ସାଧୁଚରଣ, ତାଙ୍କର ପୁଅ

ନାହିଁ, ଏକମାତ୍ର ସନ୍ତାନ ଝିଅଟିଏ, ତାଙ୍କ ନାଁ 'କୁକ', ସେ ଆଧ୍ୟାତ୍ମବାଦୀ ଲେଖକ ରାଜକିଶୋର ଭାନୁନ୍‌ଗୋଙ୍କ ବୋଉ । ସାଧୁଚରଣ ବଞ୍ଚିଥାନ୍ତି । ତାଙ୍କ ସ୍ତ୍ରୀ ମରିଗଲେ । କୁକ ତା ମା'ର ଶବକୁ ଦେଖିବ ବାପାକୁ ସାନ୍ତ୍ୱନା ଦେବ ବୋଲି ଆସିବାକୁ ମନ କରି ଉତ୍ତରାରଣରୁ ବାହାରିଲା । କୁକ ଆସି ନାନ୍‌ପୁରରେ ବସିଥାଏ । ଖବର ଆସିଲା ଶବାରି ପଠାଇଲେ ଝିଅ ଘରକୁ ଆସିବ ।

ସାଧୁଚରଣ ଗମ୍ଭୀର ହୋଇଗଲେ । କହି ପଠାଇଲେ – ''କୁକ ଯଦି ଆସୁଛି, ତେବେ ନାଳବନ୍ଧ ଏପାଖକୁ ଆସିବ ନାହିଁ, ସେପାଖେ ରହିବ । କାହିଁକି ସେ ଆସିବ ? ମୋର ପୁତୁରାମାନେ ନାହାନ୍ତି ନା ମୋର ବୋହୂମାନେ ନାହାନ୍ତି ଯେ ଝିଅ ଆସିବ ମତେ ସାନ୍ତ୍ୱନା ଦେବାକୁ ?'' ତାଙ୍କ ତଳଭାଇ କାଶୀନାଥ ଶବାରି ଗଉଡ଼ ବରଗୁ ଥିଲେ, ସାଧୁଚରଣ ତାଙ୍କୁ ନିଷେଧ କଲେ, କହିଲେ ''ଯାହା କହିଲି ସେଇଆ କହି ପଠାଅ । ଆଉ କହିପଠାଅ, ଅଶୁଭରେ ଝିଅ ଆସେ ନାହିଁ, ଶୁଭରେ ଆସେ । ଏସବୁ ସରୁ, ସେ ଆସିବ ତା ଖୁଡ଼ୀମାନଙ୍କୁ ଦେଖିବ କି ତା ଭାଇମାନେ ବାହା ହେଲାବେଳେ ଆସିବ, ଅଇଛା ନୁହେଁ ।''

ତାଙ୍କ ମା' ପେଟର ଭାଇମାନଙ୍କର ପୁଣି ଦାଦିମାନଙ୍କ ପୁଅମାନଙ୍କର ମିଶି ତାଙ୍କର ଦୁଇଟା ପୁତୁରା, ସମସ୍ତିଙ୍କୁ ସେ ଆପଣାର ପୁଅ ବୋଲି ମଣୁଥିଲେ । ତେଣୁ ପୋଷ୍ୟପୁତ୍ର କଲେନାହିଁ । ଚାଳିଶି ବର୍ଷ ପରେ ତାଙ୍କର ଜଣେ ପୁତୁରା ଯେତେବେଳେ ବହୁ ଅର୍ଥ ବ୍ୟୟକରି ନାନ୍‌ପୁରରେ ହାଇସ୍କୁଲଟିଏ ବସାଇଲେ ସେତେବେଳେ ନିଜ ଜନ୍ମକଲା ବାପା କି ପାଳିଲା ବାପ ନାଁ'ରେ ତା ନାଁ ରଖିଲେ ନାହିଁ, ତା ନାଁ ରଖିଲେ 'ସାଧୁଚରଣ ବିଦ୍ୟାପୀଠ' । ସେ ବି ସେହି ଏକା ବିଚାର ।

ଗଜରାଜପୁର ଚୌଧୁରୀଙ୍କ ପତ୍ନୀ ଧନୀ ସମୁଦିଘର ଦେବା ନେବା ଉପରେ ମନ୍ତବ୍ୟ କଲେ ''ସେ ଦେବା କ'ଣ ଦରକାର ଥିଲା, ସେଥିରେ କି ଯାଏ ? ମୋର ଚାରିଘର ହାତୀ ଯାଇଥିଲେ, ତାଙ୍କର ମୁଣ୍ଡରେ ସିନ୍ଦୂର ଟୋପାଏ ଟୋପାଏ ମାରିଦେବାକୁ ତାଙ୍କୁ ଚାରିଟା ପଇସା ମିଳିଲା ନାହିଁ ତ ଆଉ ଦେଲେ କ'ଣ ? ଯାରି ନାଁ ମର୍ଯ୍ୟାଦା ?''

ଓଡ଼ିଆରେ 'ଆଭିଜାତ୍ୟ', 'ବୁନିଆଦି', 'ଖାନ୍ଦାନୀ', କହିଲେ ଯାହା ବୁଝାଏ, ଇଂରେଜି 'ଆରିଷ୍ଟୋକ୍ରାସି', ବା ଫରାସି 'ବୁର୍ଜୋଆ' ଶବ୍ଦରେ ତାକୁ ଅନୁବାଦ

କରିହୁଏ ନାହିଁ କି ସେ ଅର୍ଥକୁ ପ୍ରକାଶ କରିହୁଏ ନାହିଁ । ସେ ଓଡ଼ିଆ ଶବ୍ଦମାନଙ୍କ ସଂଜ୍ଞା ନୀତି ଆଦର୍ଶଗତ, ସେ ବୁଝାଏ ନିଜ ପକ୍ଷରେ ସଦ୍‌ବିଚାର ଓ ସତ୍‌କର୍ମ, ସଂଯମ ଓ ଶୃଙ୍ଖଳା, ପରକୁ ସହାନୁଭୂତି, ସେବା, ଉଦାରତା, ଆତିଥ୍ୟ । ସେଥିରେ ଆନନ୍ଦ ହୋଇଥିଲା ତ୍ୟାଗମୂଳକ, ଜୀବନରେ ରସବୋଧ ଥିଲା, ଧର୍ମଭାବର ବିଶିଷ୍ଟ ସ୍ଥାନ ଥିଲା, ଭକ୍ତି ଭିତରେ ଜ୍ଞାନ ମିଶିଥିଲା । ଭାଗ୍ୟ ହିଁ ସବୁ ବୋଲି ଧାରଣା ଥିଲେ ବି ମଣିଷ କାମ କରୁଥିଲା ।